ଓଁ ତତ୍ ସତ୍

# ବିହାରୀ-କର୍ମକାଣ୍ଡ

## (ପ୍ରଥମ ଓ ଦ୍ୱିତୀୟ ଏକତ୍ର)

ବ୍ୟାଖ୍ୟା ଓ ପରିଶିଷ୍ଟ ସହିତ

ରାଜସଂସ୍କରଣ - ୨୦୧୫

୰ ବିହାରୀଲାଲ ପଣ୍ଡିତଙ୍କ ଦ୍ୱାରା ସଂଗୃହୀତ

ସତ୍ତ୍ୱାଧିକାରୀ - ବିହାରୀଲାଲ ପଣ୍ଡିତଙ୍କ ପୌତ୍ର

ଶ୍ରୀ ମୋତିଲାଲ ପଣ୍ଡିତଙ୍କ ଅନୁମତି କ୍ରମେ

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା- ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ- ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨

ଫୋନ୍ : ୦୬୭୧-୨୫୦୮୨୯୬

Whatsapp : 8895307936

www. dharmagranthastore.com

ବନ୍ଧାଇ ସହିତ ମୂଲ୍ୟ : ଚାରିଶହ ଟଙ୍କା ମାତ୍ର

# ଦ୍ୱିତୀୟ ସଂସ୍କରଣର ଭୂମିକା

ଉତ୍କଳ ପ୍ରଦେଶରେ ଉତ୍କଳୀୟ ବ୍ରାହ୍ମଣମାନଙ୍କର ଉପଯୋଗୀ ଏକତ୍ର ସଂଗୃହୀତ କୌଣସି କର୍ମକାଣ୍ଡ ପୁସ୍ତକ ନ ଥିବାରୁ ମୋର ପୂଜ୍ୟ ପିତାମହ ସ୍ୱର୍ଗୀୟ ବିହାରୀଲାଲ ପଣ୍ଡିତ ଏତଦ୍ଦେଶୀୟ ବିଶିଷ୍ଟ ପଣ୍ଡିତମାନଙ୍କଦ୍ୱାରା ଗୋଟିଏ ପଣ୍ଡିତ-ସଭା ସ୍ଥାପନ କରି ନାନାବିଧ ଶାସ୍ତ୍ରାଲୋଚନାପୂର୍ବକ ଏହି 'ବିହାରୀ-କର୍ମକାଣ୍ଡ' ପୁସ୍ତକକୁ ପ୍ରଥମରେ ସନ ୧୩୧୮ ସାଲରେ ପ୍ରକାଶ କରି ବିନା ମୂଲ୍ୟରେ ବିତରଣ କରିଥିଲେ । ସେହି ସମୟରୁ ପ୍ରାୟ ୧୭ ବର୍ଷ ପର୍ଯ୍ୟନ୍ତ ଏହି ପୁସ୍ତକଟି ଜିଜ୍ଞାସୁ ବ୍ରାହ୍ମଣମାନଙ୍କ ମଧ୍ୟରେ ବିତରିତ ହୋଇ ଅବଶେଷରେ ସମାପ୍ତ ହୋଇଯାଇଥିଲା । ତତ୍‌ପରେ ବିତରଣ ବନ୍ଦ ହୋଇଯିବାରୁ ବ୍ରାହ୍ମଣ ସମାଜରେ ଏହାର ଅତ୍ୟନ୍ତ ଆବଶ୍ୟକ ଉପଲବ୍ଧି କରି ବିଜ୍ଞ ପଣ୍ଡିତମାନେ ଏହି ପୁସ୍ତକକୁ ପୁନର୍ବାର ମୁଦ୍ରିତ କରିବା ନିମନ୍ତେ ମୋର ସ୍ୱର୍ଗୀୟ ପିତୃଦେବ ଗଣେଶଲାଲ ପଣ୍ଡିତଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ତାଙ୍କର ଇଚ୍ଛାଥିଲେହେଁ ଅସୁସ୍ଥତା ହେତୁ ଏହା କାର୍ଯ୍ୟରେ ପରିଣତ ହୋଇପାରି ନଥିଲା । ବର୍ତ୍ତମାନ ମୁଁ ପରମେଶ୍ୱରଙ୍କ କୃପାରୁ ଏହି ପୁସ୍ତକକୁ ଦ୍ୱିତୀୟ ସଂସ୍କରଣ ରୂପେ ଆପଣମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ସମର୍ଥ ହୋଇଅଛି ।

ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ଟିପ୍‌ପଣୀ ପ୍ରଭୃତି ଛୋଟ ଅକ୍ଷରରେ ସନ୍ନିବେଶିତ ଥିବାଯୋଗୁଁ ପଠନ ପାଠନ ପକ୍ଷରେ ଅସୁବିଧା ହେଉଥିବାରୁ ଏଥର ତାହା ସବୁ ବଡ଼ ଅକ୍ଷରରେ ଯୋଜନା କରାଯାଇଅଛି ।

ପଣ୍ଡିତ ଶ୍ରୀ ବିଦ୍ୟାଧର କର, ବ୍ୟାକରଣ ସାଂଖ୍ୟ ବେଦାନ୍ତତୀର୍ଥ ଓ ପଣ୍ଡିତ ଶ୍ରୀ ବିଶ୍ୱନାଥ ଶତପଥୀ ଏହି ପୁସ୍ତକର ଭ୍ରମସଂଶୋଧନ ବିଷୟରେ ବହୁ ପରିଶ୍ରମ ସ୍ୱୀକାର କରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି । ତଥାପି କୌଣସି ସ୍ଥାନରେ ଅଶୁଦ୍ଧି ରହିଯାଇଥିଲେ ପାଠକମାନେ କ୍ଷମା କରି ତାହା ସଂଶୋଧନ କରିନେବେ ।

॥ ଇତି ॥

ଓଁ ତତ୍‌ସତ୍ ।

**ଶ୍ରୀ ମୋତିଲାଲ୍ (କାଶ୍ମୀର) ପଣ୍ଡିତ ଶର୍ମା, ବି.ଏ.**

ଚାନ୍ଦିନୀଚୌକ, କଟକ

ତା ୬।୧୨।୧୯୩୭

# ଭୂମିକା

ବର୍ତ୍ତମାନ ସମାଜ ଯେପରି ଶିଳ୍ପ, ବାଣିଜ୍ୟ, ସାହିତ୍ୟ, ବିଜ୍ଞାନ ପ୍ରଭୃତି ପ୍ରଚାରର ଆବଶ୍ୟକତା ଅନୁଭବ କରି ଉଦ୍ଦେଶ୍ୟକୁ ପରିଣତ କରିବା ନିମିତ୍ତ ଚାରିଆଡ଼େ ନାନାପ୍ରକାର ଉପାୟ ଉଦ୍ଭାବନ କରି କ୍ରମଶଃ ଉନ୍ନତିପଥରେ ଧାବମାନ ହେଉଅଛି, ସେହିପରି ହିନ୍ଦୁସମାଜର ଆମୁଷ୍ମିକ ଓ ପାରତ୍ରିକ ଉନ୍ନତିର ଅନ୍ୟତମ ନିଦାନ ସ୍ୱରୂପ ପ୍ରାଚୀନ ମୁନିମାନଙ୍କ ଉପଦିଷ୍ଟ କ୍ରିୟାକଳାପର ପ୍ରୟୋଜନୀୟତା ଅନୁଭବ କରି ସୁଦ୍ଧା ତାହା କର୍ମକ୍ଷେତ୍ରରେ ନିଯୁକ୍ତ କରିବା ନିମିତ୍ତ ଯେ ସେ ଉପାୟମାନ ଅନୁଷ୍ଠିତ ହେଉଅଛି ତାହା ଆଶାନୁରୂପ ଫଳଦାୟକ ହେବ ବୋଲି ବୋଧ ହେଉ ନାହିଁ; କାରଣ ଅନ୍ୟାନ୍ୟ ସମାଜ ଅପେକ୍ଷା ହିନ୍ଦୁ ସମାଜରେ ଧର୍ମ ବିଶ୍ୱାସର ମାତ୍ରା କ୍ରମେ ନ୍ୟୂନ ହୋଇଗଲା ପରି ଅନୁମାନ ହୁଏ । କାହିଁକିନା ପୂର୍ବକାଳରେ ବ୍ରାହ୍ମଣମାନେ ମୁଖରୁ ଅଗ୍ନି ବାହାର କରିପାରୁଥିଲେ ଓ ସେମାନେ କ୍ରୁଦ୍ଧହୋଇ ତୀବ୍ରଦୃଷ୍ଟିରେ ଚାହିଁଦେଲା ମାତ୍ରେ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ପାଷାଣାଦି ପର୍ଯ୍ୟନ୍ତ ଚରାଚର ଜୀବଗଣ ଭସ୍ମସାତ୍ ହୋଇଯାଉଥିଲେ ବୋଲି ପ୍ରାଚୀନ ବ୍ୟକ୍ତିଙ୍କ ମୁଖରୁ ଓ ପୁରାଣାଦିରୁ ଶୁଣାଯାଏ । ଏ ବିଷୟ ଘୋର ଦୂରାବସ୍ଥା ଆଧୁନିକ ହିନ୍ଦୁ ସମାଜ, ବିଭିନ୍ନ ସମାଜଙ୍କ ସମ୍ମୁଖରେ ପ୍ରକାଶ କରି ଉପହାସ୍ୟାସ୍ପଦ ହେଉଅଛି । କାରଣ ଆର୍ଯ୍ୟଋଷିମାନେ ଯେଉଁ ଯେଉଁ ବିଧିନିଷେଧ ପ୍ରଚାର କରିଅଛନ୍ତି ସେ କଦାପି ଉପହାସ୍ୟାସ୍ପଦ ନୁହେଁ; ଆମ୍ଭେମାନେ ତାହାର ଗୂଢ଼ମର୍ମ ବୁଝି ତାହା କାର୍ଯ୍ୟରେ ପରିଣତ କରିପାରୁ ନାହୁଁ । କେବଳ ବ୍ରାହ୍ମଣମାନେ ଯେ ଏପରି ତେଜୋବିଶିଷ୍ଟ ଥିଲେ ତାହା ନୁହେଁ, ଅନ୍ୟାନ୍ୟ ବର୍ଣ୍ଣମାନେ ମଧ ସ୍ୱ ସ୍ୱ କର୍ମରେ ବିଶେଷ ଧୁରନ୍ଧର ଥିଲେ । ଜନକ, ବିଶ୍ୱାମିତ୍ର, ଭରତ, ମାନ୍ଧାତା ପ୍ରଭୃତି କେତେକ ରାଜା ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତସ୍ଥାନ ଅଧିକାର କରି ପ୍ରାତଃସ୍ମରଣୀୟ ହୋଇଅଛନ୍ତି । ମୁଁ ଏହିସବୁ ବିଷୟ ଆଲୋଚନା କରି ଦେଖିପାରିଲି ଯେ ଇହଜଗତରେ ହିନ୍ଦୁ ସମାଜର ଐହିକ ପାରତ୍ରିକ ଉନ୍ନତି ସାଧନର ହେତୁଭୂତ କେବଳମାତ୍ର ବେଦ; ଯାହାର ବିଜ୍ଞାନ ବଳରେ ଆଶ୍ୱଳାୟନ, ଜୈମିନି, ଗୋଭିଲ, ପାରସ୍କର, କାତ୍ୟାୟନ, ମନୁ, ଯାଜ୍ଞବଲ୍କ୍ୟ, କଠ, ବାଲ୍ମୀକି, ଯାସ୍କ, ପାଣିନି, ମାର୍କଣ୍ଡେୟ, ବ୍ୟାସ, ବିଶ୍ୱାମିତ୍ର ପ୍ରଭୃତି ମହର୍ଷିଗଣ ଗର୍ଭାଧାନାଦି ସଂସ୍କାରସୂତ୍ର, ଶ୍ରାଦ୍ଧସୂତ୍ର, ସ୍ନାନସୂତ୍ର, ସ୍ମୃତି, ବ୍ୟାକରଣ, ପୁରାଣ, ମୀମାଂସା, ଯୋଗଶାସ୍ତ୍ର ପ୍ରଭୃତି ଶାସ୍ତ୍ର ଓ ଅସ୍ତ୍ର, ଶସ୍ତ୍ର ବ୍ୟୋମଯାନ, ଧୂମଯାନାଦିର ସୃଷ୍ଟି କରି ସାଂସାରିକ ସୁଖଲାଭ ଓ ବ୍ରହ୍ମପଦପ୍ରାପ୍ତିରେ ସମର୍ଥ ହୋଇଥିଲେ ସେହି ଈଶ୍ୱର ମୁଖନିର୍ଗତ ବେଦ ଜ୍ଞାନକାଣ୍ଡ ଓ କର୍ମକାଣ୍ଡ ଏହି ଦୁଇ ଭାଗରେ ବିଭକ୍ତ । ବେଦର ଯେଉଁ ଯେଉଁ ଅଂଶରେ ଯଜ୍ଞାଦି କର୍ମମାନ ନିରୂପିତ ହୋଇଅଛି ତାହାର ନାମ କର୍ମକାଣ୍ଡ । ସେହି ଯଜ୍ଞାଦିକର୍ମ ଇହପରଲୋକ ସୁଖସାଧନର ମୂଳଭିତ୍ତି, ଏହା ସ୍ୱୟଂ ଭଗବାନ ଗୀତାରେ କହିଅଛନ୍ତି- "ଅନ୍ନାଦ୍‌ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ । ଯଜ୍ଞାଦ୍‌ଭବତି ପର୍ଜନ୍ୟୋ

ଯଜ୍ଞଃ କର୍ମସମୁଦ୍ଭବଃ । କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷର ସମୁଦ୍ଭବଂ । ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତଂ ।" ସେହି କର୍ମକାଣ୍ଡ ଅଗାଧ ମହାସାଗରତୁଲ୍ୟ ଅନନ୍ତ ଓ ଅପାର । ମହାତ୍ମା ପାରସ୍କରାଚାର୍ଯ୍ୟ ଯଜୁର୍ବେଦୀୟ ବର୍ଣ୍ଣଚତୁଷ୍ଟୟଙ୍କ ମଙ୍ଗଳସାଧନ ନିମିତ୍ତ ତହିଁରୁ ସାରାଂଶ ଗ୍ରହଣ କରି ଗୋଟିଏ, "ଗୃହ୍ୟସୂତ୍ର" ନାମକ ଗ୍ରନ୍ଥ ରଚନା କରିଥିଲେ । ତାହା ଲୋକମାନଙ୍କ ପକ୍ଷରେ ଦୁର୍ବୋଧ୍ୟ ଓ ଦୁଷ୍ପ୍ରାପ୍ୟ ହେବାର ଦେଖି ଦେଶବିଦେଶରେ ଲୋକହିତୈଷୀ ପଦ୍ଧତିକାରମାନେ ଭିନ୍ନ ଭିନ୍ନ ପଦ୍ଧତିମାନ ରଚନା କରିଯାଇଅଛନ୍ତି । ବଙ୍ଗ, କାଶ୍ମୀର ପ୍ରଭୃତି ଦେଶରେ ସ୍ୱ ସ୍ୱ ଦେଶୀୟ ପଦ୍ଧତିମାନ ମୁଦ୍ରିତ ହୋଇଥିବାରୁ ତତ୍ତ୍ୱଦେଶବାସୀଙ୍କ ପକ୍ଷରେ ପଠନାଦିର ଅସୁବିଧା ଘଟିବା ସମ୍ଭବପର ନୁହେଁ; କିନ୍ତୁ ଏତଦ୍ଦେଶୀୟ ପଦ୍ଧତିମାନ ତାଳପତ୍ରରେ ଲିପିବଦ୍ଧ ହୋଇ ଲେଖକଙ୍କ ଦୋଷରେ କିମ୍ଭୁତକିମାକାର ଧାରଣ କରିବାରୁ ଇଷ୍ଟପରିବର୍ତ୍ତରେ ପଦେ ପଦେ ଅନିଷ୍ଟ ପରିଲକ୍ଷିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା; କାହିଁକି ନା ପୂର୍ବକାଳରେ ଦେବାସୁର ଯୁଦ୍ଧ ସମୟରେ "ଇନ୍ଦ୍ରଶତ୍ରୋ ବିବର୍ଦ୍ଧସ୍ୱ" ଏହି ମନ୍ତ୍ର ଉଚ୍ଚାରଣ କଲାବେଳେ ଆଉ ଅନ୍ୟ କଥା, କେବଳମାତ୍ର ସ୍ୱରର ବୈଲକ୍ଷଣ ଘଟିଥିବାରୁ ବିପରୀତପକ୍ଷ ବିଜୟଲାଭ କରିଥିଲେ ଏବଂ "ଅଶୁଦ୍ଧଚଣ୍ଡୀପାଠେନ ରାବଣସ୍ୟ କୁଳକ୍ଷୟଃ" ଇତ୍ୟାଦି ବହୁତର ପ୍ରମାଣ ମଧ୍ୟ ପରିଦୃଷ୍ଟ ହୁଏ । ଆଉ ମଧ୍ୟ ଏତଦ୍ଦେଶୀୟ ଲୋକଙ୍କର ଗୋଟିଏ ମହାନ୍ ଦୋଷ ଏହି ଯେ ଯାହା ଗୃହରେ ପୁସ୍ତକ ଖଣ୍ଡିଏ ଅଛି ସେ ତାହା କାହାରିକୁ ପଢ଼ିବାକୁ ଦେବା ଦୂରେ ଥାଉ ଦେଖିବାକୁ ଦେବାକୁ ସୁଦ୍ଧା କୁଣ୍ଠିତ ହୁଏ । ସେମାନେ ମନେ କରନ୍ତି କି ଆମ୍ଭ ଚିରସଞ୍ଚିତ ଗଣ୍ଠିଧନ ପ୍ରକାଶ ପାଇଲେ ନିଜର ଆଦର କମିଯିବ । ଅତଏବ ପୁସ୍ତକ ଓ ଶିକ୍ଷାର ଅଭାବରୁ କର୍ମର ମର୍ମ ଜାଣି ନ ପାରି ଲୋକଙ୍କର କ୍ରିୟାକଳାପ ପ୍ରତି କ୍ରମେ କ୍ରମେ ଅନାସ୍ଥା ଓ ଅବିଶ୍ୱାସ ଜନ୍ମୁଥିବାର ଦେଖି ସେହି ଅଭାବମାନ ପୂରଣ କରିବା ନିମିତ୍ତ ମୁଁ ବହୁ ଆୟାସ ସ୍ୱୀକାର କରି ମୋହର କ୍ଷୁଦ୍ର ବୁଦ୍ଧିରେ ଏବଂ ପଣ୍ଡିତ ଶ୍ରୀ ଗୋପୀନାଥ କର ଶର୍ମା ମହାଶୟ ଓ ପଣ୍ଡିତ ଶ୍ରୀ ଧନେଶ୍ୱର ଶତପଥୀ ମହାଶୟଙ୍କ ସାହାଯ୍ୟରେ ଗୃହ୍ୟସୂତ୍ର, ମନ୍ତ୍ରସଂହିତା, ମାଧ୍ୟନ୍ଦିନୀ ଶାଖା, କାଣ୍ୱଶାଖା, ଗଦାଧରଭାଷ୍ୟ, ହରିହର ଭାଷ୍ୟ, ଜୟରାମଭାଷ୍ୟ, କର୍କଭାଷ୍ୟ, ଗୃହସୂତ୍ରକାରିକା, କାତ୍ୟାୟନସୂତ୍ର, ବହ୍ୱଚକାରିକା, ରାଜମାର୍ତ୍ତଣ୍ଡ, ଛନ୍ଦୋଗପରିଶିଷ୍ଟ, ଶ୍ରାଦ୍ଧାବିବେକ, ମନୁ, ଯାଜ୍ଞବଲ୍କ୍ୟ, ନିର୍ଣ୍ଣୟ ସିନ୍ଧୁ, ଉଦ୍‌ବାହ ତତ୍ତ୍ୱ, ବ୍ରତୋଦ୍‌ଯାପନକୌମୁଦୀ, ତନ୍ତ୍ରସାର, ପଣ୍ଡିତ ସର୍ବସ୍ୱ, ଗଦାଧର ପଦ୍ଧତି, ମହାଭାରତ, ବିଷ୍ଣୁପୁରାଣ, ମତ୍ସ୍ୟସୂକ୍ତ, ବୌଧାୟନ, କଳକିପୁରାଣ, କାଳିକାପୁରାଣ, ବିଶ୍ୱକୋଷ, ଶବ୍ଦ କଳ୍ପଦ୍ରୁମ ଆଉ ଏତଦ୍ଦେଶୀୟ କେତେକ ତାଳପତ୍ର ପୁସ୍ତକମାନ ମନ୍ଥନ କରି ତହିଁରୁ ଗର୍ଭାଧାନାଦି ସଂସ୍କାରର ପ୍ରୟୋଜନୀୟ ଯତ୍କିଂଚିତ୍ ସାରାଂଶବାକ୍ୟାବଳିଗୁଡ଼ିକ ଉଦ୍ଧୃତ କରି ଓ ତାହା ଏତଦ୍ଦେଶୀୟ ଦିବ୍ୟସିଂହବାଜପେୟୀ ପଦ୍ଧତି ସହିତରେ ସଂଯୋଜିତ କରି ଓ ଏହି ପୁସ୍ତକକୁ ମୋର କ୍ଷୁଦ୍ରନାମ ଦେଇ "ବିହାରୀ କର୍ମକାଣ୍ଡ"

ନାମରେ ପ୍ରଚାର କଲି । କିନ୍ତୁ ଏ କାର୍ଯ୍ୟ ମୋ ପକ୍ଷରେ ଅବଶ୍ୟ ଗୁରୁତର, ଏହା କେବଳ ଦୟାମୟ ଜଗତ୍ପିତା ଜଗଦୀଶ୍ୱରଙ୍କ କୃପାରେ ସମ୍ପୂର୍ଣ୍ଣାକାର ଧାରଣ କଲା । ଏଥିରେ ଈଶ୍ୱର ଅବଶ୍ୟ ଧନ୍ୟବାଦାର୍ହ ଅଟନ୍ତି । ଏହି ପୁସ୍ତକରେ ଆଚାର୍ଯ୍ୟ ପ୍ରଭୃତିଙ୍କ ଲକ୍ଷଣ, ବିଷ୍ଟର ପ୍ରଭୃତି ଓ ସ୍ରୁବ, ସ୍ରୁଚ ପ୍ରଭୃତିର ଲକ୍ଷଣ, କୁଣ୍ଡ ମଣ୍ଡଳାଦିର ପ୍ରମାଣ, ଗ୍ରହ ଓ ଦିକ୍‌ପାଳଙ୍କ ଜାତ୍ୟାଦି ବିବରଣ, ଗ୍ରହପୂଜା, ସପ୍ତାଙ୍ଗ ହୋମ, ଗର୍ଭାଧାନ ପୁଂସବନାଦି ଦଶକର୍ମ ଓ ବିବାହ, ଚତୁର୍ଥୀ, ଚନ୍ଦ୍ରବନ୍ଦାପନା ବୃଦ୍ଧିଶ୍ରାଦ୍ଧ, ବର୍ଷ ବୃଦ୍ଧି ପ୍ରଭୃତି କର୍ମମାନ, ଆଉ ପରିଶିଷ୍ଟରେ ଦତ୍ତକପୁତ୍ରଗ୍ରହଣ ବିଧି, ଜନ୍ମଦିନ ପୂଜାପଦ୍ଧତି, କର୍ଣ୍ଣବେଧ, ବିଦ୍ୟାରମ୍ଭ, ଶାଖୋଟକବିବାହ, ତୁଳସୀବିବାହ, ବଟ ଅଶ୍ୱତ୍ଥବିବାହ ଓ ଶୂଦ୍ରସଂସ୍କାର ପ୍ରଭୃତି କର୍ମମାନ ସଂଯୋଜିତ କରି ତାହା ସଙ୍ଗେ ସଙ୍ଗେ ପ୍ରମାଣଗୁଡ଼ିକ ଟିପ୍‌ପଣୀରେ ଦେଇ ଅର୍ଥବ୍ୟୟରେ କୁଣ୍ଠିତ ନ ହୋଇ ଏହି କ୍ଷୁଦ୍ର ପୁସ୍ତକଖଣ୍ଡିକୁ ଉତ୍କଳାକ୍ଷରରେ ମୁଦ୍ରିତ କଲି । ଏଥିରେ ବିଶେଷ ସୁବିଧା ଏହି ଯେ ପୁରୋହିତଙ୍କ ଅଭାବରେ ସର୍ବସାଧାରଣ ଏ ପୁସ୍ତକ ସାହାଯ୍ୟରେ ନିଜେ ନିଜେ କର୍ମ ଚଳାଇପାରିବେ, ଏତନ୍ନିମିତ୍ତ ପ୍ରତ୍ୟେକ ନମ୍ବରର ସଙ୍ଗେ ସଙ୍ଗେ ସରଳଭାଷାରେ ତାହାର ବ୍ୟାଖ୍ୟା ଦିଆଯାଇଅଛି ଓ ବିଷୟଗୁଡ଼ିକ ଅନାୟାସରେ ପ୍ରାପ୍ତ ହେବା ନିମିତ୍ତ ପୁସ୍ତକର ଆଦ୍ୟରେ ବର୍ଣ୍ଣମାଳାନୁସାରେ ଗୋଟିଏ ସୂଚିପତ୍ର ଓ ଶେଷରେ ଶୁଦ୍ଧିପତ୍ର ମଧ୍ୟ ଦିଆଯାଇଛି । ପରିଶେଷରେ ବକ୍ତବ୍ୟ ଏହି ଯେ ଏଠାକାର ପ୍ରଧାନ ପଣ୍ଡିତ ଶ୍ରୀ ବିଶ୍ୱନାଥ ଶତପଥୀ ଓ ଅନ୍ୟାନ୍ୟ ପଣ୍ଡିତମାନେ ଅନୁଗ୍ରହ କରି ପୁସ୍ତକର ସଂଶୋଧନରେ ତ୍ରୁଟି କରିନାହାନ୍ତି । ଅତଏବ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛି । ମୁଁ ଏହି ପୁସ୍ତକ ପୁତ୍ରତୁଲ୍ୟ ଅତି ସ୍ନେହରେ ଆର୍ଥିକ ଓ ପାରିଶ୍ରମିକ ବ୍ୟୟଦ୍ୱାରା ଯଥାସାଧ୍ୟ କାର୍ଯ୍ୟୋପଯୋଗୀ କରି ଦେଶହିତୈଷୀ ସୁଶିକ୍ଷିତ ପାଠକବର୍ଗଙ୍କ ହସ୍ତରେ ଅର୍ପଣ କଲି । ପ୍ରାର୍ଥନା କରୁଅଛି ଯେ ଯଦି ସେମାନେ ଶ୍ରଦ୍ଧାପୂର୍ବକ ଏହାକୁ ପାଠ କରି ଓ କାର୍ଯ୍ୟରେ ପରିଣତ କରି ଦେଶର ମଙ୍ଗଳ ସାଧନ କରନ୍ତି ତାହାହେଲେ ମୋହର ଅର୍ଥ ବ୍ୟୟ ଓ ପରିଶ୍ରମ ସାର୍ଥକ ହେବ ଏବଂ ଦେଶର ମଙ୍ଗଳ ହେଲେ ମୁଁ ଉପକୃତ ଓ ଆନନ୍ଦିତ ହେବି ।

"ପ୍ରକାଶ ଥାଉ କି ଏହି ଗ୍ରନ୍ଥ ପାଠ କଲାବେଳେ ବନ୍ଧନୀମଧ୍ୟସ୍ଥ ବାକ୍ୟ ()ମାନଙ୍କୁ ଅର୍ଥାତ୍" କିମ୍ବା "ଭାଷାର୍ଥ" ଜ୍ଞାନ କରିବେ ଓ ପ୍ରଥମେ ଶୁଦ୍ଧିପତ୍ରଦ୍ୱାରା ସଂଶୋଧନ କରିସାରି ପାଠ କରିବେ । ଭ୍ରମବଶତଃ କୌଣସି ସ୍ଥାନରେ ଅଶୁଦ୍ଧି ରହିଯାଇଥିଲେ ତାହା କ୍ଷମା କରି ସଂଶୋଧନ କରିନେବେ ।

॥ ଇତି ॥

ଓଁ ତତ୍‌ସତ୍

ଆପଣମାନଙ୍କର ପୂର୍ବପରିଚିତ ଶ୍ରୀ ବିହାରୀଲାଲ କାଶ୍ମୀର ପଣ୍ଡିତ
ଚାନ୍ଦିନୀଚୌକ, କଟକ

# ବିହାରୀ କର୍ମକାଣ୍ଡର

## ସୂଚୀପତ୍ର

-x-

ଓଁ

# ବିହାରୀ କର୍ମକାଣ୍ଡ



## ୧ – ଆଚାର୍ଯ୍ୟ ଲକ୍ଷଣ

ସତ୍ୟବାକ୍ ଧୃତିମାନ୍ ଦକ୍ଷଃ ସର୍ବଭୂତଦୟାପରଃ ।
ଆସ୍ତିକୋବେଦନିରତଃ ଶୁଚିରାଚାର୍ଯ୍ୟଉଚ୍ୟତେ ।
ବେଦାଧ୍ୟୟନସମ୍ପନ୍ନୋବୃତ୍ତିମାନ୍ ବିଜିତେନ୍ଦ୍ରିୟଃ ।
ନ ଯାଜୟେଦ୍ବୃତ୍ତିହୀନଂ ବୃଣୁୟାଚ୍ଚ ନ ତଂ ଗୁରୁଂ ।

(ଗୃହ୍ୟସୂତ୍ରହରିହରଭାଷ୍ୟେ ଯମଃ)

ବ୍ୟାଖ୍ୟା – ସତ୍ୟବାଦୀ ଧୈର୍ଯ୍ୟଶାଳୀ, କାର୍ଯ୍ୟଦକ୍ଷ, ଦୟାଳୁ ଆସ୍ତିକ, ଦେବଜ୍ଞ ଓ ପବିତ୍ର ଏପରି ଲକ୍ଷ୍ମଣଯୁକ୍ତ ବ୍ରାହ୍ମଣକୁ ଆଚାର୍ଯ୍ୟ କରିବ; କିନ୍ତୁ ବେଦାଧ୍ୟାୟୀ, ବୃତ୍ତିମାନ୍ ଓ ଜିତେନ୍ଦ୍ରିୟ ହୋଇଥିଲେ ମଧ୍ୟ ଯଦି ସେ ବୃତ୍ତିହୀନ ଲୋକର ପୌରୋହିତ୍ୟାଦି କର୍ମ ନ କରେ ତେବେ ସେହି ବ୍ରାହ୍ମଣକୁ ଆଚାର୍ଯ୍ୟ ପଦରେ ବରଣ କରିବ ନାହି ।

## ୨ – ଗର୍ଭାଧାନ ବ୍ୟବସ୍ଥା

ବ୍ରହ୍ମକ୍ଷତ୍ରିୟବିଟ୍‌ଶୂଦ୍ରାବର୍ଣ୍ଣାସ୍ତ୍ୱାଦ୍ୟାସ୍ତ୍ରୟୋଦ୍ୱିଜାଃ ।
ନିଷେକାଦିଶ୍ମଶାନାନ୍ତାସ୍ତେଷାଂ ବୈ ମନ୍ତ୍ରତଃ କ୍ରିୟାଃ ।

(ଯାଜ୍ଞବଲ୍‌କ୍ୟଃ)

ବ୍ୟାଖ୍ୟା – ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରିଙ୍କୁ ବର୍ଣ୍ଣ କୁହାଯାଏ । ଏମାନଙ୍କ ମଧ୍ୟରୁ ଶୂଦ୍ର ଛଡ଼ା ଆଉ ତିନି ବର୍ଣ୍ଣଙ୍କୁ ଦ୍ୱିଜ କହନ୍ତି । ଏହି ଦ୍ୱିଜାତିମାନଙ୍କର ନିଷେକାଦି ଶ୍ମଶାନାନ୍ତ (ଗର୍ଭାଧାନଠାରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ) ସମସ୍ତ କର୍ମ ବେଦବିହିତ ମନ୍ତ୍ରଦ୍ୱାରା କରାଯାଏ ।

---

* ଯେ ଈଶ୍ୱରଙ୍କୁ ମାନନ୍ତି ।



## ୩ – ନିଷେକାଦି ସଂସ୍କାରକର୍ମ ।

ଗର୍ଭାଧାନମୃତୌ ପୁଂସଃ ସବନଂ ସ୍ପନ୍ଦନାତ୍ ପୁରା
ଷଷ୍ଠେଽଷ୍ଟମେ ବା ସୀମନ୍ତଃ ପ୍ରସବେ ଜାତକର୍ମ ଚ ।
ଅହନ୍ୟେକାଦଶେ ନାମ ଚତୁର୍ଥେ ମାସି ନିଷ୍କ୍ରମଃ ।
ଷଷ୍ଠେଽନ୍ନପ୍ରାଶନଂ ମାସି ଚୂଡ଼ା କାର୍ଯ୍ୟା ଯଥାକୁଳଂ ।
ଗର୍ଭାଷ୍ଟମେଽଷ୍ଟମେ ବାବ୍ଦେ ବ୍ରାହ୍ମଣସ୍ୟୋପନାୟନଂ ।
ରାଜ୍ଞାମେକାଦଶେ ସୈକେ ବିଶାମେକେ ଯଥାକୁଳଂ ।
ଅବିପ୍ଲୁ ତବ୍ରହ୍ମଚର୍ଯ୍ୟୋ ଲକ୍ଷଣ୍ୟାଂ ସ୍ତ୍ରିୟମୁଦ୍ୱହେତ୍ ।

(ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା – ଋତୁକାଳରେ ଗର୍ଭାଧାନ କରିବାର ତିଥି ଓ ଗର୍ଭରେ ଭ୍ରୂଣ ବୁଲିବା ପୂର୍ବରୁ ଅର୍ଥାତ୍ ଗର୍ଭାଧାନର ଦ୍ୱିତୀୟ ବା ତୃତୀୟ ମାସ ମଧ୍ୟରେ ପୁଷ୍ୟା ପ୍ରଭୃତି ପୁରୁଷ ନକ୍ଷତ୍ରରେ ଚନ୍ଦ୍ର ଯୁକ୍ତ ଥିଲେ ସେହି ଦିନ ପୁଂସବନ (ଗର୍ଭସଂସ୍କାର) କର୍ମ କରିବ । ଷଷ୍ଠମାସ କିମ୍ବା ଅଷ୍ଟମ ମାସରେ ପୁଷ୍ୟା ପ୍ରଭୃତି ପୁରୁଷ ନକ୍ଷତ୍ରରେ ଚନ୍ଦ୍ରଯୁକ୍ତ ଥିଲେ ସେହିଦିନ ସୀମନ୍ତୋନ୍ନୟନ (ଗର୍ଭସଂସ୍କାର) କର୍ମ କରିବ । ସନ୍ତାନର ଜନ୍ମସମୟରେ ଜାତକର୍ମ ଓ ଜନ୍ମଠାରୁ ଏଗାରଦିନରେ ନାମକରଣ କରିବ । ଚତୁର୍ଥମାସରେ ନିଷ୍କ୍ରାମଣ (ପିଲାକୁ ବାହାରକୁ ବାହାର କରିବା), ଷଷ୍ଠ ମାସରେ ଅନ୍ନପ୍ରାଶନ (କ୍ଷୀରିଖିଆ) କର୍ମ କରିବ । ଗର୍ଭାଧାନଠାରୁ ଅଷ୍ଟମବର୍ଷରେ କିମ୍ବା ଜନ୍ମଠାରୁ ଅଷ୍ଟମବର୍ଷରେ ବ୍ରାହ୍ମଣର ଉପନୟନକର୍ମ କରିବ, କ୍ଷତ୍ରିୟମାନଙ୍କର ଏକାଦଶବର୍ଷରେ ଓ ବୈଶ୍ୟମାନଙ୍କର ଦ୍ୱାଦଶବର୍ଷରେ ଉପନୟନକର୍ମ କରିବ; ମତାନ୍ତରେ କୁଳବିଧି ଅନୁସାରେ ଉପନୟନକର୍ମ କରିବ । ତତ୍ପରେ ଅକ୍ଷୁର୍ଣ୍ଣ ବ୍ରହ୍ମଚର୍ଯ୍ୟ ଧାରଣ କରି ସୁଲକ୍ଷଣା ସ୍ତ୍ରୀକୁ ବିବାହ କରିବ ।

## ୪ – ଗର୍ଭାଧାନକାଳ ନିରୂପଣ

ଷୋଡ଼ଶର୍ତ୍ତୁନିଶାଃ ସ୍ତ୍ରୀଣାଂ ତାସୁ ଯୁଗ୍ମାସୁ ସଂବିଶେତ୍ ।
ବ୍ରହ୍ମଚାର୍ଯ୍ୟେବ ପର୍ବଣ୍ୟାଦ୍ୟାଶ୍ଚ ତସ୍ରଶ୍ଚ ବର୍ଜୟେତ୍ ।

(ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା – ସ୍ତ୍ରୀମାନଙ୍କର ପ୍ରଥମ ଋତୁଦିନଠାରୁ ଷୋଳଦିନ ପର୍ଯ୍ୟନ୍ତ ଗର୍ଭାଧାନ ଯୋଗ୍ୟ କାଳ, ଏହି ଦିବସମାନଙ୍କ ମଧ୍ୟରୁ ଯୁଗ୍ମରାତ୍ରିରେ ସ୍ତ୍ରୀସଙ୍ଗ ପ୍ରଶସ୍ତ; କିନ୍ତୁ

ପ୍ରଥମ ଚାରିଦିନରୁ ତ୍ୟାଗ କରିବ ଓ + ପର୍ବଦିବସମାନଙ୍କରେ ମଧ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ କରିବ, ଅର୍ଥାତ୍ ସ୍ତ୍ରୀ ସଙ୍ଗ କରିବ ନାହିଁ ।

## ୫ – ଗର୍ଭାଧାନର ନିଷିଦ୍ଧ ଦିବସ

ତାସାମାଦ୍ୟାଶ୍ଚତସ୍ରସ୍ତୁ ନିନ୍ଦିତୈକାଦଶୀ ତଥା ।
ତ୍ରୟୋଦଶୀ ଚ ଶେଷାଃ ସ୍ୟୁଃ ପ୍ରଶସ୍ତାଦଶରାତ୍ରୟଃ । (ମନୁଃ)

ବ୍ୟାଖ୍ୟା – ଋତୁର ଷୋଳଦିନ ମଧ୍ୟରେ ପ୍ରଥମ ଚାରିରାତି ଏବଂ ଏକାଦଶ ଓ ତ୍ରୟୋଦଶ ରାତି ଏରୂପ ଛ'ରାତ୍ରି ବର୍ଜନ କରି ଅନ୍ୟ ଦଶରାତିରେ ଗର୍ଭାଧାନ କରିବ ।

## ୬ – ସ୍ତ୍ରୀ ଶୁଦ୍ଧି ବ୍ୟବସ୍ଥା

ଶୁଦ୍ଧା ଭର୍ତ୍ତୁଶ୍ଚ ତୁର୍ଥେଽହ୍ନି ସ୍ନାନେନ ସ୍ତ୍ରୀ ରଜସ୍ୱଲା ।
ଦୈବେ କର୍ମଣୀପୈତ୍ର୍ୟେ ଚ ପଞ୍ଚମେଽହନି ଶୁଧ୍ୟତି । (ହାରୀତଃ)

ବ୍ୟାଖ୍ୟା – ସ୍ୱାମୀନିମିତ୍ତ ରଜସ୍ୱଲା ସ୍ତ୍ରୀ ଚାରିଦିନରେ ଶୁଦ୍ଧ ହୁଏ ଏବଂ ଦେବତା ଓ ପିତୃକର୍ମ କରିବା ନିମିତ୍ତ ପାଞ୍ଚଦିନରେ ଶୁଦ୍ଧିଲାଭ କରେ ।

## ୭ – ପୁତ୍ର ଓ କନ୍ୟା ଜନ୍ମର ନିୟମ

ଯୁଗ୍ମାସୁ ପୁତ୍ରା ଜାୟନ୍ତେ ସ୍ତ୍ରିୟୋଽଯୁଗ୍ମାସୁରାତ୍ରିଷୁ ।
(ହେମାଦ୍ରୌ ଶଙ୍ଖଃ)

ବ୍ୟାଖ୍ୟା – ଯୁଗ୍ମରାତ୍ରିରେ ସ୍ତ୍ରୀ ସହବାସ କଲେ ପୁତ୍ର ଓ ଅଯୁଗ୍ମ ରାତ୍ରିରେ କନ୍ୟା ଜାତ ହୁଏ ।

## ୮ – ଯୁଗ୍ମ ଅଯୁଗ୍ମ ରାତ୍ରିରେ ସ୍ତ୍ରୀ ସଙ୍ଗମର ଫଳାଫଳ

ରାତ୍ରୌ ଚତୁର୍ଥ୍ୟାଂ ପୁତ୍ରଃ ସ୍ୟାଦଳ୍ପାୟୁର୍ଦ୍ଧନବର୍ଜିତଃ ।
ପଞ୍ଚମ୍ୟାଂ ପୁତ୍ରିଣୀ ନାରୀ ଷଷ୍ଠ୍ୟାଂ ପୁତ୍ରସ୍ତୁ ମଧ୍ୟମଃ ।

---

* ପର୍ବଦିବସ, ଯଥା –

ଚତୁର୍ଦ୍ଦଶ୍ୟଷ୍ଟମୀ ଚୈବ ଅମାବାସ୍ୟାଥପୂର୍ଣ୍ଣିମା ।
ଚତ୍ୱାର୍ଯ୍ୟେତାନି ପର୍ବାଣୀ ରବିସଂକ୍ରାନ୍ତିରେବ ଚ । (ମନୁଃ)

ବ୍ୟାଖ୍ୟା – ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା ଓ ପୂର୍ଣ୍ଣିମା ଏହି ଚାରି ଦିବସକୁ ପର୍ବଦିବସ କହନ୍ତି । ଆଉ ମଧ୍ୟ ସଂକ୍ରାନ୍ତିକୁ ପର୍ବଦିବସ କହନ୍ତି ।



ସପ୍ତମ୍ୟାସପ୍ରଜା ଯୋଷିଦଷ୍ଟମ୍ୟାମୀଶ୍ୱରଃ ପୁମାନ୍ ।
ନବମ୍ୟାଂ ସୁଭଗା ନାରୀ ଦଶମ୍ୟାଂ ପ୍ରବରଃ ସୁତଃ ।
ଏକାଦଶ୍ୟାମଧର୍ମା ସ୍ତ୍ରୀ ଦ୍ୱାଦଶ୍ୟାଂ ପୁରୁଷୋତ୍ତମଃ ।
ତ୍ରୟୋଦଶ୍ୟାଂ ସୁତା ପାପା ବର୍ଣ୍ଣଶଂକରକାରିଣୀ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ଆତ୍ମବେଦୀ ଦୃଢ଼ବ୍ରତଃ ।
ପ୍ରଜାୟତେ ଚତୁର୍ଦ୍ଦଶ୍ୟାଂ ପଞ୍ଚଦଶ୍ୟାଂ ପତିବ୍ରତା ।
ଆଶ୍ରୟଃ ସର୍ବଭୂତାନାଂ ଷୋଡ଼ଶ୍ୟାଂ ଜାୟତେ ପୁମାନ୍ । (ବ୍ୟାସଃ)

ବ୍ୟାଖ୍ୟା – ଋତୁର ଚତୁର୍ଥ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ଯେଉଁ ପୁତ୍ର ହୁଏ, ସେ ଅଳ୍ପାୟୁ ଓ ଧନହୀନ ହୁଏ । ପଞ୍ଚମ ରାତ୍ରିରେ ସ୍ତ୍ରୀସଙ୍ଗ କଲେ କନ୍ୟା ହୁଏ, ସେ ପୁତ୍ରବତୀ ହୁଏ । ଷଷ୍ଠରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ମଧ୍ୟମ ହୁଏ । ସପ୍ତମ ରାତ୍ରିରେ ସ୍ତ୍ରୀସଙ୍ଗ କଲେ କନ୍ୟା ହୁଏ । ସେ ବନ୍ଧ୍ୟା ହୁଏ । ଅଷ୍ଟମ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ଐଶ୍ୱର୍ଯ୍ୟଶାଳୀ ହୁଏ । ନବମ ରାତ୍ରିରେ ସ୍ତ୍ରୀସଙ୍ଗ କଲେ କନ୍ୟା ହୁଏ, ସେ ସୌଭାଗ୍ୟବତୀ ହୁଏ । ଦଶମ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ଅତି ଉତ୍କୃଷ୍ଟ ହୁଏ । ଏକାଦଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ଧର୍ମହାନୀ ହୁଏ । ଦ୍ୱାଦଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ପୁରୁଷ ଶ୍ରେଷ୍ଠ ହୁଏ । ତ୍ରୟୋଦଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ କନ୍ୟା ହୁଏ । ସେ ପାପଚାରିଣୀ ଓ ବର୍ଣ୍ଣଶଂକରକାରିଣୀ ହୁଏ । ଚତୁର୍ଦ୍ଦଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ । ସେ ଧର୍ମଜ୍ଞ, କୃତଜ୍ଞ, ଆତ୍ମବିତ୍ ଓ ଦୃଢ଼ବ୍ରତ ହୁଏ । ପଞ୍ଚଦଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ କନ୍ୟା ହୁଏ, ସେ ପତିବ୍ରତା ହୁଏ ଏବଂ ଷୋଡ଼ଶ ରାତ୍ରିରେ ସ୍ତ୍ରୀସଙ୍ଗ କଲେ ପୁତ୍ର ହୁଏ, ସେ ପ୍ରାଣିମାନଙ୍କର ଆଶ୍ରୟ ସ୍ୱରୂପ ହୁଏ ।

## ୯ – ଋତୁ ସମୟରେ ସ୍ତ୍ରୀସଙ୍ଗ ନ କରିବାର ଦୋଷ

ଋତୌ ସ୍ନାତାଂ ତୁ ଯୋ ଭାର୍ଯ୍ୟାଂ ସନ୍ନିଧୌ ନୋପଗଚ୍ଛତି ।
ଘୋରାୟାଂ ଭ୍ରୂଣହତ୍ୟାୟାଂ ଯୁଜ୍ୟତେ ନାତ୍ର ସଂଶୟଃ । (ପରାଶରଃ)

ବାଖ୍ୟା – ଯେଉଁ ପୁରୁଷ ଋତୁସ୍ନାତା ଭାର୍ଯ୍ୟା ନିକଟରେ ଥାଇ ସଙ୍ଗମ ନ କରେ ସେ ଭୟଙ୍କର ଭ୍ରୂଣହତ୍ୟା ପାପରେ ମଗ୍ନ ହୁଏ, ଏଥିରେ ସଂଶୟ ନାହିଁ ।

## ଭ୍ରୂଣହତ୍ୟାର ନିବାରଣ ବାକ୍ୟ

ବ୍ୟାଧିତୋବନ୍ଧନସ୍ଥୋବା ପ୍ରବାସେଷ୍ୱଥ ପର୍ବସୁ ।
ଋତୁକାଳେଽପି ନାରୀଣାଂ ଭ୍ରୂଣହତ୍ୟା ପ୍ରମୁଚ୍ୟତେ । (ମଦନରତ୍ନେ)

ବ୍ୟାଖ୍ୟା – ବ୍ୟାଧିଯୁକ୍ତ ଓ ବନ୍ଦି ହୋଇଥିବା ଅବସ୍ଥାରେ କିମ୍ବା ପ୍ରବାସରେ ଥିବା ସମୟରେ, ଆଉ ପର୍ବଦିନମାନଙ୍କରେ ସ୍ତ୍ରୀର ଋତୁ ରକ୍ଷା ନ କଲେ ଭ୍ରୂଣହତ୍ୟା ଦୋଷ ହୁଏ ନାହିଁ ।

**୧୧ – ଗର୍ଭର ପ୍ରଥମ ମାସଠାରୁ ଦଶମ ମାସ ପର୍ଯ୍ୟନ୍ତ ଅବସ୍ଥା ବର୍ଣ୍ଣନ ***

**କଲଲଂ ଚ ଘନଂ ଶାଖାସ୍ଥିତ୍ୱଗ୍ରୋମୋଦ୍ ଗମଃ ସ୍ମୃତିଃ ।**
**ଭୂକ୍ତିରୁଦ୍ଵେଗଃ ସଂସୃତିର୍ମାସେଷ୍ୱାଧାନତଃ କ୍ରମାତଃ । (ଜ୍ୟୋତିଷସାରେ)**

ବାଖ୍ୟା – ଗର୍ଭର ପ୍ରଥମ ମାସରେ ଶୁକ୍ର ଓ ଶୋଣିତ ମିଶ୍ରିତ ହୁଏ, ଏହାକୁ କଲ୍‌ଲାବସ୍ଥା (ଜରାୟୁ ଅବସ୍ଥା) କହନ୍ତି । ଏହି ଭ୍ରୂଣ ଦ୍ୱିତୀୟ ମାସରେ କ୍ରମେ କଠିନ ହୁଏ । ତୃତୀୟ ମାସରେ ହସ୍ତ ପଦାଦି ଅଙ୍ଗ ଅଙ୍କିତ ହୁଏ । ଚତୁର୍ଥ ମାସରେ ଅସ୍ଥି ସଞ୍ଚାର ହୁଏ । ପଞ୍ଚମ ମାସରେ ଚର୍ମର ଉତ୍ପତ୍ତି ହୁଏ । ଷଷ୍ଠ ମାସରେ ରୋମ ଜନ୍ମେ । ସପ୍ତମ ମାସରେ ଚେତନା ହୁଏ । ଅଷ୍ଟମ ମାସରେ ଭୋଜନ ଶକ୍ତି ଉତ୍ପନ୍ନ ହୁଏ । ନବମ ମାସରେ ଉଦ୍‌ବେଗ ଜନ୍ମେ । ଦଶମ ମାସରେ ପ୍ରସବ ହୁଏ ।

## ୧୨ – ଗର୍ଭସ୍ଥ ଶିଶୁର ମାସାଧିପତି କଥନ

**ମାସେଶ୍ୱରାଃ ସତିକୁଜେଜ୍ୟରବୀନ୍ଦୁ ସୌର –**
**ଚନ୍ଦ୍ରାମ୍ବଜାସ୍ତନୁପଚନ୍ଦ୍ର ଦିବାକରାଃ ସ୍ୟୁଃ । (ଜ୍ୟୋତିଷସାରେ)**

ବ୍ୟାଖ୍ୟା – ଭ୍ରୂଣର ପ୍ରଥମ ମାସର ଅଧିପତି ଶୁକ୍ର, ଦ୍ୱିତୀୟ ମାସର ଅଧିପତି ମଙ୍ଗଳ, ତୃତୀୟ ମାସର ଅଧିପତି ବୃହସ୍ପତି, ଚତୁର୍ଥ ମାସର ଅଧିପତି ରବି, ପଞ୍ଚମ ମାସର ଅଧିପତି ଚନ୍ଦ୍ର, ଷଷ୍ଠ ମାସର ଅଧିପତି ଶନି, ସପ୍ତମ ମାସର ଅଧିପତି ବୁଧ, ଅଷ୍ଟମ ମାସର ଅଧିପତି ଲଗ୍ନାଧିପ, ନବମ ମାସର ଅଧିପତି ଚନ୍ଦ୍ର ଓ ଦଶମ ମାସର ଅଧିପତି ସୂର୍ଯ୍ୟ ଅଟନ୍ତି ।

*** ୧୧ – ଡାକ୍ତରୀ ଶିକ୍ଷାମତେ ଗର୍ଭସ୍ଥ ଶିଶୁର ନିର୍ମାଣ ବର୍ଣ୍ଣନା –**

ପ୍ରଥମ ମାସରେ – ଗର୍ଭସ୍ଥ ଶିଶୁ (ଭ୍ରୂଣର) ଆକୃତି ପ୍ରାୟ ଏକଇଞ୍ଚର ଅଷ୍ଟମ ଭାଗ ହୁଏ, ସେ ସମୟରେ ଭ୍ରୂଣ ଅବୟବହୀନ ଓ ଜେଲିର (ବସାଦହି) ପ୍ରାୟ ଥାଏ । ଦ୍ୱିତୀୟ ମାସରେ – ସେହି ଭ୍ରୂଣର ଦୀର୍ଘତା ପ୍ରାୟ ଏକଇଞ୍ଚର ଅଧେ ବା ତିନିପା ବୃଦ୍ଧି ପାଏ, ତନ୍ମଧ୍ୟରେ ମସ୍ତକ ଏବଂ ଉର୍ଦ୍ଧ୍ୱ ଓ ଅଧଃ ଶାଖାମାନଙ୍କର ସୂକ୍ଷ୍ମଛାଞ୍ଚ ଦେଖାଯାଏ, ନୟନଦ୍ୱୟ କଳାବିନ୍ଦୁ ପରି ଦୃଶ୍ୟ ହୁଏ ଏବଂ ଯକୃତ୍ ଅତିବଡ଼ ଦେଖାଯାଏ, ହୃତ୍‌ପିଣ୍ଡ, ଫୁସ୍‌ଫୁସ୍ ଓ ଜନନେନ୍ଦ୍ରିୟର ଗଠନ ଆରମ୍ଭ ହୁଏ । କଣ୍ଠର ଉଭୟ ପାର୍ଶ୍ୱ ହାଡ଼ ଓ ଗାଲର ହାଡ଼ ସୂକ୍ଷ୍ମ ଭାବରେ ଦୃଶ୍ୟ ହୁଏ ।



## ୧୩ – ଜ୍ୟୋତିଷମତେ ଗର୍ଭାଧାନକର୍ମର ଶୁଭଦିନ ନିର୍ଣ୍ଣୟ

ଶୁଭର୍କ୍ଷତାରାଥିଲଗ୍ନଯୋଗେ ଜୀବାର୍କ ଭୌମେ ନ ବୁଧସ୍ୟ ବାରେ ।
କୁର୍ଯ୍ୟାନ୍ନି ଷେକଂ ଭରଣୀଶପୂର୍ବାବିଶାଖାଶାଖାବହ୍ନୀନ୍ଦ୍ରମଘାହିତେଽନ୍ୟେ ।
(ପଣ୍ଡିତସର୍ବସ୍ୱେ)

ବ୍ୟାଖ୍ୟା – ଶୁଭନକ୍ଷତ୍ର, ଶୁଭବାର, ଶୁଭତିଥି, ଶୁଭଲଗ୍ନ ଓ ଶୁଭଯୋଗରେ ଏବଂ ଗୁରୁ, ରବି, ମଙ୍ଗଳବାରରେ ଗର୍ଭାଧାନକର୍ମ ପ୍ରଶସ୍ତ, ବରଂ ଅନ୍ୟାନ୍ୟ ବାରରେ କରିପାର; କିନ୍ତୁ ବୁଧବାରରେ କଦାପି କରିବ ନାହିଁ । ଦ୍ୱିଜା, ଆର୍ଦ୍ରା, ପୂର୍ବାଫାଲଗୁନୀ, ପୂର୍ବାଷାଢ଼ା, ପୂର୍ବାଭାଦ୍ରପଦ, ବିଶାଖା, କୃତ୍ତିକା, ଜ୍ୟେଷ୍ଠା, ମଘା ଓ ଅଶ୍ଳେଷା ଏହି ସବୁ ନକ୍ଷତ୍ରକୁ ଛାଡ଼ି ଅନ୍ୟ ନକ୍ଷତ୍ରରେ ଗର୍ଭାଧାନ କର୍ମ କରିବ ।

---

ତୃତୀୟ ମାସରେ ଦୈର୍ଘ୍ୟ ସାଢ଼େ ଦୁଇ କିମ୍ବା ସାଢ଼େ ନିତି ଇଞ୍ଚ ବଢ଼େ, ଓଜନ ପ୍ରାୟ ଏକ ଆଉନ୍‌ସ ଅର୍ଥାତ୍ ଅଢ଼େଇ ଭରି ହୁଏ । ଉଦରର ଗହ୍ୱର ଭିତରେ ଥିବା ଯନ୍ତ୍ରମାନ ଦୃଶ୍ୟ ହୁଅନ୍ତି ଓ ଅଙ୍ଗୁଳି ସମୂହର ଆରମ୍ଭ ହୁଏ ଏବଂ ନାଭି-ରଜ୍ଜୁ ଗୁଡ଼ାଇ ହେବାର ଆରମ୍ଭ ହୁଏ ଏବଂ ଲିଙ୍ଗ ଅଳ୍ପ ଅଳ୍ପ ପ୍ରକାଶ ପାଏ । ଚତୁର୍ଥ ମାସରେ – ଦୈର୍ଘ୍ୟ ପାଞ୍ଚ କିମ୍ବା ଛ' ଇଞ୍ଚ ପର୍ଯ୍ୟନ୍ତ ବଢ଼େ, ଓଜନ ପାଞ୍ଚ ବା ଛ' ଆଉନ୍‌ସ ହୁଏ, ମସ୍ତିଷ୍କର ଆକାର କିଞ୍ଚିତ୍ ଦୃଶ୍ୟ ହୁଏ ଏବଂ ଲିଙ୍ଗ ନିର୍ଣ୍ଣୟ କରାଯାଇପାରେ । ଲଲାଟ ଓ ପଶ୍ଚାତ୍‌କପାଳର ଅସ୍ଥିଗଠନ ଆରମ୍ଭ ହୁଏ । ପଞ୍ଚମ ମାସରେ - ଦୈର୍ଘ୍ୟ ନଅ କିମ୍ବା ଦଶଇଞ୍ଚ ହୁଏ, ଓଜନ ଆଠ ବା ଦଶ ଆଉନ୍‌ସ ହୁଏ, ନଖ ଓ ମୁଣ୍ଡର ବାଳ ଉଠିବାକୁ ଆରମ୍ଭ କରେ, ଯକୃତ୍‌ରୁ ପିତ୍ତ ନିର୍ଗତ ହୁଏ, ଅନ୍ନନାଡ଼ୀରେ ମଳ ଦେଖାଯାଏ । ଷଷ୍ଠ ମାସରେ - ଦୈର୍ଘ୍ୟ ଏଗାର ବା ତେର ଇଞ୍ଚ ପର୍ଯ୍ୟନ୍ତ ବୃଦ୍ଧି ପାଏ, ଓଜନ ଏକ ପାଉଣ୍ଡ (ବାଲେଶ୍ୱରୀ ଅଧସେର) ହୁଏ, ଆଖିପତା ଫିଟେ ଓ ପଞ୍ଜରା ହାଡ଼ ଗଠିତ ହୁଏ । ସପ୍ତମ ମାସରେ-ଦୈର୍ଘ୍ୟ ଚଉଦ ବା ପନ୍ଦର ଇଞ୍ଚ, ଓଜନ ତିନି ବା ଚାରି ପାଉଣ୍ଡ ଓ ମସ୍ତକ କୃଷ୍ଣବର୍ଣ୍ଣ କେଶରେ ଆବୃତ ହୁଏ । ଚର୍ମର ନିମ୍ନଭାଗରେ ବସା ଦେଖାଯାଏ, ପୁରୁଷ ସନ୍ତାନର ଅଣ୍ଡକୋଷର ମଞ୍ଜି ଅଣ୍ଡକୋଷକୁ ଖସିଆସେ, ଭ୍ରୂଣ ସମ୍ପୂର୍ଣ୍ଣ ହୋଇ ଏହିମାସଠାରୁ ସ୍ୱାଧୀନଭାବରେ ଜୀବନ ଧାରଣ କରେ । ଅଷ୍ଟମ ମାସରେ-ଦୈର୍ଘ୍ୟ ୧୫ ବା ୧୮ ଇଞ୍ଚ ପର୍ଯ୍ୟନ୍ତ ବୃଦ୍ଧି ପାଏ, ଓଜନ ୭ କିମ୍ବା ୮ ପାଉଣ୍ଡ ହୁଏ, କୌଣସି କୌଣସି ଭ୍ରୂଣ ଏହା ଅପେକ୍ଷା ଭାରି ମଧ୍ୟ ଦେଖାଯାଏ । ଉପରୋକ୍ତ ଦୀର୍ଘ ଓ ଓଜନ ପରିମାଣ ୟୁରୋପୀୟ ଭ୍ରୂଣର ଦିଆଯାଇଅଛି; କିନ୍ତୁ ଭାରତବର୍ଷ ଭ୍ରୂଣର ଦୀର୍ଘତା ପ୍ରାୟ ଦୁଇଇଞ୍ଚ ଛୋଟ, ଓଜନ ୬ ଆଉନ୍‌ସ କମ୍ ଦେଖାଯାଏ । ଦଶମ ମାସରେ-ପ୍ରସବ ହୁଏ ।

ପାପାସଂଯୁତମଧ୍ୟଗେଷୁ ଦିନକୃଲ୍ଲଗ୍ନକ୍ଷପାସ୍ୱାମିଷୁ,
ତଦ୍ଦ୍ୟୁନେଷ୍ୱଶୁଭୋଜ୍‌ଝିତେଷୁ ବିକୁଜେ ଛିଦ୍ରେ ବିପାପେ ସୁଖେ ।
ସଦ୍‌ଯୁକ୍ତେଷୁ ତ୍ରିକୋଣକଣ୍ଟକ ବିଧୁଷ୍ୱାୟତ୍ରିଷଷ୍ଠାନ୍ୱିତେ,
ପାପେ ଯୁଗ୍ମନିଶାସ୍ୱଗଣ୍ଡସମୟେ ପୁଂଶୁଦ୍ଧିତଃ ସଙ୍ଗମଃ ।

(ଶ୍ରୀନିବାସଦୀପିକାୟାଂ)

ବ୍ୟାଖ୍ୟା – ରବି, ଲଗ୍ନ ଓ ଚନ୍ଦ୍ର ଏମାନେ ପାପ ଗ୍ରହଯୁକ୍ତ କିମ୍ବା ପାପମଧ୍ୟଗତ ହୋଇ ନ ଥିବେ ଏବଂ ଏମାନଙ୍କର ସପ୍ତମ ସ୍ଥାନରେ ଅଶୁଭଗ୍ରହ ନ ଥିବେ ଓ ଅଷ୍ଟମରେ ମଙ୍ଗଳ ଏବଂ ଚତୁର୍ଥସ୍ଥାନେ ପାପଗ୍ରହ ନ ଥିବେ, ଆଉ ନବମ, ପଞ୍ଚମ, ଲଗ୍ନ, ଚତୁର୍ଥ, ସପ୍ତମ ଓ ଦଶମ ସ୍ଥାନରେ ଶୁଭଗ୍ରହ ଥିବେ; କିନ୍ତୁ ଏକାଦଶ, ତୃତୀୟ ଓ ଷଷ୍ଠରେ ପାପଗ୍ରହ ଥିବେ, ନକ୍ଷତ୍ରର ଗଣ୍ଡ ସମୟ ତ୍ୟାଗ କରି ଯୁଗ୍ମରାତ୍ରିରେ ପୁରୁଷର ତାର ଚନ୍ଦ୍ରାଦି ଶୁଦ୍ଧିରେ ଗର୍ଭାଧାନ କରିବ ।

## ୧୪ – ଗଣ୍ଡ ଲକ୍ଷଣ

ଅଶ୍ୱିନୀମଘାମୂଳାନାଂ ତିସ୍ରୋଗଣ୍ଡାଦ୍ୟନାଡ଼ିକାଃ ।
ଅନ୍ତେ ପୌଷ୍ଣୋରଗେନ୍ଦ୍ରାଣାଂ ପଞ୍ଚୈବ ଯବନାଜଗୁଃ ।

(ଶ୍ରୀନିବାସଦୀପିକାୟାଂ)

ବ୍ୟାଖ୍ୟା – ଅଶ୍ୱିନୀ, ମଘା ଓ ମୂଳା ଏମାନଙ୍କର ଆଦ୍ୟ ତିନଦଣ୍ଡ ଗଣ୍ଡ, ରେବତୀ, ଅଶ୍ଳେଷା ଓ ଜ୍ୟେଷ୍ଠା ଏମାନଙ୍କର ଶେଷ ପାଞ୍ଚଦଶ ଗଣ୍ଡ, ଏହା ଯବନାଚାର୍ଯ୍ୟ କହିଅଛନ୍ତି ।

## ୧୫ – କର୍ମଭେଦରେ କୁଶ ବ୍ୟବହାର ନିୟମ

କୀଦୃଶା ଯଜ୍ଞିୟାଦର୍ଭାଃ କୀଦୃଶାଃ ପାକଯଜ୍ଞିୟାଃ ।
କୀଦୃଶାଃ ପିତୃଦୈବତ୍ୟାଃ କୀଦୃଶା ବୈଶ୍ୱଦୈବିକାଃ ।

(ଯଜ୍ଞପାର୍ଶ୍ୱେ)

ବ୍ୟାଖ୍ୟା - ଯଜ୍ଞକର୍ମ ଓ * ପାକଯଜ୍ଞକର୍ମ, ପିତୃକର୍ମ ଏବଂ ଦେବକର୍ମରେ କି ପ୍ରକାର କୁଶ ବ୍ୟବହାର ହୁଏ ତାହାର ନିୟମ ଯଥା –

ହରିତାଯଜ୍ଞିୟାଦର୍ଭାଃ ପୀତକାଃ ପାକଯଜ୍ଞିୟାଃ
ସମୂଳାଃ ପିତୃଦୈବତ୍ୟାଃ କଲ୍ମାଷାଃ ବୈଶ୍ୱଦୈବିକାଃ ।

(ଯଜ୍ଞପାର୍ଶ୍ୱେ)

---

* ଯେଉଁ ହୋମରେ ଚରୁ ପ୍ରଭୃତି ପାକ ହୁଏ, ତାହାକୁ ପାକଯଜ୍ଞ କହନ୍ତି ଅର୍ଥାତ୍ ବୃଷୋତ୍ସର୍ଗାଦି ।



ବ୍ୟାଖ୍ୟା – ଯଜ୍ଞକର୍ମରେ ହରିଦ୍‌ବର୍ଣ୍ଣ (ସାଗୁଆରଙ୍ଗ) କୁଶ, ପାକଯଜ୍ଞକର୍ମରେ ପୀତବର୍ଣ୍ଣ (ଅଳ୍ପ ହଳଦିଆ) କୁଶ, ପିତୃକର୍ମରେ ମୂଳ ସହିତ କୁଶ ଓ ବିଶ୍ୱେଦେବାଦି ଦେବକର୍ମରେ ମିଶ୍ରିତବର୍ଣ୍ଣ (ଶାଗୁଆ ଓ ହଳଦିଆ) ମିଶା କୁଶ ପ୍ରଶସ୍ତ ଅଟେ ।

ପ୍ରାଦେଶାଦଧିକା ଦର୍ଭାସ୍ତ୍ରି ପତ୍ରାଦିଯୁତାଶ୍ଚ ଯେ ।
କୁଶାସ୍ତେ ଯାଜ୍ଞିକୈଃ ପ୍ରୋକ୍ତାଃ ସ୍ନାନାଦିଷୁ ପବିତ୍ରକାଃ ।
(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

ବ୍ୟାଖ୍ୟା - ଯାଜ୍ଞିକମାନେ * ପ୍ରାଦେଶରୁ ଅଧିକ ଓ ତ୍ରିପତ୍ରାଦିଯୁକ୍ତ କୁଶକୁ ସ୍ନାନାଦିକର୍ମରେ ପବିତ୍ର ବୋଲି କହିଅଛନ୍ତି ।

## ୧୬ - କୁଶର ଅବସ୍ଥାଭେଦରେ ନାମାନ୍ତର

ଅପ୍ରସୂତାଃ ସ୍ମୃତାଦର୍ଭାଃ ପ୍ରସୂତାସ୍ତ କୁଶାଃ ସ୍ମୃ ତାଃ ।
ଅମୂଳାଃ କୁତପାଜ୍ଞେୟାଇତ୍ୟେଷା ନୈଗମୀଶ୍ରୁତିଃ ॥
(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

ବ୍ୟାଖ୍ୟା - କୁଶର ଅପ୍ରସୁତ (କଢ଼) ଅବସ୍ଥାକୁ ଦର୍ଭ କହନ୍ତି । ପ୍ରସୂତ (କଢ଼ ଫିଟିଯିବା) ଅବସ୍ଥାକୁ କୁଶ କହନ୍ତି, ମୂଳରହିତ ହେଲେ ସେହି କୁଶକୁ କୁତପ କହନ୍ତି ।

## ୧୭ - କୁଶ ଅଭାବରେ ଦଶପ୍ରକାର ଦର୍ଭବର୍ଣ୍ଣନ

କୁଶକାଶଶରାଦୁର୍ବାଯବଗୋଧୂମବଲ୍ୱଜାଃ ।
ସୁବର୍ଣ୍ଣଂ ରଜତଂ ତାମ୍ରଂ ଦଶଦର୍ଭାଃ ପ୍ରକୀର୍ତ୍ତିତାଃ ।
ଦର୍ଭାଭାବେ ତୁ କାଶାଃ ସ୍ୟୁଃ କାଶାଃ କୁଶସମାଃ ସ୍ମୃତାଃ ।
କାଶାଭାବେ ଗ୍ରହୀତବ୍ୟାଅନ୍ୟେ ଦର୍ଭାଯଥୋଚିତାଃ ।
(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

---

୧୫-ପ୍ରାଦେଶ ପରିମାଣ-

*ଅଙ୍ଗୁଷ୍ଠସ୍ୟ ପ୍ରଦେଶିନ୍ୟାବ୍ୟାସଃ ପ୍ରାଦେଶ ଉଚ୍ୟତେ । (ଦେବୀପୁରାଣେ)

ବ୍ୟାଖ୍ୟା- ବୁଢ଼ାଅଙ୍ଗୁଳିର ଅଗ୍ରଭାଗଠାରୁ ତର୍ଜନୀ ଅଙ୍ଗୁଳିର ଅଗ୍ର ଭାଗ ପର୍ଯ୍ୟନ୍ତ ଯେ ବିସ୍ତାର ତାହାକୁ ପ୍ରାଦେଶ କହନ୍ତି ।

ବ୍ୟାଖ୍ୟା - କୁଶ, କାଶ (ତୃଣବିଶେଷ), ଶର (କାଣ୍ଡଶରଗଛ), ଦୁର୍ବା (ଦୁବଗଛ), ଯବ (ଯଅଗଛ), ଗୋଧୂମ (ଗହମ ଗଛ), ବଲ୍ଲଜ (ଖଡ଼ ଗଛ, ଯେ କି କୁଶ ପରି ଦିଶେ; କିନ୍ତୁ କୁଶଠାରୁ ବଡ଼), ସୁବର୍ଣ୍ଣ, ରଜତ ଓ ତାମ୍ର - ଏହି ଦଶଗୋଟି ପଦାର୍ଥକୁ ମଧ୍ୟ ଦର୍ଭ କହନ୍ତି । ଦର୍ଭ ଅଭାବରେ କାଶ ବ୍ୟବହାର କରିବ, କାଶ ବ୍ୟବହାରର ଫଳ କୁଶ ତୁଲ୍ୟ; କିନ୍ତୁ କାଶର ଅଭାବ ହେଲେ ଅନ୍ୟାନ୍ୟ ଦର୍ଭ ଯଥାକ୍ରମେ ବ୍ୟବହାର କରିବ । କର୍ମ ଲୋପ କରିବା ନାହିଁ ।

## ୧୮ - ବର୍ଜ୍ଜିତ କୁଶ ଲକ୍ଷଣ

ପଞ୍ଚଦର୍ଭାଶ୍ଚିତୌ ଦର୍ଭା ଯେ ଦର୍ଭା ଯଜ୍ଞକର୍ମଣି ।
ତର୍ପଣାସନପିଣ୍ଡେଷୁ ଷଡ଼୍ ଦର୍ଭାନ୍ ପରିବର୍ଜୟେତ୍ ।
ପିଣ୍ଡାର୍ଥଂ ଯେ ସ୍ମୃତା ଦର୍ଭା ଯୈଃ କୃତଂ ପିତୃତର୍ପଣଂ ।
ମୂତ୍ରୋଚ୍ଛିଷ୍ଟପ୍ରଲିପ୍ତେ ଚ ତ୍ୟାଗସ୍ତେଷାଂ ବିଧୀୟତେ ।

(ହାରୀତଃ)

ବ୍ୟାଖ୍ୟା - ବାଟରେ ଉଠିଥିବା ବା ପଡ଼ିଥିବା କୁଶ, ଶ୍ମଶାନରେ ପଡ଼ିଥିବା କିମ୍ବା ଜାତ ହୋଇଥିବା କୁଶ, ଯଜ୍ଞକର୍ମରେ ବ୍ୟବହୃତ ହୋଇଥିବା କୁଶ, ତର୍ପଣ, ଆସନ ଓ ପିଣ୍ଡରେ ଦିଆଯାଇଥିବା କୁଶ, ଆଉ ମଧ୍ୟ ପିଣ୍ଡତଳେ ବିଛା ହୋଇଥିବା କୁଶ, ପିତୃତର୍ପଣରେ ବ୍ୟବହୃତ ହୋଇଥିବା କୁଶ, ମୂତ୍ର ଓ ଉଚ୍ଛିଷ୍ଟ ଆଦି ସ୍ଥାନରେ ପଡ଼ିଥିବା କୁଶ, ଏ ସମସ୍ତଙ୍କୁ ବର୍ଜନ କରିବ ।

## ୧୯ - ପବିତ୍ର ଲକ୍ଷ୍ମଣ

ଅନନ୍ତର୍ଗର୍ଭିଣଂ ସାଗ୍ରଂ କୌଶଂଦ୍ୱିଦଳମେବଚ ।
ପ୍ରାଦେଶମାତ୍ରଂ ବିଜ୍ଞେୟଂ ପବିତ୍ରଂ ଯତ୍ର କୁତ୍ରଚିତ୍ ।

(କାତ୍ୟାୟନଃ)

ବ୍ୟାଖ୍ୟା - ଗର୍ଭଶୂନ୍ୟ ଅଗ୍ରବିଶିଷ୍ଟ ପ୍ରାଦେଶ ପରିମିତ ଯୋଡ଼ିଏ କୁଶକୁ ପବିତ୍ର କୁହାଯାଏ ।

## ୨୦ - ପବିତ୍ରା ଅଥବା କୁଶବଟୁର ପ୍ରମାଣ

ଦ୍ୟଙ୍ଗୁଳଂ ମୂଳବଳୟଂ ଗ୍ରନ୍ଥିରେକାଙ୍ଗୁଳି ର୍ଭବେତ୍ ।
ଚତୁରଙ୍ଗୁଳମଗ୍ରଂ ସ୍ୟାତ୍ପବିତ୍ରସ୍ୟ ପ୍ରମାଣକଂ ।
ପୌଷ୍ଟିକେ ପଞ୍ଚଦର୍ଭାଷ୍ଟ ଚତୁର୍ଦର୍ଭାଷ୍ଟ ଶାନ୍ତିକେ ।
ପୈତୃକେ ତୁ ତ୍ରିଦର୍ଭାଷ୍ଟ ଦ୍ୱୌ ଦର୍ଭୌ ନିତ୍ୟକର୍ମଣି ।

(ଆହ୍ନିକସୂତ୍ରାବଲ୍ୟାଂ)



ବ୍ୟାଖ୍ୟା - କୁଶବଟୁର ମୂଳବଳୟ (ପିନ୍ଧିବା ଫାଶ) ଦୁଇ ଆଙ୍ଗୁଳ ଓ ଗ୍ରନ୍ଥି ଏକ ଆଙ୍ଗୁଳ ଏବଂ ସେହି ଗ୍ରନ୍ଥି ମଧ୍ୟ ଦେଇ ତଳକୁ ବାହାରିଥିବା କୁଶର ଅଗ୍ର ଓ ମୂଳଭାଗ ଚାରିଆଙ୍ଗୁଳ ହେଲେ ପବିତ୍ରା ବା କୁଶବଟୁର ପ୍ରମାଣ ହୁଏ, ପୁଷ୍ଟିକର୍ମରେ ପାଞ୍ଚଗୋଟି ଦର୍ଭରେ, ଶାନ୍ତିକର୍ମରେ ଚାରିଗୋଟି ଦର୍ଭରେ, ପିତୃକର୍ମରେ ତିନିଗୋଟି ଦର୍ଭରେ ଓ ନିତ୍ୟକର୍ମରେ ଦୁଇଗୋଟି ଦର୍ଭରେ ପବିତ୍ରା ବା କୁଶବଟୁ କରିବ ।

## ୨୧ - ବର୍ତ୍ତୁଳଗ୍ରନ୍ଥି ଓ ବ୍ରହ୍ମଗ୍ରନ୍ଥିର ନିୟମ

**ଦ୍ୱିଗୁଣୀକୃତାନାଂ ଦର୍ଭଶିଖାନାଂ ପାଶଃ ପ୍ରଦକ୍ଷିଣମର୍ଦ୍ଧବେଷ୍ଟନଂ ବିଧାୟ ପଶ୍ଚାଭାଗେନ ଯଦା ପ୍ରବେଶ୍ୟତେ ତଦା ବର୍ତ୍ତୁଲୋଗ୍ରନ୍ଥିଃ । ଯଦା ପ୍ରାଦକ୍ଷିଣ୍ୟେନ ସର୍ବବେଷ୍ଟନଂ ବିଧାୟ ପୁରୋଭାଗେନ ପ୍ରବେଶ୍ୟତେ ତଦା ବ୍ରହ୍ମଗ୍ରନ୍ଥିରିତି ।**

**(ଆହ୍ନିକସୂତ୍ରା ବଲ୍ୟାଂ)**

ବ୍ୟାଖ୍ୟା - ଦ୍ୱିଗୁଣୀକୃତ କୁଶର ଅଗ୍ରଭାଗକୁ ବଳି ନୁଆଁଇ ଦକ୍ଷିଣାବର୍ତ୍ତରେ ଅର୍ଦ୍ଧବେଷ୍ଟନ ଗ୍ରନ୍ଥି କରି, ସେହି କୁଶର ଅଗ୍ରଭାଗକୁ ଗ୍ରନ୍ଥି ଭିତରେ ଦେଇ ତଳଆଡ଼କୁ ପ୍ରବେଶ କରାଇଲେ ତାହାକୁ ବର୍ତ୍ତୁଳ ଗ୍ରନ୍ଥି କହନ୍ତି; ଆଉ ମଧ୍ୟ ସେହିପରି ଦ୍ୱିଗୁଣୀକୃତ କୁଶର ଅଗ୍ରଭାଗକୁ ବଳି ଓ ନୁଆଁଇ ଦକ୍ଷିଣାବର୍ତ୍ତରେ ସର୍ବବେଷ୍ଟନ ଗ୍ରନ୍ଥି କରି ସେହି କୁଶର ଅଗ୍ରଭାଗକୁ ତଳୁ ଗ୍ରନ୍ଥି ଭିତର ଦେଇ ଉପରକୁ ବାହାର କଲେ ତାହାକୁ ବ୍ରହ୍ମଗ୍ରନ୍ଥି କହନ୍ତି ।

## ୨୨ - କୁଶବଟୁ ଧାରଣ ନିୟମ

**ଅନାମିକାମୂଳଦେଶେ ପବିତ୍ରଂ ଧାରୟେଦ୍ଦ୍ୱିଜଃ । (ଅତ୍ରିଃ)**

ବ୍ୟାଖ୍ୟା - ଅନାମିକା ମୂଳଦେଶରେ (ଅନାମିକାଙ୍ଗୁଳିର ମୂଳପର୍ବରେ) ଦ୍ୱିଜାତିମାନେ କୁଶବଟୁ ଧାରଣ କରିବେ ।

## ୨୩ - ବଟୁମନ୍ତ୍ରର ଋଷିଛନ୍ଦ

**ଓଁ ବଟୁମନ୍ତ୍ରସ୍ୟ, ବ୍ରହ୍ମାଋଷିଃ, ଗାୟତ୍ରୀଛନ୍ଦଃ,**
**ବଟୁର୍ଦ୍ଦେବତା, ବଟୁଗ୍ରହଣେ ବିନିଯୋଗଃ ।**

ବ୍ୟାଖ୍ୟା - ବଟୁମନ୍ତ୍ରସ୍ୟ, ଏହା କହି ଦୁଇହସ୍ତକୁ ଯୋଡ଼ିବ । ବ୍ରହ୍ମାଋଷି ଏହା କହି ଦକ୍ଷିଣହସ୍ତର ବୁଢ଼ାଅଙ୍ଗୁଳିକି ଛାଡ଼ି ଆଙ୍ଗୁଳିମାନଙ୍କୁ ଫଣାକୃତି କରି ମସ୍ତକ ସ୍ପର୍ଶ କରିବ । ଗାୟତ୍ରୀଛନ୍ଦଃ, ଏହା କହି ଦକ୍ଷିଣହସ୍ତର ତର୍ଜ୍ଜନୀ, ମଧ୍ୟମା

ଓ ଅନାମିକା ଏହି ତିନି ଅଙ୍ଗୁଳିକୁ ଏକତ୍ର କରି ମୁଖ ସ୍ପର୍ଶ କରିବ । ବଟୁଦେବତା, ଏହା କହି ଦକ୍ଷିଣ ହସ୍ତର ସମସ୍ତ ଅଙ୍ଗୁଳିଦ୍ୱାରା ହୃଦୟ ସ୍ପର୍ଶ କରିବ । ବଟୁ ଗ୍ରହଣେ ବିନିଯୋଗଃ, ଏହା କହି ଉଭୟହସ୍ତକୁ ଯୋଡ଼ି ନମସ୍କାର କରିବ ।

## *୨୪ - ବଟୁଧାରଣ ମନ୍ତ୍ର

ଓଁ ଶ୍ରୀ ହ୍ରାଂ କ୍ଲୀଂ ବଟୁକାୟ ନମଃ । ଇତି ମନ୍ତ୍ରଂ ପଠିତ୍ୱା

"ଅତସୀକୁସୁମଶ୍ୟାମଂ ପଦ୍ମାକ୍ଷଂ ପୀତବାସସଂ ।

କଦମ୍ବମାଳିନଂ କୃଷ୍ଣଂ ଧ୍ୟାୟତାଂ ନାସ୍ତି ଦୁର୍ଗତିଃ ।"

ଇତି ବିଷ୍ଣୁଂ ଧ୍ୟାତ୍ୱା ବଟୁଂଗୃହ୍ଣୀୟାତ୍ ।

ବ୍ୟାଖ୍ୟା – ଉପରୋକ୍ତ ବଟୁମନ୍ତ୍ର ପଢ଼ି ଓ ବିଷ୍ଣୁ ସ୍ମରଣ କରି ଅନାମିକା ମୂଳପର୍ବରେ ବଟୁ ଧାରଣ କରିବ ।

## ୨୫ - ବଟୁମନ୍ତ୍ର ନ ଜାଣି ବଟୁ ଧାରଣାରେ ଦୋଷ

ଅଜ୍ଞାତ୍ୱା ବଟୁମନ୍ତ୍ରଂ ଚ ବଟୁଂ ଯୋ ଧାରୟେଦ୍ଦ୍ୱିଜଃ ।

ତସ୍ୟ ଯାବନ୍ତି କର୍ମାଣି ନ ସିଧ୍ୟନ୍ତି କଦାଚନ ।

(ଭୁବନେଶ୍ୱରୀକଳ୍ପେ)

ବ୍ୟାଖ୍ୟା - ଯେଉଁ ଦ୍ୱିଜାତି ବଟୁମନ୍ତ୍ର ନ ପଢ଼ି ବଟୁଧାରଣ କରେ ତାହାର ନିତ୍ୟ ନୈମିତ୍ତିକାଦି ସମୟ କର୍ମ ନିଷ୍ଫଳ ହୁଏ ।

## ୨୬ - ପବିତ୍ର ଧାରଣ ବ୍ୟତିରେକେ କର୍ମ କରିବା ନିଷେଧ

ସ୍ନାନେ ହୋମେ ତଥା ଦାନେ ସ୍ୱାଧ୍ୟାୟେ ପିତୃତର୍ପଣେ ।

ସପବିତ୍ରୌ ସଦର୍ଭୌ ବା କରୌ କୁର୍ବୀତ ନାନ୍ୟଥା ।

(ଆହ୍ନିକସୂତ୍ରାବଲ୍ୟାଂ)

---

* ୨୪-ବଟୁ ମନ୍ତ୍ରର ମନ୍ତ୍ରୋଦ୍ଧାର-ରମାମାୟାକାମବୀଜଯୁତାୟବଟୁକାୟ ଚ । ନମୋଽନ୍ତେନ ତୁ ରାଜେନ୍ଦ୍ର ବଟୁମନ୍ତ୍ରଃ ପ୍ରକୀର୍ତ୍ତିତଃ ।

ବ୍ୟାଖ୍ୟା- ରମାବୀଜ (ଶ୍ରୀଂ), ମାୟାବୀଜ (ହ୍ରାଂ), କାମବୀଜ (କ୍ଲୀଂ) ତତ୍ପରେ (ବଟୁକାୟନମଃ) ଏହା ଯୋଗ କଲେ ବଟୁମନ୍ତ୍ର ହୁଏ ।



ବ୍ୟାଖ୍ୟା – ସ୍ନାନ, ହୋମ, ଦାନ, ବେଦପାଠ ଓ ପିତୃତର୍ପଣ ପ୍ରଭୃତି ଯାବତୀୟ କର୍ମରେ ଦୁଇହାତରେ ପବିତ୍ର (କୁଶବଟୁ) କିମ୍ବା ଦର୍ଭ (କୁଶ) ଧାରଣ କରିବ । କିନ୍ତୁ ପବିତ୍ର ଶୂନ୍ୟ ହସ୍ତରେ କର୍ମ କରିବ ନାହିଁ ।

## ୨୭ – ପବିତ୍ର ପ୍ରଶଂସା

ଯଥାବଜ୍ରଂ ସୁରେନ୍ଦ୍ରସ୍ୟ ଯଥା ଚକ୍ରଂ ହରେସ୍ତଥା ।
ତ୍ରିଶୂଳଂ ଚ ତ୍ରିନେତ୍ରସ୍ୟ ବ୍ରାହ୍ମଣସ୍ୟ ପବିତ୍ରକଂ ।

(ଆହ୍ନିକ କାରିକାୟାଂ)

ବ୍ୟାଖ୍ୟା – ଇନ୍ଦ୍ରଙ୍କର ଯେପରି ବଜ୍ରାସ୍ତ୍ର, ହରିଙ୍କର ଯେପରି ଚକ୍ରାସ୍ତ୍ର, ଶିବଙ୍କର ଯେପରି ତ୍ରିଶୂଳାସ୍ତ୍ର, ସେହିପରି ପବିତ୍ର ବ୍ରାହ୍ମଣର ଅସ୍ତ୍ର ସ୍ୱରୂପ ଅଟେ ।

## ୨୮ – ବ୍ରହ୍ମା ଓ ବିଷ୍ଟର ଲକ୍ଷଣ

ପଞ୍ଚାଶଭିର୍ଭବେଦ୍ ବ୍ରହ୍ମା ତଦର୍ଦ୍ଧେନ ତୁ ବିଷ୍ଟରଃ ।
ଊର୍ଦ୍ଧ୍ୱକେଶୋ ଭବେଦ୍‌ବ୍ରହ୍ମା ଲମ୍ବକେଶସ୍ତୁ ବିଷ୍ଟରଃ ।

(ଗୃହ୍ୟସୂତ୍ରପରିଶିଷ୍ଟେ)

ଦକ୍ଷିଣାବର୍ତ୍ତକୋବ୍ରହ୍ମା ବାମାବର୍ତ୍ତସ୍ତୁ ବିଷ୍ଟରଃ ।
ବିଷ୍ଟରଃ ପଞ୍ଚଦର୍ଭୈଃ ସ୍ୟାଦ୍‌ଗ୍ରନ୍ଥିରେକାଙ୍ଗୁଳିର୍ଭବେତ୍ ।

(ସଂସ୍କାରତନ୍ତ୍ରେ)

ସପ୍ତଭିର୍ନବଭିର୍ବାପି ସାର୍ଦ୍ଧଦ୍ୱିତୟବେଷ୍ଟିତଂ
ଓଁ କାରେଣୈବ ମନ୍ତ୍ରେଣ ଦ୍ୱିଜଃ କୁର୍ଯ୍ୟାତ୍ କୁଶଦ୍ୱିଜଂ ।

(ଶାନ୍ତିଦୀପିକାୟାଂ)

ବ୍ୟାଖ୍ୟା – ପଞ୍ଚାଶଗୋଟି କୁଶରେ ବ୍ରହ୍ମା ଓ ପଚିଶଗୋଟି କୁଶରେ ବିଷ୍ଟର ନିର୍ମାଣ କରିବ । କିନ୍ତୁ ବ୍ରହ୍ମା ଓ ବିଷ୍ଟର ଏ ଉଭୟଙ୍କର ଗ୍ରନ୍ଥି ଏକ ଆଂଗୁଳ ପ୍ରମାଣ ହେବ । ଉଭୟ ଗ୍ରନ୍ଥିର ଏତିକିମାତ୍ର ପ୍ରଭେଦ ଯେ ପଞ୍ଚାଶଗୋଟି କୁଶର ଅଗ୍ରକୁ ବଳି ଓ ତଳକୁ ନୁଆଇଁ ଅଧୋଭାଗରେ ଅଢ଼େଇଥର ଦକ୍ଷିଣାବର୍ତ୍ତରେ ବୁଲାଇ ଓ ସେହି ଗଣ୍ଠି ମଧ୍ୟ ଦେଇ ତଳଆଡୁ ଉପରକୁ ଅଗ୍ରଭାଗ ରଖିଲେ ବ୍ରହ୍ମାଙ୍କର ଗ୍ରନ୍ଥି ହୁଏ । ସେହିପରି ପଚିଶଗୋଟି କୁଶକୁ ବାମାବର୍ତ୍ତରେ ଅଢ଼େଇଥର ବୁଲାଇ ଗଣ୍ଠି ମଧ୍ୟ ଦେଇ କୁଶର ଅଗ୍ରଭାଗ ଉପରୁ ତଳକୁ ବାହାର କରି ଲମ୍ବମାନ ରଖିଲେ ବିଷ୍ଟରଗ୍ରନ୍ଥି ହୁଏ ଏବଂ ଉଭୟଙ୍କର ଗ୍ରନ୍ଥି ପକାଇବା ସମୟରେ ଓଁକାର ଉଚ୍ଚାରଣ କରିବ । କାହାରି କାହାରି ମତରେ ୫ ବା ୭ କିମ୍ବା ୯ ଗୋଟି କୁଶରେ ମଧ୍ୟ ବିଷ୍ଟର ହୁଏ ।

## ୨୯ - ଶ୍ରୁଚ ଲକ୍ଷଣ

ପ୍ରକଳ୍ପୟେଚ୍ଛୁଚଂ ଯାଗେ ବକ୍ଷ୍ୟମାଣେନ ବର୍ତ୍ମନା ।
ଶ୍ରୀପର୍ଣ୍ଣୀଶିଂଶପାକ୍ଷୀରୀଶାଖିଷ୍ୱେକତମଂ ଗୁରୁଃ । (ଶାରଦାୟାଂ)
ଶ୍ରୁଚଂ ବାୟୁପ୍ରମାଣେନ ହୋମାର୍ଥଂ ବିଧଧୀତ ବୈ ।
ବିଂଶତ୍ୟଂଶୈର୍ଭବେଦ୍ଦଣ୍ଡୋବେଦୀ ତୈରଷ୍ଟଭିର୍ଭବେତ୍
ଏକାଂଶେନ ମିତଃ କଣ୍ଠଃ ସପ୍ତାଂଶେନ ମିତଂ ମୁଖଂ ।
ବେଦୀତ୍ର୍ୟଂଶେନ ବିସ୍ତାରଃ କଣ୍ଠସ୍ୟ ପରିକୀର୍ତ୍ତିତଃ ।
ମୁଖଂ କଣ୍ଠପ୍ରମାଣଂ ସ୍ୟାନ୍ମୁଖେ ମାର୍ଗଂ ପ୍ରକଳ୍ପୟେତ୍ ।
କନିଷ୍ଠାଙ୍ଗୁଳିମାନେ ନ ସର୍ପିଷୋନିର୍ଗମାୟ ଚ ।
ବେଦୀମଧ୍ୟେ ବିଧାତବ୍ୟା ଭାଗେନୈକେନ କର୍ଣ୍ଣିକା ।
ବିଦଧୀତ ବହିସ୍ତ୍ୟସାଏକାଂଶେନାଭିତୋବଟଂ ।
ତସ୍ୟ ଖାତଂ ତ୍ରିଭିର୍ଭାଗୈର୍ବୃତ୍ତମର୍ଦ୍ଧଂଶତୋବହିଃ ।
ଅଂଶେନୈକେନ ପରିତୋଦଳାନି ପରିକଳ୍ପୟେତ୍ ।
ମେଖଳା ମୁଖବେଦ୍ୟୋଃ ସ୍ୟାତ୍ପରିତୋଽର୍ଦ୍ଧାଂଶମାନତଃ ।
ଦଣ୍ଡମୂଳାଗ୍ରୟୋଃ କୁମ୍ଭୌ ଗୁଣବେଦାଙ୍ଗୁଳୈଃ କ୍ରମାତ୍ ।
ଗଣ୍ଡୀଯୁଗ୍ମଂ ସମାଂଶଂ ସ୍ୟାଦ୍ଦଣ୍ଡସ୍ୟାନାହଈରିତଃ ।
ଷଡ୍‌ଭିରଂଶୈଃ ପୃଷ୍ଠଭାଗୋବେଦ୍ୟାଃ କୂର୍ମାକୃତିର୍ଭବେତ୍ ।
ହଂସସ୍ୟ ବା ହସ୍ତିନୋବା ପୋତ୍ରିଣୋବା ମୁଖଂ ଲିଖେତ୍ ।
ମୁଖସ୍ୟ ପୃଷ୍ଠଭାଗେ ସ୍ୟାତ୍ସଂପ୍ରୋକ୍ତଂ ଲକ୍ଷଣଂ ଶ୍ରୁଚଃ ।
(ତନ୍ତ୍ରସାରେଅଗସ୍ତ୍ୟଃ)

ବ୍ୟାଖ୍ୟା - ଆଚାର୍ଯ୍ୟ ଶ୍ରୀପର୍ଣ୍ଣୀ ବା ଶିଂଶପା କିମ୍ବା କ୍ଷୀରୀବୃକ୍ଷମଧ୍ୟରୁ ବହୁ ପରିମାଣ ଅର୍ଥାତ୍ ଛତିଶ ଆଙ୍ଗୁଳି ପରିମାଣରେ ଖଣ୍ଡିଏ କାଠ ଆଣି ଶ୍ରୁଚ ନିର୍ମାଣ କରିବ । ସେହି ଶ୍ରୁଚରେ ଦଣ୍ଡ, କୋଡ଼ିଏ ଆଙ୍ଗୁଳ, ବେଦୀ ଆଠ ଆଙ୍ଗୁଳ, କଣ୍ଠ ଏକ ଆଙ୍ଗୁଳ ଓ ମୁଖ ସାତ ଆଙ୍ଗୁଳ ହେବ ଏବଂ ବେଦୀର ତିନିଅଂଶର ଏକଅଂଶ କଣ୍ଠର ବିସ୍ତାର ରଖିବ ଓ ମୁଖର ଅଗ୍ରଭାଗ କଣ୍ଠର ସମାନ କରି ତହିଁରେ କାଣିଆଙ୍ଗୁଳି ମୋଟରେ ଘୃତ ନିର୍ଗମମାର୍ଗ ରଖିବ । ଶ୍ରୁଚରେ ବେଦୀ ମଧ୍ୟରେ ଏକାଙ୍ଗୁଳରେ କର୍ଣ୍ଣିକା ଅଙ୍କିତ କରି ତାହାର ଚାରିପାଖରେ ଅଙ୍ଗୁଳିଏ ପରିମାଣରେ ଗୋଟିଏ ବଟ

* ଗଣ୍ଡୀକମ୍ପଃ କଙ୍କଣଂ ଚ । ଗଣ୍ଡୀ କଙ୍କଣକମ୍ପୟୋରିତି ଭାଗରିଃ । (ତନ୍ତ୍ରସାରେ)



ଅର୍ଥାତ୍ ବୃତ୍ତ କରିବ । ସେହି ବୃତ୍ତର ତିନିଭାଗ ପରିମାଣରେ ଗୋଟିଏ ଗର୍ତ୍ତ କରିବ ଏବଂ ଗର୍ତ୍ତର ବହିର୍ଭାଗରେ ଅର୍ଦ୍ଧଆଙ୍ଗୁଳ ପରିମାଣ ଗୋଟିଏ ବୃତ୍ତ ଅଙ୍କିତ କରି ସେହି ବୃତ୍ତର ଚତୁଃପାର୍ଶ୍ୱରେ ଆଙ୍ଗୁଳିଏ ପରିମାଣରେ ଜଳ ପ୍ରସ୍ତୁତ କରିବ । ମୁଖ ଓ ବେଦୀର ଚାରିଆଡ଼େ ଅର୍ଦ୍ଧାଂଶ ପରିମାଣରେ ମେଖଳା (ବନ୍ଧସ୍ୱରୂପ) କରିବ । ଦଣ୍ଡର ମୂଳ ଓ ଅଗ୍ରଭାଗରେ ଯଥାକ୍ରମେ ତିନିଆଙ୍ଗୁଳ ଓ ଚାରିଆଙ୍ଗୁଳ ପରିମାଣରେ ଯୋଡ଼ିଏ କୁମ୍ଭ କରି ସେଥିରେ ସମାନାଂଶରେ ଯୋଡ଼ିଏ ଗଣ୍ଠୀ (କଙ୍କଣ) କରିବ । ଏହି ରୂପ ଦଣ୍ଡର ଦୀର୍ଘତା କଥିତ ହେଲା । ସ୍ରୁଚବେଦୀର ପୃଷ୍ଠଭାଗକୁ କୂର୍ମପୃଷ୍ଠ ସଦୃଶ ଛ' ଆଙ୍ଗୁଳ ବିସ୍ତାର କରିବ । ମୁଖର ପୃଷ୍ଠଦେଶରେ ହଂସ କିମ୍ବା ହସ୍ତୀ ଅଥବା ଶୂକରମୁଖ ଅଙ୍କିତ କରିବ । ଏହିପରି ସ୍ରୁଚର ସମ୍ପୂର୍ଣ୍ଣ ଲକ୍ଷଣ କଥିତ ହେଲା ।

## ୩୦ - ସ୍ରୁବ ଲକ୍ଷଣ

ସ୍ରୁଚଷ୍ଟ ତୁର୍ବିଂଶତିର୍ଭାଗୈରାରଚୟେଚ୍ଛ୍ରୁ ବଂ ।
ଦ୍ୱାବିଂଶତ୍ୟା ଦଣ୍ଡମାନମଂଶୈରେତସ୍ୟ କୀର୍ତ୍ତିତଂ ।
ଚତୁର୍ଭିରଂଶୈରାନାହଃ କର୍ଷାଜ୍ୟାଗ୍ରାହି ତଚ୍ଛିରଃ ।
ଅଂଶଦ୍ୱୟେନ ନିଖନେତ୍ପଙ୍କେ ମୃଗପଦାକୃତିଃ ।
ଦଣ୍ଡମୂଳାଗ୍ରୟୋର୍ଗଣ୍ଠୀ ଭବେତ୍କଙ୍କଣ ଭୂଷିତା ।
ସ୍ରୁବସ୍ୟ ବିଧିରାଖ୍ୟାତଃ ସର୍ବତନ୍ତ୍ରସମନ୍ୱିତଃ ।

ତୟୋରଭାବେବାଶିଷ୍ଟେ

ପଲାଶପତ୍ରେ ନିଚ୍ଛିଦ୍ରେ ଗୁଚିରୌ ଶୁକ୍ଶ୍ରୁ ବୌତତଃ
ବିଦ୍ୟଧ୍ୟାଦ୍ ବାଶ୍ୱତ୍ଥପତ୍ରେ ସଂକ୍ଷିପ୍ତେ ହୋମକର୍ମଣି ।

(ତନ୍ତ୍ରସାରେ ଅଗସ୍ତ୍ୟଃ)

ବ୍ୟାଖ୍ୟା - ସ୍ରୁଚ ନିର୍ମିତ ହୋଇଥିବା କାଠର ଆଉ ଖଣ୍ଡିଏ ଚବିଶ ଆଙ୍ଗୁଳ କାଠରେ ସ୍ରୁବ ନିର୍ମାଣ କରିବ । ସେହି ସ୍ରୁବର ଦଣ୍ଡ ବାଇଶ ଆଙ୍ଗୁଳ ଓ ଦଣ୍ଡର ସ୍ଥୂଳତା (ମୋଟ) ଚାରି ଆଙ୍ଗୁଳ କରିବ ଏବଂ ତାହାର ଦୁଇଅଙ୍ଗୁଳ ଶିରୋଭାଗ ରଖି ତହିଁରେ ପଙ୍କ ମଧ୍ୟରେ ପଡ଼ିଥିବା ମୃଗର ପାଦଚିହ୍ନ ପରି ଗୋଟିଏ ଖାତ ଖୋଳିବ । ଯେପରି ସେଥିରେ କର୍ଷିଏ (ଅଶୀ ରତି) ଘିଅ ଧରେ ଏବଂ ଦଣ୍ଡର ମୂଳରେ ଓ ଅଗ୍ରରେ କଙ୍କଣ ଭୂଷିତ ଗଣ୍ଠୀ (କୁମ୍ଭ) କରିବ । ସ୍ରୁବ ସ୍ରୁଚର ଅଭାବ ସ୍ଥଳରେ ଅଚ୍ଛିଦ୍ର ପଳାଶ ପତ୍ରରେ କିମ୍ବା ଅଶ୍ୱତ୍ଥ ପତ୍ରରେ ଠୋଲା କରି ସ୍ୱଳ୍ପ ହୋମ କରିବ ।

## ୩୧ – ପ୍ରୋକ୍ଷଣୀପାତ୍ର ଲକ୍ଷଣ

ଚତୁରଙ୍ଗୁଳବିସ୍ତାରଂ ଦୀର୍ଘଂ ଚ ଦ୍ୱାଦଶାଙ୍ଗୁଳଂ ।
ଅଷ୍ଟାଙ୍ଗୁଳସମୁଚ୍ଛ୍ରାୟଂ ଗର୍ତ୍ତଂ ଚ ଚତୁରଙ୍ଗୁଳଂ ।
ବୈକଙ୍କତଂ ବାରଣଂ ବା ପ୍ରୋକ୍ଷଣୀପାତ୍ରମୁଚ୍ୟତେ ।
ପ୍ରୋକ୍ଷଣୀପାତ୍ରଂ ବାରଣଂ ଦ୍ୱାଦଶାଙ୍ଗୁଳଦୀର୍ଘଂ –
କରତଳମିତଖାତଂ ପଦ୍ମପତ୍ରାକୃତି କମଳମୁକୁଳାକୃତି ବା ।
(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

ବ୍ୟାଖ୍ୟା – ବରୁଣକାଠ ବା ଭଇଁଚକାଠରେ ପ୍ରୋକ୍ଷଣୀପାତ୍ର କରିବ । ତାହାର ଦୀର୍ଘ ବାରଅଙ୍ଗୁଳ, ପ୍ରତି ଚାରିଆଙ୍ଗୁଳ ଓ ଉଚ୍ଚ ଆଠ ଆଙ୍ଗୁଳ ହେବ । ତନ୍ମଧ୍ୟରେ କରତଳ, ପଦ୍ମପତ୍ର କିମ୍ବା ପଦ୍ମକଢ଼ ସଦୃଶ ଚାରିଆଙ୍ଗୁଳ ଗର୍ତ୍ତ କରିବ ।

## ୩୨ – ପ୍ରଣୀତାପାତ୍ର ଲକ୍ଷଣ

ପ୍ରଣୀତା ବାରଣୀ ଗ୍ରାହ୍ୟା ଦ୍ୱାଦଶାଙ୍ଗୁଳ ସମ୍ମିତା ।
ଖାତେନ ହସ୍ତତଳବ୍‌ଦାକୃତ୍ୟା ପଦ୍ମପତ୍ରବତ୍ ।
(ମାଧ୍ୟନ୍ଦିନଶାଖାୟାଂ)

ବ୍ୟାଖ୍ୟା - ବରୁଣକାଷ୍ଠରେ ପ୍ରଣୀତାପାତ୍ର କରିବ, ତାହାର ଦୀର୍ଘ ବାର ଆଙ୍ଗୁଳ ଓ ପ୍ରତି ବାର ଆଙ୍ଗୁଳ ହେବ, ତାହାର ଆକୃତି ପଦ୍ମପତ୍ରପରି କରିବ ଓ ତହିଁ ମଧରେ କରତଳ ପରି ଗର୍ତ୍ତ କରିବ ।

## ୩୩ – ଚମସ ଲକ୍ଷଣ

ପଲାଶାଦ୍‌ବା ବଟାଦ୍‌ବାନ୍ୟଦ୍ ବୃକ୍ଷାଦ୍ ବା ଚମସାଃ ସ୍ମୃତାଃ ।
ଦଶାଙ୍ଗୁଳମିତାଦୀର୍ଘାଶ୍ଚ ତୁରଙ୍ଗୁଳବିସ୍ତୃତାଃ
ଚତୁରଙ୍ଗୁଳଖାତାଶ୍ଚ ଦଣ୍ଡାସ୍ତୁ ଦ୍ୟଙ୍ଗୁଳାମତାଃ ।
ଷଡ଼ଙ୍ଗୁଳମିତୋଚ୍ଛ୍ରାୟାସ୍ତେଷାଂ ଦଣ୍ଡେଷୁ ଲକ୍ଷଣଂ ।
(କାତ୍ୟାୟନଶ୍ରୌତସୂତ୍ରଭାଷ୍ୟେ)

ବ୍ୟାଖ୍ୟା - ପଲାଶ, ବଟ ଓ ଅନ୍ୟାନ୍ୟ ଯଜ୍ଞୀୟକାଷ୍ଠରୁ ଦଶ ଆଙ୍ଗୁଳ ଲମ୍ବା, ଚାରି ଆଙ୍ଗୁଳ ଚୌଡ଼ା ଓ ଛ' ଆଙ୍ଗୁଳ ଉଚ୍ଚା ଖଣ୍ଡେ କାଷ୍ଠ ଆଣି ତହିଁରେ ଦୁଇଆଙ୍ଗୁଳ ଦଣ୍ଡ, ଚାରିଆଙ୍ଗୁଳ ଗର୍ତ୍ତ ଓ ଗର୍ତ୍ତର ଉଭୟ ପାର୍ଶ୍ୱରେ ଦୁଇ ଦୁଇ ଆଙ୍ଗୁଳ କାଷ୍ଠ ରଖିଲେ ଏହାକୁ ଚମସ କହନ୍ତି ।



## ୩୪ - ଆଜ୍ୟସ୍ଥାଲୀ ଲକ୍ଷଣ

ଆଜ୍ୟସ୍ଥାଲୀତୁ କର୍ତ୍ତବ୍ୟା ତୈଜସଦ୍ରବ୍ୟ ସମ୍ଭବା ।
ମାହେୟୀ ବାପି କର୍ତ୍ତବ୍ୟା ନିତ୍ୟଂ ସର୍ବାଗ୍ନିକର୍ମସୁ ।
ଆଜ୍ୟସ୍ଥାଲ୍ୟାଃ ପ୍ରମାଣଂ ତଦ୍‌ଯଥାକାମଂ ତୁ କାରୟେତ୍ ।
ସୁଦୃଢ଼ମବ୍ରଣାଂ ଭଦ୍ରାମାଜ୍ୟସ୍ଥାଲୀଂ ପ୍ରଚକ୍ଷତେ ।

(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

ବ୍ୟାଖ୍ୟା - ସମସ୍ତ ହୋମ କର୍ମରେ ଆଜ୍ୟସ୍ଥାଲୀ ସୁନାରୂପା ପ୍ରଭୃତି ଧାତୁ ଦ୍ରବ୍ୟ କିମ୍ବା ମୃତ୍ତିକାରେ କରିବ । ସେ ଯେପରି ସୁଦୃଢ଼, ଅଛିଦ୍ର ଓ ସୁଗଠିତ ହୁଏ । କିନ୍ତୁ ତାହାର ପରିମାଣ କର୍ମ ଅନୁସାରେ କରିବ ।

## ୩୫ - ଚରୁସ୍ଥାଲୀ ଲକ୍ଷଣ

ମୃଣ୍ମୟୌଂଦୁମ୍ବରୀ ବାପି ଚରୁସ୍ଥାଲୀ ପ୍ରଶସ୍ୟତେ ।
ତିର୍ଯ୍ୟଗୂର୍ଦ୍ଧ୍ୱଂ ସମିନ୍‌ମାତ୍ରଂ ଦୃଢ଼ା ନାତିବୃହନ୍ମୁଖୀ ।
କୁଲାଲଚକ୍ରଘଟିତମାସୁରଂ ମୃଣ୍ମୟଂ ସ୍ମୃତଂ ।
ତଦେବ ହସ୍ତଘଟିତଂ ସ୍ଥାଲ୍ୟାଦି ଖଲୁ ଦୈବିକଂ ।

(ଗଦାଧରଭାଷ୍ୟେ)

ବ୍ୟାଖ୍ୟା - ମୃତ୍ତିକା ବା ଔଦୁମ୍ବର (ତାମ୍ର) ଦ୍ୱାରା ଚରୁସ୍ଥାଲୀ କରିବ । ତାହାର ଚାରିଆଡ଼ ବକ୍ର ଭାବରେ ପ୍ରାଦେଶ ପରିମାଣରେ ଊର୍ଦ୍ଧ୍ୱକୁ ଉଠିଥିବ, ସେ ଦୃଢ଼ ହେବ ଓ ତାହାର ମୁଖ ଅତି ବଡ଼ ହେବ ନାହିଁ ଅର୍ଥାତ୍ କୁମ୍ଭାକୃତି ହେବ । କୁମ୍ଭାରଚକରେ ଯେ ମୃଣ୍ମୟ ପାତ୍ର ହୁଏ ତାହାକୁ ଆସୁର ପାତ୍ର କହନ୍ତି । ଅତଏବ ଦୈବକର୍ମରେ ନିଜ ହସ୍ତରେ ମୃଣ୍ମୟପାତ୍ର କରିବ ।

## ୩୬ - ଚରୁ ପାକ ନିୟମ

ସ୍ୱଶାଖୋକ୍ତଃ ପ୍ରସୁସ୍ୱିନ୍ନୋହ୍ୟଦଗ୍‌ଧୋଽକଠିନଃ ଶୁଭଃ ।
ନ ବାତିଶିଥିଳଃ ପାଚ୍ୟଃ ଚରୁଃ ସ୍ୟାନ୍ନ ଚାରସଃ ।

(କର୍ମପ୍ରଦୀପେ)

ବ୍ୟାଖ୍ୟା - ନିଜ ଶାଖାର ବିଧି ଅନୁସାରେ ଉତ୍ତମ ଅନ୍ନ (ଚରୁ ନିମିତ୍ତ ଦ୍ରବ୍ୟ)କୁ ଘୃତ ସହିତ ପାକ କରି ଚରୁ କରିବ । ସେହି ଚରୁକୁ ଅତି ଟାଣ, ଯାଉଆ କିମ୍ବା ପୋଡ଼ି ନ ଦେଇ ଟିକିଏ ଆର୍ଦ୍ର ରଖିବ ।

## ୩୭ - ସମିଧ ଲକ୍ଷଣ

ନାଙ୍ଗୁଷ୍ଠାଦଧିକା ନ୍ୟୂନା ।ସମିତ୍‌ସ୍ଥୁଳତରା କ୍ୱଚିତ୍ ।
ନ ନିର୍ମୁକ୍ତତ୍ୱଚା ଚୈବ ନ ସକୀଟା ନ ପାଟିତା ।
ପ୍ରାଦେଶାନ୍ନାଧିକା ନୋନା ନ ତଥା ସ୍ୟାଦ୍ୱିଶାଖିକା ।
ନ ସପତ୍ରା ନ ନିର୍ବୀର୍ଯ୍ୟା ହୋମେଷୁ ଚ ବିଜାନତା ।

(ଛନ୍ଦୋଗପରିଶିଷ୍ଟେ)

ବ୍ୟାଖ୍ୟା - ବିଜ୍ଞବ୍ୟକ୍ତି ହୋମରେ ଯେଉଁ ସମିଧ ବ୍ୟବହାର କରିବେ ତାହାର ସ୍ଥୂଳତା ବୁଢ଼ା ଆଙ୍ଗୁଳିରୁ ନ୍ୟୂନ ବା ଅଧିକ ହେବ ନାହିଁ । ସେ ବଲ୍‌କଲଶୂନ୍ୟ, କୀଟଯୁକ୍ତ ବା ଫଟା ହୋଇ ନ ଥିବ । ତାହାର ଲମ୍ବ ପ୍ରାଦେଶରୁ ଅଧିକ ବା ନ୍ୟୂନ ହେବ ନାହିଁ । ତହିଁରେ ଶାଖା ବା ପତ୍ର ନ ଥିବ କିମ୍ବା ସେ ଅତି ଶୁଖି ପାପରା ହୋଇ ଯାଇ ନ ଥିବ ।

## ୩୮ - ନିଷିଦ୍ଧ ସମିଧ ଲକ୍ଷଣ

ବିଶୀର୍ଣ୍ଣାବିଦଳାହ୍ରସ୍ୱାବକ୍ରାଃ ସ୍ଥୁଳାଦ୍ୱିଧାକୃତାଃ ।
କୃମିଦଷ୍ଟାଶ୍ଚ ଦୀର୍ଘାଶ୍ଚ ସମିଧୋନୈବ କାରୟେତ୍ ।

(ସଂସ୍କାରତନ୍ତ୍ରେ)

ବ୍ୟାଖ୍ୟା - ଶୁଷ୍କ, ପତ୍ରଯୁକ୍ତ, ପ୍ରାଦେଶରୁ ଛୋଟ, ବଙ୍କା, ବୁଢ଼ାଆଙ୍ଗୁଳିରୁ ବେଶୀ ମୋଟ, ଚିରା, ପୋକା କିମ୍ବା ପ୍ରାଦେଶରୁ ଅଧିକ ଲମ୍ବ ଏପରି ସମିଧ କରିବା ନିଷେଧ ।

## ୩୯ - ନିଷିଦ୍ଧ ସମିଧର ଫଳାଫଳ

ବିଶୀର୍ଣ୍ଣାୟୁଃକ୍ଷୟଂ କୁର୍ଯ୍ୟାଦ୍‌ବିଦଳା ପୁତ୍ରନାଶିନୀ ।
ହ୍ରସ୍ୱା ନାଶୟତେ ପତ୍ନୀଂ ବକ୍ରା ବନ୍ଧୁବିନାଶିନୀ ।
କୃମିଦଷ୍ଟା ରୋଗକରୀ ବିଦ୍ୱେଷକରଣୀ ଦ୍ୱିଧା ।
ପଶୁନ୍ ମାରୟତେ ଦୀର୍ଘା ସ୍ଥୁଳା ଚାର୍ଥବିନାଶିନୀ ।

(ତନ୍ତ୍ରେ)

ବ୍ୟାଖ୍ୟା - ଶୁଖିଲାସମିଧ ଆୟୁଃ କ୍ଷୟ କରେ, ପତ୍ରଯୁକ୍ତସମିଧ ପୁତ୍ର ନାଶ କରେ, କ୍ଷୁଦ୍ରସମିଧ ପତ୍ନୀ ନାଶ କରେ, ବକ୍ରସମିଧ ବନ୍ଧୁ ନାଶ କରେ, ପୋକାସମିଧ ରୋଗଜାତ କରେ, ଚିରାସମିଧ ଶତ୍ରୁ ବୃଦ୍ଧି କରେ, ଦୀର୍ଘସମିଧ ପଶୁବଧ କରାଏ ଓ ସ୍ଥୁଳସମିଧ ଅର୍ଥନାଶ କରେ ।



## ୪୦ - ଆଠପ୍ରକାର ହୋମକୁଣ୍ଡ

ଚତୁରସ୍ରଂ ଯୋନିମର୍ଦ୍ଧ ଚନ୍ଦ୍ରଂ ତ୍ର୍ୟସ୍ରଂ ସୁବର୍ତ୍ତୁଳଂ ।
ଷଡ଼ସ୍ରଂ ପଙ୍କଜାକାରମଷ୍ଟାସ୍ରଂ ତାନି ନାମତଃ ।

(ବଶିଷ୍ଠସଂହିତାୟାଂ)

ବ୍ୟାଖ୍ୟା - ୧. ଚତୁରସ୍ର (ଚାରିକୋଣିଆ) କୁଣ୍ଡ, ୨. ଯୋନି କୁଣ୍ଡ, ୩. ଅର୍ଦ୍ଧଚନ୍ଦ୍ରାକୃତି କୁଣ୍ଡ, ୪. ତ୍ର୍ୟସ୍ର (ତିନିକୋଣିଆ) କୁଣ୍ଡ, ୫. ବର୍ତ୍ତୁଳ (ଗୋଲ), ୬. ଷଡ଼ସ, (ଛ'କୋଣିଆ) କୁଣ୍ଡ, ୭. ପଦ୍ମକୁଣ୍ଡ ଓ ୮. ଅଷ୍ଟାସ୍ର (ଆଠକୋଣିଆ) କୁଣ୍ଡ, ଏହି ଆଠପ୍ରକାର କୁଣ୍ଡ ତନ୍ତ୍ରସାରରେ ବର୍ଣ୍ଣିତ ହୋଇଅଛି ।

## ୪୧ - ଆଠପ୍ରକାର ହୋମକୁଣ୍ଡର ଲକ୍ଷଣ

(୧) ଆଚାର୍ଯ୍ୟ କୁଣ୍ଡଂ ମଧ୍ୟେ ସ୍ୟାଦ୍ ଗୌରୀପତିମହେନ୍ଦ୍ରୟୋଃ ।
ହସ୍ତମାତ୍ରମିତାଂ ଭୂମିଂ ପୂର୍ବବତ୍ ପରିସୂତ୍ରୟେତ୍ ।
ସମନ୍ତାତ୍‌କୁଣ୍ଡମେତତ୍ତୁ ଚତୁରସ୍ରଂ ଶୁଭାବହଂ ।

(୨) ଚତୁରସ୍ରୀକୃତଂ କ୍ଷେତ୍ରଂ ପଞ୍ଚଧା ବିଭଜେତ୍ସୁଧୀଃ ।
ନ୍ୟସେତ୍ପୁ ରସ୍ତାଦେକାଂଶଂ କୋଣାର୍ଦ୍ଧାର୍ଦ୍ଧପ୍ରମାଣତଃ ।
ଭ୍ରାମୟେତ୍ତେନ ରୂପେଣ ତଥାନ୍ୟପଦି ମନ୍ତ୍ରବିତ୍ ।
ସୂତ୍ରଯୁଗ୍ମଂ ତତୋଦଦ୍ୟାକୁଣ୍ଡଂ ଯୋନିନିଭଂ ଭବେତ୍ ।

(୩) ଚତୁରସ୍ରକୃତଂ କ୍ଷେତ୍ରଂ ଦଶଧା ବିଭଜେତ୍ସୁଧୀଃ ।
ଏବମେକଂ ତ୍ୟଜେଦଂଶଂ ଅଧଉର୍ଦ୍ଧ୍ୱଂ ଚ ତନ୍ତ୍ରବିତ୍ ।
ଜ୍ୟାସୂତ୍ରଂ ପାତୟେଦଗ୍ରେତନ୍ମାନାଦ୍ ଭ୍ରାମୟେତ୍ତତଃ ।
ଅର୍ଦ୍ଧଚନ୍ଦ୍ରନିଭଂ କୁଣ୍ଡଂରମଣୀୟମିଦଂ ଭବେତ୍ ।

(୪) ଚତୁର୍ଦ୍ଧାଭେଦିତେ କ୍ଷେତ୍ରେ ନ୍ୟସେଦୁଭୟପାର୍ଶ୍ୱୟୋଃ ।
ଏକୈକମଂଶଂ ତନ୍ମାନାଦଗ୍ରତୋଞ୍ଚୟେତ୍ତତଃ ।
ସୂତ୍ରତ୍ରୟଂ ବୁଧଃ କୁର୍ଯ୍ୟାତ୍ତ୍ୟ ସ୍ରଂ କୁଣ୍ଡମୁଦାହୃତଂ ।

(୫) ଅଷ୍ଟାଦଶାଂଶଂ କ୍ଷେତ୍ରେଽଂଶଂ ନ୍ୟସେଦେକଂ ବହିର୍ବୁଧଃ ।
ଭ୍ରାମୟେତ୍ତେନ ମାନେନ ବୃତ୍ତଂ କୁଣ୍ଡମୁଦାହୃତଂ ।

(୬) ଅଷ୍ଟଧା ବିଭଜେତ୍‌କ୍ଷେତ୍ରଂ ମଧ୍ୟେ ସୂତ୍ରସ୍ୟ ପାର୍ଶ୍ୱୟୋଃ ।
ଭାଗଂ ନ୍ୟସେଦେକମେକଂ ମାନେନାନେନ ମଧ୍ୟତଃ ।
କୁର୍ଯ୍ୟାତ୍ପାର୍ଶ୍ୱଦ୍ୱୟେ ମତ୍ସ୍ୟଚତୁଷ୍କଂ ମନ୍ତ୍ରବିତ୍ତମଃ ।
ସୂତ୍ରଷଟ୍‌କଂ ତତୋଦଦ୍ୟାତ୍ ଷଡ଼ସ୍ରଂ କୁଣ୍ଡମୀରିତଂ ।

(୭) ଚତୁରସ୍ରୀକୃତଂ କ୍ଷେତ୍ରଂ ବିଭଜ୍ୟାଷ୍ଟାଦଶାଂଶତଃ ।
ଏକଂ ଭାଗଂ ବାହିର୍ନ୍ୟସ୍ୟ ଭ୍ରାମୟେତ୍ତେନ ବର୍ତ୍ତୁଳଂ ।
ବୃତ୍ତାନି କର୍ଣ୍ଣିକାଦୀନାଂ ବହିସ୍ତ୍ରୀଣି ପ୍ରକଳ୍ପୟେତ୍ ।
ପଦ୍ମକୁଣ୍ଡମିତି ପ୍ରୋକ୍ତଂ ବିଲୋଚନମନୋହରଂ ।

(୮) ପୂର୍ବୋକ୍ତଂ ବିଭଜେତ୍କ୍ଷେତ୍ରଂ ଚତୁର୍ବିଂଶତିଭାଗତଃ ।
ଏକଂ ଭାଗଂ ବହିର୍ନ୍ୟସ୍ୟ ଚତୁରସ୍ରଂ ପ୍ରକଳ୍ପୟେତ୍ ।
ଅନ୍ତଃସ୍ଥଚତୁରସ୍ରସ୍ୟ କୋଣାର୍ଦ୍ଧାର୍ଦ୍ଧପ୍ରମାଣତଃ ।
ବାହ୍ୟସ୍ୟ ଚତୁରସ୍ରସ୍ୟ କୋଣାଭ୍ୟାଂ ପରିକଳ୍ପୟେତ୍ ।
ଦିଶଂ ପ୍ରତି ଯଥାନ୍ୟାୟମଷ୍ଟୌ ସୂତ୍ରାଣି ପାତୟେତ୍ ।
ଅଷ୍ଟାସ୍ରଂ କୁଣ୍ଡମେତଦ୍ଧି ତନ୍ତ୍ରବିଭିରୁଦୀରିତଂ ।
ଯାବାନ୍ କୁଣ୍ଡସ୍ୟ ବିସ୍ତାରଃ ଖନନଂ ତାବଦେବ ହି ।
କୁଣ୍ଡାନିଂ ଯାଦୃଶଂ ରୂପଂ ମେଖଳାନାଞ୍ଚ ତାଦୃଶଂ ।

(ବଶିଷ୍ଠସଂହିତାୟାଂ)

ବ୍ୟାଖ୍ୟା - (୧) ଈଶାନକୋଣ ଓ ପୂର୍ବଦିଗ ମଧ୍ୟରେ କୁଣ୍ଡ ନିର୍ମାଣ କରାଯାଏ । ପ୍ରଥମେ ଆଚାର୍ଯ୍ୟ ଭୂମିକା ସମତଳ କରି ଓ ସୂତ୍ରଦ୍ୱାରା ଚତୁର୍ଦ୍ଦିଗରେ ଏକ ଏକ ହସ୍ତ ପରିମିତ ଭୂମିକୁ ମାପି ଗୋଟିଏ ସମଚତୁରସ୍ର କୁଣ୍ଡଖୋଳିବ, ତାହା ଯେପରି ଦୀର୍ଘ, ପ୍ରସ୍ଥ ଓ ଗଭୀରତା ସମାନ ହେବ, ଏହାର ନାମ ଚତୁରସ୍ର କୁଣ୍ଡ । ଏହି କୁଣ୍ଡ ସବୁକର୍ମରେ ବିଶେଷ ଶୁଭଫଳଦାୟକ ।

(୨) ବିଜ୍ଞବ୍ୟକ୍ତି ଚତୁରସ୍ରୀକୃତ ହୋଇଥିବା ଭୂମିକୁ ପାଞ୍ଚଭାଗରେ ବିଭକ୍ତ କରି, ତାହାର ପୂର୍ବଭାଗରେ ଏକାଂଶ ପରିମିତ ସ୍ଥାନ ବିନ୍ୟସ୍ତ (ସ୍ଥିର) କରିବେ; ସେହି ସ୍ଥାନରେ ସୂତ୍ରପାତ କରି ସେହି ସୂତ୍ରକୁ କୋଣମାନଙ୍କର ଅର୍ଦ୍ଧାର୍ଦ୍ଧ ପରିମାଣରେ ବୁଲାଇବ, ଯେପରି ଦୁଇଗୋଟି ଅର୍ଦ୍ଧବୃତ୍ତାକାର ହେବ ଅର୍ଥାତ୍ ଉତ୍ତରଦିଗର ଅର୍ଦ୍ଧରୁ ଆରମ୍ଭ କରି ପୂର୍ବଦିଗର ଅର୍ଦ୍ଧରେ ଶେଷ କରିବ ଓ ସେହିପରି ଦକ୍ଷିଣ ଦିଗର ଅର୍ଦ୍ଧରୁ ଆରମ୍ଭ କରି ପୂର୍ବଦିଗର ଅର୍ଦ୍ଧରେ ଶେଷ କରିବ । ତଦନନ୍ତର ସେହି ଚତୁରସ୍ରଭୂମିରୁ ପଶ୍ଚିମଭାଗ ମଧ୍ୟରେ ଯୋନି ଆକାରରେ ସୂତ୍ରଦ୍ୱୟ ପାତ କରି କୁଣ୍ଡ ଖନନ କରିବ । ଏହି କୁଣ୍ଡର ନାମ ଯୋନିକୁଣ୍ଡ ।

---

* ଅତ୍ର ବହିଃ ଶବ୍ଦୋମଧ୍ୟବାଚକଃ, ଅବ୍ୟୟାନାମନେକାର୍ଥତ୍ୱାଦିତି ଗୁରବଃ । ବୃତ୍ତାନି ବହିର୍ବହି କୁର୍ଯ୍ୟାଦିତି ଭଟ୍ଟଃ ।



(୩) ବିଜ୍ଞବ୍ୟକ୍ତି ସମଚତୁରସ୍ର ଭୂମିକୁ ଦକ୍ଷିଣୋତ୍ତରକ୍ରମେ ସମାନ ଦଶ ଅଂଶରେ ବିଭକ୍ତ କରି ତାହାର ଅଧ ଓ ଉର୍ଦ୍ଧ୍ୱଭାଗରୁ ଏକ ଏକ ଅଂଶ ତ୍ୟାଗ କରି ଦକ୍ଷିଣରୁ ଉତ୍ତରକୁ ଧନୁର ଗୁଣ ପରି ସୂତ୍ରପାତ କରିବେ, ସେହି ସୂତ୍ର ଉପରେ ଦକ୍ଷିଣରୁ ଉତ୍ତରକୁ ଧନୁ ଆକାରରେ ଆଉ ଏକ ସୂତ୍ରପାତ କରିବେ, ଯେପରି ସେ ରମଣୀୟ ଅର୍ଦ୍ଧଚନ୍ଦ୍ରାକୃତି ହେବ । ଏହି ପ୍ରକାର ଅଙ୍କିତ କରି ଖନନ କଲେ ଅର୍ଦ୍ଧଚନ୍ଦ୍ରାକୃତି କୁଣ୍ଡ ହୁଏ ।

(୪) ସମଚତୁରସ୍ର ଭୂମିକୁ ଦକ୍ଷିଣୋତ୍ତରକ୍ରମେ ଚାରିଭାଗ କରିବ; ତତ୍ପରେ ସେହି କ୍ଷେତ୍ରରେ ଉଭୟପାର୍ଶ୍ୱରେ ଏକ ଏକ ଅଂଶ ଜମି ସ୍ଥିର କରିବ । ସେହି ଜମିର ଶେଷଭାଗରେ ଓ କ୍ଷେତ୍ରରେ ତଳରେଖାର ସଲଖରେ ଏକ ଏକ ବିନ୍ଦୁ ଦେବ । ସେହିପରି କ୍ଷେତ୍ରରେ ଉପରିଭାଗରେ ଏକ ଅଂଶ ଜମି ସ୍ଥିର କରି ତାହାର ମଧ୍ୟଦେଶରେ ଏକ ବିନ୍ଦୁ ଦେବ । ସେହି ବିନ୍ଦୁଠାରୁ ଉଭୟ ପାର୍ଶ୍ୱର ବିନ୍ଦୁ ପର୍ଯ୍ୟନ୍ତ ଏକ ଏକ ସରଳରେଖା ଟାଣିଲେ ଗୋଟିଏ ତ୍ରିକୋଣ ହେବ । ଏହିପ୍ରକାର ଅଙ୍କିତ କରି ଖନନ କଲେ ତ୍ର୍ୟସ୍ରକୁଣ୍ଡ ହୁଏ ।

(୫) ଗୋଟିଏ ଚତୁରସ୍ର ଭୂମିକୁ ଦକ୍ଷିଣୋତ୍ତରକ୍ରମେ ଅଠର ଭାଗରେ ବିଭକ୍ତ କରି ତାହାର ମଧ୍ୟସ୍ଥଳକୁ କେନ୍ଦ୍ର କରିବ ଓ ତାହାର ବହିର୍ଭାଗରେ ଏକ ଅଂଶ ଜମିର ମଧ୍ୟରେ ଚିହ୍ନ ଦେଇ ସେହିଠାରୁ ବୃତ୍ତ ଆରମ୍ଭ କରିବ, ଏହିପରି ଅଙ୍କିତ କରି ଖନନ କଲେ ବୃତ୍ତକୁଣ୍ଡ ହୁଏ ।

(୬) ଗୋଟିଏ ଚତୁରସ୍ରଭୂମିକୁ ପୂର୍ବପଶ୍ଚିମ କ୍ରମେ ଆଠଭାଗରେ ବିଭକ୍ତ କରି ତାହାର ଉଭୟପାର୍ଶ୍ୱ ଅର୍ଥାତ୍ ଉତ୍ତର ଦକ୍ଷିଣରେ ଏକାଂଶ ପରିମିତ ସ୍ଥାନ ଚିହ୍ନିତ କରିବ । ତତ୍ପରେ ଚତୁରସ୍ରସ୍ଥିତ ମଧ୍ୟସୂତ୍ରର ଉଭୟପାର୍ଶ୍ୱ ରେଖାକୁ ତଳ ଓ ଉପରକୁ ଏକାଂଶ ପରିମିତ ସ୍ଥାନ ବର୍ଦ୍ଧିତ ଚିହ୍ନ ଦେବ, ସେହି ଚିହ୍ନମାନଙ୍କୁ ରେଖାଦ୍ୱାରା ଯୋଗକଲେ ଛ'ଗୋଟି କୋଣ ହେବ । ଆଉ ମଧ୍ୟ ମଧ୍ୟସୂତ୍ରର ଉଭୟପାର୍ଶ୍ୱରେ ଚାରିଗୋଟି ମତ୍ସ୍ୟରୂପ ଅଙ୍କିତ କରି ତତ୍ପରେ ଖନନ କଲେ ଷଡ଼ସ୍ରକୁଣ୍ଡ ହେବ ।

(୭) ପ୍ରଥମେ ଗୋଟିଏ ଚତୁରସ୍ର ଅଙ୍କିତ କରି ତାହା ମଧ୍ୟରେ ତଳୁ ଉପରକୁ କ୍ରମେ ଚାରିଗୋଟି ବୃତ୍ତ ଏରୂପ କରିବ ଯେ, ଅଷ୍ଟଦଳପଦ୍ମର ଯେପରି ପ୍ରଥମବୃତ୍ତରେ କର୍ଣ୍ଣିକା, ଦ୍ୱିତୀୟବୃତ୍ତରେ କେଶର, ତୃତୀୟବୃତ୍ତରେ ଦଳର ମଧ୍ୟଭାଗ ଓ ଚତୁର୍ଥବୃତ୍ତରେ ଦଳର ଅଗ୍ରଭାଗ ନିର୍ମିତ ହେବ । ଏହିପରି ଅଙ୍କିତ କରି ଖନନ କଲେ ପଦ୍ମକୁଣ୍ଡ ହୁଏ ।

(୮) ଚତୁରସ୍ର କ୍ଷେତ୍ରକୁ ଦକ୍ଷିଣୋତ୍ତରକ୍ରମେ ଚବିଶ ଅଂଶରେ ବିଭକ୍ତ କରି ତାହାର ବହିର୍ଭାଗରେ ଏକାଂଶ ପରିମିତ ସ୍ଥାନରେ ଚିହ୍ନ ହେବ । ତପୃରେ ସେହି ଚିହ୍ନିତ ସ୍ଥାନରୁ ଆରମ୍ଭି ଆଉ ଗୋଟିଏ ଚତୁରସ୍ର ତାହା ଉପରେ ଅଙ୍କିତ କରିବ । ଏହି ମଧ୍ୟସ୍ଥିତ ଚତୁରସ୍ରର କୋଣାର୍ଦ୍ଧର ଅର୍ଦ୍ଧ ପରିମାଣରେ ବହିସ୍ଥ ଚତୁରସ୍ରର ଚାରିଦିଗରେ ଆଉ ଦୁଇ ଦୁଇ କୋଣ ଅଙ୍କିତ କରିବ, ଅର୍ଥାତ୍ ଏପରି ଭାବରେ ଆଠଗୋଟି ସୂତ୍ରପାତ କରିବ ଯେପରି ଆଠଗୋଟି କୋଣ ହେବ । ଏହିପରି ଅଙ୍କିତ କରି ଖନନ କଲେ ଅଷ୍ଟାସ୍ର କୁଣ୍ଡ ହୁଏ । ତନ୍ତ୍ରବିତ୍‌ମାନେ ଏହିପରି ଅଷ୍ଟାସ୍ରକୁଣ୍ଡର ଲକ୍ଷଣ କହିଅଛନ୍ତି । କୁଣ୍ଡର ବିସ୍ତାର ଯେତେ ପରିମାଣ ହେବ ତାହାର ଗର୍ତ୍ତ ମଧ୍ୟ ସେତିକି ପରିମାଣ ହେବ । ଯେପରି କୁଣ୍ଡ କରିବ ତାହାର ମେଖଳା ସେହି ଅନୁକ୍ରମେ କରିବ ।

## ୪୨ - କୁଣ୍ଡମାନଙ୍କର ପ୍ରଶଂସା ଓ ଫଳାଫଳ

ଶାନ୍ତୌ ପୁଷ୍ଟୌ ତଥାରୋଗ୍ୟେ କୁଣ୍ଡଂ ଚ ଚତୁରସ୍ରକଂ ।
ଆକର୍ଷଣେ ତ୍ରିକୋଣଂ ସ୍ୟାଦୁଚ୍ଚାଟେ ବର୍ତ୍ତୁଳଂ ତଥା ।
ମାରଣେ ଚ ତଥାଯୋଜ୍ୟଂ ବର୍ତ୍ତୁଳଂ ମନ୍ତ୍ରିଭିଃ ସଦା ।
ବିପ୍ରାଣାଂ ଚତୁରସ୍ରଂ ସ୍ୟାଦ୍ରାଜ୍ଞାଂ ବର୍ତ୍ତୁଳମିଷ୍ୟତେ ।
ବୈଶ୍ୟାନାମର୍ଦ୍ଧଚନ୍ଦ୍ରାଭଂ ଶୂଦ୍ରାଣାଂ ତ୍ର୍ୟସ୍ରମୀରିତଂ ।
ଚତୁରସ୍ରଂ ତୁ ସର୍ବେଷାଂ କେଚିଦିଚ୍ଛନ୍ତି ତାନ୍ତ୍ରିକାଃ ।
ଚତୁରସ୍ରେ ମହେଶାନି ସର୍ବକର୍ମାଣି ସାଧୟେତ୍ ।
ସର୍ବାଧିକାରିଣଂ କୁଣ୍ଡଂ ସର୍ବଦଂ ଚତୁରସ୍ରକଂ ।

(ସିଦ୍ଧସାରସ୍ୱତେ)

ସର୍ବସିଦ୍ଧିକରଂ ପୁଂସା ଚତୁରସ୍ରମୁଦାହୃତଂ ।
ପୁତ୍ରପ୍ରଦଂ ଯୋନିକୁଣ୍ଡମର୍ଦ୍ଧେନ୍ଦ୍ୱାଭଂ ଶୁଭପ୍ରଦଂ ।
ଶତ୍ରୁକ୍ଷୟକରଂ ତ୍ର୍ୟସ୍ରଂ ବର୍ତ୍ତୁଳଂ ଶାନ୍ତି କର୍ମଣି ।
ଛେଦମାରଣୟୋଃ କୁଣ୍ଡଂ ଷଡ଼ସ୍ରଂ ପଦ୍ମସନ୍ନିଭଂ ।
ବୃଷ୍ଟିଦଂ ରୋଗଶମନଂ କୁଣ୍ଡମଷ୍ଟାସ୍ରମୀରିତଂ ।

(ନିବନ୍ଧେ)

ବ୍ୟାଖ୍ୟା - ଶାନ୍ତିକର୍ମ, ପୁଷ୍ଟିକର୍ମ ଓ ଆରୋଗ୍ୟସାଧନ କର୍ମରେ ଚତୁରସ୍ରକୁଣ୍ଡ, ଆକର୍ଷଣ କର୍ମରେ ତ୍ରିକୋଣକୁଣ୍ଡ, ଉଚ୍ଚାଟନ ଓ ମାରଣ କର୍ମରେ ବର୍ତ୍ତୁଳକୁଣ୍ଡ କରିବ । ବ୍ରାହ୍ମଣମାନଙ୍କର ଚତୁରସ୍ରକୁଣ୍ଡ, କ୍ଷତ୍ରିୟମାନଙ୍କର ବର୍ତ୍ତୁଳକୁଣ୍ଡ, ବୈଶ୍ୟମାନଙ୍କର ଅର୍ଦ୍ଧଚନ୍ଦ୍ର କୁଣ୍ଡ ଓ ଶୂଦ୍ରମାନଙ୍କର ତ୍ର୍ୟସ୍ୟକୁଣ୍ଡ କର୍ତ୍ତବ୍ୟ । କେହି କେହି ତାନ୍ତ୍ରିକମାନେ



ବ୍ରାହ୍ମଣାଦି ସମସ୍ତ ବର୍ଣ୍ଣରେ ଚତୁରସ୍ରକୁଣ୍ଡ କହିଅଛନ୍ତି । ମହେଶ ପାର୍ବତୀଙ୍କୁ କହିଅଛନ୍ତି ହେ ପାର୍ବତି ! ଚତୁରସ୍ର କୁଣ୍ଡରେ ହୋମ କଲେ ସମସ୍ତକର୍ମ ସିଦ୍ଧ ହେବ । ଚତୁରସ୍ରକୁଣ୍ଡ ସର୍ବଫଳପ୍ରଦ ଓ ସମସ୍ତ କର୍ମର ଅଧିକାରୀ । ନିବନ୍ଧରେ କଥିତ ଅଛି ଚତୁରସ୍ରକୁଣ୍ଡ ପୁରୁଷମାନଙ୍କର ସମସ୍ତ କର୍ମ ସିଦ୍ଧିକାରକ, ଯୋନିକୁଣ୍ଡ, ପୁତ୍ରକାରକ, ଅର୍ଦ୍ଧଚନ୍ଦ୍ରକୁଣ୍ଡ ଶୁଭକାରକ, ତ୍ର୍ୟସ୍ରକୁଣ୍ଡ ଶତ୍ରୁକ୍ଷୟକାରକ, ବର୍ତ୍ତୁଳକୁଣ୍ଡ ଶାନ୍ତିକାରକ, ଷଡ଼ସ୍ରକୁଣ୍ଡ ଏବଂ ପଦ୍ମକୁଣ୍ଡ ବିଚ୍ଛେଦ ଓ ମାରଣକାରକ, ଆଉ ଅଷ୍ଟାସ୍ରକୁଣ୍ଡ ରୋଗ ଶାନ୍ତିକାରକ ଓ ବୃଷ୍ଟିପ୍ରଦ ଅଟେ ।

## ୪୩ - ଆହୁତି ସଂଖ୍ୟାନୁସାରେ କୁଣ୍ଡର ପରିମାଣ

ମୁଷ୍ଟିମାତ୍ରମିତଂ କୁଣ୍ଡଂ ଶତାର୍ଦ୍ଧେ ଚ ପ୍ରଚକ୍ଷତେ ।
ଶତହୋମେଽରତ୍ନି ମାତ୍ରଂ ହସ୍ତମାତ୍ରଂ ସହସ୍ରକେ ।
ଦ୍ୱିହସ୍ତମୟୁତେଲକ୍ଷେ ଚତୁର୍ହସ୍ତମୁଦାହୃତଂ ।
ଷଟ୍‌କରେ ବେଦଲକ୍ଷଂ ଚାଷ୍ଟକରେ ଦଶଲକ୍ଷକଂ ।
ଦଶହସ୍ତଂ ତୁ କୋଟ୍ୟାଂ ବୈ ହସ୍ତସଂଖ୍ୟା ବ୍ୟବସ୍ଥିତା ।
ଦଶହସ୍ତାପ୍ରଂ କୁଣ୍ଡଂ ନାସ୍ତିହୋମୋମହୀତଳେ ।

(ଶରଦାୟାଂ)

ବ୍ୟାଖ୍ୟା - ପଞ୍ଚାଶତ ଆହୁତିଦାନରେ ମୁଷ୍ଟି ପରିମାଣ କୁଣ୍ଡ, ଶତାହୁତିଦାନରେ ଅରତ୍ନି ପରିମାଣ, ସହସ୍ର, (ହଜାର) ଆହୁତିଦାନରେ ହସ୍ତପରିମାଣ, ଅୟୁତ (ଦଶହଜାର) ଆହୁତିଦାନରେ ଦୁଇହସ୍ତ ପରିମାଣ, ଲକ୍ଷ ଆହୁତିଦାନରେ ଚାରିହସ୍ତ ପରିମାଣ, ଚାରିଲକ୍ଷ ଆହୁତିଦାନରେ ଛ'ହସ୍ତ ପରିମାଣ, ଦଶଲକ୍ଷ ଆହୁତିଦାନରେ ଆଠହସ୍ତ ପରିମାଣ ଏବଂ କୋଟି ଆହୁତି ଦାନରେ ଦଶହାତ ପରିମାଣ କୁଣ୍ଡ କରିବ । ଏଥିରୁ ଅଧିକ କୁଣ୍ଡ ହୁଏ ନାହିଁ ।

## ୪୪ - କୁଣ୍ଡ ଓ ସ୍ଥଣ୍ଡିଳାଦିରେ ହସ୍ତର ନିୟମ

ମୁଷ୍ଟ୍ୟରତ୍ନି ପ୍ରମାଣାନି ଯତ୍କିଂଚିତ୍କଥିତାନି ଚ ।
ଯଜମାନସ୍ୟ କର୍ତ୍ତବ୍ୟଂ ନାନ୍ୟସ୍ୟାପିକଦାଚନ ।

(ତନ୍ତ୍ରସାରେ ଗୌତମଃ)

* ୪୩-ଅରତ୍ନି ପରିମାଣଃ ଯଥା-
ବଦ୍ଧମୁଷ୍ଟିକରୋରତ୍ନିଃସୋଽରତ୍ନିଃ ପ୍ରସୃତାଂଗୁଳିଃ । (ଉଜ୍ଜ୍ୱଳଦତ୍ତଃ)
ବ୍ୟାଖ୍ୟା- କହୁଣୀଠାରୁ ମୁଠା ପର୍ଯ୍ୟନ୍ତ (ମୁଠୁଣିଏ) ବିସ୍ତାରକୁ ରତ୍ନି କହନ୍ତି ଏବଂ କହୁଣୀଠାରୁ କାଣି ଆଙ୍ଗୁଳି ଅଗପର୍ଯ୍ୟନ୍ତ ବିସ୍ତାରକୁ (କାଣିଏ) ଅରତ୍ନି କହନ୍ତି ।

ବ୍ୟାଖ୍ୟା - ଉପରେ କୁଣ୍ଡ ଓ ସ୍ଥଣ୍ଡିଳାଦିର ମୁଷ୍ଟି, ଅରତ୍ନି ପ୍ରଭୃତି ଯେ ସବୁ ମାପ ଦିଆଯାଇଛି ତାହା ଯଜମାନର ହସ୍ତମାପରେ କରିବ, ଅନ୍ୟହସ୍ତର ମାପରେ କରିବ ନାହିଁ ।

## ୪୫ - ମେଖଳା ନିର୍ଣ୍ଣୟ

ସାତ୍ତ୍ୱିକୀ ମେଖଳା ପୂର୍ବାଦ୍ୱିତୀୟା ରାଜସୀ ସ୍ମୃତା ।
ତୃତୀୟା ତାମସୀ ପ୍ରୋକ୍ତା ମେଖଳାନାଂ ବିନିର୍ଣ୍ଣୟଃ ।
କୁଣ୍ଡାନାଂ ମେଖଳାସ୍ତିସ୍ରୋ ମୁଷ୍ଟିମାତ୍ରେ ତୁତାଃ କ୍ରମାତ୍ ।
ଉତ୍ସେଧାୟାମତୋଜ୍ଞେୟା ଦ୍ୱ୍ୟେକାର୍ଦ୍ଧାଙ୍ଗୁଳି ସମ୍ମିତାଃ ।
ଅରତ୍ନିମାତ୍ରକୁଣ୍ଡେ ତୁ ତାସ୍ତ୍ରିଦ୍ୱ୍ୟେକାଙ୍ଗୁଳାତ୍ମିକାଃ ।
ହସ୍ତମାତ୍ରମିତେ କୁଣ୍ଡେ ବେଦାଗ୍ନିନୟନାଙ୍ଗୁଳାଃ ।
କୁଣ୍ଡେ ଦ୍ୱିହସ୍ତେ ତାଜ୍ଞେୟା ରସବେଦଗୁଣାଙ୍ଗୁଳାଃ ।
ଚତୁର୍ହସ୍ତେ ତୁ ତାଜ୍ଞେୟାବସୁତର୍କଯୁଗାଙ୍ଗୁଳାଃ ।
କୁଣ୍ଡେ ରସକରେ ତାସ୍ତୁ ପଂକ୍ତ୍ୟଷ୍ଟର୍ତ୍ତ୍ୱଙ୍ଗୁଳାଃ କ୍ରମାତ୍ ।
ବସୁହସ୍ତମିତେ କୁଣ୍ଡେ ଭାନୁ ପଂକ୍ତ୍ୟଷ୍ଟକାଙ୍ଗୁଳାଃ ।
ଦଶହସ୍ତମିତେ କୁଣ୍ଡେ ମନୁଭାନୁଦଶାଙ୍ଗୁଳାଃ ।
ବିସ୍ତାରୋତ୍ସେଧତୋଜ୍ଞେୟାମେଖଳାଃ ସର୍ବତୋବୁଧୈଃ ।

(ତନ୍ତ୍ରସାରେ)

ବ୍ୟାଖ୍ୟା - ମେଖଳା ତିନିପ୍ରକାର - ସାତ୍ତ୍ୱିକୀ, ରାଜସୀ ଓ ତାମସୀ । ଏହିସବୁ ମେଖଳାର ଉଚ୍ଚତା ଓ ବିସ୍ତାର ଭେଦରେ ସାତ୍ତ୍ୱିକାଦିଗୁଣ ନିର୍ଣ୍ଣୟ କରିବ, ଅର୍ଥାତ୍ ମୁଷ୍ଟି ପ୍ରମାଣ କୁଣ୍ଡର ସାତ୍ତ୍ୱିକୀ ମେଖଳା ଦୁଇଆଙ୍ଗୁଳ, ରାଜସୀ ମେଖଳା ଏକ ଆଙ୍ଗୁଳ ଓ ତାମସୀ ମେଖଳା ଅର୍ଦ୍ଧଆଙ୍ଗୁଳ ଉଚ୍ଚ ଓ ବିସ୍ତାର କରିବ । ଏହି କ୍ରମରେ ଅରତ୍ନି ପରିମିତ କୁଣ୍ଡର ସାତ୍ତ୍ୱିକୀ ମେଖଳା ତିନି, ରାଜସୀ ଦୁଇ ଓ ତାମସୀ ଏକ ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ । ତଦ୍ରୂପ ଏକହସ୍ତ ପରିମିତ କୁଣ୍ଡର ମେଖଳା ଚାରି, ତିନି ଓ ଦୁଇ ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ । ଦୁଇହସ୍ତ ପରିମିତ କୁଣ୍ଡର ମେଖଳା ଛଅ, ଚାରି ଓ ଦୁଇ ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ । ଚତୁର୍ହସ୍ତ ପରିମିତ କୁଣ୍ଡର ମେଖଳା କ୍ରମେ ଆଠ, ଛ' ଓ ଚାରିଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ । ଏହିପରି ଛ' ହସ୍ତ ପରିମିତ କୁଣ୍ଡର ମେଖଳା ଦଶ, ଆଠ ଓ ଛ' ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ । ଆଠହସ୍ତ ପରିମିତ କୁଣ୍ଡର ମେଖଳା ବାର, ଦଶ ଓ ଆଠ ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବେ ଏବଂ ଦଶହସ୍ତ ପରିମିତ କୁଣ୍ଡର ମେଖଳା କ୍ରମେ ଚଉଦ, ବାର ଓ ଦଶ ଆଙ୍ଗୁଳ ଉଚ୍ଚତା ଓ ବିସ୍ତାର କରିବ ।



## ୪୬ - କୁଣ୍ଡର ଯୋନି ନିର୍ଣ୍ଣୟ

ହୋତୁରଗ୍ରେ ଯୋନିରାସାମୁପର୍ଯ୍ୟଶ୍ୱଥପତ୍ରବତ୍ ।
ମୁଷ୍ଟ୍ୟରତ୍ନୈକହସ୍ତାନାଂ କୁଣ୍ଡାନାଂ ଯୋନିରୀରିତା ।
ଷଟ୍‌ଚତୁର୍ଦ୍ୱ୍ୟଙ୍ଗୁଳାୟାମବିସ୍ତାରୋନ୍ନତିଶାଳିନୀ ।
ଏକାଙ୍ଗୁଳଂ ତୁ ଯୋନ୍ୟଗ୍ରଂ କୁର୍ଯ୍ୟାଦୀଷଦଧୋମୁଖଂ ।
ଏକୈକାଙ୍ଗୁଳତୋଯୋନିଂ କୁଣ୍ଡେଷ୍ୱନ୍ୟେଷୁ ବର୍ଦ୍ଧୟେତ୍ ।
ଯବଦ୍ୱୟପ୍ରମାଣେନ ଯୋନ୍ୟଗ୍ରମପି ବର୍ଦ୍ଧୟେତ୍ ।

(ଶାରଦାତିଲକେ)

ବ୍ୟାଖ୍ୟା - ହୋମକର୍ତ୍ତାର ଅଗ୍ରଭାଗରେ ମେଖଳାମାନଙ୍କ ଉପରେ ଅଶ୍ୱତ୍ଥପତ୍ର ପରି କୁଣ୍ଡର ଯୋନି ନିର୍ମାଣ କରିବ । ମୁଷ୍ଟିପରିମିତ କୁଣ୍ଡର ଯୋନି ଛ' ଆଙ୍ଗୁଳ, ଅରତ୍ନି ପରିମିତ କୁଣ୍ଡର ଯୋନି ଚାରିଆଙ୍ଗୁଳ ଓ ହସ୍ତପରିମିତ କୁଣ୍ଡର ଯୋନି ଦୁଇ ଆଙ୍ଗୁଳ ପରିମାଣ ବିସ୍ତାର ଓ ଉଚ୍ଚତା କରିବ । ଯୋନିର ଅଗ୍ରଭାବ ଏକଆଙ୍ଗୁଳ ଓ ଈଷତ୍ ଅଧୋମୁଖ (ଢାଲୁ) ହେବ । ଅନ୍ୟ କୁଣ୍ଡମାନଙ୍କ ବିସ୍ତାରର ତାରତମ୍ୟରେ ଯୋନିକୁ ଏକ ଏକ ଆଙ୍ଗୁଳ ବୃଦ୍ଧି କରିବ ଓ ଯୋନିର ଅଗ୍ରଭାଗକୁ ମଧ୍ୟ ଦୁଇ ଦୁଇ ଯବ ବୃଦ୍ଧି କରୁଥିବ ।

## ୪୭ - କୁଣ୍ଡର ଗଭୀରତା ତାରତମ୍ୟର ଦୋଷାଦୋଷ ନିର୍ଣ୍ଣୟ

ଯାବାନ୍ କୁଣ୍ଡସ୍ୟ ବିସ୍ତାରଃ ଖନନଂ ତାବଦିଷ୍ୟତେ ।
ଖାତାଧିକ୍ୟେଭବେଦ୍ରୋଗୀ ହୀନେ ବନ୍ଧୁ ଧନକ୍ଷୟଃ ।
ବକ୍ରକୁଣ୍ଡେ ତୁ ସନ୍ତାପୋ ମରଣଂ ଛିନ୍ନମେଖଳେ ।
ମେଖଳାରହିତେ ଶୋକାହ୍ୟଧିକେ ବିତ୍ତସଂକ୍ଷୟଃ ।
ଭାର୍ଯ୍ୟାବିନାଶକଂ ପ୍ରୋକ୍ତଂ କୁଣ୍ଡଂ କଣ୍ଠବିବର୍ଜିତଂ ।

(ତନ୍ତ୍ରସାରେ)

ବ୍ୟାଖ୍ୟା - କୁଣ୍ଡର ବିସ୍ତାର ଯେତେ, ତାହାର ଗଭୀରତା ସେତିକି କରିବ । ତହିଁରୁ ନ୍ୟୂନ ବା ଅଧିକ କରିବ ନାହିଁ । କାରଣ ବିସ୍ତାର ଅପେକ୍ଷା ଗଭୀରତା ଅଧିକ ହେଲେ ହୋମ କର୍ତ୍ତା ରୋଗୀ ହୁଏ ଏବଂ ନ୍ୟୂନ ହେଲେ କର୍ତ୍ତାର ବନ୍ଧୁ ଓ ଧନ କ୍ଷୟ ହୁଏ । କୁଣ୍ଡ ବକ୍ର ହେ଼ଲେ ସାଧକର ସନ୍ତାପ ଜାତ ହୁଏ, ଛିନ୍ନ (ଖଣ୍ଡଖଣ୍ଡିଆ) ମେଖଳାରେ ମୃତ୍ୟୁ ହୁଏ ଓ ମେଖଳାହୀନ ହେଲେ ଶୋକ ଜାତ ହୁଏ । ଆଉ ମଧ୍ୟ ମେଖଳା ପରିମାଣରୁ ଅଧିକ ହେଲେ ଧନ କ୍ଷୟ ହୁଏ । କୁଣ୍ଡ-ଯୋନିବିହୀନ ହେଲେ ଭାର୍ଯ୍ୟା ନାଶ ହୁଏ । *କଣ୍ଠବିହୀନ ହେଲେ ଅପତ୍ୟଧ୍ୱଂସ ହୁଏ ।

---

* ୪୭ କୁଣ୍ଡର କଣ୍ଠ କରିବାର ବିଧି-
ଖାତାଦ୍‌ବାହ୍ୟେଽଙ୍ଗୁଳଃକଣ୍ଠଃ ସର୍ବକୁଣ୍ଡେଷ୍ୱୟଂ ବିଧିଃ । (ତିଥ୍ୟାଦିତତ୍ତ୍ୱେ)
ବ୍ୟାଖ୍ୟା- ଖାତର ବାହାରେ ଏକ ଆଙ୍ଗୁଳ ପରିମାଣରେ କଣ୍ଠ କରିବ, ସର୍ବ କୁଣ୍ଡର ଏହା ନିୟମ ।

## ୪୮ - କୁଣ୍ଡର ନାଭି ନିର୍ଣ୍ଣୟ

କଳ୍ପୟେଦନ୍ତରେ ନାଭିଂ କୁଣ୍ଡସ୍ୟାମ୍ବୁସନ୍ନିଭାଂ ।
ମୁଷ୍ଟ୍ୟରତ୍ନ୍ୟେକହସ୍ତାନାଂ ନାଭିରୁତ୍ସେଧବିସ୍ତୃତା ।
ନେତ୍ରବେଦାଙ୍ଗୁଳୋପେତା କୁଣ୍ଡେଷ୍ୱନ୍ୟେଷୁ ବର୍ଦ୍ଧୟେତ୍ ।
ଯବଦ୍ୱୟକ୍ରମେଣୈବ ନାଭିଂ ପୃଥଗୁଦାରଧୀଃ ।
ନାଭିକ୍ଷେତ୍ରଂ ତ୍ରିଧା କୃତ୍ୱା ମଧ୍ୟେ କୁର୍ବୀତ କର୍ଣ୍ଣିକାଂ ।
ବହିରଂଶଦ୍ୱୟେନାଷ୍ଟୌ ପତ୍ରାଣି ପରିକଳ୍ପୟେତ୍ ।
ଯୋନିକୁଣ୍ଡେ ଯୋନିମବ୍‌ଜକୁଣ୍ଡେ ନାଭିଂ ଚ ବର୍ଜ୍ଜୟେତ୍ ।

(ପଞ୍ଚରାତ୍ରେ)

ବ୍ୟାଖ୍ୟା - ଉପରୋକ୍ତ କୁଣ୍ଡମାନଙ୍କ ମଧ୍ୟରେ ପଦ୍ମସଦୃଶ ନାଭି ନିର୍ମାଣ କରିବ । ଯଥା - ମୃଷ୍ଟି, ଅରତ୍ନି ଓ ହସ୍ତ ପରିମିତ କୁଣ୍ଡରେ ନାଭିର ଉଚ୍ଚତା ତିନିଆଙ୍ଗୁଳ ଓ ବିସ୍ତାର ଚାରିଆଙ୍ଗୁଳ କରିବ, ଯେପରି କୁଣ୍ଡମାନଙ୍କ ବିସ୍ତାର ବୃଦ୍ଧି ହେଉଥିବ, ସେହିପରି ନାଭି ମଧ୍ୟ ଦୁଇଯବ ପରିମାଣରେ ବୃଦ୍ଧି ହେଉଥିବ; କିନ୍ତୁ ନାଭିର ବୃଦ୍ଧିରେ ପଦ୍ମର ଆକାର ଯେପରି ବିଭିନ୍ନ ନ ହୁଏ । ସେହି ନାଭିକ୍ଷେତ୍ରକୁ ତିନିଭାଗରେ ବିଭକ୍ତ କରି ତାହାର ମଧ୍ୟ ଭାଗରେ କର୍ଣ୍ଣିକା ଓ ସେହି ପାର୍ଶ୍ୱ ଦୁଇଭାଗରେ ଅଷ୍ଟଦଳ ନିର୍ମାଣ କରିବ । କିନ୍ତୁ ଯୋନିକୁଣ୍ଡରେ ଯୋନି କରିବ ନାହିଁ ଓ ପଦ୍ମକୁଣ୍ଡରେ ନାଭି କରିବ ନାହିଁ ।

## ୪୯ - ସ୍ଥଣ୍ଡିଳ ଲକ୍ଷଣ

ନିତ୍ୟଂ ନୈମିତ୍ତିକଂ କାମ୍ୟଂ ସ୍ଥଣ୍ଡିଳେ ବା ସମାଚରେତ୍ ।
ହସ୍ତମାତ୍ରଂ ତୁ ତତ୍କୁର୍ଯ୍ୟାଦ୍‌ବାଲୁକାଭିଃ ସୁଶୋଭନଂ ।

(ତିଥ୍ୟାଦିତତ୍ତ୍ୱେ)

ସ୍ଥଣ୍ଡିଳଂ ଯଦି ଚ ନିର୍ମଳଂ ତଦା ଚାଳିନୀଗଳିତବାଲୁକାକୁଳୈଃ ।
ଉକ୍ଷିତୈଃ ସପଦି ଗୋମୟମ୍ବୁନା ନିର୍ମିମୀତ ଚତୁରସ୍ରମୁତ୍ତମଂ ।
ହସ୍ତମାତ୍ର ମପି ଶସ୍ତମଙ୍ଗୁଳୈଃ ସମ୍ମିତଂ ଖଳୁ ଚତୁର୍ଭିରୁଚ୍ଛ୍ରୟେ ।
ନିତ୍ୟହୋମମଥବା ନିମିତ୍ତତୋ ହୋମମତ୍ର ବିଦଧୀତ ସାଧକଃ ।

(ଦୁର୍ଗୋତ୍ସବଚନ୍ଦ୍ରିକାୟାଂ)

ବ୍ୟାଖ୍ୟା - ପ୍ରଥମେ ଭୂମିର ବାଲିକୁ ଚାଲୁଣୀରେ ଚଳାଇ ତାହା ଉପରେ ଗୋମୟଜଳ ଛିଞ୍ଚି ସ୍ଥଣ୍ଡିଳ ନିର୍ମାଣ କରିବ । ସେହି ସ୍ଥଣ୍ଡିଳର ପରିମାଣ ଦୀର୍ଘ



ହାତେ, ପ୍ରତି ହାତେ ଓ ଉଚ୍ଚତା ଚାରିଆଙ୍ଗୁଳ ହେବ ଏବଂ ସେ ଯେପରି ଚତୁଷ୍କୋଣ ଓ ଶୁଶୋଭନ ହୁଏ । ଏ ରୂପେ ସ୍ଥଣ୍ଡିଳରେ ନିତ୍ୟ ନୈମିତ୍ତିକ ଓ କାମ୍ୟହୋମ କରାଯାଏ ।

## ୫୦ - କୁଣ୍ଡ ଓ ସ୍ଥଣ୍ଡିଳର କର୍ମାନୁଯାୟୀ ନିର୍ମାଣ ବିଧି

ବ୍ରତେ ବିବାହେ ଚୂଡ଼ାୟାଂ ବେଦେ ଚ ସ୍ନାତକେ ତଥା ।
ବେଦ୍ୟାଂ ଭୂମୌଚରେଦ୍ଧୋମମନ୍ୟତ୍ର ସ୍ଥଣ୍ଡିଳେଷୁ ଚ ।

(ଶୁଦ୍ଧି ପ୍ରଦୀପେ)

ବ୍ୟାଖ୍ୟା - ଉପନୟନ, ବିବାହ, ଚୂଡ଼ାକର୍ମ, ବେଦାରମ୍ଭ ଓ ସମାବର୍ତ୍ତନ ଏହିସବୁ କର୍ମରେ ବେଦୀ ଉପରେ ଭୂମିରେ ହୋମ କରିବ । ଏତଭିନ୍ନ ଆଉ ସବୁ କର୍ମରେ ସ୍ଥଣ୍ଡିଳ ନିର୍ମାଣ କରି ହୋମ କରିବ ।

## ୫୧ - କଳଶର ପରିମାଣ*

ପଞ୍ଚାଶଦଙ୍ଗୁଳ ବ୍ୟାସ ଉତ୍ସେଧଃ ଷୋଡ଼ଶାଙ୍ଗୁଳଃ ।
କଳଶାନାଂ ପ୍ରମାଣଂ ତୁ ମୁଖମଷ୍ଟାଙ୍ଗୁଳଂ ସ୍ମୃତଂ ।
ଷଟ୍‌ତ୍ରିଂଶଦଙ୍ଗୁଳଂ କୁମ୍ଭଂ ବିସ୍ତାରୋନ୍ନତିଶାଳିନଂ ।
ଷୋଡ଼ଶଂ ଦ୍ୱାଦଶଂ ବାପି ତତୋନ୍ନ୍ୟୂନଂ ନ କାରୟେତ୍ ।

(ତନ୍ତ୍ରସାରେ)

ବ୍ୟାଖ୍ୟା - କଳଶର ବ୍ୟାସ (ବିସ୍ତାର) ପଞ୍ଚାଶ ଆଙ୍ଗୁଳ, ଉଚ୍ଚତା ଷୋଳ ଆଙ୍ଗୁଳ ଓ ମୁଖ ଆଠ ଆଙ୍ଗୁଳ କରିବ । ଅଭାବପକ୍ଷେ ଛତ୍ରିଶ ଆଙ୍ଗୁଳ କିମ୍ବା ଷୋଳ ଆଙ୍ଗୁଳ ଅଥବା ବାର ଆଙ୍ଗୁଳ ବିସ୍ତୃତ ଓ ଉନ୍ନତଶାଳୀ କୁମ୍ଭ କରିବ । ଏଥିରୁ ନ୍ୟୂନ କରିବ ନାହିଁ ।

## ୫୨ - ପାତ୍ର ଲକ୍ଷଣ

ହୋମପାତ୍ରେଣ ସର୍ବାଣି ଲଭେତ ଚେତି ତାନ୍ ମୁନେ ।
ଅର୍ଘ୍ୟଂ ଦତ୍ତ୍ୱାତୁ ରୌପ୍ୟେଣ ଆୟୁରାଜ୍ୟସୁତାନ୍ ଲଭେତ୍ ।

---

*୫୧କଳଂ- ବଧୁରାବ୍ୟକ୍ତଶବ୍ଦଂ-

ଶବତି-ଜଳପୂରଣ ସମୟେ ପ୍ରାପ୍ନୋତି ଇତି କଳଶଂ । ଜଳପୂରଣ ସମୟରେ କଳକଳ ଶବ୍ଦ କରେ ବୋଲି ତାହାର ନାମ କଳଶ ।

ତାମ୍ରପାତ୍ରେଣ ସୌଭାଗ୍ୟଂ ଧର୍ମଂ ମୃଣ୍ମୟସମ୍ଭବୈଃ ।
ବାର୍କ୍ଷପତ୍ରାଣି ରମ୍ୟାଣି ନୈଷ୍ଠିକାଦିଷୁ କାରୟେତ୍ ।
ବିବାହଯଜ୍ଞ ଶ୍ରାଦ୍ଧେଷୁ ପ୍ରତିଷ୍ଠାସୁ ବିଶେଷତଃ ।
ପାତ୍ରାଣାଂ ଚାଦରଃ କାର୍ଯ୍ୟଃ ପାତ୍ରାଣ୍ୟେବୋତ୍ତମାନି ଚ ।
ବଳିହୋମକ୍ରିୟାଦୀନି ବିନାପାତ୍ରୈର୍ନସିଧ୍ୟତି ।
ତସ୍ମାଦ୍ ଯଜ୍ଞାଙ୍ଗମେବାତଃ ପାତ୍ରଂ ଚାଗ୍ର୍ୟଂ ମହାମୁନେ ।
ଷଟ୍ତ୍ରିଂଶଦଙ୍ଗୁଳଂ ପାତ୍ରଂ ଚୋତମଂ ପରିକୀର୍ତ୍ତିତଂ ।
ମଧ୍ୟମଂ ତତ୍ତ୍ରିଭାଗେନ ଭାଗ * କନ୍ୟ ସମୀରିତଂ ।
ବସ୍ୱଙ୍ଗୁଳ ପ୍ରମାଣଂ ତୁ ତତ୍ପାତ୍ରଂ କାରୟେତ୍କ୍ୱଚିତ୍ ।
ନାନା ବିଚିତ୍ରରୂପାଣି ପୌଣ୍ଡରୀକାକୃତୀନି ଚ ।
ଶଙ୍ଖ ନୀଳୋତ୍ପଳାକାର ପାତ୍ରାଣି ପରିକଳ୍ପୟେତ୍ ।
ବିନା ପାତ୍ରେଣ ଯଃ କୁର୍ଯ୍ୟାତ୍ ପ୍ରତିଷ୍ଠାଂ ଯାଜ୍ଞିକୀଂ କ୍ରିୟାଂ ।
ବିଫଳା ସା ଭବେତ୍ ସର୍ବା ବାହନାଦି ଧନାପହା ।

(ଦେବୀପୂରାଣେ)

ବ୍ୟାଖ୍ୟା – ସୁବର୍ଣ୍ଣ ଅଥବା ରୌପ୍ୟପାତ୍ରରେ ଅର୍ଘ୍ୟ ଦେଲେ ଆୟୁଷ, ରାଜ୍ୟ ଓ ପୁତ୍ରାଦି ସମସ୍ତ ସୁଖ ଲାଭ ହୁଏ । ତାମ୍ରପାତରେ ସୌଭାଗ୍ୟ ଓ ମୃତ୍ତିକାପାତ୍ରରେ ଧର୍ମଲାଭ ହୁଏ; କିନ୍ତୁ ମନୋହର ଦାରୁଜ (କାଷ୍ଠ) ପାତ୍ର ନୈଷ୍ଠିକାଦି କର୍ମରେ କରିବା ବିହିତ । ବିବାହ, ଯଜ୍ଞ, ଶ୍ରାଦ୍ଧ ଓ ପ୍ରତିଷ୍ଠା ପ୍ରଭୃତି କର୍ମରେ ପାତ୍ର ଆବଶ୍ୟକ ହୁଏ । ଅତଏବ ପାତ୍ର ଆଦରଣୀୟ । ପାତ୍ର ବ୍ୟତୀତ ବଳିହୋମ ପ୍ରଭୃତି ସମସ୍ତ କାର୍ଯ୍ୟ ସିଦ୍ଧ ହୋଇପାରେ ନାହିଁ । ଏହି ହେତୁରୁ ପାତ୍ର ଯଜ୍ଞ ଶ୍ରେଷ୍ଠ ଅଙ୍ଗ ବୋଲି କଥିତ ହୋଇଅଛି । ଯଜ୍ଞାଦିରେ ଛତ୍ରିଶ ଆଙ୍ଗୁଳ ପରିମିତ ପାତ୍ର ଉତ୍ତମ, ସତାଇଶ ଆଙ୍ଗୁଳ ପରିମିତ ପାତ୍ର ମଧମ ଓ ନ' ଆଙ୍ଗୁଳ ପରିମିତ ପାତ୍ର ଅଧମ । କୌଣସି କୌଣସି କର୍ମରେ ଆଠଆଙ୍ଗୁଳ ପରିମିତ ପାତ୍ର ବ୍ୟବହୃତ ହୁଏ । ଏହି ପାତ୍ରମାନଙ୍କୁ ନାନାପ୍ରକାର ବିଚିତ୍ରରୂପ କରିବ । ଏହାର ଆକୃତି ଯେପରି ପଦ୍ମ, ଶଙ୍ଖ କିମ୍ବା ନୀଳୋତ୍ପଳାକାର ହେବ । ଯେଉଁ ଲୋକ ପାତ୍ର ବ୍ୟତିରେକେ ଯଜ୍ଞ ଓ ପ୍ରତିଷ୍ଠା ପ୍ରଭୃତି କ୍ରିୟା କରେ ତାହାର ସକଳକର୍ମ ବିଫଳ ହୁଏ ଏବଂ ବାହନାଦି ଧନ ବିନଷ୍ଟ ହୁଏ ।

## ୫୩ – ସାଧାରଣ ମଣ୍ଡପ ଲକ୍ଷଣ

ମଙ୍ଗଳେଷୁ ଚ ସର୍ବେଷୁ ମଣ୍ଡପୋଗୃହବାମତଃ ।
କାର୍ଯ୍ୟଃ ଷୋଡ଼ଶ ହସ୍ତୋ ବା ନ୍ୟୂନହସ୍ତୋ ଦଶାବଧିଃ ।

---

* କନ୍ୟତ୍ୱେନ ସୀୟତେ ଅବସୀୟତେ ଅନେକ ଇତି = କନ୍ୟସଂ ।



ସ୍ତମ୍ଭୈଶ୍ଚ ତୁର୍ଭିରେବାତ୍ର ବେଦୀମଧ୍ୟେ ପ୍ରତିଷ୍ଠିତା

(ସପ୍ତର୍ଷିମତଂ)

ବାସ୍ତୋରୀଶାନ ଭାଗେ ତୁ ମଣ୍ଡପଂ ରଚୟେତ୍ସୁଧୀଃ ।
ଷଡ୍‌ଦ୍ୱାଦଶାଷ୍ଟଭିର୍ହସ୍ତୈଃ ଷୋଡ଼ଶୈର୍ବା ସମନ୍ତତଃ ।
ଚତୁର୍ଦ୍ୱାରସମାଯୁକ୍ତଂ ତୋରଣାଦ୍ୟୈରଲଂକୃତଂ ।

(ବଶିଷ୍ଠ ସଂହିତାୟାଂ)

ବ୍ୟାଖ୍ୟା - ସପ୍ତର୍ଷି କରିଅଛନ୍ତି, ସମସ୍ତ ମଙ୍ଗଳକାର୍ଯ୍ୟରେ ଗୃହର ବାମ ଭାଗରେ ମଣ୍ଡପ କରିବ । ସେହି ମଣ୍ଡପର ପରିମାଣ ଷୋଳହାତରୁ ଅଧିକ ଓ ଦଶହାତରୁ ନ୍ୟୂନ ହେବ ନାହିଁ । ଏହାର ଦୀର୍ଘ ପ୍ରତି ସମାନ ହେବ । ଆଉ ମଧ୍ୟ ସେହି ମଣ୍ଡପରେ ଚାରିକୋଣରେ ଚାରିଗୋଟି ସ୍ତମ୍ଭ ପୋତି ତାହା ଉପରେ ଛାୟା କରିବ ଏବଂ ସେହି ମଣ୍ଡପର ମଧ୍ୟଭାଗରେ ଗୋଟିଏ ବେଦୀ କରିବ । ବଶିଷ୍ଠସଂହିତାରେ ଉକ୍ତ ଅଛି ଯେ ଘରର ଈଶାନଭାଗରେ ଛ'ହାତ, ବାରହାତ, ଆଠହାତ କିମ୍ବା ଷୋଳହାତ ପରିମିତ ସମଚତୁରସ୍ର ଓ ଚତୁର୍ଦ୍ଦିଗରେ ଚତୁର୍ଦ୍ୱାରବିଶିଷ୍ଟ ଏବଂ ତୋରଣାଦିଦ୍ୱାରା ସୁଶୋଭିତ କରି ଗୋଟିଏ ମଣ୍ଡପ ନିର୍ମାଣ କରିବ । ଏ ଉଭୟମତରେ କେବଳ ହାତର ତାରତମ୍ୟ ଦେଖାଯାଏ ଓ ଆଉ ସବୁ ବିଷୟରେ ଉଭୟଙ୍କର ସମାନ ।

## ୫୪ - ମଣ୍ଡପସ୍ଥିତ ବେଦୀ ଲକ୍ଷଣ

ତ୍ରିଧାମଧ୍ୟସୂତ୍ରଂ ବିଭଜ୍ୟାଥ ମଧ୍ୟେ ତ୍ରିଭାଗେନ ବେଦୀଷ୍ଟକାଭିର୍ବିଧେୟା ।
ସମାବେଦ କୋଟି ତଦୁଚ୍ଛ୍ରୟଇଷ୍ଟସ୍ତ୍ରିବେଦେଷୁ ସପ୍ତଗ୍ରହେଶାଂଶକୈଷ୍ଟ ।

(ପଣ୍ଡିତ ସର୍ବସ୍ୱେ)

ବ୍ୟାଖ୍ୟା – ମଣ୍ଡପମଧ୍ୟସ୍ଥ ଭୂମିର ଦୈର୍ଘ୍ୟ ଓ ବିସ୍ତାର ସୂତା ପକାଇ ସମାନ ତିନି ଅଂଶରେ ବିଭକ୍ତ କରି, ତାହାର ମଧ୍ୟ ଅଂଶରେ ଇଟାଦ୍ୱାରା ଗୋଟିଏ ସମଚତୁରସ୍ର ବେଦୀ ନିର୍ମାଣ କରିବ ଏବଂ ସେହି ବେଦୀର ପ୍ରସାର ଯେତେ ହେବ, ତାହାର ଷୋଳଅଂଶରୁ ତିନିଅଂଶ କିମ୍ବା ଚାରିଅଂଶ, ପାଞ୍ଚଅଂଶ, ସାତଅଂଶ, ନଅଅଂଶ, ଅଥବା ଏଗାରଅଂଶ ପରିମାଣରେ ବେଦୀକୁ ଉଚ୍ଚ କରିବ ।

---

* ତୋରଣ-୧ ପତ୍ର ପୁଷ୍ପାଦି ଗ୍ରଥିତ ବହିର୍ଦ୍ୱାରସ୍ଥିତ ମାଳା; ୨-ଦ୍ୱାର ତୋରଣ କାଷ୍ଠ (ବିଶ୍ୱକୋଷ)

## ୫୫ - ମଣ୍ଡପରେ କେଉଁ କେଉଁ କର୍ମ କରିବାର ପ୍ରମାଣ

ପଞ୍ଚସୁ ବହିଃଶାଲାୟଂ ବିବାହେ ଚୂଡ଼ାକରଣ ଉପନୟନେ
କେଶାନ୍ତେ ସୀମନ୍ତୋନ୍ନୟନ ଇତି ।
(ପାରସ୍କର ଗୃହ୍ୟସୂତ୍ର ୧ମ କାଣ୍ଡ ୪ କଣ୍ଡିକା ୨ ସୂତ୍ର)

ବ୍ୟାଖ୍ୟା - ବିବାହ, ଚୂଡ଼ାକରଣ, ଉପନୟନ, ସମାବର୍ତ୍ତନ ଓ ସୀମନ୍ତୋନ୍ନୟନ ଏହି ପାଞ୍ଚଗୋଟି କର୍ମ ବହିଃଶାଲା ଅର୍ଥାତ୍ ଗୃହର ବାହାର ମଣ୍ଡପରେ କରିବ । ଅନ୍ୟାନ୍ୟ କର୍ମ ଗୃହ ଭିତରେ ବା ଗୃହ ବାହାର ମଣ୍ଡପରେ ଉଭୟତ୍ର ହୋଇପାରେ ।

## ୫୬ - ବିବାହମଣ୍ଡପ ଲକ୍ଷଣ ଓ ପ୍ରତିଷ୍ଠା

ଷୋଡ଼ଶାରତ୍ନିକଂ କୁର୍ଯ୍ୟାଚ୍ଚତୁର୍ଦ୍ୱାରୋପଶୋଭିତଂ ।
ମଣ୍ଡପଂ ତୋରଣୈର୍ଯୁକ୍ତଂ ତତ୍ରବେଦୀଂ ପ୍ରକଳ୍ପୟେତ୍ ।
(ବଶିଷ୍ଠଃ)

ବ୍ୟାଖ୍ୟା – ଷୋଡ଼ଶ ଅରତ୍ନି ଦୀର୍ଘ ଓ ଷୋଡ଼ଶ ଅରତ୍ନି ପ୍ରତି ଏରୂପ ଗୋଟିଏ ମଣ୍ଡପ କରିବ । ତାହାର ଚତୁର୍ଦ୍ଦିଗରେ ଚାରିଗୋଟି ଦ୍ୱାର କରି ଓ ତାହାକୁ ତୋରଣ ଦ୍ୱାରା ସୁଶୋଭିତ କରି ତନ୍ମଧ୍ୟରେ ବେଦୀ ନିର୍ମାଣ କରିବ ।

ବିବାହମଣ୍ଡପପ୍ରତିଷ୍ଠାବିଧି ଯଥା – ତତୋ ବ୍ରାହ୍ମଣାନୁପବେଶ୍ୟ ସ୍ୱସ୍ତିବାଚନଂ କୁର୍ଯ୍ୟାତ୍ । ମଣ୍ଡପ ପ୍ରତିଷ୍ଠାଂ ଚୈବଂ । ଦୁର୍ବାଶମୀପଲ୍ଲବବକୁଳବୃକ୍ଷପଲ୍ଲବାନାମ୍ରାଦି ପ୍ରଶସ୍ତବୃକ୍ଷପତ୍ର ବେଷ୍ଟିତାନ୍ ସୂତ୍ରେଣ ପଞ୍ଚଧା ବେଷ୍ଟୟେତ୍ । ଆଗ୍ନେୟକୋଣସ୍ଥ ମଣ୍ଡପସ୍ତମ୍ଭୋପରି ନନ୍ଦିନୀନାମକଂ ବେଷ୍ଟିତଂ ମନୋଜୂତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତେର୍ଯଜ୍ଞମିମଂ ତନୋତୁ । ଅରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ ବିଶ୍ୱେଦେବା ସଇହମା ଜୟନ୍ତ ମୋଂପ୍ରତିଷ୍ଠ ଇତି ମନ୍ତ୍ରେଣ ଜୀବନ୍ୟାସଂ କୃତ୍ୱା ନନ୍ଦିନୀଂ ପୂଜୟେତ୍ । ତଚ୍ଚୈଥ୍ଂ ଓଁ ଆପୋହିଷ୍ଠା ମୟୋଭୁବସ୍ତାନ ଉର୍ଜେ ଦଧାତନ ମହେରଣାୟ ଚକ୍ଷସେ ।

---

* ପଞ୍ଚସୁ ସଂସ୍କାର କର୍ମସୁ ବହିଃ ଶାଲାୟାଂ-ଗୃହାଦ୍ବହିଃଶାଲା-ବହିଃଶାଲା ମଣ୍ଡପ ଇତି ଯାବତ୍ । ତସ୍ୟା କର୍ମ ଭବତି । ଯଥା-ବିବାହେ-ହରିଶୟନେ, ଚୂଡ଼ାକରଣେ-କ୍ଷୌରକର୍ମଣି, ଉପନୟନେ-ମେଖଳାବନ୍ଧେ, କେଶାନ୍ତେ-ଗୋଦାନକର୍ମଣି, ସୀମନ୍ତୋନ୍ନୟନେ-ଗର୍ଭସଂସ୍କାରେ । ଏତେଷୁ ପଞ୍ଚ ବହିଃଶାଲାୟାଂ ଅନୁଷ୍ଠାନଂ ଅନ୍ୟତ୍ର ଗୃହାଭ୍ୟନ୍ତରେ ମୁଖ୍ୟଶାଲାମେବ ।

(ହରିହରଭାଷ୍ୟେ)

ଇତିପାଦପ୍ରକ୍ଷାଳନଂ । ଓଁ ଗନ୍ଧଦ୍ୱାରାଂ ଦୁରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ । ଈଶ୍ୱରୀଂ ସର୍ବଭୂତାନାଂ ତ୍ୱାମିହୋପହ୍ୱୟେଶ୍ରିୟଂ । ଇତି ଗନ୍ଧାକ୍ଷତଂ । ଦଧିକ୍ରାବ୍‌ଣୋ ଅକାରିଷଂ ଜିଷ୍ଣୋରଶ୍ୱସ୍ୟ ବାଜିନଃ । ସୁରଭିନୋମୁଖା କରତ୍ ପ୍ରଣ ଆୟୁଁଷିତାରିଷତ୍ । ଇତି ଦଧି । କଣ୍ଡାତ୍କାଣ୍ଡାତ୍‌ପ୍ରରୋହନ୍ତୀ ପୁରୁଷଃ ପରୁଷସ୍ପରି । ଏବାନୋଦୁର୍ବେ ପ୍ରତନୁ ସହସ୍ରେଣ ଶତେନ ଚ । ଇତି ଦୁର୍ବାପୁଷ୍ପାଣି ଚ ସମର୍ପୟେତ୍ । ତତୋନୈର୍ଋତ୍ୟ ବାୟବ୍ୟୈଶାନସ୍ତମ୍ଭେଷୁ ମଣ୍ଡପମଧ୍ୟୋପରିଭାଗେ କାଷ୍ଠେ ଚ କ୍ରମେଣ ନଳିନୀ ମୈତ୍ରୁମା ପଶୁବର୍ଦ୍ଧନୀ ନାମକ ଦେଷ୍ଟି ତାନି ପୂର୍ବବତ୍ ସ୍ଥାପୟିତ୍ୱା ପୂଜୟେତ୍ । ତତୋ ମାତୃପୂଜନଂ । ବସୋର୍ଦ୍ଧାରା ପୂଜନଂ ଆୟୁଷ୍ୟଂ ବର୍ଚ୍ଚସ୍ୱ ଇତ୍ୟାୟୁଷ୍ୟ ଜପଂ ଭୋଜ୍ୟୋତ୍ସର୍ଗଂଚ କୁର୍ଯ୍ୟାତ୍ । ଇତି ।

(ଗଦାଧରଭାଷ୍ୟୋଦ୍ଧୃତା)

**ବ୍ୟାଖ୍ୟା** - ବ୍ରାହ୍ମଣମାନେ ମଣ୍ଡପରେ ବସି ସ୍ୱସ୍ତିବାଚନ କରିବେ । ତତ୍ପରେ ସେହି ମଣ୍ଡପସ୍ତମ୍ଭରେ ଦୁର୍ବା, ଶମୀପତ୍ର, ବକୁଳପତ୍ର, ଆମ୍ବପତ୍ର ପ୍ରଭୃତି ପ୍ରଶସ୍ତବୃକ୍ଷମାନଙ୍କର ପତ୍ର ବାନ୍ଧି ସୁଶୋଭିତ କରିବେ । ତତ୍ପରେ ଉକ୍ତ ଚାରି ଗୋଟା ସ୍ତମ୍ଭରେ ପାଞ୍ଚଥର ସୂତା ଗୁଡ଼ାଇବେ । ମଣ୍ଡପର ଆଗ୍ନେୟକୋଣ ସ୍ତମ୍ଭରେ ଉପରଲିଖିତ "ମନୋଜୁତି" ମନ୍ତ୍ର ପଢ଼ି ନନ୍ଦିନୀକୁ ପ୍ରତିଷ୍ଠା କରି ପୂଜା କରିବେ । ଉପରଲିଖିତ 'ଆପୋହିଷ୍ଠା' ମନ୍ତ୍ରରେ ନନ୍ଦିନୀଙ୍କର ପାଦ ଧୋଇଦେବେ । ଉପରୋକ୍ତ "ଗନ୍ଧଦ୍ୱାରା" ମନ୍ତ୍ରଦ୍ୱାରା ଗନ୍ଧ ଅକ୍ଷତ ଦେବେ । ଉପରୋକ୍ତ "ଦଧିକ୍ରାବଣୋ" ମନ୍ତ୍ରରେ ଦଧି ଦେବେ । ଉପରୋକ୍ତ "କାଣ୍ଡାତ୍କାଣ୍ଡାତ୍" ମନ୍ତ୍ର ପଢ଼ି ଦୁର୍ବା ଓ ପୁଷ୍ପ ଦେବେ । ତାହାପରେ ନୈର୍ଋତସ୍ତମ୍ଭରେ "ନନ୍ଦିନୀଙ୍କୁ ଉପରୋକ୍ତ ବିଧିରେ ପୂଜା କରିବେ । ବାୟୁକୋଣ ସ୍ତମ୍ଭରେ "ମୈତ୍ରୀ" ଓ ଈଶାନକୋଣ ସମ୍ଭରେ "ଉମା" ମଣ୍ଡପମଧ୍ୟସ୍ଥ ଅନ୍ୟାନ୍ୟ କାଠରେ ପଶୁବର୍ଦ୍ଧନୀଙ୍କୁ ଉପରୋକ୍ତ ବିଧିରେ ପୂଜା କରିବେ । ତତ୍ପରେ ମାତୃପୂଜା, ବସୋର୍ଦ୍ଧାରା, "ଆୟୁଷ୍ୟମନ୍ତ୍ର" ଜପ ଓ ଭୋଜ୍ୟୋତ୍ସର୍ଗପ୍ରଭୃତି କର୍ମ କରି ପ୍ରତିଷ୍ଠା କର୍ମ ଶେଷ କରିବେ ।

## ୫୭ - ବିବାହବେଦୀ ଲକ୍ଷଣ

ହସ୍ତୋଚ୍ଛ୍ରିତାଂ ଚତୁର୍ହସ୍ତୈଶ୍ଚ ତୁର୍ହସ୍ତାଂ ସମନ୍ତତଃ ।
ସ୍ତମ୍ଭୈଶ୍ଚତୁର୍ଭିଃ ସୁଶ୍ଳକ୍ଷଣାଂ ବାମଭାଗେତୁ ସଦ୍ମନଃ ।
ସମାଂ ତଥା ଚତୁର୍ଦ୍ଦିକ୍ଷୁ ସୋପାନୈରତି ଶୋଭିତାଂ ।
ପ୍ରାଗୁଦକ୍ ପ୍ରବଣାଂରମ୍ଭାସ୍ତମ୍ଭହଂସ ଶୁକାଦିଭିଃ ।
ଏବଂ ବିଧାମାରୁରରୁକ୍ଷେନ୍ମିଥୁନଂ ସାଗ୍ନିବେଦିକାଂ ।

(ନାରଦଃ)

ବ୍ୟାଖ୍ୟା- ଚାରିହାତ ଦୀର୍ଘ, ଚାରିହାତ ପ୍ରସ୍ଥ ଓ ହାତେ ଉଚ୍ଚ ଏପରି ଗୋଟିଏ ସୁନ୍ଦର ବେଦୀ ଗୃହ ଦ୍ୱାରର ବାମଭାଗ ମଣ୍ଡପରେ କରିବ ଏବଂ ସେହି ବେଦୀର ଉପରିଭାଗକୁ ସମାନ କରି ପୂର୍ବ ଓ ଉତ୍ତରପାର୍ଶ୍ୱକୁ କିଞ୍ଚିତ୍ ଗଡ଼ାଣିଆ କରିଦେବ ଓ ତାହାର ଚାରିକୋଣରେ ଚାରିଗୋଟି ସ୍ତମ୍ଭ ପୋତି ତାହା ଉପରେ ଚାନ୍ଦୁଆ ଓ ହଂସଶୁକାଦି ଦ୍ୱାରା ସୁସଜ୍ଜିତ କରିବ ଏବଂ ବେଦୀର ଚାରିପାଖରେ ଚାରିଗୋଟି ସୋପାନ (ପାହାଚ) କରିବ । ଏହିରୂପ ବେଦୀରେ ଅଗ୍ନିସ୍ଥାପନ କରି ବରକନ୍ୟାଙ୍କୁ ବସାଇବ ।

## ୫୮ - ମଣ୍ଡଳ ବିଧାନ

ସମଂ ସ୍ଥାନଂ ଶୁଭଂ କୃତ୍ୱା ଗୋମୟେନୋପଲେପିତଂ ।
ଚନ୍ଦନାଗୁରୁ କର୍ପୂରକ୍ଷୋଦଧୂପାଧିବାସିତଂ ।
ସବ୍ୟାବଲମ୍ବହସ୍ତସ୍ତୁ ରଜଃ ପାତଂ ସମାଚରେତ୍ ।
ମଧ୍ୟମାନାମିକାଙ୍ଗୁଷ୍ଠୈରୁପରିଷ୍ଟାଦ୍ୟଥେଛୟା ।
ଅଧୋମୁଖାଙ୍ଗୁଳିଂ କୃତ୍ୱାପାତୟେତ୍ତୁ ବିଚକ୍ଷଣଃ ।
(ଦେବୀପୁରାଣ ପୁଷ୍ପାଭିଷେକଚିନ୍ତାନାମାଧ୍ୟାୟେ)

ବ୍ୟାଖ୍ୟା - ପ୍ରଥମରେ ମଣ୍ଡଳସ୍ଥାନକୁ ସମତଳ କରି ଓ ତହିଁରେ ଗୋମୟ ଲେପନ କରି ସେହି ସ୍ଥାନକୁ ଚନ୍ଦନ, ଅଗୁରୁ, କର୍ପୂରଚୂର୍ଣ୍ଣ ଓ ଧୂପଦ୍ୱାରା ସୁବାସିତ କରିବ । ତତ୍ପରେ ବାମହସ୍ତ ଦ୍ୱାରା ଦକ୍ଷିଣହସ୍ତକୁ ଧରି ଓ ଦକ୍ଷିଣହସ୍ତର ମଧ୍ୟମା, ଅନାମିକା ଓ ଅଙ୍ଗୁଷ୍ଠ ଏହି ତିନି ଆଙ୍ଗୁଳିକୁ ଅଧୋମୁଖ କରି ମୁରୁଜ ଧରି ରେଖାବିନ୍ୟାସ କଲେ ସେ ସବୁ ରେଖା ସମାନ ଓ ଅବିଚ୍ଛିନ୍ନ ହେବ । ସାରକଥା ଏହି ଯେ କେବଳ ଡାହାଣହାତ ଦ୍ୱାରା ରେଖାବିନ୍ୟାସ କଲେ ହାତର କମ୍ପନଦ୍ୱାରା କାଳେ ରେଖାସବୁ ବିଚ୍ଛିନ୍ନ ହୋଇଯିବ, ଏଥିସକାଶେ ବାମହସ୍ତରେ ଦକ୍ଷିଣହସ୍ତକୁ ଧରି ମୁରୁଜବିନ୍ୟାସ କରିବ ।

## ୫୯ - ପଞ୍ଚବର୍ଣ୍ଣଚୂର୍ଣ୍ଣ ଲକ୍ଷଣ

ପୀତଂ ହରିଦ୍ରାଚୂର୍ଣ୍ଣ ସ୍ୟାତ୍ ସିତଂ ତଣ୍ଡୁଳସମ୍ଭବଂ ।
କୁସୁମ୍ଭଚୂର୍ଣ୍ଣମରୁଣଂ କୃଷ୍ଣଂ ଦଗ୍ଧପୁଲାକଜଂ ।
ବିଲ୍ୱାଦି ପତ୍ରଜଂ ଶ୍ୟାମମିତ୍ୟୁକ୍ତଂ ବର୍ଣ୍ଣପଞ୍ଚକଂ ।
(ତନ୍ତ୍ରସାରେ)

ବ୍ୟାଖ୍ୟା - ପୀତ (ହଳଦୀଚୂନା), ଶୁକ୍ଳ (ଚାଉଳଚୂନା), ରକ୍ତ (କୁସୁମ୍ଭ ପୁଷ୍ପଚୂନା), କଳା (ଅଗାଡ଼ି ଧାନକୁ ପୋଡ଼ି ତାହାର ଚୂନା), ଶ୍ୟାମ (ବିଲ୍ୱଧାତ୍ରୀ ପ୍ରଭୃତି ପତ୍ରର ଚୂନା), ଏହି ପଞ୍ଚବିଧଚୂର୍ଣ୍ଣ କୁଣ୍ଡ ମଣ୍ଡଳାଦିରେ ବ୍ୟବହୃତ ହୁଏ ।



## ୬୦ - ମଣ୍ଡଳରେ ଖାନ୍ନ୍ୟନାଧିକ୍ୟର ଫଳାଫଳ

ସମାରେଖା ତୁ କର୍ତ୍ତବ୍ୟାଽବିଚ୍ଛିନ୍ନା ପୁଞ୍ଜବର୍ଜିତା ।
ଅଙ୍ଗୁଷ୍ଠପର୍ବ ବୈପୁଲ୍ୟା ସମାକାର୍ଯ୍ୟା ବିଜାନତା ।
ସଂସକ୍ତଂ ବିଷମଂ ସ୍ଥୁଳଂ ବିଚ୍ଛିନ୍ନଂ କୃଶରାବୃତଂ ।
ପର୍ଯ୍ୟନ୍ତସର୍ପିତଂ ହ୍ରସ୍ୱମାଲିଖେନ୍ନ କଦାଚନ ।
ସଂସକ୍ତେ କଳହଂ ବିଦ୍ୟାଦ୍‌ବକ୍ରରେଖେ ତୁ ବିଗ୍ରହଂ ।
ଅତିସ୍ଥୁଳେ ବଭେଦ୍‌ବ୍ୟାଧିର୍ନିତ୍ୟଂ ପୀଡ଼ା ବିମିଶ୍ରିତେ ।
ବିନ୍ଦୁଭିର୍ଭୟମାପ୍ନୋତି ଶତ୍ରୁ ପକ୍ଷାନ୍ନ ସଂଶୟଃ ।
କୃଶାୟାଂ ଚାର୍ଥହାନିଃ ସ୍ୟାଦ୍‌ବିଚ୍ଛିନ୍ନେ ମରଣଂ ଧ୍ରୁବଂ ।
ବିପ୍ରଯୋଗୋ ଭବେତ୍ତସ୍ୟ ଇଷ୍ଟଦ୍ରବ୍ୟ ସୁତସ୍ୟ ବା ।
ଅବିଦିତ୍ୱାଲିଖେଦ୍‌ଯସ୍ତୁ ମଣ୍ଡଳନ୍ତୁ ଯଥେପ୍‌ସୟା ।
ସର୍ବଦୋଷା ନ ବାପ୍ନୋତି ଯେ ଦୋଷାଃ ପୂର୍ବ ଭାଷିତାଃ ।

(ଦେବୀପୁରାଣ ପୁଷ୍ପାଭିଷେକ ଚିନ୍ତାନାମାଧ୍ୟାୟେ)

ବ୍ୟାଖ୍ୟା - ମଣ୍ଡଳର ରେଖାଗୁଡ଼ିକ ସମାନ ଅବିଚ୍ଛିନ୍ନ ଓ ପୁଞ୍ଜବର୍ଜିତ କରିବ । ସେମାନେ ଅଙ୍ଗୁଷ୍ଠ ପବରୁ ଅଧିକ ମୋଟ ହେବ ନାହିଁ । କିନ୍ତୁ ସଂସକ୍ତ (ପରସ୍ପର ମିଳିତ), ବିଷମ (ଅସମାନ), ଅଧିକ ସ୍ଥୁଳ (ଅଧିକ ମୋଟ) ବିଚ୍ଛିନ୍ନ (ଖଣ୍ଡଖଣ୍ଡିଆ), କୃଶରାବୃତ (ଏକାରଙ୍ଗ ଉପରେ ଅନ୍ୟରଙ୍ଗ ପକାଇବା), ପ୍ରାନ୍ତବିଷର୍ପି (ସୀମାଲଘିତ), ହ୍ରସ୍ୱ (ଛୋଟ), ଏପରି ରେଖାବିଶିଷ୍ଟ ମଣ୍ଡଳ ଲେଖିବ ନାହିଁ, ଲେଖିଲେ ନିମ୍ନଲିଖିତ ଫଳ ହୁଏ; ଯଥା – ସଂସକ୍ତ ରେଖାଯୁକ୍ତ ମଣ୍ଡଳରେ କଳହ, ବକ୍ରରେଖାଯୁକ୍ତ ମଣ୍ଡଳରେ ବିଗ୍ରହ (ଯୁଦ୍ଧ), ଅତିଶୟ ସ୍ଥୁଳରେଖାଯୁକ୍ତ ମଣ୍ଡଳରେ ବ୍ୟାଧି, ମିଶ୍ରିତ ରେଖାଯୁକ୍ତ ମଣ୍ଡଳରେ ପୀଡ଼ା ହୁଏ । ବିନ୍ଦୁଯୁକ୍ତ ରେଖାରେ ଶତ୍ରୁ ଭୟ, କୃଶ (ସରୁ) ରେଖାରେ ଅର୍ଥହାନି ଓ ବିଚ୍ଛିନ୍ନ ରେଖାରେ ମୃତ୍ୟୁ, ଇଷ୍ଟନାଶ, ଧନହାନି ଓ ସୁତବିଚ୍ଛେଦ ପ୍ରଭୃତି ନାନାବିଧ ଅଶୁଭ ଘଟଇ । ଯେଉଁ ବ୍ୟକ୍ତି ମଣ୍ଡଳର ଏସବୁ ବିଷୟ ନ ଜାଣି ମଣ୍ଡଳ ପ୍ରସ୍ତୁତ କରେ, ସେ ପୂର୍ବୋକ୍ତ ସର୍ବପ୍ରକାର ଦୋଷ ପ୍ରାପ୍ତ ହୁଏ ।

## ୬୧ - ଗ୍ରହମଣ୍ଡଳ ବିଧାନ

ଗ୍ରହାଣାଂ ମଣ୍ଡଳଂ କାର୍ଯ୍ୟଂ ହସ୍ତମାତ୍ରଂ ପ୍ରଶସ୍ୟତେ ।
ଚତୁଷ୍କୋଣଂ ଚତୁର୍ହସ୍ତଂ ଚତୁର୍ଦ୍ଦିକ୍ଷୁସୁଶୋଭନଂ ।

ତ୍ରିଣୀ ପ୍ରାଦେଶ ମାତ୍ରାଣି ଗ୍ରହସ୍ଥାନାନି କାରୟେତ୍ ।
ମଣ୍ଡଳସ୍ୟ ଲିଖେନ୍ମଧ୍ୟେ ରବିଂ ରକ୍ତଂ ସୁବର୍ତ୍ତୁଳଂ ।
ଅଗ୍ନିକୋଣେ ସିତଂ ଚନ୍ଦ୍ରଂ ଚନ୍ଦ୍ରାର୍ଦ୍ଧସଦୃଶା କୃତିଂ ।
ଦକ୍ଷିଣେ ମଙ୍ଗଳଂ କୁର୍ଯ୍ୟାତ୍ତ୍ରିକୋଣଂ ଲୋହିତଂ ଶୁଭଂ ।
ଐଶାନେ ଧନୁରାକାରଂ ପୀତବର୍ଣ୍ଣଂ ତୁ ସୋମଜଂ ।
ଉତ୍ତରେ ପୀତବର୍ଣ୍ଣଂ ଚ ପଦ୍ମାକାରଂ ବୃହସ୍ପତିଂ ।
ଶୁକ୍ଳବର୍ଣ୍ଣଂ ତୁ ପୂର୍ବସ୍ୟାଂ ଚତୁରସ୍ରଂ ଭୃଗୋଃସୁତଂ ।
ପଶ୍ଚିମେ ପୁରୁଷାକାରଂ କୃଷ୍ଣବର୍ଣ୍ଣଂ ଶନୈଶ୍ଚରଂ ।
ନୈର୍ଋତ୍ୟାଂ ମକରାକାରଂ କୃଷ୍ଣାଙ୍ଗଂ ସିଂହିକାସୁତଂ ।
ଧୂମ୍ରବର୍ଣ୍ଣଂ ତୁ ବାୟବ୍ୟାଂ କେତୁଂ ସର୍ପାକୃତିଂ ଲିଖେତ୍ ।
ଦ୍ୱାଦଶାଙ୍ଗୁଳମାଦିତ୍ୟଂ ହିମାଂଶୁ ଷୋଡ଼ଶାଙ୍ଗୁଳଂ ।
ପଞ୍ଚାଙ୍ଗୁଳଂ କୁଜଂ ବିଦ୍ୟାଦ୍‌ବୁଧଂ ଚ ଚତୁରଙ୍ଗୁଳଂ ।
ଜୀବଂ ଷଡ଼ାଙ୍ଗୁଳଂକୁର୍ଯ୍ୟାଭା ର୍ଗବଂ ଚତୁରାଙ୍ଗୁଳଂ ।
ଅଷ୍ଟାଙ୍ଗୁଳଂ ଶନିଂ ବିଦ୍ୟା ଦ୍ରାହୁଂ ଚ ଚତୁରଙ୍ଗୁଳଂ ।
କେତୁଂ ଷଡ଼ାଙ୍ଗୁଳଂ ଚୈବ ଗ୍ରହ ବିସ୍ତୃତିରୁଚ୍ୟତେ ।

(ଗୃହ୍ୟସୂତ୍ରକାରିକାୟାଂ ବାମଦେବଃ)

ବ୍ୟାଖ୍ୟା – ପ୍ରଥମେ ଧଳା ମୁରୁଜରେ ହସ୍ତପରିମିତ ଚତୁର୍ଦ୍ୱାର ବିଶିଷ୍ଟ ସମଚତୁର୍ଭୁଜ କ୍ଷେତ୍ର ଅଙ୍କିତ କରିବ । ତାହାମଧରେ ଧଳା ମୁରୁଜ ଦ୍ୱାରା ଦୀର୍ଘରେ ଦୁଇଗୋଟି ରେଖା ଓ ପ୍ରତିରେ ଦୁଇଗୋଟି ରେଖା ଏପରି ଭାବରେ କାଟିବ ଯେପରି ପ୍ରାଦେଶ ପରିମିତ ସମାନ ନଅଗୋଟି କୋଠି ହେବ । ତନ୍ମଧ୍ୟରୁ ମଧ୍ୟକୋଠିରେ ରକ୍ତବର୍ଣ୍ଣ ମୁରୁଜ ଦ୍ୱାରା ସୂର୍ଯ୍ୟଙ୍କର ବର୍ତ୍ତୁଳାକାର ମୂର୍ତ୍ତି ଲେଖିବ, ଯେପରି ତାହାର ଘେର ବାରଆଙ୍ଗୁଳ ହେବ ।

ଅଗ୍ନିକୋଣ କୋଠିରେ ଶୁକ୍ଳବର୍ଣ୍ଣ ମୁରୁଜ ଦ୍ୱାରା ଚନ୍ଦ୍ରଙ୍କର ଅର୍ଦ୍ଧଚନ୍ଦ୍ରାକୃତି ମୂର୍ତ୍ତି ଲେଖିବ । ଯେପରି ତାହାର ସମୁଦାୟ ଆକୃତି ଷୋଳ ଆଙ୍ଗୁଳ ହେବ ।

ଦକ୍ଷିଣ କୋଠିରେ ରକ୍ତବର୍ଣ୍ଣ ମୁରୁଜଦ୍ୱାରା ମଙ୍ଗଳଙ୍କର ତ୍ରିକୋଣାକାର ମୂର୍ତ୍ତି ଲେଖିବ, ଯେପରି ତାହାର ଆକୃତି ପାଞ୍ଚ ଆଙ୍ଗୁଳ ହେବ ।

ଈଶାନକୋଣ କୋଠିରେ ହଳଦୀଚୂନା ଦ୍ୱାରା ବୁଧଙ୍କର ଧନୁରାକାର ମୂର୍ତ୍ତି ଲେଖିବ । ଯେପରି ତାହାର ଆକୃତି ଚାରି ଆଙ୍ଗୁଳ ହେବ ।



ଉତ୍ତରକୋଠିରେ ହଳଦୀଚୂନା ଦ୍ୱାରା ବୃହସ୍ପତିଙ୍କର ପଦ୍ମାକାର ମୂର୍ତ୍ତି ଲେଖିବ, ଯେପରି ତାହାର ଆକୃତି ଛ'ଆଙ୍ଗୁଳ ହେବ ।

ପୂର୍ବଦିଗ କୋଠିରେ ଶୁକ୍ଳବର୍ଣ୍ଣ ମୁରୁଜଦ୍ୱାରା ଶୁକ୍ରଙ୍କର ଚତୁରସ୍ର ମୂର୍ତ୍ତି ଅଙ୍କିତ କରିବ, ଯେପରି ତାହାର ଆକୃତି ଚାରି ଆଙ୍ଗୁଳ ହେବ ।

ପଶ୍ଚିମ କୋଠିରେ କୃଷବର୍ଣ୍ଣ ମୁରୁଜଦ୍ୱାରା ଶନିଙ୍କର ପୁରୁଷାକାର ମୂର୍ତ୍ତି ଲେଖିବ, ଯେପରି ତାହାର ଆକୃତି ଆଠ ଆଙ୍ଗୁଳ ହେବ ।

ନୈର୍ଋତ କୋଣ କୋଠିରେ କୃଷବର୍ଣ୍ଣ ମୁରୁଜଦ୍ୱାରା ରାହୁଙ୍କର ମକରାକାର ମୂର୍ତ୍ତି ଲେଖିବ, ଯେପରି ତାହାର ଆକୃତି ଚାରି ଆଙ୍ଗୁଳ ହେବ ।

ବାୟୁକୋଣ କୋଠିରେ ଧୂମ୍ରବର୍ଣ୍ଣ ମୁରୁଜ ଦ୍ୱାରା କେତୁଙ୍କର ସର୍ପାକୃତି ମୂର୍ତ୍ତି ଲେଖିବ, ଯେପରି ତାହାର ଆକୃତି ଛ'ଆଙ୍ଗୁଳ ହେବ ।

## ୬୩ - ଦିକ୍‌ପାଳମଣ୍ଡଳ

ରେଖାଶ୍ଚତୁଃ ସମାଃକାର୍ଯ୍ୟା ଦୀର୍ଘ ପ୍ରତି ସମଂ ଭବେତ୍ ।

* ଚତୁର୍ଦ୍ଦିକ୍ଷୁ ଚତୁର୍ବାସ୍ତୁ ଚତୁଷ୍କୋଣେଽପି ତଭବେତ୍ ।

ବାସବେଶାନୟୋର୍ମଧ୍ୟେ ଭବେଦ୍ଧ ବ୍ରହ୍ମଣୋ ଗୃହଂ ।

ନୈର୍ଋତବରୁଣୟୋର୍ମଧ୍ୟେ ଅନନ୍ତସ୍ୟ ଗୃହଂ ଭବେତ୍ ।

ବଜ୍ରପାଣିଂ ଲିଖେତପୂର୍ବେ ବହ୍ନି ଚ ଅଗ୍ନିକୋଣକେ ।

ଦକ୍ଷିଣେ ଧର୍ମରାଜଂ ଚ ନୈର୍ଋତ୍ୟାଂ ନିର୍ଋତ୍ୟାଂ ନିର୍ଋତିଂ ତଥା ।

---

* ପୂର୍ବ, ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଏ ଚାରିଗୋଟି ଦିଗ । ପୂର୍ବ ଓ ଦକ୍ଷିଣ ମଧ୍ୟବର୍ତ୍ତୀ ସ୍ଥାନ ଅଗ୍ନିକୋଣ, ଦକ୍ଷିଣ ଓ ପଶ୍ଚିମଦିଗ ମଧ୍ୟବର୍ତ୍ତୀସ୍ଥାନ ନୈର୍ଋତ କୋଣ, ପଶ୍ଚିମ ଓ ଉତ୍ତରଦିଗ ମଧ୍ୟବର୍ତ୍ତୀ ସ୍ଥାନ ବାୟୁକୋଣ ଏବଂ ଉତ୍ତର ଓ ପୂର୍ବଦିଗ ମଧ୍ୟବର୍ତ୍ତୀ ସ୍ଥାନ ଈଶାନ କୋଣ । ଏ ରୂପ ଚାରିକୋଣ । ଦିଗ ଓ କୋଣ ସହିତ ଊର୍ଦ୍ଧ୍ୱ ଓ ଅଧଃ ମିଶିଲେ ଦଶଦିଗ ହୁଏ ।

ବାରୁଣ୍ୟାଂ ବରୁଣଂ ତଦ୍‌ବଦ୍‌ବାୟବ୍ୟାଂ ବାୟୁମେବ ଚ ।
କୁବେରଂ ଚୋତ୍ତରେ ତଦ୍ବଦୈଶାନ୍ୟା ମୀଶ୍ୱରଂ ତଥା ।
ବ୍ରହ୍ମାନନ୍ତୌ ଯଜେନ୍ମଧ୍ୟେ ରପରାନ୍ ମଣ୍ଡଳେଷ୍ୱପି ।
ପୀତବର୍ଣ୍ଣୋଭବେଦିନ୍ଦ୍ରୋ ରକ୍ତବର୍ଣ୍ଣୋ ହୁତାଶନଃ ।
କୃଷ୍ଣବର୍ଣ୍ଣଃ ପ୍ରେତପତିଃ ଶ୍ୟାମବର୍ଣ୍ଣସ୍ତୁ ନୈର୍ଋତଃ ।
ବରୁଣଃ ଶ୍ୱେତବର୍ଣ୍ଣସ୍ତୁ ବାୟୁଶ୍ଚ ଧୂମ୍ର ବର୍ଣ୍ଣକଃ ।
କୁବେରୋ ଗୌରବର୍ଣ୍ଣୋଽପି ଈଶଃ ସ୍ଫଟିକବର୍ଣ୍ଣକଃ ।
ହାରିଦ୍ରବର୍ଣ୍ଣୋ ବ୍ରହ୍ମା ଚ ଅନନ୍ତଃ ଶୁକ୍ଳ ବର୍ଣ୍ଣକଃ ।

(ଗୃହ୍ୟସୂତ୍ରକାରିକାୟଂ ସିନ୍ଧୁଦ୍ୱୀପଃ)

ବ୍ୟାଖ୍ୟା - ପ୍ରଥମରେ ଗୋଟିଏ ସମଚତୁରସ୍ର ମଣ୍ଡଳ କରିବ । ତାହା ମଧ୍ୟରେ ଦୀର୍ଘରେ ସମାନ ଦୁଇଗୋଟି ରେଖା ଓ ପ୍ରତିରେ ସମାନ ଦୁଇଗୋଟି ରେଖା ଏପରି ଭାବରେ କାଟିବ ଯେପରି ସମାନ ନଅଗୋଟି କୋଠି ହେବ । ଏମାନଙ୍କ ମଧ୍ୟରୁ ପୂର୍ବଦିଗ କୋଠିରେ ପୀତବର୍ଣ୍ଣ ମୁରୁଜ (ଚୂନା)ରେ ବଜ୍ରର ଆକୃତି ଲେଖି ତହିଁରେ ଇନ୍ଦ୍ରଙ୍କର ପୂଜା କରିବ । ଅଗ୍ନିକୋଣ କୋଠିରେ ରକ୍ତବର୍ଣ୍ଣ ମୁରୁଜରେ ଶ୍ରୁବର ଆକୃତି ଲେଖି ତହିଁରେ ଅଗ୍ନିଙ୍କର ପୂଜା କରିବ । ଦକ୍ଷିଣ ଦିଗ କୋଠିରେ କୃଷ୍ଣବର୍ଣ୍ଣ ମୁରୁଜରେ ଦଣ୍ଡର ଆକୃତି ଲେଖି ଯମଙ୍କର ପୂଜା କରିବ । ନୈର୍ଋତ କୋଣ କୋଠିରେ ଶ୍ୟାମବର୍ଣ୍ଣ ମୁରୁଜରେ ଖଡ୍‌ଗର ଆକୃତି ଲେଖି ନୈର୍ଋତଙ୍କର ପୂଜା କରିବ । ପଶ୍ଚିମଦିଗ କୋଠିରେ ଶୁକ୍ଳବର୍ଣ୍ଣ ମୁରୁଜରେ ପାଶର ଆକୃତି ଲେଖି ବରୁଣଙ୍କର ପୂଜା କରିବ । ବାୟୁକୋଣ କୋଠିରେ ଧୂମ୍ରବର୍ଣ୍ଣ ମୁରୁଜରେ ଧ୍ୱଜର ଆକୃତି ଲେଖି ବାୟୁଙ୍କର ପୂଜା କରିବ । ଉତ୍ତର ଦିଗ କୋଠିରେ ଗୌର (ଶ୍ୱେତ) ବର୍ଣ୍ଣ ମୁରୁଜରେ ମନୁଷ୍ୟର ଆକୃତି ଲେଖି କୁବେରଙ୍କର ପୂଜା କରିବ । ଈଶାନ କୋଣ କୋଠିରେ ସ୍ଫଟିକ (ଅତିଧଳା) ବର୍ଣ୍ଣ ମୁରୁଜରେ ତ୍ରିଶୂଳର ଆକୃତି ଲେଖି ଶିବଙ୍କର ପୂଜା କରିବ ଏବଂ ଇନ୍ଦ୍ର ଓ ଶିବଙ୍କ କୋଠି ମଧ୍ୟରେ ହଳଦୀ ଚୂନାର ପଦ୍ମର ଆକୃତି ଲେଖି ବ୍ରହ୍ମାଙ୍କର ପୂଜା କରିବ । ନୈର୍ଋତ ଓ ବରୁଣ ଏହି ଦୁହିଁଙ୍କ କୋଠି ମଧ୍ୟରେ ଶୁକ୍ଳବର୍ଣ୍ଣ ମୁରୁଜରେ ସର୍ପର ଆକୃତି ଲେଖି ତହିଁରେ ଅନନ୍ତଙ୍କର ପୂଜା କରିବ ।

## ୨୪-ଦିକ୍‌ପାଳଙ୍କର ଆୟୁଧାଦି ବିବରଣ

| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ |
|---|---|---|---|---|---|---|---|---|---|---|
| ନାମ | ଇନ୍ଦ୍ର | ଅଗ୍ନି | ଯମ | ନୈର୍ଋତ | ବରୁଣ | ବାୟୁ | କୁବେର | ଈଶାନ | ବ୍ରହ୍ମା | ଅନନ୍ତ |
| ବର୍ଣ୍ଣ | ପୀତ | ରକ୍ତ | କୃଷ୍ଣ | ଶ୍ୟାମଳ | ଶ୍ୱେତ | ଧୂମ୍ର | ଗୌର | ଶୁକ୍ଳ | ହରିତ୍ | ଶୁକ୍ଳ |
| ବସ୍ତ୍ର | ପୀତ | ରକ୍ତ | କୃଷ୍ଣ | ଶ୍ୟାମଳ | ଶ୍ୱେତ | ଧୂମ୍ର | ଧୂମ୍ର | ଶୁକ୍ଳ | ପୀତ | ଶୁକ୍ଳ |
| ଗୃହ | ପୂର୍ବ | ଅଗ୍ନିକୋଣ | ଦକ୍ଷିଣ | ନୈଋତକୋଣ | ପଶ୍ଚିମ | ବାୟୁକୋଣ | ଉତ୍ତର | ଐଶାନ୍ୟକୋଣ | ଉର୍ଦ୍ଧ୍ୱ | ଅଧଃ |
| ନୈବେଦ୍ୟ | ଲଡ୍ଡୁକ | ପାୟସ | ପିଷ୍ଟକ | ଉଖୁଡ଼ା | ଗୁଡ଼ | କଦଳୀ | ଦୁଗ୍ଧ | ଆମାନ୍ନ | ପଞ୍ଚାମୃତ | ମଧୁ |
| ବାହନ | ଗଜ | ମେଷ | ମହିଷ | ପ୍ରେତ | ମକର | କୁରଙ୍ଗ | ନର | ବୃଷ | ହଂସ | ଜଳ |
| ଅଗ୍ନି | ଜଳାଗ୍ନି | ବ୍ରହ୍ମାଗ୍ନି | କାଳାଗ୍ନି | ମାରୁତାଗ୍ନି | ବାଡ଼ବାଗ୍ନି | ପତଙ୍ଗାଗ୍ନି | ଯକ୍ଷାଗ୍ନି | ଭବାଗ୍ନି | ମାୟାଗ୍ନି | ବିଶ୍ୱାଗ୍ନି |
| ପୁଷ୍ପ | ପୀତ | ରକ୍ତ | କୃଷ୍ଣ | ଶ୍ୟାମଳ | ଶ୍ୱେତ | ଧୂମ୍ର | ନୀଳ | ଶ୍ୱେତ | ହରିତ | ଚିତ୍ର |
| ଆକାର | ବଜ୍ରାକାର | ଶ୍ରୁବାକର | ଦଣ୍ଡାକାର | ଖଡ଼୍‌ଗାକାର | ପଶାକାର | ଧ୍ୱଜାକାର | ନିରାକାର | ତ୍ରିଶୂଳକାର | ପଦ୍ମାକାର | ସର୍ପାକାର |
| ଆୟୁଧ | ବଜ୍ର | ଶ୍ରୁକ | ଦଣ୍ଡ | ଖଡ଼୍‌ଗ | ପାଶ | ଧ୍ୱଜ | ଗଦା | ତ୍ରିଶୂଳ | ଅକ୍ଷସୂତ୍ର | ମୂଷଳ |

## ୬୫ - ଷୋଡ଼ଶ ମାତୃଗଣଙ୍କ ନାମ

ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସ୍ୱଧା, ସ୍ୱାହା, ମାତରଃ, ଲୋକମାତରଃ, ଧୃତିଃ, ପୁଷ୍ଟି ସ୍ତଥା ତୁଷ୍ଟିରାତ୍ମନଃ କୁଳ ଦେବତା ।

(ଭବିଷ୍ୟପୁରାଣେ)

## ୬୬ - ମାତୃଗଣ ପୂଜା ନ କରି କର୍ମ କଲେ ଦୋଷ

ଅନିଷ୍ଟ୍ୱା ପିତୃଯଜ୍ଞେ ନ ବୈଦିକଂ କିଂଚିଦାଚରେତ୍ ।
ତତ୍ରାପି ମାତାରଃ ପୂର୍ବଂ ପୂଜାନୀୟାଃ ପ୍ରଯତ୍ନତଃ ।
ଅକୃତ୍ୱା ମାତୃଯାଗଂତୁ ବୈଦିକଂ ଯଃ ସମାଚରେତ୍ ।
ତସ୍ୟ କ୍ରୋଧସମାବିଷ୍ଟା ହିଂସାମିଚ୍ଛନ୍ତି ମାତରଃ ।

(ଶାତାତପଃ)

ବ୍ୟାଖ୍ୟା - ପିତୃଯଜ୍ଞ (ଶ୍ରାଦ୍ଧ)ରେ ପିତୃଗଣଙ୍କ ପୂଜା ନ କରି କୌଣସି ବୈଦିକ କର୍ମ କରିବ ନାହିଁ । କିନ୍ତୁ ସେହି ପିତୃଯଜ୍ଞରେ ପ୍ରଥମେ ଯତ୍ନପୂର୍ବକ ମାତୃଗଣଙ୍କ ପୂଜା କରିବ । କାରଣ ମାତୃଗଣଙ୍କ ପୂଜା ନ କରି କୌଣସି ବୈଦିକ କର୍ମ କଲେ ସେମାନେ କ୍ରୋଧାବିଷ୍ଟ ହୋଇ କର୍ମକର୍ତ୍ତାର ଅନିଷ୍ଟବାଞ୍ଛା କରନ୍ତି ।

## ୬୭ - ଷୋଡ଼ଶମାତୃକା ମଣ୍ଡଳ ବିଧି

ପଞ୍ଚୋର୍ଦ୍ଧ୍ୱାଃ ପଞ୍ଚତିର୍ଯକ୍ ଚ ରେଖାଃ କାର୍ଯ୍ୟାଃ ପ୍ରଯତ୍ନତଃ ।
ଭବେତ୍ ଷୋଡ଼ଶକୋଷ୍ଠା ହି ମାତରଷ୍ଟ ପୃଥକ୍ ପୃଥକ୍ ।
କୁଳଦେବୀଂ ଗଣେଶଂ ଚ ଗୌରୀଂ ପଦ୍ମା ସମନ୍ୱିତାଂ ।
ପୂଜୟେନ୍ମଧ୍ୟମେ କୋଷ୍ଟେ ଶେଷାବାହ୍ୟେହି କୋଷ୍ଟକେ ।
ଗଣେଶୋ ବାୟୁକୋଣେ ଚ ଈଶାନେ ଚ କୁଳେଶ୍ୱରୀ ।
ଗୌରୀ ଚ ନୈର୍ଋତେ ପୂଜ୍ୟା ପଦ୍ମା ପାବକକୋଣକେ ।
ଶଚୀ ଚ ପଶ୍ଚୀମେ ପୂଜ୍ୟା ମେଧାଚୈବ ଦ୍ୱିତୀୟକେ ।
ସାବିତ୍ରୀ ଦକ୍ଷିଣେ ପୂଜ୍ୟା ବିଜୟା ଚ ଦ୍ୱିତୀୟକେ ।
ଜୟା ଚ ଉତ୍ତରେ ପୂଜ୍ୟା ଦେବସେନା ଦ୍ୱିତୀୟକେ ।
ସ୍ୱାହାଗ୍ନେର୍ଯ୍ୟାଂ ସମଭ୍ୟାର୍ଚ୍ଚ୍ୟା ଐଶାନ୍ୟାଂ ଚ ସ୍ୱଧା ତଥା ।
ପୂର୍ବେତୁ ମାତରଃ ପୂଜ୍ୟାସ୍ତଦଗ୍ରେ ଲୋକମାତରଃ ।
ଧୃତିଃ ପୁଷ୍ଟିର୍ବାୟୁକୋଣେ ତୁଷ୍ଟିଷ୍ଟ ନୈର୍ଋତେ ତଥା ।
ଏବଂହିମାତରଃ ପୂଜ୍ୟାଃ ସ୍ୱସ୍ୱସ୍ଥାନେ ପୃଥକ୍ ପୃଥକ୍ ।

(ପ୍ରତିଷ୍ଠା ସଂଗ୍ରହେ)



**ବ୍ୟାଖ୍ୟା** – ଦୀର୍ଘରେ ପାଞ୍ଚଗୋଟି ସମାନ ସରଳରେଖା ଓ ପ୍ରତିରେ ପାଞ୍ଚଗୋଟି ସମାନ ସରଳରେଖା ଏ ରୂପ କାଟିବ ଯେପରି ସମାନ ଷୋଳଗୋଟି କୋଠି ହେବ । ମଧ୍ୟସ୍ଥିତ ଚାରିଗୋଟି କୋଠି ଭିତରେ ବାୟୁକୋଣରେ ଗଣେଶ, ଈଶାନକୋଣରେ କୁଳଦେବତା, ନୈର୍ଋତକୋଣରେ ଗୌରୀ ଓ ଅଗ୍ନିକୋଣରେ ପଦ୍ମାଙ୍କୁ ପୂଜା କରିବ । ଅବଶିଷ୍ଟ ବାରଗୋଟି କୋଠି ମଧ୍ୟରେ ପଶ୍ଚିମ ଦିଗରେ ଥିବା ଦୁଇଗୋଟି କୋଠି ମଧ୍ୟରୁ ବାୟୁକୋଣ ପାଖ କୋଠିରେ ଶଚୀ ଓ ନୈର୍ଋତକୋଣ ପାଖ କୋଠିରେ ମେଧା, ସେହିପରି ଦକ୍ଷିଣଦିଗର ଦୁଇକୋଠି ମଧ୍ୟରୁ ଅଗ୍ନିକୋଣ ପାଖ କୋଠିରେ ସାବିତ୍ରୀ ଓ ନୈର୍ଋତକୋଣ ପାଖ କୋଠିରେ ବିଜୟା, ଉତ୍ତରଦିଗର ଦୁଇକୋଠି ମଧ୍ୟରୁ ଈଶାନକୋଣ ପାଖ କୋଠିରେ ଜୟା ଓ ବାୟୁକୋଣ ପାଖ କୋଠିରେ ଦେବସେନା ଏବଂ ପୂର୍ବଦିଗ ଦୁଇକୋଠି ମଧ୍ୟରୁ ଈଶାନକୋଣ ପାଖ କୋଠିରେ ମାତୃ ଓ ଅଗ୍ନିକୋଣ ପାଖ କୋଠିରେ ଲୋକମାତୃଙ୍କୁ ପୂଜା କରିବ । ତତ୍ପରେ ମଣ୍ଡଳର ଅବଶିଷ୍ଟ ଚାରିକୋଣ ଅର୍ଥାତ୍ ଅଗ୍ନିକୋଣ କୋଠିରେ ସ୍ୱାହା, ଈଶାନକୋଣ କୋଠିରେ ସ୍ୱଧା, ବାୟୁକୋଣ କୋଠିରେ ଧୃତି ଓ ପୁଷ୍ଟି ଏବଂ ନୈର୍ଋତକୋଣ କୋଠିରେ ତୃଷ୍ଟି ଏହିପରି ଷୋଡ଼ଶମାତୃଗଣଙ୍କୁ ପ୍ରତ୍ୟେକ କୋଠିରେ ଗୁଆ ବସାଇ ପୃଥକ୍ ପୃଥକ୍ ପୂଜା କରିବ ।

## ୬୮ – ଅଷ୍ଟାଦଶ ମାତୃଗଣମଣ୍ଡଳ ଲକ୍ଷଣ

**ତିର୍ଯ୍ୟଗ୍ରେଖାଷ୍ଟ ତସ୍ରସ୍ତଦୂପରି ବିଲିଖେଦୂର୍ଦ୍ଧ୍ୱରେଖାସ୍ତଥାଷଟ୍ ।**
**ମଧ୍ୟେତ୍ରୈକୋଷ୍ଠି କାନାମୁପରିବ୍ୟନୁଦଦେ ପୂର୍ଣ୍ଣରେଖାଂ ଚ ତିର୍ଯ୍ୟକ୍**
**ତନ୍ମଧ୍ୟେ ଖଣ୍ଡରେଖା ରଜନୀସୁରଜସା ବିନ୍ଦମେବଂ ବିଧାୟ ।**
**ପୀଠେ ପୁଞ୍ଜେଽକ୍ଷତାନାମିଭବଦନ ମୁଖା ମାତୃାବାହୟେଚ୍ଚ ।**
**(ଦିବ୍ୟସିଂହବାଜପେୟିପଦ୍ଧତୌ)**

**ବ୍ୟାଖ୍ୟା** – ହରିଦ୍ରାଚୂର୍ଣ୍ଣ ଦ୍ୱାରା ପ୍ରତିରେ ଚାରିଗୋଟି ରେଖା ଓ ଦୀର୍ଘରେ ଛ'ଗୋଟି ରେଖା ଏପରି କାଟିବ, ଯେପରି ପନ୍ଦର ଗୋଟି ସମାନ କୋଠି ହେବ, ତାହା ମଧ୍ୟସ୍ଥିତ ତିନିଗୋଟି କୋଠି ଉପରେ ପ୍ରତିରେ ଏପରି ଭାବରେ ସରଳରେଖା କାଟିବ, ଯେପରି ସେଥିରେ ସମାନ ଛଅଗୋଟି କୋଠି ହେବ ଏବଂ ସେହି ବିଭକ୍ତ ହୋଇଥିବା ମଧ୍ୟକୋଠିର ଉପରକୋଠିରେ ଊର୍ଦ୍ଧ୍ୱକୁ ଗୋଟିଏ ଖଣ୍ଡରେଖା କାଟିବ । ଏରୂପ କଲେ ଊଣେଇଶ ଗୋଟି କୋଠି ହେବ; ସେହି ମଣ୍ଡଳ ମଧ୍ୟରେ ଗଣେଶ ସହିତ ଅଷ୍ଟାଦଶମାତୃଗଣଙ୍କୁ ଯଥାକ୍ରମେ ପୂଜା କରିବ ।

## ଅଷ୍ଟାଦଶ ମାତୃଗଣ ମଣ୍ଡଳ

| | | | | |
|---|---|---|---|---|
| ୧ | ୨ | ୩ | ୪ | ୫ |
| ୬ | ୭ | ୮/୯ | ୧୦ | ୧୧ |
| | ୧୨ | ୧୩ | ୧୪ | |
| ୧୫ | ୧୬ | ୧୭ | ୧୮ | ୧୯ |

### ୬୯ - ଅଷ୍ଟାଦଶ ମାତୃଗଣଙ୍କୁ ପ୍ରତିମାଦିରେ ବ୍ୟାହୃତି ପୂର୍ବକ ଚତୁର୍ଥ୍ୟନ୍ତ ମନ୍ତ୍ରରେ ପୂଜା କରିବାର ବିଧି

ପ୍ରତିମାସୁ ଚ ଶୁଦ୍ଧାସୁ ଲିଖିତାସୁ ପଟାଦିଷୁ ।
ଅଧବାକ୍ଷତପୁଞ୍ଜେଷୁ ନୈବେଦ୍ୟୈଷ୍ଚ ପୃଥଗବିଧୈଃ ।
କର୍ମାଦିଷୁ ଚ ସର୍ବେଷୁ ମାତରଃ ସଗଣାଧିପାଃ ।
ପୂଜନୀୟାଃ ପ୍ରଯତ୍ନେନ ପୂଜିତାଃ ପୂଜୟନ୍ତିତାଃ ।

(ଛନ୍ଦୋଗ ପରିଶିଷ୍ଟେ କାତ୍ୟାୟନଃ)

ହରିଦ୍ରାରଜସା କୃତ୍ୱା ଯବପୁଞ୍ଜେଷୁ ମଣ୍ଡଳଂ ।
ଗୌର୍ଯ୍ୟାଦି ପୂଜନଂ ତତ୍ର ବିନାୟକ ପୁରଃସରଂ ।
ପ୍ରଣବାଦି ଚତୁର୍ଥ୍ୟନ୍ତଂ ମହାବ୍ୟାହୃତିପୂର୍ବକଂ ।
ଗୌର୍ଯ୍ୟାଦି ନାମାନ୍ୟୁଚ୍ଚାର୍ଯ୍ୟ ଭକ୍ତ୍ୟା ସଂପୂଜୟେତ୍ତତଃ ।

(ଦିବ୍ୟସିଂହ ବାଜପେୟି ପଦ୍ଧତୌ)

ବ୍ୟାଖ୍ୟା - ସମସ୍ତ କର୍ମର ଆଦ୍ୟରେ ମଣ୍ଡଳ ମଧ୍ୟରେ ମାତୃଗଣଙ୍କ ପ୍ରତିମା କିମ୍ବା ବିଶୁଦ୍ଧ ବସ୍ତ୍ରରେ ରୂପ ଲେଖି ଅଥବା ଚାଉଳବେଦୀରେ ହଳଦୀଗୁଣ୍ଡା ଦ୍ୱାରା ମଣ୍ଡଳ ନିର୍ମାଣ କରି ମହାବ୍ୟାହୃତିପୂର୍ବକ ସ୍ୱନାମ ଚତୁର୍ଥ୍ୟନ୍ତମନ୍ତ୍ରରେ ପ୍ରଥମେ ଗଣେଶ, ତତ୍ପରେ ଅଷ୍ଟାଦଶ ମାତୃଗଣଙ୍କୁ ଉପଚାର ସହିତ ପୃଥକ୍ ପୃଥକ୍ ନୈବେଦ୍ୟ ଦେଇ ପୂଜା କରିବ । କାରଣ ଯେ ମାତୃଗଣଙ୍କର ପୂଜା କରେ ସେ ଲୋକରେ ପୂଜ୍ୟ ହୁଏ ।

 

## ୭୦ - ଷୋଡ଼ଶମାତୃଗଣ ପୂଜନ ବିଧି

ଓଁ ଆଶୁଃ ଶିଶାନୋ ବୃଷଭୋ ନଭୀମୋଘନାଘନକ୍ଷୋ ଭଣଶ୍ଚର୍ଷଣୀନାଂ ସଂକ୍ରନ୍ଦନୋ ନିମିଷ ଏକବୀରଃ ଶତଂ ସେନା ଅଜୟସ୍ତାକମିନ୍ଦ୍ରଃ ।

ଇତି ପଠିତ୍ୱା, ଗଜବକ୍ତ୍ର ଗଣାଧ୍ୟକ୍ଷ ସର୍ବବିଘ୍ନ ବିନାଶନ । ଲମ୍ବୋଦର ତ୍ରିନେତ୍ରତ୍ୱମା ଗଚ୍ଛ ଗଣନାୟକ । ଗଣାନାନ୍ତ୍ୱେତି ମନ୍ତ୍ରେଣ ବାୟୁକୋଣେ ଓଁ ଭୂର୍ଭୂବଃ ସ୍ୱଃ ଶ୍ରୀମହାଗଣପତେ ଇହାଗଚ୍ଛ ଇହ ତିଷ୍ଠ, ହିମାଦ୍ରିତନୟାଂ ଦେବୀଂ ବରଦାଂ ଭୈରବପ୍ରିୟାଂ । ଲମ୍ବୋଦରସ୍ୟ ଜନନୀଂ ଗୌରୀମାବାହୟାମ୍ୟହଂ । ଆୟଂ ଗୌଃ ପୃଶ୍ନିରକ୍ରମୀଦସନ୍ମାତରଂ ପୁରଃ । ପିତରଂ ଚ ପ୍ରୟଂସ୍ୱଃ । ଗୌରୀମାବାହୟାମି ସ୍ଥାପୟାମି ଓଁ ଭୁର୍ଭୁବଃ ସ୍ୱଃ ଗୌରୀ ଇହାଗଚ୍ଛ ଇହତିଷ୍ଠ ।୧। ସୁବର୍ଣ୍ଣାଢ଼୍ୟାଂ ପଦ୍ମହସ୍ତାଂ ବିଷ୍ଣୋର୍ବିକ୍ଷଃସ୍ଥଳସ୍ଥିତାଂ । ତ୍ରୈଲୋକ୍ୟପୂଜିତାଂ ଦେବୀଂ ପଦ୍ମମାବାହୟାମ୍ୟହଂ । ହିରଣ୍ୟରୂପା ଉଷସୋ ବିରୋକ ଉଭାବିନ୍ଦ୍ରୋ ଉଦିଥଃ ସୂର୍ଯ୍ୟଶ୍ଚ । ଆରୋହତଂ ବରୁଣମିତ୍ର ଗର୍ତ୍ତଂ ତତଶ୍ଚକ୍ଷାଥାମଦି ତିଂ ଦିତିଂ ଚ ମିତ୍ରୋଽସି ବରୁଣୋଽସି । ପଦ୍ମମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ପଦ୍ମେ ଇହାଗଚ୍ଛ ଇହତିଷ୍ଠ ।୨। ଉତ୍ପଳାକ୍ଷୀଂ ସୁଦଶନାଂ ସତୀ କୁଣ୍ଡଳଧାରିଣୀଂ । ଦେବରାଜପ୍ରିୟାଂ ଭଦ୍ରାଂଶଚୀମାବାବାହୟାମ୍ୟହଂ । କଦାଚନେ ସ୍ତରୀରସିନେନ୍ଦ୍ରସଶ୍ଚ ସିବାଶୁଷେ । ଉପୋପେନ୍ନୁ ମଘବନ୍ ଭୂୟ ଇନ୍ନୁତେ ଦାନନ୍ଦେବସ୍ୟ ପୃଚ୍ୟତେ । ଶଚୀମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ଶଚୀ ଇହାଗଚ୍ଛ ଇହତିଷ୍ଠ ।୩। ବିବସ୍ୱକ୍ରରସଫୁଲ୍ଲ ରକ୍ତପଦ୍ମନିବାସିନୀଂ । ନୁଦ୍ଧି ପ୍ରସାଦିନୀଂ ସୌମ୍ୟାଂ ମେଧାମାବାହୟାମ୍ୟହଂ । ଓଁ ମେଧାମ୍ନେ ବରୁଣୋ ଦଦାତୁ ମେଧାମଗ୍ନିଃ ପ୍ରଜାପତିର୍ମେଧାମିନ୍ଦ୍ରଶ୍ଚ ବାୟୁଶ୍ଚ ମେଧାନ୍ତଧାତା ଦଦାତୁ ମେ ସ୍ୱାହା । ମେଧମାହ୍ୱୟାମି ସ୍ଥାପୟାମି ଓଁ ଭୁର୍ଭୁବଃ ସ୍ୱଃ ମେଧେ ଇହାଗଚ୍ଛ ଇହତିଷ୍ଠ ।୪। ଜଗତ୍ସ୍ରଷ୍ଟ୍ରୀଂ ଜଗଦ୍ଧାତ୍ରୀଂ ଜଗତ୍ସଂହାରକାରିଣୀଂ ଓଁ କାରାକ୍ଷୀଂ ଭଗବତୀଂ ସାବିତ୍ରୀମାହ୍ୱୟାମ୍ୟହଂ । ଓଁ ତତ୍ସର୍ବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ୟୋ ନଃ ପ୍ରଚୋଦୟାତ୍ ସାବିତ୍ରମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ସାବିତ୍ରୀ ଇହାଗଚ୍ଛ ଇହ ତିଷ୍ଠ ।୫। ଦୈତ୍ୟରକ୍ଷଃକ୍ଷୟକରୀଂ ଦେବାନାଂଚାଭୟପ୍ରଦାଂ । ଗୀର୍ବାଣବନ୍ଦିତାଂଦେବୀଂ ବିଜୟାମାହ୍ୱୟାମ୍ୟହଂ । ବିଜ୍ୟଂ ଧନୁଃ କପର୍ଦ୍ଦିନୋବିଶଲ୍ୟୋ ବାଣ ବା ଉତ । ଅନେଶ୍ୱନ୍ନସ୍ୟ ଯାଇଷବ ଆଭୂରସ୍ୟ ନିଷଙ୍ଗଧିଃ । ବିଜୟା ମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ବିଜୟେ ଇହାଗଚ୍ଛ ଇହତିଷ୍ଠ ।୬। ବିଶ୍ୱଭଦ୍ରାଂ ଜୟାଂ ରିକ୍ତାଂ ରକ୍ତାମ୍ବରଧରାଂ ସଦା । ତ୍ରୈଲୋକ୍ୟବନ୍ଦିତାଂ ଦେବୀଂ

ଜୟାମାବାହୟାମ୍ୟହଂ । ଯାତେରୁଦ୍ରେ ଶିବା ତନୂରଘୋରା ପାପନାଶିନୀ । ତୟାନସ୍ତନ୍ୱାଶନ୍ତମୟା ଗିରିଶନ୍ତାଭିଚା କଶୀହି । ଜୟାୟୈ ନମଃ ଜୟା ମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ଜୟେ ଇହାଗଚ୍ଛ ଇହତିଷ୍ଠ ।୭। ମୟୁରବାହନାଂ ଦେବୀଂ ଶକ୍ତିଖଡ୍‌ଗଧନୁର୍ଦ୍ଧରାଂ । ଆବାହୟେଦେବସେନାଂତାରକାସୁର ମର୍ଦ୍ଦିନୀଂ । ଦେବସେନାଂ ଭଦ୍ରା ସୁମତିର୍ରଜୂୟତାନ୍ଦେବାନାଙ୍ଗଂ ରାତିରଭିନୋନିବର୍ତ୍ତତାଂ ଦେବାନାଙ୍ଗଂ ସଖ୍ୟମୁପସେଦି ମାବୟନ୍ଦେବଦା ଆୟୁ ପ୍ରତିରନ୍ତୁ ଜୀବସେ । ଦେବସେନାୟୈ ନମଃ ଦେବସେନ ମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ସ୍ୱଦେବସେନେ ଇହାଗଛ ଇହତିଷ୍ଠ ।୮। କବ୍ୟମାଦାୟ ସତତଂ ପିତୃଭ୍ୟୋ ଯା ପ୍ରୟଚ୍ଛତି । ପିତୃଲୋକର୍ଚ୍ଚିତାଂ ଦେବୀଂ ସ୍ୱଧାମାବାହୟାମ୍ୟହଂ । ପିତୃଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧାନମଃ ପିତାମହେଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧାନମଃ ପ୍ରପିତାମହେଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧାନମଃ । ଅକ୍ଷନ ପିତରୋଽମୀମଦନ୍ତ ପିତରୋଽତୀ ତୃପ୍ୟନ୍ତ ପିତରଃ ପିତରଃଶୁନ୍ଧଧ୍ୱଂ । ସ୍ୱଧାୟୈ ନମଃ ସ୍ୱଧାମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ସ୍ୱଧେ ଇହାଗଚ୍ଛ ଇହତିଷ୍ଠ ।୯। ହବିର୍ଗୃହୀତ୍ୱା ସତତଂ ଦେବେଭ୍ୟସ୍ତତ୍‌ପ୍ରୟଚ୍ଛତି । ସ୍ୱର୍ଗଲୋକାର୍ଚ୍ଚିତେ ସ୍ୱାହେ ସମାଗଚ୍ଛ ମମାଧ୍ୱରେ । ସ୍ୱାହା ଯଜ୍ଞ ନମସଃସ୍ୱାହୋରୋରନ୍ତରୀକ୍ଷାଂସ୍ୱାହା । ସ୍ୱାହାୟୈ ନମଃସ୍ୱାହାମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ସ୍ୱାହେ ଇହାଗଚ୍ଛ ଇହତିଷ୍ଠ ।୧୦। ଭୂତଗ୍ରେମୋଽୟମୁତ୍ପନ୍ନୋ ଯାଭ୍ୟଃକୃସ୍ନଃ ପୁରାକିଳ । ତ୍ରୈଲୋକ୍ୟପୂଜିତା ଦେବୀ ମାତୃରାବାହୟାମ୍ୟହଂ । ଆପୋ ଅସ୍ମାନ୍ମାତରଃ ଶୁନ୍ଧୟନ୍ତୁ ଘୃତେନନୋଘୃତପ୍ୱଃ ପୁନନ୍ତୁ । ବିଶ୍ୱଙ୍ଗଂ ହିରିପ୍ରମ୍ର ବହନ୍ତି ଦେବୀରୁଦୀଦାଭ୍ୟ ଶୁଚିରାପୂତ ଏପି । ଦୀକ୍ଷାତପସୋ ସ୍ତନୂରସିତାନ୍ତ ଶିବାଙ୍ଗଂ ଚାଗ୍ମ ପରିଦଧେ ଭଦ୍ରଂ ବର୍ଣ୍ଣଂ ପୁଷ୍ୟନ୍ । ମାତୃଭ୍ୟୋ ନମଃ ମାତୃରାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ମାତାର ଇହା ଗଚ୍ଛତ ଇହ ତିଷ୍ଠତ ।୧୧। ଆବାହୟୋଲ୍ଲୋକମାତୃର୍ଜଗପ୍ତାଳନସଂସ୍ଥିତାଃ । ଶକ୍ରାଦ୍ୟୈର୍ବନ୍ଦିତା ଦେବୀ ସ୍ତତ୍ରଦ୍ୟୈଷ୍ଟ ସୁରୈରପି । ଭବତନ୍ନଃସମନସୌ ସଚେତସା ବରେପସୌ । ମାଯଜ୍ଞଙ୍ଗଂହିଙ୍ଗଂସିଷ୍ଟଂ ମାଯଜ୍ଞପତିଂଜାତବେଦସୌ ଶିବୌ ଭବତ ମଦ୍ୟନଃ ଲୋକ ମାତୃଭ୍ୟୋ ନମଃ । ଲୋକମାତୃରାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ସ୍ୱର୍ଲୋକମାତର ଇହା ଗଚ୍ଛତ ଇହ ତିଷ୍ଠତ ।୧୨। ମମ ତୁଷ୍ଟିକାରୀ ଦେବୀ ଲୋକାନୁଗ୍ରହକାରିଣୀଂ ସର୍ବକାମସମୃଦ୍ଧ୍ୟର୍ଥଂ ଧୃତିମାବାହୟାମ୍ୟହଂ । ଯତ୍‌ପ୍ରଜ୍ଞାନମୁତଚେତୋ ଧୃତିଶ୍ଚ ଯଜ୍ଜ୍ୟୋତିରନ୍ତରମୃତଂ ପ୍ରଜାସୁ । ଯସ୍ମାନ୍ନଋତେ କିଞ୍ଚନକର୍ମକ୍ରିୟତେ ତନ୍ମେ ମନଃ ଶିବସଂକଳ୍ପମସ୍ତୁ । ଧୃତ୍ୟୈନମଃ ଧୃତିମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ

ସ୍ୱର୍ଧ୍ୱତେ ଇହାଗଚ୍ଛ ଇହ ତିଷ୍ଠ ।୧୩। ପ୍ରଣତାସି ଇମେ ଲୋକେ ପୁତ୍ରପୁଷ୍ଟି ସୁଖପ୍ରଦା । ଭକ୍ତେଭ୍ୟଶ୍ଚାପି ବରଦା ବିଦ୍ୟୁଦ୍ଭାର୍କକୁଣ୍ଡଳା । ଦତ୍ତ୍ୱାୟାମି ବ୍ରହ୍ମଣାବନ୍ଦମାନସ୍ତଦାଶାସ୍ତେ ଯଜୋମାନୋ ହବିର୍ଭିଃ । ଅହେଡ଼ମାନୋ ବରୁଣେ ହବୋଦ୍ଧ୍ୟୁରୁଶଙ୍ଗଂ ସମାନଆୟୁଃ ପ୍ରମୋଷୀଃ । ପୁଷ୍ଟୈନମଃ ପୁଷ୍ଟିମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ପୁଷ୍ଟେ ଇହାଗଚ୍ଛ ଇହତିଷ୍ଠ ।୧୪। ଆବାହୟାମି ତାଂ ତୁଷ୍ଟିଂ ସର୍ବଲୋକେଷୁ ପୂଜିତାଂ । ସନ୍ତୋଷ ଭାବନାଦୀନାଂରକ୍ଷଣାୟାଧ୍ୱରେ ମମ । ବୃହସ୍ପତେ ପରିଦୀୟା ରଥନେ ରକ୍ଷୋହାମିତ୍ରାଂଅପବାଧମାଂନଃ । ପ୍ରଭଞ୍ଜଂସେନା ପ୍ରମୃଣୋୟୁଧା ଜୟନ୍ନସ୍ମାକମେଧ୍ୟ ବିତାରଥାନାଂ । ତୁଷ୍ଟେ ନମଃ ତୁଷ୍ଟିମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ତୁଷ୍ଟେ ଇହା ଗଚ୍ଛ ଇହ ତିଷ୍ଠ ।୧୫। ତାମାତ୍ମାଦିହିତାଂ ଦେବୀଂ ସର୍ବକାମଫଳପ୍ରଦାଂ । ବଂଶରକ୍ଷାକାରୀ ଗୋତ୍ର ଦେବୀମାବାହୟାମ୍ୟହଂ । ପ୍ରାଣାୟ ସ୍ୱାହା, ଅପାନାୟ ସ୍ୱାହା, ବ୍ୟାନାୟ ସ୍ୱାହା, ଆମ୍ବେ ଅମ୍ବିକେ ଅମ୍ବାଳିକେ ନମାନୟତିକଶ୍ଚନ । ସମସ୍ତ୍ୟ ଶ୍ୱକଃ ସୁଭଦ୍ରିକାଂ କାମ୍ପୀଲ୍ୟବାସିନୀଂ । ଆତ୍ମନଃ କୁଳଦେବ୍ୟୈ ନମଃ ଆତ୍ମନଃକୁଳଦେବୀଂମାବାହୟାମି ସ୍ଥାପୟାମି । ଓଁ ଭୁର୍ଭୁବଃ ସ୍ୱଃ ଆତ୍ମକୁଳଦେବ ଇହା ଗଚ୍ଛ ଇହ ତିଷ୍ଠ ।୧୬। ଏବଂ ପ୍ରତ୍ୟେକ ମାବାହନଂ ସ୍ଥାପନଂ ଚ କୁର୍ଯ୍ୟାତ୍ । "ମନୋଜୂତିରିତି" ମନ୍ତ୍ରେଣ ପ୍ରତିଷ୍ଠା କୁର୍ଯ୍ୟାତ୍ । ମନୋଜୁତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିଯଜ୍ଞମିମଂ ତନୋତ୍ୱରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ । ବିଶ୍ୱେଦେବାସହ ଇହ ମା ଦୟାନ୍ତାମୋଂ ପ୍ରତିଷ୍ଠା । ଗୌର୍ଯ୍ୟାଦି ଷୋଡ଼ଶମାତରଃ ଶ୍ରୀଗଣପତି ସହିତାଃ ସୁପ୍ରତିଷ୍ଠିତାଃ ସତ୍ୟୋ ବରଦା ଭବନ୍ତୁ ।

## ୭୧ – ଷୋଡ଼ଶମାତୃକାଙ୍କର ଷୋଡ଼ଶୋପଚାର ପୂଜା

ସୁବର୍ଣ୍ଣମଣିଭିର୍ଦିବ୍ୟୈରର୍ଚ୍ଚିତେ ଦେବନିର୍ମିତେ
ଦିବ୍ୟସିଂହାସନେ ସ୍ନିଗ୍ଧେ ପ୍ରବିସନ୍ତୁ ସୁରାଳୟେ ।

ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଆସନଂ ସମର୍ପୟାମି । ପାଦ୍ୟଂ ପାଦୋଦକଂ ତୁ ଭୋଦେବ୍ୟଃସୁବର୍ଣ୍ଣକଳଶେ ସ୍ଥିତଂ । ଗନ୍ଧ ପୁଷ୍ପାଦିର୍ଯୁକ୍ତଂ ଗୃହ୍ୟତାଂଚ ନିବେଦିତଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶ ମାତୃଭ୍ୟୋନମଃ ପାଦ୍ୟ ସମର୍ପୟାମି । ଅର୍ଘ୍ୟ । ଅଷ୍ଟଦ୍ରବ୍ୟସମାୟୁକ୍ତଂ ସ୍ୱର୍ଣ୍ଣପାତ୍ରସ୍ଥିତଂ ଜଳଂ । ଭବତ୍ୟୋ ଗୃହ୍ୟତାମର୍ଘ୍ୟଂ ମୟା ଭକ୍ତ୍ୟା ନିବେଦିତଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶ ମାତୃଭ୍ୟୋ ନମଃ ଅର୍ଘ୍ୟଂ ସମର୍ପୟାମି । ଆଚମନଂ । ମୟା ନିବେଦିତଂ ଦେବ୍ୟୋ ଗୃହୀତ୍ୱା ଗମନଂ ଶୁଭଂ ସୁପ୍ରସନ୍ନାଶ୍ଚ ବରଦା ଭବନ୍ତୁ

ମମ ସର୍ବଦା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶ ମାତୃଭ୍ୟୋ ନମଃ ଆଚମନଂ ସମର୍ପୟାମି । ପଞ୍ଚାମୃତସ୍ନାନଂ । ପଞ୍ଚାମୃତୈସ୍ତତଃ ସ୍ନାନଂ ମନ୍ତ୍ରେ ର୍ବେଦୋଭବୈରପି । ମଧ୍ୟେ ମଧ୍ୟେ ପ୍ରପୂଜାଂ ଚ ମଧୁପର୍କ ପୁରଃସରଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶ ମାତୃଭ୍ୟୋ ନମଃ ପଞ୍ଚାମୃତ ସ୍ନାନଂ ନିବେଦୟାମି । ଶୁଦ୍ଧୋଦକସ୍ନାନଂ । ନଦୀନାଂ ଚୈବ ସରସୀଂ ମୟାନୀତଂ ଜଳଂ ଶୁଭଂ । ଅନେନ ସ୍ନାନମନ୍ତ୍ରେଣ ମେନ୍ତ୍ରୈର୍ବରୁଣସମ୍ଭବୈଃ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଶୁଦ୍ଧୋଦକସ୍ନାନଂ ସମର୍ପୟାମି । ବସ୍ତ୍ରଂ । ବସ୍ତ୍ରଯୁଗ୍ମ ସମାନୀତଂ ପଟ୍ଟସୂତ୍ର ବିନିର୍ମିତଂ । ବସ୍ତ୍ରଂ କାର୍ପାସତନ୍ତୁତାଂ ସୁବର୍ଣ୍ଣେନ ପରାଜିତଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ବସ୍ତ୍ରଂ ସମର୍ପୟାମି । ଯଜ୍ଞୋପବୀତଂ । ଗଣାଧିପ ନମସ୍ତୁଭ୍ୟ ତ୍ରାହି ମାଂ ଭବସାଗରାତ । ବ୍ରହ୍ମସୂତ୍ରଂ ସୋତ୍ତରୀୟଂ ଗୃହାଣ ଗଣନାୟକ । ଇତି ବିନାୟକାୟ ଯଜ୍ଞୋପବୀତଂ । ଅନ୍ୟତ୍ର ଯଜ୍ଞୋପବୀତାଭାବ ଏବ ବୋଧ୍ୟଃ । ଆଭରାଣାନି । କେୟୁରୈର୍ମୁକୁଟୈ ଶ୍ଚୈବ ନୁପରୈରଙ୍ଗୁରୀୟକୈଃ । ପୂଜିତା ସୁପ୍ରୟତ୍ନେନରତ୍ନେ ରାଭରଣୈର୍ମୟା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଆଭରଣାନି ସମର୍ପୟାମି । ଗନ୍ଧାଦିଦ୍ରବ୍ୟଂ । ଚନ୍ଦନଂ ମଲୟୋଦ୍ଭୁତଂ କସ୍ତୁର୍ଯ୍ୟଗୁରୁସଂଯୁତଂ । କର୍ପୂରେଣ ସମାଯୁକ୍ତଂ ଗୃହ୍ୟତାଂ ମାତରଃ ଶୁଭଂ । କୁଙ୍କୁମଂ କାମିନାଂ ଦିବ୍ୟଂ କାମିନାଂ କାମସମ୍ଭବାଂ । କୁଙ୍କୁମେନାର୍ଚ୍ଚିତା ଦେବ୍ୟୋ ଭବନ୍ତୁ ବରଦାଃ ସଦା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଗନ୍ଧଂ ସମର୍ପୟାମି । ଅକ୍ଷତାନି । ଅକ୍ଷତାଶ୍ଚ ମହାବିଦ୍ୟାମୁକ୍ତାଫଳସମନ୍ୱିତାଃ ଗୃହ୍ୟନ୍ତାଂ ଭୋ ଶୁଭା ଦେବ୍ୟୋ ମୟା ଭକ୍ତ୍ୟା ନିବେଦିତାଃ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଅକ୍ଷତାନ୍ ସମର୍ପୟାମି । ପୁଷ୍ପାଣି । ଶତପତ୍ରୈଃ କର୍ଣ୍ଣିକାରୈଶ୍ଚମ୍ପକୈର୍ମଲ୍ଲିକାଦିଭିଃ । ପୁଷ୍ପୈର୍ନାନାବିଧୈଶ୍ଚୈବ ଭବନ୍ତୁ ପୂଜିତା ସଦା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ପୁଷ୍ପାଣି ସମର୍ପୟାମି । ଧୂପଂ ଦଶାଙ୍ଗ ଗୁଗ୍‌ଗୁଲୋଧୂର୍ପଃ ସୁଗନ୍ଧଶ୍ଚ ମନୋହରଃ । ମୟାନି ବେଦିତୋ ଭକ୍ତ୍ୟା ଗୃହ୍ୟତାଂ ମାତରଃ ସଦା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଧୂପଂ ସମର୍ପୟାମି । ଦୀପଂ ସୁପ୍ରକାଶୋ ମହାଦୀପଃ ସର୍ବତ୍ର ତିମିରାପହଃ ।

---

*ମଧୁମୁସ୍ତଂ ଘୃତଂ ଗନ୍ଧୋ ଗୁଗ୍‌ଗୁଳଗୁରୁ ଶୈଳଜଂ ।
ସରଳଂ ସିହ୍ଲସିଦ୍ଧାର୍ଥଂ ଦଶାଙ୍ଗ ଧୂପ ଉଚ୍ୟତେ । (ସ୍ମୃତି)

ବ୍ୟାଖ୍ୟା- ମହୁ, ମୁଥା, ଘିଅ, ଚନ୍ଦନଗୁଣ୍ଡି, ଅଗୁର, ଗୁଗ୍‌ଗୁରୁଶିଳାଜତୁ ଦେବଦାରୁକାଠ ଝୁଣା ଓ ସୋରିଷ ଏସବୁ ଦ୍ରବ୍ୟ ଚୂର୍ଣ୍ଣ କରି ମଧୁ, ଘୃତ ମିଶ୍ରିତ କଲେ ଦଶାଙ୍ଗ ଧୂପ ହୁଏ ।



ବାହ୍ୟାଭ୍ୟନ୍ତରଜ୍ୟୋତିଷ୍ଟ ଗୃହ୍ୟତାଂ ମାତରଃ ସଦା । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ଦୀପଂ ସମର୍ପୟାମି । ନୈବେଦ୍ୟଂ । ଅନ୍ନ ଚ ପାୟସଂ ଭକ୍ଷ୍ୟଂ ସିତାଘୃତସମନ୍ୱିତଂ । ଦଧିକ୍ଷୀରଘୃତୈର୍ଯୁକ୍ତଂଗୃହ୍ୟତାଂମାତରଃ ଶୁଭଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ନୈବେଦ୍ୟଂ ସମର୍ପୟାମି । ତାମ୍ବୁଲଂ ନାଗବଲ୍ଲିଦଳୈର୍ୟୁକ୍ତଂ ପୂଗୀଫଳସମନ୍ୱିତଂ । ଏଲାକର୍ପୂରସଂଯୁକ୍ତଂ ତାମ୍ବୁଲଂ ପ୍ରତିଗୃହ୍ୟତାଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ତାମ୍ବୁଲଂ ସମର୍ପୟାମି । ପୂଗୀଫଳଂ ମହଦ୍ଦିବ୍ୟଂ ଦେବାନାଂ ଚ ପ୍ରିୟଂକରଂ । ମୟା ନିବେଦିତଂ ଭକ୍ତ୍ୟା ଗୃହ୍ୟତାଂ ମାତରଃ ସଦା । ଶ୍ରୀଗଣପତି ସହିତ ଷୋଡ଼ଶ ମାତୃଭ୍ୟୋ ନମଃ ପୂଗୀଫଳଂ ସମର୍ପୟାମି । ନୀରାଜନଂ । ନୀରାଜନଂ ଗୃହ୍ୟତାଂ ଚ ପଞ୍ଚବର୍ତ୍ତିବିରାଜିତଂ । ତେଜୋରାଶିମୟଂ ଦିବ୍ୟଂ ଲୋକନନ୍ଦକରଂ ଶୁଭଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶମାତୃଭ୍ୟୋ ନମଃ ନୀରାଜନଂ ସମର୍ପୟାମି । କୁସୁମାଞ୍ଜଳିଂ । ନନ୍ଦନସ୍ୟ ପ୍ରସୁନାନାଂତଥା କଳ୍ପଦ୍ରୁମସ୍ୟ ଚ । ସୁରହସ୍ତ୍ୟଚୁତୋ ନିତ୍ୟଂ ଗୃହ୍ୟତାଂ କୁସୁମାଞ୍ଜଳିଂ । ଶ୍ରୀଗଣପତି ସହିତ ଗୌର୍ଯ୍ୟାଦି ଷୋଡ଼ଶ ମାତୃଭ୍ୟୋ ନମଃ କୁସୁମାଞ୍ଜଳି ସମର୍ପୟାମି । ପ୍ରାର୍ଥନା । ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ଚ ଯତ୍କୃତଂ । ପୂଜନଂ ଗୃହ୍ୟତାଂ ଦୋଷଃ କ୍ଷମତାଂ ମାତରଃ ସଦା । ଇତି ପ୍ରାର୍ଥୟେତ୍ ।

ଇତି ଷୋଡ଼ଶମାତୃକାପୂଜନଂ ।

## ୭୨ - ସର୍ବତୋଭଦ୍ରମଣ୍ଡଳ

ଚତୁରସ୍ରେ ଚତୁଃକୋଷ୍ଠେ କର୍ଣ୍ଣସୂତ୍ରସମନ୍ୱିତୋ ।
ଚତୁର୍ଷ୍ୱପିଚ କୋଷ୍ଠେଷୁ କୋଣସୂତ୍ର ଚତୁଷ୍ଟୟଂ ।
ମଧ୍ୟେ ମଧ୍ୟେ ଯଥା ମତ୍ସ୍ୟା ଭବେୟୁଃ ପାତୟେତ୍ତଥା ।
ପୂର୍ବାପରାୟତେ ଦ୍ୱେଦ୍ୱେ ମନ୍ତ୍ରୀ ଯାମ୍ୟୋତ୍ତରାୟତେ ।
ପାତୟେତ୍ତେଷୁ ମତ୍ସ୍ୟେଷୁ ସମଂ ସୂତ୍ରଚତୁଷ୍ଟୟଂ ।
ପୂର୍ବବତ୍ କୋଣକୋଷ୍ଠେଷୁ କର୍ଣ୍ଣସୂତ୍ରାଣି ପାତୟେତ୍ ।
ତଦ୍ୱତ୍ ଭୂତେଷୁ ମତ୍ସ୍ୟେଷୁ ଦଦ୍ୟାତ୍ସୂତ୍ରଚତୁଷ୍ଟୟଂ ।
ତତଃ କୋଷ୍ଠେଷୁ ମତ୍ସ୍ୟାଃ ସ୍ୟୁସ୍ତେଷୁ ସୂତ୍ରାଣି ପାତୟେତ୍ ।
ଯାବତ୍ ଶତଦ୍ୱୟଂ ମନ୍ତ୍ରୀ ଷଟ୍ପଞ୍ଚାଶତ୍ ପଦାନ୍ୟପି ।

ତାବ୍‌ତ୍ତେନୈବ ବିଧିନା ତତ୍ର ସୂତ୍ରାଣି ପାତୟେତ୍ ।
ଷଟ୍‌ତ୍ରିଂଶତା ପଦୈର୍ମଧ୍ୟେ ଲିଖେତ୍ପଦ୍ମଂ ସୁଲକ୍ଷଣଂ ।
ବହିଃ ପଂକ୍ତ୍ୟା ଭବେତ୍ପୀଠଂ ପଂକ୍ତି ଯୁଗ୍ମେନ ବୀଥିକା ।
ଦ୍ୱାରଶୋଭୋପଶୋଭାଭ୍ୟାଂ ଶିଷ୍ଟାଭ୍ୟାଂ ପରିକଳ୍ପୟେତ୍ ।
ଶାସ୍ତ୍ରୋକ୍ତ ବିଧିନାଂ ମନ୍ତ୍ରୀ ତତଃ ପଦ୍ମଂ ସମାଲିଖେତ୍ ।
ପାଦନିତ୍ରୀଣି ପଦାର୍ଥ ପୀଠକୋଣେଷୁ ମାର୍ଜୟେତ୍ ।
ଅବଶିଷ୍ଟୈଃ ପଦୈର୍ବିଦ୍ୱାନ୍ ପୀଠଗୋତ୍ରାଣି କଳ୍ପୟେତ୍ ।
ପଦାନି ବୀଥିସଂସ୍ଥାନି ମାର୍ଜୟେତ୍ପଂକ୍ତ୍ୟଭେଦତଃ ।
ଦିକ୍ଷୁଦ୍ୱାରାଣି ରଚୟେଦ୍ଧି ଚତୁଃକୋଷ୍ଠ କୈସ୍ତତଃ ।
ପଦୈସ୍ତ୍ରିଭିରଥୈକେନ ଶୋଭାଃସ୍ୟୁର୍ଦ୍ୱାର ପାର୍ଶ୍ୱୟୋଃ ।
ଉପଶୋଭାଃ ସ୍ୟୁରେକେନ ତ୍ରିଭିଃ କୋଷ୍ଠୈରନନ୍ତରଂ ।
ଅବଶିଷ୍ଟୈଃ ପଦୈଃ ଷଡ୍‌ଭିଃ କୋଣାନାଂ ସ୍ୟାଚ୍ଚତୁଷ୍ଟୟଂ ।
ରଞ୍ଜୟେତ୍ପଞ୍ଚଭିର୍ବର୍ଣ୍ଣୈର୍ମଣ୍ଡଳଂ ତନ୍ମନୋହରଂ ।
ଗାତ୍ରାଣି ତସ୍ୟ ଶୁକ୍ଳାନି ବୀଥିଶୁ ଚ ଚତସୃଷୁ ।
ଆଲିଖେତ୍କଳ୍ପଲତିକା ଦଳପୁଷ୍ପସମନ୍ୱିତାଃ ।
ବର୍ଣ୍ଣେ ର୍ନାନାବିଧୈର୍ଶ୍ଚିତ୍ରୈଃ ସର୍ବଦୃଷ୍ଟି ମନୋହରାଃ ।
ଦ୍ୱାରାଣି ଶ୍ୱେତବର୍ଣ୍ଣାନି ଶୋଭା ରକ୍ତା ସମୀରିତାଃ ।
ଉପଶୋଭାଃ ପୀତବର୍ଣ୍ଣାଃ କୋଣାନ୍ୟସିତଭାନି ଚ ।
ତ୍ରିସୋରେଖା ବହିଃ କାର୍ଯ୍ୟାଃ ସିତରକ୍ତାସିତାଃ କ୍ରମାତ୍ ।
ମଣ୍ଡଳଂ ସର୍ବତୋଭଦ୍ରମେତତ୍ ସାଧାରଣଂ ମତଂ ।

(ତନ୍ତ୍ରସାରେ)

ବ୍ୟାଖ୍ୟା - ମଣ୍ଡଳ କରିବାର କ୍ରମ ଯଥା – ପ୍ରଥମତଃ ସୂତା ପକାଇ ଗୋଟିଏ ସମଚତୁରସ୍ର ମଣ୍ଡଳ କରିବ, ଯେପରି ରେଖା ସବୁ ସାନ ବଡ଼ ନ ହୁଏ । ତାହାମଧ୍ୟରେ ଦୀର୍ଘରେ ପନ୍ଦରଗୋଟି ସମାନ ସରଳରେଖା ଓ ପ୍ରତିରେ ପନ୍ଦରଗୋଟି ସମାନ ସରଳରେଖା ଏପରି ଭାବରେ କାଟିବ, ଯେପରି ସମାନ ଦୁଇଶହ ଛପନଗୋଟି କୋଠି ହେବ । ତତ୍ପରେ ସେହି ମଣ୍ଡଳରେ ମଧ୍ୟସ୍ଥିତ ଛତିଶଗୋଟି କୋଠିକୁ ଲିଭାଇ ଗୋଟିଏ ସମଚତୁରସ୍ର ମଣ୍ଡଳ କରି ତାହା ମଧ୍ୟରେ ମୁରୁଜ ଦ୍ୱାରା ଗୋଟିଏ ଅଷ୍ଟଦଳପଦ୍ମ ନିର୍ମାଣ କରିବ । ପଦ୍ମଥିବା ମଣ୍ଡଳର ବାହାର ପଂକ୍ତିରେ ପୀଠ କରିବ, ଯେପରି ତାହାର ଚାରିକୋଣ ପୀଠର ଗର୍ଭ ହେବ ! ତତ୍ପରେ ସେହି ପୀଠର ନିକଟବର୍ତ୍ତୀ ଚତୁର୍ଦ୍ଦିଗରେ ଏକ ପଂକ୍ତିରେ ଥିବା ଅଠେଇଶ କୋଠି ମଧ୍ୟରୁ ପ୍ରତ୍ୟେକ କୋଣରୁ ତିନି ତିନି କୋଠି ଲିଭାଇ ପୀଠର ପାଦ ନିର୍ମାଣ



କରିବ । ଅବଶିଷ୍ଟ ଷୋଳଗୋଟି କୋଠି ଲିଭାଇ ପୀଠର (ତାହାର ସ୍ଥୁଳତା) ନିର୍ମାଣ କରିବ । ସେହି ଶରୀରର ଚାରିଆଡ଼େ ଦୁଇ ପଂକ୍ତିରେ ଥିବା ଅଶୀଗୋଟି କୋଠିକୁ ଲିଭାଇ ଚତୁର୍ଦ୍ଦିଗରେ ବୀଥି ନିର୍ମାଣ କରିବ ଓ ସେହି ବୀଥିକୁ ମୁରୁଜଦ୍ୱାରା ପତ୍ରପୁଷ୍ପାଦିଯୁକ୍ତ କଳ୍ପଲତା ଲେଖି ଶୋଭନ କରିବ ସେହି ବୀଥିର ଚାରିଆଡ଼େ ଅବଶିଷ୍ଟ ଦୁଇ ପଂକ୍ତିରେ ଥିବା ଶଏ ବାରଗୋଟି କୋଠି ମଧ୍ୟରୁ ପ୍ରତ୍ୟେକ କୋଣର ଛଅ ଛଅ ଗୋଟି (୨୪) କୋଠି ଲିଭାଇ ମଣ୍ଡଳର ଚାରିଗୋଟି କୋଣ ନିର୍ମାଣ କରିବ । ସେହି କୋଣମାନଙ୍କର ଉଭୟ ପାର୍ଶ୍ୱରେ ଚାରି ଚାରି (୩୨) କୋଠି ଲିଭାଇ ଆଠଗୋଟି ଉପଶୋଭା କରିବ ଏବଂ ସେହି ଉପଶୋଭାର ପାର୍ଶ୍ୱରେ ଚାରି ଚାରି (୩୨) କୋଠି ଲିଭାଇ ଆଠଗୋଟି ଶୋଭା କରିବ । ସେହି ଶୋଭା ନିକଟବର୍ତ୍ତୀ ଛଅ ଛଅ (୨୪) କୋଠି ଲିଭାଇ ଚାରିଦିଗରେ ଚାରିଗୋଟି ଦ୍ୱାର କରିବ । ଆଉ ଏହାର ସନ୍ଧି ସ୍ଥାନମାନଙ୍କୁ ବଡ଼ ସାନ ନ କରି ମାପି ସମାନ କରିବ । ବୀଥିକୁ ନାନାବିଧ ବର୍ଣ୍ଣଦ୍ୱାରା ଚିତ୍ରିତ କରିବ, ଯଥା ଦ୍ୱାର ସବୁ ଶୁକ୍ଳବର୍ଣ୍ଣ, ଶୋଭା ରକ୍ତବର୍ଣ୍ଣ, ଉପଶୋଭା ପୀତବର୍ଣ୍ଣ ଓ କୋଣ ଚତୁଷ୍ଟୟ କୃଷ୍ଣବର୍ଣ୍ଣ କରିବ ଏବଂ ମଣ୍ଡଳ ବାହାରେ ଶ୍ୱେତ, ରକ୍ତ ଓ କୃଷ୍ଣବର୍ଣ୍ଣ ମୁରୁଜଦ୍ୱାରା ଚତୁର୍ଦ୍ଦିଗରେ ତିନି ତିନିଗୋଟି ରେଖା କାଟିବ, ତାହା ଯେପରି ଦେଖିବାକୁ ସୁନ୍ଦର ହେବ - ଏହାକୁ ସର୍ବତୋଭଦ୍ରମଣ୍ଡଳ କହନ୍ତି । ଏହାର ସମସ୍ତ ମାପ ଠିକ୍ ରଖିବା ସକାଶେ ୨୫୬ ଗୋଟି କୋଠିର ସଂଖ୍ୟା ଦିଆଗଲା । ସେଥିରୁ କ୍ରମେ ଲିଭାଇ ମଣ୍ଡଳର ଅଙ୍ଗ ନିର୍ମାଣ କରିବ ।

## କୋଠିର ବର୍ଣ୍ଣନ

ମୋଟ କୋଠି ୨୫୬ ମଧ୍ୟରୁ

| | | |
|---|---|---|
| ପଦ୍ମ | ୩୬ | କୋଠି |
| ପୀଠପାଦ | ୧୨ | ,, |
| ,, ଶରୀର | ୧୬ | ,, |
| ବୀଥି | ୮୦ | ,, |
| କୋଣ | ୨୪ | ,, |
| ଉପଶୋଭା | ୩୨ | ,, |
| ଶୋଭା | ୩୨ | ,, |
| ଦ୍ୱାର | ୨୪ | ,, |
| ମୋଟ | ୨୫୬ | କୋଠି |

## ୭୩ - ପଦ୍ମମଣ୍ଡଳ ନିର୍ମାଣ କର୍ମ

ପଦ୍ମକ୍ଷେତ୍ରସ୍ୟ ସନ୍ତ୍ୟଜ୍ୟ ଦ୍ୱାଦଶାଂଶଂ ବହିଃ ସୁଧୀଃ ।
ତନ୍ମେଧ୍ୟ ବିଭଜେଦ୍ ବୃତ୍ତୈସ୍ତ୍ରିଭି ସମ ବିଭାଗତଃ ।
ଆଦ୍ୟଂ ସ୍ୟାତ୍କର୍ଣ୍ଣିକା ସ୍ଥାନଂ କୋଶରାଣାଂ ଦ୍ୱିତୀୟକଂ ।
ତୃତୀୟଂ ପଦ୍ମପତ୍ରାଣାଂ ମୁକ୍ତାଂଶେନ ଦଳାଗ୍ରକଂ ।
ବାହ୍ୟବୃତ୍ତାନ୍ତରାଳସ୍ୟ ମାନେନ ବିଧିନା ସୁଧୀଃ ।
ନିଧାୟ କେଶରାଗ୍ରେଷୁ ପରିତୋଽର୍ଦ୍ଧ ନିଶାକରାନ୍ ।
ଲିଖିତ୍ୱା ସନ୍ଧି ସଂସ୍ଥାନି ତତ୍ର ସୂତ୍ରାଣି ପାତୟେତ୍ ।
ଦଳାଗ୍ରାଣାଂ ଚ ଯନ୍ମାନଂ ତନ୍ମାନାଦ୍ ବୃତ୍ତମାଲିଖେତ୍ ।
ତଦନ୍ତରାଳ ତନ୍ମଧ୍ୟ ସୂତ୍ରସ୍ୟୋଭୟତଃ ସୁଧୀଃ ।
ଆଲିଖେଦ୍ ବାହ୍ୟ ହସ୍ତେନ ଦଳାଗ୍ରାଣି ସମନ୍ତତଃ ।
ଦଳମୂଳେଷୁ ଯୁଗଶଃ କେଶରାଣି ପ୍ରକଳ୍ପୟେତ୍ ।
ଅଙ୍ଗୁଳୋତ୍ସେଧବିସ୍ତାରାଃ ସୀମାରେଖାଃ ସିତାଃ ଶୁଭାଃ
କର୍ଣ୍ଣିକାଂ ପୀତବର୍ଣ୍ଣେନ କେଶରାଣ୍ୟରୁଣେନ ଚ ।
ଶୁକ୍ଳବର୍ଣ୍ଣାନି ପତ୍ରାଣି ତତ୍ସନ୍ଧୀନ୍ ଶ୍ୟାମଳେନ ଚ ।
ରଜସା ରଞ୍ଜୟେନ୍ମନ୍ତ୍ରୀ ଯଦ୍ ବା ପୀତୈବ କର୍ଣ୍ଣିକା ।
କେଶରାଃ ପୀତରକ୍ତାଃ ସ୍ୟୁରରୁଣାନି ଦଳାନିଚ ।
ସନ୍ଧୟଃ କୃଷ୍ଣବର୍ଣ୍ଣାଃ ସ୍ୟୁଃ ଶୀତେନାପ୍ୟସିତେନ ବା ।
ରଞ୍ଜୟେତ୍ପୀଠଗର୍ଭାଣି ପାଦାଃ ସ୍ୟୁରରୁଣପ୍ରଭାଃ ।
ଏତତ୍ ସାଧାରଣଂ ପ୍ରୋକ୍ତଂ ପଙ୍କଜଂ ତନ୍ତ୍ରବେଦିଭିଃ ।

ବ୍ୟାଖ୍ୟା - ପଦ୍ମନିର୍ମାଣକ୍ରମ ଯଥା – ପଦ୍ମକ୍ଷେତ୍ରକୁ ସମାନ ବାର ଭାଗରେ ବିଭକ୍ତ କରି, ଉପରରୁ ଏକଭାଗ ଛାଡ଼ି ଅବଶିଷ୍ଟ ଏଗାରଭାଗକୁ ତିନି ଅଂଶରେ ବିଭକ୍ତ କରି ପ୍ରତ୍ୟେକ ଅଂଶରେ ଗୋଟିଏ ଗୋଟିଏ ବୃତ୍ତ ଅଙ୍କିତ କରିବ । ତତ୍ପରେ ସର୍ବାପେକ୍ଷା ସାନ ପ୍ରଥମ ବୃତ୍ତ ମଧ୍ୟରେ କର୍ଣ୍ଣିକା, ଦ୍ୱିତୀୟ ବୃତ୍ତ ମଧ୍ୟରେ କେଶର ଓ ତୃତୀୟ ବୃତ୍ତ ମଧ୍ୟରେ ପତ୍ର ଅଙ୍କିତ କରିବ । ସେହି ପତ୍ରର ଅଗ୍ର ଯେପରି ତ୍ୟାଗ କରିଥିବା ଅଂଶକୁ ସ୍ପର୍ଶ କରିବ । ପ୍ରତ୍ୟେକ ପତ୍ରର ମୂଳରେ ପୁଣି ଦୁଇ କେଶର ଅଙ୍କିତ କରିବ ଏବଂ ସେହି କେଶରର ଅଗ୍ରଭାଗକୁ ଅର୍ଦ୍ଧଚନ୍ଦ୍ରାକୃତି



କରିବ । ଏହାର ସୀମାରେଖା ସବୁ ଶୁକ୍ଳବର୍ଣ୍ଣ ମୁରୁଜଦ୍ୱାରା ଆଙ୍ଗୁଳିଏ ମୋଟ କରିବ । ପୀତବର୍ଣ୍ଣ ମୁରୁଜଦ୍ୱାରା ପଦ୍ମର କର୍ଣ୍ଣିକା, ରକ୍ତବର୍ଣ୍ଣ ମୁରୁଜଦ୍ୱାରା କେଶର, ଶୁକ୍ଳବର୍ଣ୍ଣ ମୁରୁଜଦ୍ୱାରା ପତ୍ର ଏବଂ ଶ୍ୟାମଳବର୍ଣ୍ଣ ମୁରୁଜଦ୍ୱାରା ସନ୍ଧିସ୍ଥାନକୁ ରଞ୍ଜିତ କରିବ, ଅଥବା କର୍ଣ୍ଣିକାକୁ ପୀତବର୍ଣ୍ଣ, କେଶରମାନଙ୍କୁ ପୀତ ବା ରକ୍ତବର୍ଣ୍ଣ, ପତ୍ରମାନଙ୍କୁ ରକ୍ତବର୍ଣ୍ଣ, ସନ୍ଧିମାନଙ୍କୁ କୃଷ୍ଣବର୍ଣ୍ଣ, ପୀଠପାଦ ରକ୍ତବର୍ଣ୍ଣ ଓ ପୀଠର ଗାତ୍ର (ଦେହ) ଶୁକ୍ଳବର୍ଣ୍ଣ କରିବ । ଏହିରୂପ ସାଧାରଣ ପଦ୍ମମଣ୍ଡଳ ତନ୍ତ୍ରବିତ୍ ପଣ୍ଡିତମାନଙ୍କ ମତ ଅଟେ ।

## ୭୪ - ସ୍ୱଳ୍ପ ସର୍ବତୋଭଦ୍ରମଣ୍ଡଳ

ଚତୁରସ୍ରାଂ ଭୁବଂ ଭିତ୍ୱା ଦିଗ୍‌ଭ୍ୟୋ ଦ୍ୱାଦଶଧା ସୁଧୀଃ ।
ପାତୟେତ୍ତ୍ର ସୂତ୍ରାଣି କୋଷ୍ଠାନାଂ ଦୃଶ୍ୟତେ ଶତଂ ।
ଚତୁଷ୍ଟ ଦ୍ୱାରିଂଶ ଦାଢ୍ୟଂ ପଶ୍ଚାତ୍‌ଷଟ୍‌ତ୍ରିଂଶତାମ୍ବୁଜଂ ।
କୋଷ୍ଠୈଃ ପ୍ରକଳ୍ପୟେତ୍‌ପୀଠଂ ପଂକ୍ତ୍ୟା ନୈବାତ୍ର ବୀଥିକା ।
ଦ୍ୱାରଶୋଭେ ଯଥା ପୂର୍ବମୁପଶୋଭା ନ ଦୃଶ୍ୟତେ ।
ଅବଶିଷ୍ଟୈଃ ପଦୈଃ କୁର୍ଯ୍ୟାତ୍ ଷଡ୍‌ଭିଃ କୋଣାନି ତନ୍ତ୍ରବିତ୍ ।
ବିଦଧ୍ୟାତ୍ ପୂର୍ବବଚ୍ଛେଷଂ ଏବଂ ବା ମଣ୍ଡଳଂ ସ୍ମୃତଂ ।

(ତନ୍ତ୍ରସାରେ)

ବ୍ୟାଖ୍ୟା - ପ୍ରଥମ ଭୂମିରେ ଗୋଟିଏ ଚତୁରସ୍ରମଣ୍ଡଳ ଅଙ୍କିତ କରିବ, ସେହି ମଣ୍ଡଳ ମଧ୍ୟରେ ଦୀର୍ଘରେ ଏଗାର ଓ ପ୍ରତିରେ ଏଗାରରେଖା ଏପରି ଭାବରେ କାଟିବ, ଯେପରି ସମାନ ଶଏଚଉରାଳିଶ କୋଠି ହେବ । ତତ୍ପରେ ଏହାର ମଧ୍ୟସ୍ଥଳରୁ ତିରିଶ ଗୋଟି କୋଠି ଲିଭାଇ ସେହି ସ୍ଥାନରେ ଗୋଟିଏ ଅଷ୍ଟଦଳ ପଦ୍ମ ଅଙ୍କିତ କରିବ । ତଦନନ୍ତରେ ପଦ୍ମମଣ୍ଡଳର ଚାରିଆଡ଼ରୁ ଉପର ଏକ ପଂକ୍ତିରେ ଥିବା କୋଠିମାନଙ୍କୁ ଲିଭାଇ ପୀଠଗାତ୍ରା ଓ ପୀଠକୋଣ କରିବ । ଉପରୋକ୍ତ ଭଦ୍ରମଣ୍ଡଳାନୁଯାୟୀ ଶୋଭା ଓ ଦ୍ୱାର ଅଙ୍କିତ କରିବ । ପ୍ରତ୍ୟେକ କୋଣରୁ ଛଅ ଛଅ କୋଠି ଲିଭାଇ ଚାରିଗୋଟି କୋଣ ନିର୍ମାଣ କରିବ । ତତ୍ପରେ ପୂର୍ବୋକ୍ତ ଭଦ୍ରମଣ୍ଡଳ ଅନୁସାରେ ପଞ୍ଚବର୍ଣ୍ଣୀ ମୁରୁଜଦ୍ୱାରା ଅନ୍ୟାନ୍ୟ କ୍ରିୟା କରିବ । କିନ୍ତୁ ଏ ମଣ୍ଡଳରେ ଉପଶୋଭା ଓ ବୀଥି କରିବ ନାହିଁ ।

## ୭୫ - ବୃହତ୍ ସାବିତ୍ରୀମଣ୍ଡଳ ଲକ୍ଷଣ

ସାବିତ୍ରୀମଣ୍ଡଳଂ ବକ୍ଷ୍ୟେ ଶୃଣୁଷ୍ୱ ନଗନନ୍ଦିନୀ ।
ଚତୁରସ୍ରୀକୃତେ କ୍ଷେତ୍ରେ ଗୋମୟେନୋପଲିପିତେ ।

ତତ୍ର ମଣ୍ଡଳମାଲିଖ୍ୟ ସାବିତ୍ରୀନାମକଂ ଶୁଭଂ ।
ଅଷ୍ଟାଦଶାଷ୍ଟାଦଶାଃ ସୂ୍ୟସ୍ତିର୍ଯ୍ୟଗୂର୍ଦ୍ଧ୍ୱଗତାଃ ସମାଃ ।
ଦ୍ୱ୍ୟଙ୍ଗୁଳାନ୍ତରିତାଃ କାର୍ଯ୍ୟ ରେଖାଷ୍ଟୋଭୟତଃ କ୍ରମାତ୍ ।
ପଦାନିଚୈକୋ ନ ନବତ୍ୟଧିକଦ୍ୱିଶତାନି ବୈ ।
ଐଶାନ୍ୟାଦିଷୁ କୋଣେଷୁ ଶୃଙ୍ଖଳାଷ୍ଟ ଚତୁଷ୍ଟୁଃ ।
ପ୍ରାଙ୍ମଧ୍ୟପଦମାରଭ୍ୟ ଯାମ୍ୟମଧ୍ୟ ପଦାବଧି ।
ଯା ମ୍ୟମଧ୍ୟ ପ୍ରଦାପ୍ରତ୍ୟଗ୍ ଦିଙ୍ମଧ୍ୟପକାବଧି ।
ପ୍ରତ୍ୟଗ୍ ଦିଙ୍ମଧ୍ୟ ପଦତସ୍ତୁଥୈବୋତ୍ତର ମଧ୍ୟତଃ ।
ସର୍ବାସାଂ ଶୃଙ୍ଖଳାନାଂ ଚ ବଲ୍ଲୀଚୋଭୟପାର୍ଶ୍ୱକେ ।
କୋଣବଲ୍ଲ୍ୟଭୟୋଃ ପାର୍ଶ୍ୱେ ଶୋଭାଂ କୁର୍ଯ୍ୟାଚ୍ଚତୁଷ୍ପଦୈଃ ।
ପଞ୍ଚବିଂଶତିଭିର୍ମଧ୍ୟେ ଶୁକ୍ଳପଦ୍ମଂ ସମାଲିଖେତ୍ ।
ପଦ୍ମସ୍ୟୈବଚତୁର୍ଦ୍ଦିକ୍ଷୁ ଚତୁର୍ବିଂଶତିକୈଃ ପଦୈଃ ।
ପରିଧିଂ କାରୟେଦ୍ଧୀମାନ୍ ଭୂଷୟେତ୍ପୀତ ବର୍ଣ୍ଣ କୈଃ ।
କର୍ଣ୍ଣିକା ପୀତବର୍ଣ୍ଣାଭା ରକ୍ତାନି କେଶରାଣି ଚ ।
ଦଳାନି ଶୁକ୍ଳବର୍ଣ୍ଣାନି ମଣ୍ଡଳଂ ପୀତବର୍ଣ୍ଣକଂ ।
ପଦ୍ମଭୂମେ ଷ୍ଟତୁଷ୍କୋଣଂ ରକ୍ତବର୍ଣ୍ଣେନ ଭୂଷୟେତ୍ ।
ପଦ୍ମସ୍ୟୈବଚତୁର୍ଦ୍ଦ୍ୱାରଂ ରକ୍ତପୀତସିତାସିତୈଃ ।
ଦିକ୍ ଶୃଙ୍ଖଳାଃ ଶୁକ୍ଳବର୍ଣ୍ଣାଃ କାରୟେନ୍ମଣ୍ଡଳଂ ସୁଧୀଃ ।
କୋଣଶୃଙ୍ଖଳ ଭୂଷାଂଚ ରକ୍ତପୀତସିତାସିତୈଃ ।
ପୂର୍ବଶୋଭା ଶୁକ୍ଳବର୍ଣ୍ଣା ଭବେ ଦୈଶାନ୍ୟ ପାର୍ଶ୍ୱଗା ।
ଅପରା ରକ୍ତ ବର୍ଣ୍ଣା ଯା ହୃତଭୁକ୍‌କୋଣ ପାର୍ଶ୍ୱଗା ।
ଦକ୍ଷିଣସ୍ଥା କୃଷ୍ଣବର୍ଣ୍ଣା ହୃତଭୁକ୍ କୋଣ ପାର୍ଶ୍ୱଗା ।
ଅପରା ପୀତବର୍ଣ୍ଣା ଯା ନିର୍ଋତି କୋଣ ପାର୍ଶ୍ୱଗା ।
ପ୍ରତ୍ୟକ୍‌ସ୍ଥିତା କୃଷ୍ଣବର୍ଣ୍ଣା ନିର୍ଋତିପାର୍ଶ୍ୱଗା ଚ ଯା ।
ଅପରା ରକ୍ତବର୍ଣ୍ଣା ଯା ବାୟୁକୋଣସ୍ୟ ପାର୍ଶ୍ୱଗା ।
ଉତ୍ତରସ୍ଥା ଶୁକ୍ଳବର୍ଣ୍ଣା ବାୟୁପାର୍ଶ୍ୱଗତା ଚ ଯା ।
ଅପରା କୃଷ୍ଣବର୍ଣ୍ଣା ଚ ରୁଦ୍ରକୋଣଗତା ଚ ଯା ।
ଶୋଭାବୃତା ଚା ଯା ବଲ୍ଲୀ ସାକୃଷ୍ଣେନ ବିଭୂଷିତା ।
ଦିକ୍ ସଂସ୍ଥିତାଷ୍ଟତୁର୍ବଲ୍ଲ୍ୟୋ ନୀଳେନ ପରିପୂରିତାଃ ।
ଉପଶୋଭାଷ୍ଟତୁର୍ଦ୍ଦିକ୍ଷୁ ପରିଧେଃ ପାର୍ଶ୍ୱଗାଷ୍ଟଯାଃ ।
ଭୁଷିତାଷ୍ଟ ପ୍ରଯତ୍ନେନ ରକ୍ତପୀତସିତାସିତୈଃ ।



ତିସ୍ରୋରେଖା ବହିଃ କାର୍ଯ୍ୟା ରକ୍ତପୀତସିତାଃ କ୍ରମାତ୍ ।
ସାବିତ୍ରୀ ପୂଜିତା ଯତ୍ର ତତ୍ରେଦଂ ମଣ୍ଡଳଂ ଲିଖେତ୍ ।
ସାବିତ୍ରୀନାମକଂ ଖ୍ୟାତଂ ଦେବୈରପି ସୁଦୁର୍ଲ୍ଲଭଂ ।
ବ୍ରାହ୍ମଣୈରାଦୃତଂ ସମ୍ୟଗ୍‌ବ୍ରାହ୍ମଣେହର୍ଗୋପିତଂ ସଦା ।
ମଣ୍ଡଳଂ ଦୃଶତେ ଯେନ ସୋଽପି ପାପାତ୍ ପ୍ରମୁଚ୍ୟତେ ।
(ହୟଶୀର୍ଷୋକ୍ତମାର୍ଗଣପଦ୍ଧତୌ)

ବ୍ୟାଖ୍ୟା - ମହାଦେବ କହିଲେ ହେ ପାର୍ବତି ! ସାବିତ୍ରୀମଣ୍ଡଳ ଲକ୍ଷଣ କହୁଅଛୁ, ଶ୍ରବଣ କର । ପ୍ରଥମେ ଗୋଟିଏ ଚତୁରସ୍ରୀକୃତ କ୍ଷେତ୍ର ନିର୍ମାଣ କରି ତାହାକୁ ଗୋମୟଲେପନ ଦ୍ୱାରା ଶୁଦ୍ଧ କରି ସେଥିରେ ସାବିତ୍ରୀମଣ୍ଡଳ ଲେଖିବ । ଯଥା – ଦୀର୍ଘରେ ସମାନ ଆଠଗୋଟି ସରଳରେଖା ଓ ପ୍ରତିରେ ସମାନ ଅଠରଗୋଟି ସରଳରେଖା ଦୁଇ ଦୁଇ ଆଙ୍ଗୁଳି ଛଡ଼ାରେ ଧଳା ମୁରୁଜରେ ଏ ରୂପ କାଟିବ ଯେପରି ସମାନ ୨୮୯ କୋଠି ହେବ । ସେହି କୋଠିମାନଙ୍କ ମଧ୍ୟସ୍ଥିତ ୨୫ କୋଠିରେ ଶୁକ୍ଳବର୍ଣ୍ଣ ମୁରୁଜରେ ଗୋଟିଏ ପଦ୍ମମଣ୍ଡଳ ଲେଖିବ । ସେହି ପଦ୍ମର କର୍ଣ୍ଣିକାକୁ ହଳଦିଆ ଓ କେଶରଗୁଡ଼ିକୁ ନାଲିଆ ଏବଂ ପତ୍ରଗୁଡ଼ିକୁ ଧଳା ମୁରୁଜରେ ରଞ୍ଜିତ କରିବ । ମଣ୍ଡଳକୁ ପୀତବର୍ଣ୍ଣ କରିବ । ତପ୍ରରେ ସେହି ପଦ୍ମମଣ୍ଡଳର ଚତୁର୍ଦ୍ଦିଗରେ ଥିବା ୨୪ କୋଠିରେ ହଳଦିଆ ମୁରୁଜଦ୍ୱାରା ଗୋଟିଏ ପରିଧି କରିବ । ପରିଧି ଓ ପଦ୍ମମଣ୍ଡଳର ମଧ୍ୟବର୍ତ୍ତୀ କୋଣମାନଙ୍କୁ ରକ୍ତବର୍ଣ୍ଣ ମୁରୁଜଦ୍ୱାରା ରଞ୍ଜିତ କରିବ । ତଦନନ୍ତର ସାବିତ୍ରୀମଣ୍ଡଳର ଈଶାନାଦି ପ୍ରତ୍ୟେକ କୋଣରେ ଉପରୁ ତଳକୁ ସରଳଭାବରେ ଚାରି ଚାରି କୋଠିରେ ଧଳା ମୁରୁଜରେ କୋଣଶୃଙ୍ଖଳା କରିବ । ସେହି ଶୃଙ୍ଖଳାର ଉଭୟପାର୍ଶ୍ୱ କୋଠିମାନଙ୍କୁ ନାଲିଆ, ହଳଦିଆ, ଧଳା ଓ କଳା ମୁରୁଜଦ୍ୱାରା ରଞ୍ଜିତ କରି ସେହି ଶୃଙ୍ଖଳାର ଉଭୟପାର୍ଶ୍ୱରେ ବଲ୍ଲୀ କରିବ । ତପ୍ରର ପୂର୍ବଦିଗରେ ପ୍ରଥମପଂକ୍ତି ମଧ୍ୟ କୋଠିରୁ ଆରମ୍ଭି ଦକ୍ଷିଣ ଦିଗର ପ୍ରଥମପଂକ୍ତି ମଧ୍ୟକୋଠି ପର୍ଯ୍ୟନ୍ତ ଓ ସେହି ଦକ୍ଷିଣ ପ୍ରଥମପଂକ୍ତି ମଧ୍ୟକୋଠିରୁ ଆରମ୍ଭି ପଶ୍ଚିମଦିଗ ପ୍ରଥମପଂକ୍ତି ମଧ୍ୟକୋଠି ପର୍ଯ୍ୟନ୍ତ ଓ ସେହି ପଶ୍ଚିମ ମଧ୍ୟକୋଠିରୁ ଆରମ୍ଭି ଉତ୍ତରଦିଗ ପ୍ରଥମପଂକ୍ତି ମଧ୍ୟକୋଠି ପର୍ଯ୍ୟନ୍ତ ଆଉ ସେହି ଉତ୍ତର ଓ ମଧ୍ୟକୋଠିରୁ ଆରମ୍ଭି ପୂର୍ବଦିଗ ପ୍ରଥମପଂକ୍ତି ମଧ୍ୟକୋଠି ପର୍ଯ୍ୟନ୍ତ ଏହିପରି ବତିଶ କୋଠିରେ ଚାରିଗୋଟି ଦିକ୍ ଶୃଙ୍ଖଳା କରିବ । ସେହି ଦିକ୍‌ଶୃଙ୍ଖଳା କୋଠିମାନଙ୍କୁ ଶୁକ୍ଳବର୍ଣ୍ଣ ମୁରୁଜଦ୍ୱାରା ରଞ୍ଜିତ କରିବ । ଏହି ଦିକ୍‌ଶୃଙ୍ଖଳା ମାନଙ୍କର ଉପୟପାର୍ଶ୍ୱରେ ବଲ୍ଲୀ (ଲତା) କରିବ । ପ୍ରତ୍ୟେକ ଦିଗରେ ଦିଗ୍‌ବଲ୍ଲୀ ଓ ଉଭୟ କୋଣବଲ୍ଲୀ ମଧ୍ୟରେ ମଧ୍ୟରେ ଚାରି ଚାରି କୋଠିରେ ଦୁଇ ଦୁଇ ଶୋଭା କରିବ ଅର୍ଥାତ୍ ପ୍ରତ୍ୟେକ ଶୋଭା

ଦିଗରେ ପ୍ରଥମପଂକ୍ତିରୁ ତିନିକୋଠି ଓ ତାହାର ପରପଂକ୍ତିର ଏକକୋଠି ଏପରି ଚାରିଗୋଟି କୋଠିରେ କରିବ । ତତ୍ପରେ ପରିଧିପାଖ ପ୍ରଥମ ପଂକ୍ତିର ଏକ କୋଠି ଓ ଦ୍ୱିତୀୟ ତୃତୀୟ ପଂକ୍ତିରୁ ତିନି ତିନି କୋଠି ଆଉ ଚତୁର୍ଥପଂକ୍ତିରୁ ଏକ କୋଠି ଏପରି ଆଠ ଆଠ କୋଠିରେ ଚାରିଦିଗରେ ଚାରିଗୋଟି ଦ୍ୱାର କରିବ । ଅନନ୍ତର ସେହି ପରିଧିର ପାଖ ପ୍ରଥମପଂକ୍ତିରୁ ତିନିଗୋଟି ଓ ଦ୍ୱିତୀୟ ପଂକ୍ତିରୁ ଏକ କୋଠି ଏପରି ଚାରି ଚାରି କୋଠିରେ ପ୍ରତ୍ୟେକ ଦ୍ୱାରର ଉଭୟପାର୍ଶ୍ୱରେ ଦୁଇ ଦୁଇ ଉପଶୋଭା କରିବ । ଆଉ ପୂର୍ବଦିଗ ଈଶାନକୋଣ ପାଖ ଶୋଭାକୁ ଧଳା ମୁରୁଜଦ୍ୱାରା ଓ ସେହି ଦିଗର ଅଗ୍ନିକୋଣ ପାଖ ଶୋଭାକୁ ନାଲିଆ ମୁରୁଜ ଦ୍ୱାରା, ଦକ୍ଷିଣଦିଗ ଅଗ୍ନିକୋଣପାଖ ଶୋଭାକୁ କଳା ମୁରୁଜଦ୍ୱାରା ଓ ସେହି ଦିଗର ନୈର୍ଋତକୋଣ ପାଖ ଶୋଭାକୁ ହଳଦିଆ ମୁରୁଜଦ୍ୱାରା ପଶ୍ଚିମ ଦିଗ ନୈର୍ଋତକୋଣପାଖ ଶୋଭାକୁ କଳା ମୁରୁଜଦ୍ୱାରା ଓ ସେହି ଦିଗର ବାୟୁକୋଣପାଖ ଶୋଭାକୁ ନାଲିଆ ମୁରୁଜଦ୍ୱାରା ଆଉ ଉତ୍ତରଦିଗର ବାୟୁକୋଣପାଖ ଶୋଭାକୁ ଧଳା ମୁରୁଜଦ୍ୱାରା ଓ ସେହି ଦିଗର ଈଶାନ କୋଣପାଖ ଶୋଭାକୁ ନାଲିଆ ମୁରୁଜଦ୍ୱାରା ରଞ୍ଜିତ କରିବ । କୋଣ ବଲ୍ଲୀକୁ କୃଷ୍ଣବର୍ଣ୍ଣ ମୁରୁଜଦ୍ୱାରା, ଦିଗବଲ୍ଲୀକୁ ନୀଳବର୍ଣ୍ଣ ମୁରୁଜଦ୍ୱାରା ରଞ୍ଜିତ କରିବ । ଦ୍ୱାର ଓ ଉପଶୋଭାମାନଙ୍କୁ ନାଲିଆ, ହଳଦିଆ, ଧଳା ଓ କଳା ଏହି ଚାରିପ୍ରକାର ମୁରୁଜରେ ଏପରି ରଞ୍ଜିତ କରିବ ଯେପରି ଦେଖିବାକୁ ସୁନ୍ଦର ହେବ । ଆଉ ଏହି ସାବିତ୍ରୀମଣ୍ଡଳର ଚତୁର୍ଦ୍ଦିଗରେ ନାଲିଆ, ହଳଦିଆ ଓ ଧଳା ଏହି ତିନି ପ୍ରକାର ମୁରୁଜରେ ତିନି ତିନି ରେଖା କାଟିବ । ଏହି ସାବିତ୍ରୀମଣ୍ଡଳର ସାବିତ୍ରୀଦେବୀଙ୍କୁ ପୂଜା କଲେ ସର୍ବପାପରୁ ମୁକ୍ତିଲାଭ କରିବ । ସର୍ବସାଧାରଣଙ୍କ ବୁଝିବା ସକାଶେ ନିମ୍ନରେ ଶୋଭା, ଉପଶୋଭା ପ୍ରଭୃତିଙ୍କର କୋଠି ସଂଖ୍ୟା ପ୍ରଦତ୍ତ ହେଲା । ଯଥା—

ମୋଟ ୨୮୯ କୋଠି ସଂଖ୍ୟା ମଧ୍ୟରୁ

| | | |
|---|---|---|
| ପଦ୍ମ | ୨୫ | କୋଠି |
| ପରିଧି | ୨୪ | ,, |
| ଚତୁର୍ଦ୍ୱାର | ୩୨ | ,, |
| ଶୋଭା | ୩୨ | |
| ଉପଶୋଭା | ୩୨ | |
| କୋଣ ଶୃଙ୍ଖଳା | ୧୬ | ,, |
| ଦିଗ୍ ଶୃଙ୍ଖଳା | ୩୨ | ,, |
| କୋଣବଲ୍ଲୀ } ଦିଗ୍‌ବଲ୍ଲୀ | ୯୬ | ,, |
| ମୋଟ | ୨୮୯ | କୋଠି |



## ୭୬ - ସ୍ୱସ୍ତିବାଚନ ପ୍ରମାଣ

ସଂପୂଜ୍ୟ ଗନ୍ଧମାଲ୍ୟାଦ୍ୟୈର୍ବ୍ରାହ୍ମଣାନ୍ ସ୍ୱସ୍ତି ବାଚୟେତ୍ ।
ଧର୍ମକର୍ମଣି ମାଙ୍ଗଲ୍ୟେ ସଂଗ୍ରାମେଽଦ୍ଭୁତଦର୍ଶନେ ।

(ଗଦାଧର ଭାଷ୍ୟେ ବ୍ୟାସଃ)

ବ୍ୟାଖ୍ୟା - ଧର୍ମ କର୍ମ, ମାଙ୍ଗଲ୍ୟକର୍ମ, ଯୁଦ୍ଧଯାତ୍ରା ଓ ଉତ୍ପାତଶାନ୍ତି ପ୍ରଭୃତି କର୍ମରେ ପ୍ରଥମେ ବ୍ରାହ୍ମଣମାନଙ୍କୁ ଗନ୍ଧମାଲ୍ୟାଦି ଦ୍ୱାରା ପୂଜା କରି ସ୍ୱସ୍ତିବାଚନ କରାଇବ ।

ଅଲକ୍ଷିତୋଽସ୍ମିନ୍ ରହସି ମାମକୈରପି ଗୋବ୍ରଜେ ।
କୁରୁ ଦ୍ୱିଜାତିସଂସ୍କାରଂ ସ୍ୱସ୍ତିବାଚନପୂର୍ବକଂ ।

(୧୦ମ ସ୍କନ୍ଧ ୮ ମାଧ୍ୟୟେ)

ବ୍ୟାଖ୍ୟା - ନନ୍ଦ ଗର୍ଗଙ୍କୁ କହିଲେ ଯେ ବ୍ରହ୍ମନ୍ ! ଆପଣ ଏ ଗୋଗୋଷ୍ଠରେ ଅଲକ୍ଷିତଭାବରେ ପ୍ରଥମେ ସ୍ୱସ୍ତିବାଚନ କରି ତତ୍ପରେ ଦ୍ୱିଜାତିଯୋଗ୍ୟ ସଂସ୍କାରମାନ ଏକାନ୍ତରେ କରିବା ହେଉନ୍ତୁ । "କର୍ମାଦୌବାଚୟେତ୍ ସ୍ୱସ୍ତି ଯଜ୍ଞାଦୌ ତୁ ବିଶେଷତଃ" ଅର୍ଥାତ୍ ସମସ୍ତ କର୍ମ ଆଦ୍ୟରେ ସ୍ୱସ୍ତିବାଚନ କରିବ; କିନ୍ତୁ ଯଜ୍ଞାଦି କର୍ମରେ ଅବଶ୍ୟ କରିବାକୁ ହେବ ।

## ୭୭ - ସଂକଳ୍ପର ପ୍ରୟୋଜନ

ସଂକଳ୍ପ ମୂଳଃ କାମୋବୈ ଯଜ୍ଞାଃ ସଂକଳ୍ପ ସମ୍ଭବାଃ ।
ବ୍ରତାନିୟମଧର୍ମାଶ୍ଚ ସର୍ବେ ସଂକଳ୍ପଜାଃ ସ୍ମୃତାଃ ।

(ଏକାଦଶୀତତ୍ତ୍ୱେ)

ବ୍ୟାଖ୍ୟା - କାମନା ସଂକଳ୍ପର ମୂଳ ହୁଏ ଏବଂ ସେହି ସଂକଳ୍ପରୁ ଯଜ୍ଞ, ବ୍ରତ ନିୟମ ଓ ଧର୍ମ ଏସବୁ ଉଦ୍ଭବ ହୁଅନ୍ତି । ଅତଏବ ଫଳକାମୀ ବ୍ୟକ୍ତି ସଂକଳ୍ପ କରି କର୍ମ କରିବ ।

## ୭୮ - ସଂକଳ୍ପ ଫଳ

ସଂକଳ୍ପେନବିନା ରାଜନ୍ ଯତ୍କିଂଚିତ୍ କୁରୁତେ ନରଃ ।
ଫଳଂ ଚାଲ୍ପାଲ୍ପକଂ ତସ୍ୟ ଧର୍ମସ୍ୟାର୍ଦ୍ଧକ୍ଷୟୋଭବେତ୍ ।

(ବ୍ରହ୍ମପୁରାଣେ)

ବ୍ୟାଖ୍ୟା - ହେ ରାଜନ୍ ! ବିନାସଂକଳ୍ପରେ କର୍ମ କଲେ, ପୁଣ୍ୟର ଅର୍ଦ୍ଧେକ କ୍ଷୟ ହୁଏ ଓ ଫଳ ମଧ୍ୟ ଅତି ଅଳ୍ପ ହୁଏ ।

ଆଶାସ୍ୟ ଚ ଶୁଭଂ କାର୍ଯ୍ୟମୁଦ୍ଦିଶ୍ୟ ମନୋଗତଂ ।

(ଅଗସ୍ତ୍ୟପୂଜନେ)

ବ୍ୟାଖ୍ୟା - ସଂକଳ୍ପ କରିବାରୁ ହେଲେ ଇଚ୍ଛାନୁଗତ ଶୁଭଫଳକୁ ମନେ କରି ଓ ବାକ୍ୟଦ୍ୱାରା ଉଚ୍ଚାରଣ କରି କର୍ମ ଆରମ୍ଭ କରିବ ।

## ୭୯ - ସଂକଳ୍ପ ପାତ୍ର ନିର୍ଣ୍ଣୟ

ଶୁକ୍ତି ଶଙ୍ଖାଶ୍ମହସ୍ତୈଶ୍ଚ କାଂସ୍ୟରୌପ୍ୟାଦିଭିସ୍ତଥା ।
ସଂକଳ୍ପୋନୈବ କର୍ତ୍ତବ୍ୟୋ ମୃଣ୍ମୟେନ୍ କଦାଚନ
ଗୃହୀଂତ୍ୱୌଦୁମ୍ବରଂ ପାତ୍ର ବାରିପୂର୍ଣ୍ଣଗୁଣାନ୍ୱିତଂ ।
ଦର୍ଭତ୍ରୟଂ ସଗ୍ରମୂଳଂ ଫଳପୁଷ୍ପତିଳାନ୍ୱିତଂ ।
ଜଳାଶୟାରାମକୂପେ ସଂକଳ୍ପେ ପୂର୍ବଦିଙ୍ମୁଖଃ ।
ସାଧାରଣେ ଚୋତ୍ତରସ୍ୟ ଐଶାନ୍ୟାଂ ନିକ୍ଷିପେଜ୍ଜଳଂ ।

(ଭବିଷ୍ୟେ)

ତାମ୍ରପାତ୍ରସ୍ୟାତ୍ୟନ୍ତାସମ୍ଭବେ ଜଳମାତ୍ରଂ ଗୃଂହୀତ୍ୱା ତତ୍କରଣୀୟଂ ।

(ଗଦାଧରପଦ୍ଧତୌ)

ବ୍ୟାଖ୍ୟା - ଶାମୁକା, ଶଙ୍ଖ, ପଥର ହସ୍ତ, କଂସା, ରୂପା ପ୍ରଭୃତି ଧାତୁପାତ୍ର ଓ ମୃତ୍ତିକା ପାତ୍ରରେ ସଂକଳ୍ପ କରିବା ନିଷେଧ । କିନ୍ତୁ ଔଦୁମ୍ବର (ତାମ୍ରପାତ୍ରରେ) ଜଳପୂର୍ଣ୍ଣ କରି ସେଥିରେ ମୂଳ ଓ ଅଗ୍ର ବିଶିଷ୍ଟ ତିନିଗୋଟି ନିଷ୍ଖୁଣ କୁଶ ଓ ଫଳ, ପୁଷ୍ପ ଓ ତିଳ ପକାଇ ଜଳାଶୟ ପ୍ରତିଷ୍ଠା, ଆରାମ (ଉପବନ) ପ୍ରତିଷ୍ଠା ଓ କୂପ ପ୍ରତିଷ୍ଠାଦିରେ ପୂର୍ବମୁଖ ହୋଇ ସଂକଳ୍ପ କରିବ । ଆଉ ଅନ୍ୟ କର୍ମରେ ଉତ୍ତରମୁଖ ହୋଇ ସଂକଳ୍ପ କରିବ । ସଂକଳ୍ପଜଳ ଐଶାନ୍ୟ କୋଣରେ ପକାଇବ । ପାତ୍ର ଅଭାବ ହେଲେ ଦକ୍ଷିଣହସ୍ତରେ କୁଶାଦି ସହିତ ଗଣ୍ଡୁଷେ ଜଳ ଧରି ସଂକଳ୍ପ କରିବ ।

## ୮୦ - ସଂକଳ୍ପ ପଦାର୍ଥ ନିର୍ଣ୍ଣୟ

ପ୍ରଣବୈଃ ପୂରୟେତ୍ତୋୟଂ କ୍ରମୁକଂ ମୂଳମନ୍ତ୍ରତଃ ।
ତିଳତଣ୍ଡୁଳପୁଷ୍ପାଣି ତୁଳସୀଦଳମୁତ୍କ୍ଷିପେତ୍ ।
ସଦର୍ଭଚନ୍ଦନୋପେତଂ ତାମ୍ରପାତ୍ରଂ ସୁସମ୍ଭୃତଂ ।
ପୂର୍ବାଭିମୁଖମାଦିଶ୍ୟ ସଂକଳ୍ପମାଚରେଦ୍ ବୁଧଃ ।

(ଗୃହ୍ୟସୂତ୍ରକାରିକାୟାଂ)

---

* ଅତ୍ର କେବଳ ହସ୍ତ ନିଷେଧସ୍ତୁ ପାତ୍ରାନ୍ତର ସଦ୍ଭାବ ବିଷୟଃ (ଶବ୍ଦକଳ୍ପଦ୍ରୁମେ) ଅର୍ଥାତ୍ ପାତ୍ରଥିବା ସମୟରେ ହାତରେ କରିବ ନାହିଁ ।



ବ୍ୟାଖ୍ୟା - ଓଁକାର ପଢ଼ି ତାମ୍ରପାତ୍ରରେ ଜଳ ପୂରଣ କରିବ । ତତ୍ପରେ ସେହି ପାତ୍ରରେ "ଓଁ ନମୋନାରାୟଣାୟ" ଏହି ମୂଳମନ୍ତ୍ର ପଢ଼ି ଗୁଆ, ତିଳ, ଅକ୍ଷତ, ପୁଷ୍ପ, ତୁଳସୀପତ୍ର, ଚନ୍ଦନ ଓ କୁଶ (ଅଗ୍ର ମୂଳବିଶିଷ୍ଟ ତିନିଗୋଟି କୁଶ) ପକାଇ ହସ୍ତରେ ଧରି ପୂର୍ବମୁଖ ହୋଇ ଆସନରେ ବସି ସଂକଳ୍ପ କରିବ ।

## ୮୧ - ପୁଣ୍ୟାହବାଚନ ପ୍ରମାଣ

ବୈଦିକେ ତାନ୍ତ୍ରିକେଚାଦୌ ତତଃ ପୁଣ୍ୟାହ ଇଷ୍ୟାତେ ।

(ଗୃହ୍ୟପରିଶିଷ୍ଟେ)

ପୁଣ୍ୟାହବାଚନ ବିଧିଂ ବକ୍ଷ୍ୟାମୋଽଥ ଯଥାବିଧି ।
ପ୍ରଯୋକ୍ତୁଃ କର୍ମଣାମାଦାବନ୍ତେ ଚୋଦୟସିଦ୍ଧୟେ ।

(ଶୌନକଃ)

ବ୍ୟାଖ୍ୟା - ଗୃହ୍ୟପରିଶିଷ୍ଟରେ କଥିତ ଅଛି ବୈଦିକ ଓ ତାନ୍ତ୍ରିକ କର୍ମର ଆଦ୍ୟରେ ଓ ଶେଷରେ ପୁଣ୍ୟାହବାଚନ କରିବ ।

ପୁଣ୍ୟାହବାଚନଂ ଦୈବେ ବ୍ରାହ୍ମଣସ୍ୟବିଧିୟତେ ।
ଏତଦେବ ନିରୋଂକାରଂ କୁର୍ଯ୍ୟାତ୍ କ୍ଷତ୍ରିୟ ବୈଶ୍ୟୟୋଃ ।
ସୋଂକାରଂ ବ୍ରାହ୍ମଣେବ୍ରୁୟାତ୍ ନିରୋଂକାରଂ ମହୀପତୌ ।
ଉପାଂଶୁଚ ତଥା ବୈଶ୍ୟେ ଶୂଦ୍ରେ ସ୍ୱସ୍ତି ପ୍ରୟୋଜୟେତ୍ ।

(ଯମଃ)

ବ୍ୟାଖ୍ୟା - ଦୈବକାର୍ଯ୍ୟରେ ବ୍ରାହ୍ମଣ ଓଁକାର ସହିତ ମନ୍ତ୍ର ପଢ଼ି ପୁଣ୍ୟାହବାଚନ କରିବେ । କିନ୍ତୁ କ୍ଷତ୍ରିୟ ଓଁକାର ରହିତ ମନ୍ତ୍ର ପଢ଼ି ପୁଣ୍ୟାହବାଚନ କରିବେ । ବୈଶ୍ୟ ଓଁକାର ରହିତ ତୁନି ତୁନି ମନ୍ତ୍ର ପଢ଼ି ପୁଣ୍ୟାହବାଚନ କରିବେ । ମାତ୍ର ଶୂଦ୍ରମାନଙ୍କର ପୁଣ୍ୟାହବାଚନରେ କେବଳ ସ୍ୱସ୍ତି ଶବ୍ଦ ବ୍ୟବହୃତ ହେବ ।

ତଚ୍ଚ କର୍ମପ୍ରୟୋଗାନ୍ତର୍ଗତମିତି କେଚିତ୍ ବହବସ୍ତୁ ପ୍ରୟୋଗବହିର୍ଭୂତମିତି । ଆଦ୍ୟ ପକ୍ଷେ କର୍ମପ୍ରୟୋଗ ସଂକଳ୍ପଂ କୃତ୍ୱା ପୁଣ୍ୟାହବାଚନଂ କାର୍ଯ୍ୟଂ । ଦ୍ୱିତୀୟେତୁ ତତ୍କୃତ୍ୱା କର୍ମ ସଂକଳ୍ପଂ । (ଗୃହ୍ୟସୂତ୍ରଗଦାଧର ଭାଷ୍ୟେ)

ବ୍ୟାଖ୍ୟା - କାହାରି କାହାରି ମତରେ ପୁଣ୍ୟାହବାଚନ କର୍ମପ୍ରୟୋଗର ଅନ୍ତର୍ଗତ । ଅନେକଙ୍କ ମତରେ କର୍ମପ୍ରୟୋଗର ବହିର୍ଭୂତ । ଅତଏବ ପୂର୍ବମତରେ କର୍ମ ସଂକଳ୍ପ କରି ତତ୍ପରେ ପୁଣ୍ୟାହବାଚନ କରିବ । ପରମତରେ ପ୍ରଥମେ ପୁଣ୍ୟାହବାଚନ କରି ତତ୍ପରେ କର୍ମସଂକଳ୍ପ କରିବ ।

## ୮୨ - ଆଭ୍ୟୁଦୟିକ ଶ୍ରାଦ୍ଧ କର୍ତ୍ତୃନିର୍ଣ୍ଣୟ

ନାନ୍ଦୀଶ୍ରାଦ୍ଧଂ ପିତା କୁର୍ଯ୍ୟାଦାଦ୍ୟେ ପାଣିଗ୍ରହେ ପୁନଃ ।
ଅତଊର୍ଦ୍ଧ୍ୱ ପ୍ରକୁର୍ବୀତ ସ୍ୱୟମେବ ତୁ ନାନ୍ଦିକଂ । (ସାୟଣୀୟେ)

ବ୍ୟାଖ୍ୟା - ପୁତ୍ରର ପ୍ରଥମ ବିବାହରେ ପିତା ନାନ୍ଦୀଶ୍ରାଦ୍ଧ କରିବ । କିନ୍ତୁ ପୁତ୍ରର ଦ୍ୱିତୀୟ ବିବାହରେ ପୁତ୍ର ନିଜେ ନାନ୍ଦୀଶ୍ରାଦ୍ଧ କରିବ, ଆଉ ପିତାର ଆବଶ୍ୟକତା ହେବ ନାହିଁ ।

ସ୍ୱପିତୃଭ୍ୟଃ ପିତା ଦଦ୍ୟାତ୍ ସୁତସଂସ୍କାର କର୍ମସୁ ।
ପିଣ୍ଡାନୋ ଦ୍‌ବହନାତ୍ତେଷାଂ ତସ୍ୟାଭାବେ ତୁ ତତ୍‌କ୍ରମାତ୍ ।

(କାତ୍ୟାୟନଃ)

ବ୍ୟାଖ୍ୟା - ପୁତ୍ର ଓ କନ୍ୟାର ବିବାହ ପର୍ଯ୍ୟନ୍ତ ସମସ୍ତ ସଂସ୍କାରକାର୍ଯ୍ୟରେ ପିତା ନିଜେ ସ୍ୱକୀୟ ପିତୃଗଣଙ୍କୁ ପିଣ୍ଡଦାନ କରିବ । ପିତା ଜୀବିତ ଥାଇ ଅନୁପସ୍ଥିତିରେ କିମ୍ୱା ମୃତ ହୋଇଥିଲେ ଯେ କର୍ତ୍ତା ହେବ ସେ ସଂସ୍କାର୍ଯ୍ୟର (ପୁତ୍ର ଓ କନ୍ୟାର) ପିତୃଗଣଙ୍କୁ ପିଣ୍ଡ ଦେବ ।

ବୃଦ୍ଧୌ ତୀର୍ଥେ ଚ ସନ୍ନ୍ୟସ୍ତେ ତାତେ ଚ ପତିତେ ସତି ।
ଯେଭ୍ୟଏବ ପିତା ଦଦ୍ୟାତ୍ତେଭ୍ୟୋଦଦ୍ୟାସ୍ୱୟଂ ସୁତଃ ।

(ବିଷ୍ଣୁଃ)

ବ୍ୟାଖ୍ୟା - ପିତା ଯଦି ସନ୍ନ୍ୟାସୀ ଅଥବା ପତିତ ହୋଇଥାଏ ତାହାହେଲେ ବୃଦ୍ଧ ଶ୍ରାଦ୍ଧରେ ଓ ତୀର୍ଥଶ୍ରାଦ୍ଧରେ ପିତା ଯେପରି ନିଜ ପିତୃଗଣଙ୍କୁ ପିଣ୍ଡ ଦିଅନ୍ତେ ପୁତ୍ର ସେହିପରି ପିଣ୍ଡଦାନ କରିବ ।

ବିପ୍ରାନାମନ୍ତ୍ରୟିତ୍ୱାଷ୍ଟୌ ଭୋଜ୍ୟାନାଭ୍ୟୁଦୟେ ଦଦେତ୍ ।
ପିଣ୍ଡମାତ୍ରଂ ପ୍ରଦାତବ୍ୟମଭାବେ ଦ୍ରବ୍ୟବିପ୍ରୟୋଃ ।

(ଦିବ୍ୟସିଂହବାଜପେୟିପଦ୍ଧତୌ)

ବ୍ୟାଖ୍ୟା - ଆଭ୍ୟୁଦୟିକ ଶ୍ରାଦ୍ଧରେ ଆଠଗୋଟି ବ୍ରାହ୍ମଣମାନଙ୍କୁ ଆମନ୍ତ୍ରଣ କରି ଆଠଗୋଟି ଭୋଜ୍ୟ ଦାନ କରିବ । ଯେବେ ଦ୍ରବ୍ୟ ଓ ବିପ୍ରର ଅଭାବ ହୁଏ ତେବେ ପିଣ୍ଡମାତ୍ର ପ୍ରଦାନ କରିବ ।

## ୮୩ - ଆଭ୍ୟୁଦୟିକ ଶ୍ରାଦ୍ଧ ବିଚାର

ନାନ୍ଦୀମୁଖେ ବିବାହେ ଚ ପ୍ରପିତାମହପୂର୍ବକଂ ।
ନାମ ସଂକୀର୍ତ୍ତୟେଦ୍ ବିଦ୍ୱାନନ୍ୟତ୍ର ପିତୃପୂର୍ବକଂ ।

(ବୃଦ୍ଧବଶିଷ୍ଠଃ)

ବ୍ୟାଖ୍ୟା - *ବିଦ୍ୱାନ୍ ଲୋକ ନାନ୍ଦୀମୁଖୀଶ୍ରାଦ୍ଧରେ ଏବଂ ପାଣିଗ୍ରହଣ ସମୟରେ ପ୍ରଥମେ ପ୍ରପିତାମହ, ତତ୍ପରେ ପିତାମହ ଓ ପିତୃଙ୍କ ନାମ ଉଚ୍ଚାରଣ କରିବ । ପାଣିଗ୍ରହଣ ଓ ତାହାର ନାନ୍ଦୀମୁଖଶ୍ରାଦ୍ଧ ଛଡ଼ା ଅନ୍ୟାନ୍ୟ ନାନ୍ଦୀମୁଖଶ୍ରାଦ୍ଧରେ ପିତୃଠାରୁ

* ଉଦ୍‌ବହନାତ୍-ଆ=ଓଦ୍‌ବହନାତ୍ । ଓଦ୍‌ବହନଂ ବା ବିବାହ ପର୍ଯ୍ୟନ୍ତମିତି ରଘୁନନ୍ଦନଃ ।



ଆରମ୍ଭି ଉପର ତିନି ପୁରୁଷର (ପିତୃ, ପିତାମହ ଓ ପ୍ରପିତାମହ ଏହି କ୍ରମରେ । ଉଚ୍ଚାରଣ କରିବ । ଏ ମତ ତୈତ୍ତିରୀୟ ଶାଖାଧ୍ୟାୟିମାନଙ୍କର ଅବଲମ୍ବିତ । କିନ୍ତୁ ଅନ୍ୟ ଶାଖାଧ୍ୟାୟିମାନଙ୍କ ପକ୍ଷରେ ଏହି ମତ ଯେ ବିଦ୍ୱାନ୍ ଲୋକ 'ନାନ୍ଦୀମୁଖ ଅର୍ଥାତ୍ ପୁତ୍ରାଦି ସମୃଦ୍ଧିର ଆଦିଭୂତ' ବିବାହରେ (ପାଣିଗ୍ରହଣ ସମୟରେ) ପ୍ରପିତାମହଠାରୁ ଆରମ୍ଭି କ୍ରମେ ପିତାମହ ଓ ପିତୃଙ୍କ ନାମ ଉଚ୍ଚାରଣ କରିବ । ଅପର ସମସ୍ତ ନାନ୍ଦୀମୁଖ ଶ୍ରାଦ୍ଧରେ ପିତାଠାରୁ ଆରମ୍ଭି କ୍ରମେ ପିତାମହ ଓ ପ୍ରପିତାମହଙ୍କ ନାମ ଉଚ୍ଚାରଣ କରିବ ।

ମାତାପିତାମହୀ ଚୈବ ସମ୍ପୂଜ୍ୟା ପ୍ରପିତାମହୀ ।
ପିତ୍ରାଦୟସ୍ତ୍ରୟଶ୍ଚୈବ ମାତୁଃ ପିତ୍ରାଦୟସ୍ତ୍ରୟଃ ।
ଏତେ ନର୍ବଚ୍ଚନୀୟାଃ ସ୍ୟୁଃ ପିତରୋଽଭ୍ୟୁଦୟେ ଦ୍ୱିଜୈଃ ।

(ଆଶ୍ୱଲାୟନାଚାର୍ଯ୍ୟଃ)

ବ୍ୟାଖ୍ୟା - ଦ୍ୱିଜାତିମାନେ ଆପଣାର ବୃଦ୍ଧି ନିମିତ୍ତ କ୍ରମରେ ମାତା, ପିତାମହୀ ଓ ପ୍ରପିତାମହୀ ତତ୍ପରେ ପିତା, ପିତାମହ ଓ ପ୍ରପିତାମହ ଏବଂ ମାତାମହ, ପ୍ରମାତାମହ ଓ ବୃଦ୍ଧପ୍ରମାତାମହ ଏହିପରି ନଅ ପୁରୁଷଙ୍କର ପୂଜା (ଶ୍ରାଦ୍ଧ) କରିବେ ।

ମାତୃଶ୍ରାଦ୍ଧଂ ତୁ ପୂର୍ବଂ ସ୍ୟାତ୍ପିତୃଣାଂ ତଦନନ୍ତରଂ ।
ତତୋମାତାମହାନଂ ଚ ବୃଦ୍ଧୌ ଶ୍ରାଦ୍ଧତ୍ରୟଂ ସ୍ମୃତଂ ।

(ନିର୍ଣ୍ଣୟସିନ୍ଧୌ ଶାତାତପବଚନଂ)

ବ୍ୟାଖ୍ୟା - ପ୍ରଥମରେ ମାତୃଶ୍ରାଦ୍ଧ, ତଦନନ୍ତର ପିତୃଶ୍ରାଦ୍ଧ ଓ ତତ୍ପରେ ମାତାମହାଦିଙ୍କ ଶ୍ରାଦ୍ଧ କରିବ । ଏହି ତିନିଗୋଟି ଶ୍ରାଦ୍ଧ ବୃଦ୍ଧି (ନାନ୍ଦୀ) ଶ୍ରାଦ୍ଧ ବୋଲି କଥିତ ହୋଇଅଛି ।

## ୮୪ - ଆଭ୍ୟୁଦୟିକ ଶ୍ରାଦ୍ଧକାଳ ନିର୍ଣ୍ଣୟ

ମାତୃଶ୍ରାଦ୍ଧଂ ତୁ ପୂର୍ବେଦ୍ୟୁଃ କର୍ମାହନି ତୁ ପୈତୃକଂ ।
ମାତାମହଂ ଚୋତ୍ତରେଦ୍ୟୁର୍ବୃଦ୍ଧୌ ଶ୍ରାଦ୍ଧତ୍ରୟଂ ସ୍ମୃତଂ ।

(ପୃଥ୍ୱୀଚନ୍ଦ୍ରୋଦୟେ ଗାର୍ଗ୍ୟଃ)

---

* ଇଦଂ ତୁ ତୈତ୍ତିରୀୟାଣାଂ ବିଷୟଂ ନାନ୍ୟଶାଖିକଂ ।
(ଛନ୍ଦୋଗପରିଶିଷ୍ଟେ କାତ୍ୟାୟନଃ)

*- 'ନାନ୍ଦୀ' ସମୃଦ୍ଧିରିତି କଥ୍ୟତେ । ଇତି ବ୍ରହ୍ମପୁରାଣାନ୍ନାନ୍ଦୀମୁଖେ ପୁତ୍ରାଦି ସମୃଦ୍ଧୀନାଂ ଆଦିରୂପେ (ଆଦିଭୂତେ) ବିବାହେ । ବିଶେଷଣଂ ତୁ ବିବାହାଦେବ ପୁତ୍ରାଦିସମୃଦ୍ଧିଲାଭ ଜ୍ଞାପନାୟ ଚକାରସ୍ତର୍ଥଃ । ଅନ୍ୟତ୍ର ପ୍ରାପ୍ତପିତ୍ରାଦି କ୍ରମବ୍ୟବଚ୍ଛେଦାୟ । "ନାନ୍ଦୀମୁଖ" ପଦସ୍ୟ ଶ୍ରାଦ୍ଧପରତ୍ୱେ ଅନେକବଚନପ୍ରାପ୍ତପିତୃପୂର୍ବକାଭିଲାଷବାଧା-ପତ୍ତେର୍ବାକ୍ୟଭେଦାପତ୍ତେଶ୍ଚ । (ଇତି ଉଦ୍‌ବାହତତ୍ତ୍ୱେ)

ଅସ୍ୟାସମ୍ଭବେ ପୂର୍ବେଦ୍ୟୁରେବ ପୂର୍ବାହ୍ନେ ମାତୃକଂ ମଧ୍ୟାହ୍ନେ ପୈତୃକଂ ଅପରାହ୍ନେ ମାତାମହାନଂ । (ଗୃହ୍ୟସୂତ୍ରଭାଷ୍ୟେ)

ଅଲାଭେ ଭିନ୍ନକାଳାନାଂ ନାନ୍ଦୀଶ୍ରାଦ୍ଧତ୍ରୟଂ ବୁଧଃ ।
ପୂର୍ବେଦ୍ୟୁର୍ବୈ ପ୍ରକୁର୍ବୀତ ପୂର୍ବାହ୍ନେ ମାତୃପୂର୍ବକଂ ।
(ବୃଦ୍ଧମନୁଃ)

ଇଦଂ ଚ ମହସ୍ସୁକର୍ମସୁ ଅଳ୍ପେଷୁ ତୁ କର୍ମାହ ଏବ ଶ୍ରାଦ୍ଧଂ ତଚ୍ଚ ପ୍ରାତରେବ । "ପାର୍ବଣଂ ଚାପରାହ୍ନେ ତୁ ପ୍ରାତବୃଦ୍ଧି ନିମିତ୍ତକଂ" । (ଇତି ଶାତାତପୋକ୍ତେଃ)

ବ୍ୟାଖ୍ୟା - କର୍ମଦିବସର ପୂର୍ବଦିନରେ ମାତ୍ରାଦିଙ୍କ ଶ୍ରାଦ୍ଧ କରିବ, କର୍ମଦିବସରେ ପିତ୍ରାଦିଙ୍କର ଶ୍ରାଦ୍ଧ କରିବ ଏବଂ କର୍ମର ପରଦିବସରେ ମାତାମହାଦିଙ୍କ ଶ୍ରାଦ୍ଧ କରିବ ।

ଯଦି ତିନିଥର ଶ୍ରାଦ୍ଧ କରିବାକୁ ଅସମର୍ଥ ହେବ, ତେବେ ସେହି କର୍ମଦିବସର ପୂର୍ବାହ୍ଣରେ ତିନି ଶ୍ରାଦ୍ଧ ଯାକ କରିବ; କିନ୍ତୁ ବୃହତ୍ କର୍ମରେ ପୂର୍ବଦିନରୁ କରିବ ଓ ସାମାନ୍ୟ କର୍ମରେ ସେହି ଦିନ ସକାଳେ କରିବ ।

ଗଣଶଃକ୍ରିୟାମାଣାନାଂ ମାତୃଭ୍ୟଃ ପୂଜନଂ ସକୃତ୍
ସକୃଦେବ ଭବେଚ୍ଛ୍ରାଦ୍ଧମାଦୌ ନ ପୃଥଗାଦିଷୁ ।
(ବ୍ରହ୍ମପୁରାଣେ)

ବ୍ୟାଖ୍ୟା - ୧* ଏକ ବା ଅନେକ ପୁତ୍ରଙ୍କର ଏକ ସଙ୍ଗରେ ସଂସ୍କାରମାନ କରିବାର ହେଲେ ପ୍ରଥମରେ ଥରେ ମାତ୍ର ମାତୃଗଣଙ୍କୁ ଆବାହନ କରି ଶ୍ରାଦ୍ଧ କରିବ, ପ୍ରତ୍ୟେକ କର୍ମରେ କରିବ ନାହିଁ ।

## ୮୫ - ଆଭ୍ୟୁଦୟିକ ଶ୍ରାଦ୍ଧ କେଉଁ କେଉଁ କର୍ମରେ କରିବା ବିଧି

କନ୍ୟାପୁତ୍ରବିବାହେଷୁ ପ୍ରବେଶ ନବବେଶ୍ମନଃ ।
ନାମକର୍ମଣି ବାଳାନାଂ ଚୂଡ଼ାକର୍ମାଦିକେ ତଥା ।
ସୀମନ୍ତୋନ୍ନୟନେ ଚୈବ ପୁତ୍ରାଦିମୁଖଦର୍ଶନେ ।
ନାନ୍ଦୀମୁଖଂ ପିତୃଗଣଂ ପୂଜୟେତ୍ପ୍ରଯତୋ ଗୃହୀ ।

---

୧*- ଯଥା ଦୈବାଦକୃତଜାତକର୍ମାଦିକସ୍ୟୋପନୟନକାଳେ-ଜାତକର୍ମାଦ୍ୟନୁଷ୍ଠାନ ଦେଶାନ୍ତରଗତସ୍ୟ ମୃତବୁଦ୍ଧ୍ୟା କୃତୌର୍ଦ୍ଧ୍ୱ ଦୈହିକସ୍ୟାଗତସ୍ୟ ପୁନର୍ଜାତକର୍ମାଦିସଂସ୍କାରାଣାଂବିହିତାନାଂଯୁଗପଦନୁଷ୍ଠାନେକର୍ମନାଶାଜଲସ୍ପର୍ଶାଦୀନାଂ ପ୍ରାୟଶ୍ଚିତ୍ତତୟା ପୁନଃ ସଂସ୍କାରାଣାଂ ଯୁଗପଦନୁଷ୍ଠାନେ ବେତି । (ଗଦାଧରଃ)

-ଗଣଶଃ ଏକାନେକପୁତ୍ରାଣାଂସଂସ୍କାରେଷ୍ୱେକଦିନେ ଏକଦେଶକାଳ-କର୍ତ୍ରୈକ୍ୟାଦିତାର୍ଥ ଇତି । (ନିର୍ଣ୍ଣୟସିନ୍ଧୁଃ)



ବ୍ୟାଖ୍ୟା - କନ୍ୟା ଓ ପୁତ୍ରର ବିବାହ, ଗୃହପ୍ରବେଶ, ନାମକରଣ, ଚୂଡ଼ାକର୍ମ ପ୍ରଭୃତି (ବହିର୍ନିଷ୍କ୍ରମଣ, ଅନ୍ନପ୍ରାଶନ, ବେଦାରମ୍ଭ ଓ ସମାବର୍ତ୍ତନାଦି) ସୀମାନ୍ତୋନ୍ନୟନ, ପୁତ୍ରାଦିରମୁଖଦର୍ଶନ (ଜାତକର୍ମ) ଇତ୍ୟାଦି କର୍ମମାନଙ୍କରେ ନାନ୍ଦୀମୁଖ ଶ୍ରାଦ୍ଧ କରିବ ।

## ୮୬ - ଆଭ୍ୟୁଦୟିକ ଶ୍ରାଦ୍ଧ ନ କଲେ ଦୋଷ

ବୃଦ୍ଧୌ ନ ତର୍ପିତା ଯେ ବୈ ପିତରୋଗୃହମେଧିଭିଃ ।
ତଦ୍ଧୀନମଫଳଂ ଜ୍ଞେୟମାସୁରୋବିଧିରେବ ସଃ

(ଶାତାତପଃ)

ବ୍ୟାଖ୍ୟା - କୌଣସି ଶୁଭକର୍ମରେ ଯେ ବୃଦ୍ଧି (ନାନ୍ଦୀମୁଖ) ଶ୍ରାଦ୍ଧନ କରେ ତାହାର ସମସ୍ତ କର୍ମ ଅଙ୍ଗହୀନ ଓ ନିଷ୍ଫଳ ହୁଏ । ନାନ୍ଦୀମୁଖ ଶ୍ରାଦ୍ଧ ନ କରି କର୍ମ କଲେ ତାହାକୁ ଆସୁର ବିଧି କୁହାଯାଏ ।

## ୮୭ - ବସୋର୍ଦ୍ଧାରା ଦାନର ପ୍ରୟୋଜନ

ବସୁନା ସ୍ୱର୍ଗକାମେଣ ଦକ୍ଷେଣ ଚ ମହାତ୍ମନା ।
ମୟା ଚ ବିଷ୍ଣୁନା ଶକ୍ର ରୁଦ୍ରେଣ ଚ ସହୋମୟା ।
ଆତ୍ମାନଂ ଚ ସ୍ୱରୂପେଣ ଧାରାୟାଂ ତୁ ପ୍ରପାଦତଂ ।
ଦେବସାନ୍ନିଧ୍ୟମାୟାତା ସର୍ବକାମପ୍ରଦାୟିକା ।
ତସ୍ମା ତ୍ୱପମି ରାଜେନ୍ଦ୍ର ବସୋର୍ଦ୍ଧରାଂ ପ୍ରାପତୟ ।
ନାତଃ ପରତରଂ ପୁଣ୍ୟଂ ବିଦ୍ୟତେ ନୃପସତ୍ତମ ।
ବସୋର୍ଦ୍ଧାରାପ୍ରଦାନସ୍ୟ ।ଏକାହମପି ଯଭବେତ୍ ।
ନୃପେଣାୟୁଷକାମେନ ପୁତ୍ରରାଜ୍ୟଜିଗୀଷୁଣା ।
ଦେୟା ଧାରା ସଦା ବସ୍ତ ରିପୁନାଶାୟ ବୁଦ୍ଧିମାନ୍ ।

(ଦେବୀପୁରାଣେ)

ବ୍ୟାଖ୍ୟା - ସ୍ୱର୍ଗାଭିଳାଷୀ ବସୁ ଏବଂ ମହାତ୍ମା ଦକ୍ଷ ଏମାନେ ପୂର୍ବ ବସୁ (ଘୃତ) ଧାରା ଦେଇଥିଲେ । ବ୍ରହ୍ମା କହୁଅଛନ୍ତି ହେ ଇନ୍ଦ୍ର ! ଆମ୍ଭେ, ବିଷ୍ଣୁ, ଶିବ, ଦୁର୍ଗା ଏ ସମସ୍ତେ ବସୁଧାରରେ ଅବସ୍ଥାନ କରୁଁ । ବସୁଧାରା ଦ୍ୱାରା ସର୍ବଫଳପ୍ରଦାୟିନୀ ଦେବୀ ସନ୍ନିକଟ ବର୍ତ୍ତିନୀ ହୁଅନ୍ତି । ଅଗସ୍ତ୍ୟ ନୃପବାହନକୁ କହୁଅଛନ୍ତି ହେ ମହାରାଜ ! ଏହି ହେତୁରୁ ତୁମ୍ଭେ ବସୁଧାରା ଦିଅ, କାରଣ ଦିନେ ମାତ୍ର ବସୁଧାରା ଦେଲେ ଯେଉଁ ପୁଣ୍ୟ ହୁଏ; ତାହା ଅପେକ୍ଷା ଆଉ ଅଧିକ ପୁଣ୍ୟକର୍ମ ନାହିଁ । ହେ ମତିମାନ୍ ବସ୍ତ ! ଯେଉଁମାନେ ଦୀର୍ଘ ଜୀବନକାମୀ, ପୁତ୍ରାର୍ଥୀ, ଦାରାର୍ଥୀ, ସୁଖାଭିଳାଷୀ ଏବଂ ଶତ୍ରୁବଧାଭିଳାଷି ହୁଅନ୍ତି ସେମାନେ ସର୍ବଦା ବସୁଧାରା ପ୍ରଦାନ କରିବେ ।

## ୮୮ - ବସୋର୍ଦ୍ଧାରା ପ୍ରମାଣ

କୁଡ୍ୟଲଗ୍ନା ବସୋର୍ଦ୍ଧାରାଃ ପଞ୍ଚଧାରା ଘୃତେନ ତୁ ।
କାରୟେତ୍ସପ୍ତ ବା ଧାରାଃ ନାତିନୀଚା ନଚୋଚ୍ଛିତାଃ ।

ଅଙ୍ଗୁଲ୍ୟାତ୍ତଂ ପରଂ ଗାତ୍ରଂ ହସ୍ତମାତ୍ରପ୍ରମାଣତଃ ।
ପୂର୍ବୋତ୍ତରକ୍ରମେ ବୃଦ୍ଧିର୍ବସୋର୍ଦ୍ଧାରାଃ ପ୍ରକୀର୍ତ୍ତିତାଃ ।
ଆୟୁଷ୍ମାନିତି ଶାନ୍ତ୍ୟର୍ଥଂ ଜପେତ୍ତତ୍ର ସମାହିତଃ ।
ତତଃ ଶ୍ରାଦ୍ଧଂ ପ୍ରକୁର୍ବୀତ ମାତୃପୂର୍ବକମାଦରାତ୍ ।

(କାତ୍ୟାୟନଃ)

ବ୍ୟାଖ୍ୟା - କର୍ମାନୁଷ୍ଠାନରେ ପୂର୍ବଦିଗ କାନ୍ଥରେ (ଅଥବା ବେଦୀର ପୂର୍ବଭାଗରେ) ପୂର୍ବରୁ ଉତ୍ତରକୁ କ୍ରମେ ସଂଖ୍ୟାବୃଦ୍ଧି କରି ପାଞ୍ଚ ଅଥବା ସାତଗୋଟି ତରଳ ଗୋଘୃତଧାରା ତମ୍ବାପାତ୍ରି ଦ୍ବାରା ଏକଅଙ୍ଗୁଳି ବହଳରେ ଦେବ । ହାତକରୁ ଉଚ୍ଚ କିମ୍ବା ନୀଚ କରିବ ନାହିଁ । ତତ୍ପରେ "ମନୋଜୂତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତୁ । ଅରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ । ବିଶ୍ୱେଦେବା ସ ଇହ ମା ଦୟାନ୍ତାମେଁ ପ୍ରତିଷ୍ଠ" । ଏହି ମନ୍ତ୍ର ପଢ଼ି କୁଶ ସ୍ପର୍ଶ କରି ସେହି ବସୋର୍ଦ୍ଧାରକୁ ପ୍ରତିଷ୍ଠା କରିବ । "ବସୋର୍ଦ୍ଧାରାଦେବତାଭ୍ୟୋ ନମଃ" ଏହି ମନ୍ତ୍ର ପଢ଼ି ପଞ୍ଚୋପଚାରରେ (ଗନ୍ଧ, ପୁଷ୍ପ, ଦୀପ, ନୈବେଦ୍ୟ ଦେଇ) ପୂଜା କରିବ । ଶାନ୍ତି ନିମିତ୍ତ "ଓଁ ଆୟୁଷ୍ମାନାଗ୍ନେ ହବିଷାବୃଧାନୋ ଘୃତପ୍ରତୀକୋ ଘୃତୟୋନିରୋଧି । ଘୃତଂ ପୀତ୍ୱା ମଧୁଚାରୁ ଗବ୍ୟଂ ପିତେପ ପୁତ୍ରମଭିରକ୍ଷତାଦିମାଂ ସ୍ୱାହା" । ଏହି ମନ୍ତ୍ର ଜପ କରିବ । ତତ୍ପରେ "କଶ୍ୟପସ୍ୟ ତ୍ର୍ୟାୟୁଷଂ ଜମଦଗ୍ନେ ସ୍ତ୍ର୍ୟାୟୁଷଂ ଯଦ୍ଦେବାନାଂ ତ୍ର୍ୟାୟୁଷଂ ତନ୍ନେ ଅସ୍ତୁ ତ୍ର୍ୟାୟୁଷଂ ।" ଏହା ପଢ଼ି ବସୋର୍ଦ୍ଧାରାମସ୍ତକରେ ସିନ୍ଦୂର ଦେବ ।

## ୮୯ - ପୂର୍ଣ୍ଣପାତ୍ର ଲକ୍ଷଣ

ଅଷ୍ଟମୁଷ୍ଟିର୍ଭବେତ୍କୁଞ୍ଚିଃ କୁଞ୍ଚୟୋଽଷ୍ଟୌ ଚ ପୁଷ୍କଳଂ ।
ପୁଷ୍କଳାନି ଚ ଚତ୍ୱାରି ପୂର୍ଣ୍ଣପାତ୍ରଂ ବିଧୀୟତେ ।

(ଗଦାଧରଭାଷ୍ୟେ)

ବ୍ୟାଖ୍ୟା – ଆଠମୁଠା ଶସ୍ୟରେ ଏକ କୁଞ୍ଚି ହୁଏ, ଆଠକୁଞ୍ଚି (୬୪ ମୁଠାରେ) ଏକ ପୁଷ୍କଳ ହୁଏ, ଚାରି ପୁଷ୍କଳ (୨୫୬ ମୁଠା)ରେ ଏକ ପୂର୍ଣ୍ଣପାତ୍ର ହୁଏ ।

## ୯୦ - ବ୍ରାହ୍ମଣ ଭୋଜନ

ଗର୍ଭାଧାନାଦିସଂସ୍କାରେ ବ୍ରାହ୍ମଣାନ୍ ଭୋଜୟେଦ୍ଦଶ ।
ଶତଂ ବିବାହସଂସ୍କାରେ ପଞ୍ଚାଶନ୍ମେଖଳାବିଧୌ ।
ଆବସଥ୍ୟେ ତ୍ରୟସ୍ତ୍ରିଂଶଚ୍ଛ୍ରୌତାଧାନେ ଶତାତ୍ପରଂ ।
ଅଷ୍ଟକଂ ଭୋଜୟେଦ୍ଭକ୍ତ୍ୟା ତତ୍ତତ୍ ସଂସ୍କାରସିଦ୍ଧୟେ ।
ସହସ୍ରଂ ଭୋଜୟେତ୍ସୋମେ ବ୍ରାହ୍ମଣାନାଂ ଶତଂ ପଶୌ ।
ଚାତୁର୍ମାସ୍ୟେ ତୁ ଚତ୍ୱାରି ଶତଂ ପଞ୍ଚ ସୁରାଗ୍ରହେ ।



ଅଯୁତଂ ବାଜପେୟେ ଚ ହ୍ୟଶ୍ୱମେଧେ ଚତୁର୍ଗୁଣଂ ।
*ଆଗ୍ରାୟଣେ ପ୍ରାୟଶ୍ଚିତ୍ତେ ବ୍ରାହ୍ମଣାନ୍ ଦଶପଞ୍ଚ ଚ ।
(ଗୃହ୍ୟସୂତ୍ରଗଦାଧରଭାଷ୍ୟେ)

ବ୍ୟାଖ୍ୟା - ଗର୍ଭାଧାନାଦି ସଂସ୍କାରକର୍ମ (ପୁଂସବନ, ସୀମନ୍ତୋନ୍ନୟନ ପ୍ରଭୃତି)ରେ ଦଶ ଦଶ ଜଣ ବ୍ରାହ୍ମଣ ଭୋଜନ କରାଇବ । ବିବାହ କର୍ମରେ ଶଏ, ଉପନୟନରେ ପଞ୍ଚାଶ, ଆବସଥ୍ୟାଗ୍ନି ସ୍ଥାପନରେ ତେତ୍ରିଶ, ଶ୍ରୌତାଗ୍ନି - (*୧- ଗାର୍ହପତ୍ୟ, ୨- ଆହବନୀୟ, ୩- ଦକ୍ଷିଣାଗ୍ନିସ୍ଥାପନ)ରେ ଶଏଆଠ, ସୋମଯାଗରେ ହଜାରେ, ପଶୁଯଜ୍ଞରେ ଶଏ, ଚାତୁର୍ମାସ୍ୟ ଯଜ୍ଞରେ ଚାରିଶ, ସୁରାଗ୍ରହଣରେ ପାଞ୍ଚଶ, ବାଜପେୟ ଯଜ୍ଞରେ ଦଶହଜାର, ଅଶ୍ୱମେଧ ଯଜ୍ଞରେ ଚାଳିଶହଜାର, ନବାନ୍ନ ଭୋଜନ ଓ ପ୍ରାୟଶ୍ଚିତ୍ତରେ ପନ୍ଦର ଜଣ ବ୍ରାହ୍ମଣ ଭୋଜନ କରାଇବ ।

## ୯୧ - ଆସନ ନିୟମ

କୌଶେୟଂ କମ୍ବଳଂ ଚୈବ ଅଜିନଂ ପଟ୍ଟମେବ ଚ ।
ଦାରୁଜଂ ତାଳପତ୍ରଂ ବା ଆସନଂ ପରିକଳ୍ପୟେତ୍ ।
(ଆହ୍ନିକସୂତ୍ରାବଲ୍ୟାଂ)

ବ୍ୟାଖ୍ୟା - କୁଶ, କମ୍ବଳ, ଚର୍ମ ପଟ୍ଟବସ୍ତ୍ର, କାଠ ଓ ତାଳପତ୍ର ଏହିସବୁ ପଦାର୍ଥ ଦ୍ୱାରା ଆସନ କରିବା ବିଧି ।

## ୯୨ - ଆସନର ଗୁଣ

କୃଷ୍ଣାଜିନେ ଜ୍ଞାନସିଦ୍ଧି ର୍ମୋକ୍ଷଃ ସ୍ୟାଦ୍ ବ୍ୟାଘ୍ରଚର୍ମଣି ।
ବସ୍ତ୍ରାଜିନେ ବ୍ୟାଧିନାଶଃ କମ୍ବଳେ ଦୁଃଖମୋଚନଂ ।
ଆଭିଚାରେ ନୀଳବର୍ଣ୍ଣଂ ରକ୍ତଂ ବଶ୍ୟାଦିକର୍ମଣି ।
ଶାନ୍ତିକେ କମ୍ବଳଃ ପ୍ରୋକ୍ତଃ ସର୍ବେଷ୍ଟଂ ଚିତ୍ରକମ୍ବଳେ ।
ବସ୍ତ୍ରାସନେ ତୁ ଦାରିଦ୍ର୍ୟଂ ପାଷାଣେ ବ୍ୟାଧିସମ୍ଭବଃ ।
ଧରଣ୍ୟାଂ ଦୁଃଖସମ୍ଭୂତିର୍ଦୌର୍ଭାଗ୍ୟ ଛିଦ୍ରିଦାରୁଜେ ।
ତୃଣେ ଧନଯଶୋହାନିଃ ପଲ୍ଲବେ ଚିତ୍ତବିଭ୍ରମଃ ।
(ଆହ୍ନିକସୂତ୍ରାବଲ୍ୟାଂ)

---

*- (ନବ ନବ ଶସ୍ୟ ନିମିତ୍ତ ଯାଗ) ବା (ଶରତ୍-ବସନ୍ତ ବିହିତ ନବାନ୍ନଶ୍ରାଦ୍ଧ) ।

*-୧ ଅଗ୍ନିହୋତ୍ରି ଗୃହୀର ଅଗ୍ନିର ନାମ ଗାର୍ହପତ୍ୟାଗ୍ନି । ୨-ଯେଉଁ ଅଗ୍ନିକି ଗାର୍ହପତ୍ୟାଗ୍ନିରୁ ଉଦ୍ଧୃତ କରି ହୋମ ନିମିତ୍ତ ସଂସ୍କାର କରାଯାଏ ତାହାର ନାମ ଆହବନୀୟାଗ୍ନି । ୩- ଦକ୍ଷିଣଦିଗରେ ଯେଉଁ ଅଗ୍ନି ସ୍ଥାପନ କରାଯାଏ ତାହାର ନାମ ଦକ୍ଷିଣାଗ୍ନି ।

ବ୍ୟାଖ୍ୟା - କୃଷ୍ଣମୃଗ ଛାଲରେ ବସି କର୍ମକଲେ ଜ୍ଞାନସିଦ୍ଧି, ବାଘ ଛାଲରେ ବସି କର୍ମ କଲେ ମୋକ୍ଷ ହୁଏ । ପାଟ ବା ଉଲ୍ ଆସନ ଓ ଅନ୍ୟାନ୍ୟ ମୃଗ ଚର୍ମରେ ବସି କର୍ମ କଲେ ବ୍ୟାଧିନାଶ, କମ୍ବଳାସନରେ ବସି କର୍ମକଲେ ଦୁଃଖମୋଚନ ହୁଏ । ମାରଣ କର୍ମରେ ନୀଳବର୍ଣ୍ଣ ଆସନ, ବଶୀକରଣାଦି କର୍ମରେ ରକ୍ତବର୍ଣ୍ଣ ଆସନ, ଶାନ୍ତି କର୍ମରେ କମ୍ବଳାସନ ପ୍ରସିଦ୍ଧ ଅଟେ । କାର୍ପାସବସ୍ତ୍ରରେ ବସି କର୍ମକଲେ ଦାରିଦ୍ର୍ୟ, ପଥର ଉପରେ ବସି କର୍ମ କଲେ ବ୍ୟାଧି, ଭୂମିରେ ବସି କର୍ମ କଲେ ଦୁଃଖ ଛିଦ୍ରଥିବା କାଠ ଆସନରେ ବସି କର୍ମକଲେ ଦୌର୍ଭାଗ୍ୟ, ତୃଣାସନରେ ବସି କର୍ମକଲେ ଯଶୋହାନି ଓ ପତ୍ରାସନରେ ବସି କର୍ମ କଲେ ଚିତ୍ତ ବିଭ୍ରମ ହୁଏ ।

## ୯୩ - କାଷ୍ଠାସନର ପରିମାଣ

ଚତୁର୍ବିଂଶତ୍ୟଙ୍ଗୁଳୈସ୍ତୁ କାଷ୍ଠାସନଂ ମତଂ ।
ଷୋଡ଼ଶାଙ୍ଗୁଳବିସ୍ତୀର୍ଣ୍ଣମୁତ୍ସେଧେ ଚତୁରଙ୍ଗୁଳଂ ।
ପଞ୍ଚାଙ୍ଗୁଳଂ ବା କୁର୍ଯ୍ୟାତ୍ତୁ ନୋଚ୍ଛ୍ରିତଂ ଚାତ୍ର କାରୟେତ୍ ।
(କାଳିକାପୁରାଣେ)

ବ୍ୟାଖ୍ୟା - କାଷ୍ଠାସନରେ ଦୀର୍ଘ ଚବିଶ ଆଙ୍ଗୁଳ, ପ୍ରତି ଷୋଳ ଆଙ୍ଗୁଳ, ଉଚ୍ଚ ଚାରି ଆଙ୍ଗୁଳ ବା ପାଞ୍ଚ ଆଙ୍ଗୁଳ କରିବ, ଏଥିରୁ ଅଧିକ କରିବ ନାହିଁ ।

## ୯୪ - ଯଜମାନ ଓ ବ୍ରହ୍ମା ପ୍ରଭୃତିଙ୍କର ଆସନ ପରିମାଣ

ଆସନଂ ବ୍ରହ୍ମଣଃକାର୍ଯ୍ୟଂ ବାରୁଣଂ ବା ବିକଙ୍କତଂ ।
ଯଜମାନାସନଂ ପତ୍ନ୍ୟା ଆସନଂ ଚ ପୃଥକ୍ ପୃଥକ୍ ।
ହୋତ୍ରାସନଂ ତଥା ବ୍ରହ୍ମାସନଂ ବିସ୍ତାରଯୋଗତଃ ।
ଅରତ୍ନିମାତ୍ରାଣ୍ୟେତାନି କଥିତାନି ମନୀଷିଭିଃ ।
(ଯଜ୍ଞପାର୍ଶ୍ୱସଂହିତାୟାଂ)

ବ୍ରହ୍ମାଙ୍କ ଆସନ ବରୁଣ ବା ଭଇଁଚ କାଷ୍ଠରେ ନିର୍ମାଣ କରିବ । ଯଜମାନର ଆସନ ଓ ତାଙ୍କ ପତ୍ନୀଙ୍କ ଆସନ ଏ ଉଭୟକୁ ଟିକିଏ ଛଡ଼ା ରଖିବ । ମିଶାଇବ ନାହିଁ । ହୋତାଙ୍କ ଆସନ ଓ ବ୍ରହ୍ମାଙ୍କ ଆସନ ପୃଥକ ପୃଥକ କରିବ । ପଣ୍ଡିତମାନେ ଏହି ଆସନମାନଙ୍କ ପରିମାଣ ଅରତ୍ନି ମାତ୍ର ନିର୍ଣ୍ଣୟ କରିଅଛନ୍ତି ।

## ୯୫ - ପ୍ରଥମ ରଜୋଦର୍ଶନ ଶାନ୍ତିକର୍ମ କାରିକା

କୃତ୍ୱା ନିତ୍ୟାହ୍ନିକଂ ବୈଶୁଚି ଭୁବି ରୁଚିରଂ ସ୍ଥଣ୍ଡିଳଂ ବାଥକୁଣ୍ଡଂ,
ଚିହ୍ନନ୍‌କର୍ମାର୍ହବାସ୍ତୁନ୍ୟଥ ଦ୍ୱିଜଗୁରୁଭିଃ ସ୍ୱସ୍ତିବାକ୍ ପାଶିପୂଜାଂ ।



ସଂକଳ୍ପଂ କର୍ମଣସ୍ତ୍ୱାଭ୍ୟୁଦୟିକମମଳେ ସାଷ୍ଟପତ୍ରେଽମ୍ବୁଜାଖ୍ୟେ,
ସାବିତ୍ରୀଂ ପୂଜୟିତ୍ୱା ସୁକୁସୁମବସନୈଃ ଖେଟଦିକ୍‌ପାଳବାରାନ୍ ।
ବର୍ଦ୍ଧନ୍ୟାଂ ତିଥିଭେନ୍ଦୁ ଯୋଗକରଣାନଂ ଶାନଜେଶେଶକାନ୍,
ସୂର୍ଯ୍ୟଂ ପର୍ବତନନ୍ଦିନୀଂ ଶିଖିଗଣାନ୍ନାଗାଂଶ୍ଚ ନାଗପ୍ରିୟାଃ ।
ଗ୍ରାମେଶୀଂ ବସୁଭୈରବଶ୍ରୁତିକ୍ରତୁନ୍ ମର୍ତ୍ତ୍ୟାନଳଂ ଖଂ ନଭୋଽ –
ହୋରାତ୍ରଂ ପକ୍ଷମାସର୍ତ୍ତ୍ୱୟନସମଯୁଗାନ୍ ମେଘବାୟୁଂ ମନୂଂଶ୍ଚ ।
ବ୍ରହ୍ମାଣଂ ବାସ୍ତ୍ୱଧୀଶଂ ଯଜତି ଚ ମରୁତାଭିଖ୍ୟମଗ୍ନିଂ ଚ କୁଣ୍ଡେ,
ସଂସ୍ଥାପ୍ୟାଚାର୍ଯ୍ୟବ୍ରହ୍ମର୍ତ୍ତ୍ୱି ଜଦ୍ୱିଜନିଚୟାନଂଶୁକାଦ୍ୟୈର୍ବୃଣୋତି ।
ବ୍ରହ୍ମାସନଂ ଦକ୍ଷିଣତସ୍ତୁ ବହ୍ନେର୍ନିଧାୟ ବ୍ରହ୍ମୋପବିଶେଚ୍ଚ ତତ୍ର,
ଅଗ୍ନେରୁଦୀଚ୍ୟାଂ ପ୍ରଯଜେତ୍ପ୍ରଣୀତାଂକୁଶାନ୍ ପରିସ୍ତୀର୍ଯ୍ୟା ଚ ସର୍ବଦିକ୍ଷୁ ।
କୁର୍ଯ୍ୟାତ୍କୁଶଣ୍ଡିଂ ଶ୍ରୁତିମନ୍ତ୍ରଯୁକ୍ତମାଘାରକାଦୀନ୍ ଜୁହୁୟାଚ୍ଚ ଭକ୍ତ୍ୟା ।
ତତଶ୍ଚ ପୁଣ୍ୟାହମିତୀରୟିତ୍ୱା ବହ୍ନିଂ ଯଜେଦାସନକାଦିଭିଶ୍ଚ ।
ସପ୍ତୈବ ଜିହ୍ୱା ନବଶକ୍ତିକାଶ୍ଚ ହୁତ୍ୱା ତତଃ ପୂଜିତ ଦେବତାଶ୍ଚ,
ଭୂରାଦିକାନ୍‌ବୈ ଜୁହୁୟା ଉଦନ୍ତେ ଜାୟାପତୀ ବସ୍ତ୍ରଚୟାନ୍ ବିଭୂତ୍ୟ ।
ପୂର୍ଣ୍ଣାହୁତିଂ ସ୍ୱିଷ୍ଟକୃତଂ ଚ ହୁତ୍ୱା ଶକ୍ତ୍ୟା ଦ୍ୱିଜେ ଭ୍ୟସ୍ତିଲହେମ ଦଦ୍ୟାତ୍ ।
ଦଦ୍ୟାଦ୍ୱିଜେଭ୍ୟଃ ଫଳପୁଷ୍ପବସ୍ତ୍ରଂ ସଦକ୍ଷିଣଂ ପୁତ୍ରମନାଶ୍ଚ ଜାୟା ।
କୁର୍ଯ୍ୟାତ୍ତତଃ ପ୍ରାଶନମାର୍ଜନେ ଚ ଭସ୍ମ ଗୃହୀତ୍ୱା ଦ୍ୱିଜଭୋଜନଂ ଚ
ବିତ୍ତାନୁସାରେ ଦ୍ୱିଜଦକ୍ଷିଣାଂ ଚ କୁର୍ଯ୍ୟାତ୍ପବିତ୍ରପ୍ରତିପତ୍ତିକାଦୀନ୍ ।
ରମ୍ଭାଲାଜାନ୍ ପାତୟେନ୍ ମଙ୍ଗଳାର୍ଥାନଗ୍ରେକୃତ୍ୱା ତୌ ଚ ନୀରାଜୟେଚ୍ଚ ।

(ଶ୍ରୀ ଲୋକନାଥଦାସେନ କୃତା)

ବ୍ୟାଖ୍ୟା - ପ୍ରଥମେ କର୍ତ୍ତା ନିତ୍ୟକର୍ମ ସାରି କର୍ମଯୋଗ୍ୟ ଗୃହର ପବିତ୍ର ସ୍ଥାନରେ ଗୋଟିଏ ମନୋହର ସ୍ଥଣ୍ଡିଳ ଅଥବା କୁଣ୍ଡ ନିର୍ମାଣ କରିବ । ତତ୍ପରେ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କ ଦ୍ୱାରା ସ୍ୱସ୍ତିବାଚନ କରାଇ ନିଜେ ପୁଣ୍ୟାହବାଚନ ଓ ବରୁଣ ପୂଜା କରିବ । ତଦନନ୍ତର କର୍ମର ସଂକଳ୍ପ ଓ ଆଭ୍ୟୁଦୟିକ (ନାନ୍ଦୀମୁଖ) ଶ୍ରାଦ୍ଧ କରି ସାବିତ୍ରୀଙ୍କୁ ଅଷ୍ଟଦଳ ପଦ୍ମରେ (୭୩ ନମ୍ବର ଦେଖ) ଉତ୍ତମଗନ୍ଧ, ପୁଷ୍ପ ଓ ବସ୍ତ୍ର ଦେଇ ପୂଜା କରିବ । ତଦୁତ୍ତାରୁ ନବଗ୍ରହ ଓ ଦଶଦିକ୍‌ପାଳଙ୍କୁ ତାହାଙ୍କ ମଣ୍ଡଳରେ (୬୧, ୬୩, ନମ୍ବର ଦେଖ) ପୂଜା କରିବ, ଅଥବା ବର୍ଦ୍ଧନୀଘଟରେ ଗ୍ରହ, ଦିକ୍‌ପାଳ, ବାର, ତିଥି, ନକ୍ଷତ୍ର, ଚନ୍ଦ୍ର, ଯୋଗ, କରଣ, ରବ୍ୟଂଶ, ବିଷ୍ଣୁ, ଶିବ, ଗଣେଶ, ସୂର୍ଯ୍ୟ, ଦୁର୍ଗା, ଶିଖି ପ୍ରଭୃତି ଚତୁଃଷଷ୍ଟି ବାସ୍ତୁଗଣ, ନାଗ, ନାଗପତ୍ନୀ,

ଗ୍ରାମଦେବତା, ବସୁ, ଭୈରବ, ବେଦ, ଯକ୍ଷ, ସନକାଦି ସପ୍ତ ମନୁଷ୍ୟ, ଅନଳ, ଅନ୍ତରୀକ୍ଷ, ଆକାଶ, ଅହୋରାତ୍ରା, ପକ୍ଷ, ମାସ, ଋତୁ, ଅୟନ, ସମ (ପ୍ରଭବାଦିଷଷ୍ଟିସମ୍ବତ୍ସର), ଯୁଗ, ମେଘ, ବାୟୁ, ମନୁ ଓ ବାସ୍ତୋଷ୍ପତି ବ୍ରହ୍ମାଙ୍କୁ ପୂଜା କରିବ । ତତ୍ପରେ କୁଣ୍ଡ ବା ସ୍ଥଣ୍ଡିଳରେ ମାରୁତ ନାମାଗ୍ନି ସ୍ଥାପନ କରି ଆଚାର୍ଯ୍ୟ, ବ୍ରହ୍ମା, ଋତ୍ୱିକ୍ ପ୍ରଭୃତି ବ୍ରାହ୍ମଣମାନଙ୍କୁ ବସ୍ତ୍ରାଦି ଦେଇ ବରଣ କରିବ । ତହିଁ ଉତ୍ତାରୁ ଅଗ୍ନିର ଦକ୍ଷିଣ ଭାଗରେ ବ୍ରହ୍ମାସନ ସ୍ଥାପନ କରି ତହିଁରେ ବ୍ରହ୍ମାଙ୍କୁ ବସାଇବ ଏବଂ ଅଗ୍ନିର ଉତ୍ତରଭାଗରେ ପ୍ରଣୀତାପାତ୍ର ସ୍ଥାପନ କରି ଅଗ୍ନିର ଚାରିଦିଗରେ କୁଶ ପରିସ୍ତରଣ କରି ବୈଦିକ କୁଶାଣ୍ଡି କରିବ । ଅନନ୍ତର ଆଘାର ଏବଂ ଆଜ୍ୟଭାଗ ହୋମ ଓ ପୁଣ୍ୟାହବାଚନ କରି ଅଗ୍ନିଙ୍କୁ ଆସନାଦି ଦେଇ ପୂଜା କରିବ । ତଦନନ୍ତର ସପ୍ତଜିହ୍ୱା, ନବଶକ୍ତି, ପୂଜିତଦେବତା ଓ ଭୂରାଦିଙ୍କର ହୋମ କରିବ । ତତ୍ପରେ ପତିପତ୍ନୀ କଳଶ ଜଳରେ ସ୍ନାନ କରି ନୂତନ ବସ୍ତ୍ର ପିନ୍ଧି ପୂର୍ଣ୍ଣାହୁତି ଓ ସ୍ୱିଷ୍ଟକୃତ୍ ହୋମ କରିବେ । ତହିଁଉତ୍ତାରୁ ପତି ବ୍ରାହ୍ମଣଙ୍କୁ ତିଳକାଞ୍ଚନ ଦାନ କରିବ ଓ ପତ୍ନୀ ପୁତ୍ରକାମନାରେ ବ୍ରାହ୍ମଣଙ୍କୁ ତିଳକାଞ୍ଚନ ଦାନ କରିବ ଓ ପତ୍ନୀ ଓ ପୁତ୍ରକାମନାରେ ବ୍ରାହ୍ମଣଙ୍କୁ ସଦକ୍ଷିଣା ସବସ୍ତ୍ର ଫଳପୁଷ୍ପ ଦାନ କରିବ । ତତ୍ପରେ ପ୍ରାଶନ ମାର୍ଜନ, ଭସ୍ମଗ୍ରହଣ, ଦଶଜଣ ବ୍ରାହ୍ମଣଭୋଜନ (୯୦ ନମ୍ବର ଦେଖ) ଓ ଯଥାଶକ୍ତି ଦକ୍ଷିଣା ଦେଇ ପବିତ୍ର ପ୍ରତିପତ୍ତି (ବିସର୍ଜନ) କରିବ । ତଦନନ୍ତର ଆଚାର୍ଯ୍ୟ ମଙ୍ଗଳ ନିମିତ୍ତ ରମ୍ଭା ଓ ଖଇ ପତିପତ୍ନୀଙ୍କ ଆଗରେ ପକାଇ ବରକନ୍ୟାଙ୍କର ବନ୍ଦାପନା କରିବେ ।

## ୯୬ - ପ୍ରଥମ ରଜୋଦର୍ଶନ ଶାନ୍ତି କର୍ମାରମ୍ଭ

ତତ୍ରାଦୌ ଯଜମାନୋ ନିତ୍ୟକର୍ମ ସମାପ୍ୟ ସମ୍ଭାରାଂଶ୍ଚ ସମ୍ଭୃତ୍ୟ କୁଣ୍ଡଂ ସ୍ଥଣ୍ଡିଳଂ ବା ନିର୍ମାୟ ତତ୍ସମୀପେ ବ୍ରାହ୍ମଣାନୁପବେଶ୍ୟ ସପତ୍ନୀକଃ ପବିତ୍ରପାଣିବସ୍ତ୍ରଗନ୍ଧାକ୍ଷତପୁଷ୍ପ ସହିତ ନାରିକେଳଫଳାନି କ୍ରମୁକାନ୍ ବା ଗୃହୀତ୍ୱା ତାନନୁଜ୍ଞାପ୍ୟ ସ୍ୱାଭୀଷ୍ଟଦେବତାସ୍ମରଣଂ କୃତ୍ୱା ହସ୍ତୌ ସମ୍ପୁଟୀକୃତ୍ୟ ବ୍ରାହ୍ମଣାଭିମୁଖଃ ସ୍ୱସ୍ତ୍ୟାଦି ପଠେତ୍ ।

ବ୍ୟାଖ୍ୟା - ସର୍ବପ୍ରଥମେ ଯଜମାନ ଆପଣର ସନ୍ଧ୍ୟା ବନ୍ଦନାଦି ନିତ୍ୟକର୍ମ ଶେଷ କରି କର୍ମର ସମସ୍ତ ସାମଗ୍ରୀ ଏବଂ କୁଣ୍ଡ ବା ସ୍ଥଣ୍ଡିଳ ନିର୍ମାଣ କରି ତତ୍ସମୀପରେ ବ୍ରାହ୍ମଣମାନଙ୍କୁ ଉପବେଶନ କରାଇ ହାତଯୋଡ଼ି ଆପଣର ଅଭୀଷ୍ଟ ଦେବତାମାନଙ୍କୁ ସ୍ମରଣ କରି ଓ ବ୍ରାହ୍ମଣମାନଙ୍କ ଅନୁଜ୍ଞା ନେଇ ଆଚମନପୂର୍ବକ କୁଶବଟୁ (୨୦ ନମ୍ବରଠାରୁ ୨୭ ନମ୍ବର ପର୍ଯ୍ୟନ୍ତ ଦେଖ) ଧାରଣ କରି ଉଭୟହସ୍ତରେ ବସ୍ତ୍ର, ଗନ୍ଧ, ଅକ୍ଷତ ଓ ପୁଷ୍ପ ସହିତ ନାରିକେଳ ଫଳ କିମ୍ବା ଗୁବାକଧାରଣ କରି ଏବଂ ବ୍ରାହ୍ମଣଙ୍କ ଦିଗକୁ ମୁଖ କରି ତଳଲିଖିତ ସ୍ୱସ୍ତ୍ୟାଦିବାକ୍ୟ ପଢ଼ିବ ।

 

## ୯୭ - ବିଷ୍ଣୁ ସ୍ମରଣ

ସର୍ବମଙ୍ଗଳମାଙ୍ଗଲ୍ୟଂ ବରେଣ୍ୟଂ ବରଦଂ ଶୁଭଂ ।
ନାରାୟଣଂ ନମସ୍କୃତ୍ୟ ସର୍ବକର୍ମାଣି କାରୟେତ୍ ।
ଅଭିପ୍ରେତାର୍ଥସିଦ୍ଧ୍ୟର୍ଥଂ ପୂଜିତୋଯଃ ସୁରାସୁରୈଃ
ସର୍ବବିଘ୍ନବିନାଶାୟ ଗଣାଧିପତୟେ ନମଃ ।

ଲକ୍ଷ୍ମୀନାରାୟଣାଭ୍ୟାଂ ନମଃ । ଉମାମହେଶ୍ୱରାଭ୍ୟାଂ ନମଃ । ଶଚୀପୁରନ୍ଦରାଭ୍ୟାଂ ନମଃ ମାତୃପିତୃଭ୍ୟାଂ ନମଃ । ଇଷ୍ଟଦେବତାଭ୍ୟୋ ନମଃ । କୁଳଦେବତାଭ୍ୟୋ ନମଃ । ସର୍ବେଭ୍ୟୋ ବ୍ରାହ୍ମଣେଭ୍ୟୋ ନମଃ । ଇତି ପଠିତ୍ୱା ନମସ୍କାରଂ କୁର୍ଯ୍ୟାତ୍ ।

## ୯୮ - ସ୍ୱସ୍ତି ବାଚନ ବାକ୍ୟ

ଓଁ ବିଷ୍ଣୁଃ କର୍ତ୍ତବ୍ୟେଽସ୍ମିନ୍ * ଅମୁକସଗୋତ୍ରାୟା ମଭାର୍ଯ୍ୟାୟା ଅମୁକଦେବ୍ୟାଃ ପ୍ରଥମରଜୋଦର୍ଶନ ସମୟେ ତିଥିବାରନକ୍ଷତ୍ରାଦିଦୋଷଶାନ୍ତି ହୋମ କର୍ମଣି ବ୍ରାହ୍ମଣାଃ ସ୍ୱସ୍ତି ଭବନ୍ତୋ ବ୍ରୁବନ୍ତୁ । ଏବଂ କର୍ମର୍ଦ୍ଧିଂ ଭବନ୍ତୋ ବ୍ରୁବନ୍ତୁ ଚ ପୁଣ୍ୟାହଂ ଭବନ୍ତୋ ବ୍ରୁବନ୍ତୁ ।

ବ୍ୟାଖ୍ୟା - କର୍ତ୍ତା ତାମ୍ରପାତ୍ରରେ ଗନ୍ଧ, ପୁଷ୍ପ, ଅକ୍ଷତ, ବସ୍ତ୍ର, ନଡ଼ିଆ ବା ଗୁଆ ରଖି ତାହାକୁ ହସ୍ତରେ ଧରି ଉପରୋକ୍ତ ବାକ୍ୟ ପଢ଼ି ବ୍ରାହ୍ମଣମାନଙ୍କୁ ବଣ୍ଟନ କରାଇଦେବ ଓ ବ୍ରାହ୍ମଣମାନେ ସେହି ଅକ୍ଷତକୁ ତଳଲିଖିତ ସ୍ୱସ୍ତ୍ୟାଦି ମନ୍ତ୍ର ଦ୍ୱାରା ଅଭିମନ୍ତ୍ରିତ କରି କର୍ତ୍ତା ହସ୍ତରେ ଦେବେ । କର୍ତ୍ତା ସେହି ଅକ୍ଷତକୁ ତାମ୍ରପାତ୍ରରେ ରଖି ତଳଲିଖିତ ପୁଣ୍ୟାହବାଚନବାକ୍ୟ ପଢ଼ି ପାତ୍ରରୁ ନେଇ ତିନିଥର ଭୂମିରେ ପକାଇବେ ।

## ୯୯ - ସ୍ୱସ୍ତି ବାଚନ ମନ୍ତ୍ର

ସ୍ୱସ୍ତିନ ଇନ୍ଦ୍ରୋବୃଦ୍ଧଶ୍ରବାଃ ସ୍ୱସ୍ତିନୋ ପୂଷା ବିଶ୍ୱବେଦ୍ୟାଃ । ସ୍ୱସ୍ତିନସ୍ତାର୍କ୍ଷ୍ୟୋଽରିଷ୍ଟନେମିଃ ସ୍ୱସ୍ତିନୋ ବୃହସ୍ପତିର୍ଦ୍ଦଧାତୁ । ସ୍ୱସ୍ତି ସ୍ୱସ୍ତି ସ୍ୱସ୍ତି * । ଓଁ ଋଦ୍ଧାଃ

---

*-୯୮ ସକାର ସହିତ ଗୋତ୍ରୋଚ୍ଚାରଣ କରିବାର ପ୍ରମାଣ ବାକ୍ୟ- ସକାରେଣ ତୁ ବକ୍ତବ୍ୟଂ ଗୋତ୍ରଂ ସର୍ବତ୍ର ଧୀମତା । ଇତି ମତ୍ସ୍ୟପୁରାଣେ ଶ୍ରାଦ୍ଧପ୍ରକରଣୀୟବଚନଂ ।

ପରାଶରସଗୋତ୍ରସ୍ୟ ବୃଦ୍ଧସ୍ୟ ଚ ମହାତ୍ମନଃ । ଭିକ୍ଷୋଃ ପଞ୍ଚଶିଖସ୍ୟାହ ଶିଷ୍ୟଃ ପରମଧାର୍ମିକଃ । ଇତି ମହାଭାରତୀୟମୋକ୍ଷଧର୍ମପ୍ରୟୋଗାତ୍ ।

*-୯୯ ତ୍ରିବାର ସ୍ୱସ୍ତି ଉଚ୍ଚାରଣର ପ୍ରମାଣ-
ସତ୍ୟେ ଉତ୍ପଦ୍ୟତେ ସ୍ୱସ୍ତି ଧର୍ମେ ସ୍ୱସ୍ତି ପ୍ରବର୍ତ୍ତତେ ।
ଗାୟତ୍ରୀଦୁହିତା ସ୍ୱସ୍ତି ତ୍ରିଭିଃ ସ୍ୱସ୍ତି ନିଯୋଜୟେତ୍
(ଗୃହସୂତ୍ରକାରିକାୟାଂ ବିଭାଣ୍ଡକଃ)
ସ୍ୱସ୍ତି ଗୋଭ୍ୟୋଦ୍ୱିଜେଭ୍ୟଶ୍ଚ ସ୍ୱସ୍ତି ରାଜଭ୍ୟ ଏବ ଚ ।
ସ୍ୱସ୍ତି ପ୍ରଜାଭ୍ୟଃ ସର୍ବାଭ୍ୟଃ ସ୍ୱସ୍ତି ତ୍ରୟମୁଦାହୃତଂ । (ଗୃହ୍ୟସୂତ୍ରକାରିକାୟାଂ ବଶିଷ୍ଠଃ)

କର୍ମଣ୍ୟା ଅନପାୟିନୋ ଯଥାସନ୍ । ଜୁହୋମିତ୍ୱା ଶୁଭଗଃ ସୌଭଗାୟ ପୁରୁତ୍ତମଂ ପୁରୁହୁତଃ ଶ୍ରବସ୍ୟନ୍ । କର୍ମ ଋଧ୍ୟତାଂ କର୍ମ ଋଧ୍ୟତାଂ କର୍ମ ଋଧ୍ୟତାଂ । ଓଁ ପୁନସ୍ତ୍ୱାଦିତ୍ୟାରୁଦ୍ରାବସବଃ ସମିନ୍ଧତାଂ ପୁନର୍ବ୍ରହ୍ମାଣୋ ବସୁନୀଥଯଜ୍ଞୈଃ । ଘୃତେନ ତ୍ୱଂ ତନ୍ୱଂ ବର୍ଦ୍ଧୟସ୍ୱ ସତ୍ୟାଃ ସନ୍ତୁ ଯଜମାନସ୍ୟ କାମାଃ ।

## ୧୦୦ - ପୁଣ୍ୟାହବାଚନବାକ୍ୟ

ଓଁ ପୁଣ୍ୟାହଂ ପୁଣ୍ୟାହଂ ପୁଣ୍ୟାହଂ । ଏବମସ୍ତୁ ବିଜ୍ଞାପୟାମୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଶାନ୍ତର୍ଭବତୁ ଅସ୍ୟାଂ ବେଳାୟାଂ ଅୟମାରମ୍ଭଃ ଶୁଭାୟ ଭବତୁ ।

## ୧୦୧ - କଳସସ୍ଥାପନବିଧି

କୁଣ୍ଡସ୍ୟ ବା ସ୍ଥଣ୍ଡିଳସ୍ୟ ପୂର୍ବୋତ୍ତରଭାଗେ ଚତୁରସ୍ରମଣ୍ଡଳୋପରି ପଦ୍ମଂ ଲିଖିତ୍ୱା । ତତ୍ତଦ୍‌ବର୍ଣ୍ଣକୈର୍ମଣ୍ଡୟିତ୍ୱା ଭୂମିଂ ସ୍ପୃଶେଦନେନ ମନ୍ତ୍ରେଣ ।

---

* ୧୦୦-ପୁଣ୍ୟାହଶବ୍ଦ ତିନିଥର କହିବାର ପ୍ରମାଣବାକ୍ୟ-

ଅହଂ ପୁଣ୍ୟଦିନେ ଚୈବ ଅହଂ ପୁଣ୍ୟେ ଚ କର୍ମଣି ।
ଅହଂ ପୁଣ୍ୟଶରୀରେ ଚ ତ୍ରିଭିଃ ପୁଣ୍ୟାହମୁଚ୍ୟତେ ।
ତ୍ରିଭିଃ ପୁଣ୍ୟାହମୁଚ୍ଚାର୍ଯ୍ୟଂ ସର୍ବକାର୍ଯ୍ୟେ ଶୁଭଂ ତଥା ।
ରାଜ୍ଞଃ ପ୍ରଜାନାଂ ଶାନ୍ତ୍ୟର୍ଥଂ କର୍ମକଳ୍ମଷନାଶନଂ ।

(ଗୃହ୍ୟସୂତ୍ରକାରିକାୟାଂ ଶଙ୍ଖଃ)

*-୧୦୧ ଶାନ୍ତିକ ଓ ପୌଷ୍ଟିକ କର୍ମରେ କଳସପୂଜାର ନିୟମ-

ରାଜାଭିଷେକୋତ୍ସବଯାଗଦାନେ ତଥା ପ୍ରତିଷ୍ଠାସୁରପୂଜନେ ଚ । ଉତ୍ପାତଶାନ୍ତେଃ କରଣାବସାନେ ବ୍ରୂୟାତ୍ତଦା ଭୂରସି ମନ୍ତ୍ରିବର୍ଯ୍ୟଃ । ପଠେତ୍ତଦାବାରୁଣମନ୍ତ୍ରମାଦୌ ବ୍ରତେ ବିବାହେ କ୍ଷୁରକର୍ଣ୍ଣବେଧେ । ଅନ୍ୟୋଽନ୍ୟ-ଯତ୍‌ପୌଷ୍ଟିକକର୍ମକାର୍ଯ୍ୟେ ଆବାହୟେଦ୍‌ବାରୁଣ ମନ୍ତ୍ରକେନ ।

ଶାନ୍ତିକେ ଭୂରସି ବ୍ରୂୟାତ୍ପୌଷ୍ଟିକେ ବରୁଣସ୍ୟ ଚ ।
ଅନ୍ୟକର୍ମସମାରମ୍ଭେ କେବଳଂ ଚାବଲୋକନଂ ।

(ଦିବ୍ୟସିଂହବାଜପେୟି ପଦ୍ଧତୌ)

ବ୍ୟାଖ୍ୟା- ରାଜାଭିଷେକ, ଉତ୍ସବ, ଯାଗ, ଦାନ, ପ୍ରତିଷ୍ଠା, ଦେବପୂଜା, ଉତ୍ପାତଶାନ୍ତି ପ୍ରଭୃତି ଶାନ୍ତିକ କର୍ମରେ ଭୂରସି ମନ୍ତ୍ରଠାରୁ ଆରମ୍ଭ କରି କଳସ ସ୍ଥାପନ ଓ ପୂଜା କରିବ । କିନ୍ତୁ ବ୍ରତ ବିବାହ, କ୍ଷୌରକର୍ମ, କର୍ଣ୍ଣବେଧ ଓ ଅନ୍ୟାନ ଯେ ସବୁ "ପୁଂସବନାଦି ପୌଷ୍ଟିକ କର୍ମ ଅଛି ତହିଁରେ ବରୁଣ ମନ୍ତ୍ରଠାରୁ ଆରମ୍ଭି କଳସପୂଜା କରିବ, ମାତ୍ର ଯାତ୍ରାଦି ଅନ୍ୟାନ୍ୟ କର୍ମରେ କଳସପୂଜା ନ କରି କେବଳ ତାହା ଦର୍ଶନ କରିବ ।



ବ୍ୟାଖ୍ୟା - କୁଣ୍ଡ ବା ସ୍ଥଣ୍ଡିଳର ପୂର୍ବୋତ୍ତରଭାଗ (ଐଶାନ୍ୟକୋଣ) ରେ ଚାରିକୋଣିଆ ମଣ୍ଡଳ ଉପରେ ପଦ୍ମ (୭୩ ନମ୍ବର ଦେଖ) ଲେଖି ତାହାକୁ ପଞ୍ଚବର୍ଣ୍ଣ ମୁରୁଜଦ୍ୱାରା ମଣ୍ଡଳ କରି ତଳଲିଖିତ ମନ୍ତ୍ର ପଢ଼ି ଭୂମିସ୍ପର୍ଶ କରିବ ।

## ୧୦୨ - କଳସଭୂମିସ୍ପର୍ଶନ ମନ୍ତ୍ର

ଓଁ ଭୂରସି ଭୂମିରସ୍ୟ ଦିତିସରି ବିଶ୍ୱଧାୟା ବିଶ୍ୱସ୍ୟ ଭୁବନସ୍ୟ ଧର୍ତ୍ତ୍ରୀଂ । ପୃଥିବୀଂ ଯଚ୍ଛ ପୃଥିବୀଂ ଦୃଂହ ପୃଥିବୀଂ ମାହିଂସୀଃ ଇତି ଭୂମିସ୍ପର୍ଶନଂ ।

ତତଃ ପଦ୍ମମଣ୍ଡଳୋପରି ଶୁକ୍ଳଧାନ୍ୟଂ ସ୍ଥାପୟେଦନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ସେହି ପଦ୍ମମଣ୍ଡଳ ଉପରେ ଶୁକ୍ଳଧାନ୍ୟ ରଖିବ ।

## ୧୦୩ - * କଳସଧାନ୍ୟସ୍ଥାପନ ମନ୍ତ୍ର

ଓଁ ଧାନ୍ୟସମି ଧିନୁହି ଦେବାନ୍ ଧିନୁହି ଯଜ୍ଞଂ । ଧିନୁହି ଯଜ୍ଞପତିଂ ଧିନୁହି ମାଂ ଯଜ୍ଞନ୍ୟଂ ଇତି ଧାନ୍ୟସ୍ଥାପନଂ ।

ତଦୁପରି କଳସସ୍ଥାପନମନେନ ମନ୍ତ୍ରେଣ ।

(କଳସର ପରିମାଣ ୫୧ ନମ୍ବର ଦେଖ)

ବ୍ୟାଖ୍ୟା - ସେହି ଶୁକ୍ଳଧାନ୍ୟ ଉପରେ ତଳଲିଖିତ ମନ୍ତ୍ର ପଢ଼ି କଳସ ସ୍ଥାପନ କରିବ ।

## ୧୦୪ - କଳସ ସ୍ଥାପନ ମନ୍ତ୍ର

ଓଁ ଆଜିଘ୍ର କଳସଂ ମହ୍ୟାତ୍ୱା ବିଶନ୍ତ୍ୱିନ୍ଦବଃ । ପୁନରୂର୍ଜ୍ଜା ନିବର୍ତ୍ତସ୍ୱ ସା ନଃ ସହସ୍ରଂ ଧୁକ୍ଷୋରୁଧାରା ପୟସ୍ୱତୀ ପୁନର୍ମାବିଶତାଦ୍ରୟିଃ । ଇତି କଳସସ୍ଥାପନଂ ।

ତତଃ କଳେସ ଜଳପୂରଣମନେନ ମନ୍ତ୍ରେଣ

ବ୍ୟାଖ୍ୟା - ତତ୍ପରେ ସେହି କଳସରେ ତଳଲିଖିତ ମନ୍ତ୍ର ପଢ଼ି ଜଳପୂରଣ କରିବ ।

## ୧୦୫ - କଳସରେ ଜଳ ପୂରଣ ମନ୍ତ୍ର

ଓଁ ବରୁଣସ୍ୟୋତ୍ତମ୍ଭନମସି ବରୁଣସ୍ୟ ସ୍କମ୍ଭସର୍ଜନୀ ସ୍ଥଃ । ବରୁଣସ୍ୟ ଋତସଦନ୍ୟସି ବରୁଣସ୍ୟ ଋତସଦନମସି ବରୁଣସ୍ୟ ଋତସଦନମାସୀଦ । ।ଇତି ଜଳପୂରଣଂ ।

---

୧୦୩ * କଳସ ଧାନ୍ୟର ପରିମାଣ, ଯଥା ଶୌନକଃ-

ଦ୍ରୌଣପ୍ରମାଣଧାନ୍ୟେନ କଳସଂ ସ୍ଥାପୟେତ୍ ବୁଧଃ ।

ଦ୍ରୋଣସ୍ତୁ ଚତୁରାଢ଼କଃ (ଅର୍ଥାତ୍ ୨୫୬ମୁଠା, ବିଶ୍ୱକୋଷ)

## ୧୦୬ - କଳସରେ ତୀର୍ଥାବାହାନ ମନ୍ତ୍ର

ଓଁ ଗଙ୍ଗାଦ୍ୟାଃ ସରିତଃ ସର୍ବାଃ ସମୁଦ୍ରାଶ୍ଚ ସରାଂସିଚ ।
ଆୟାନ୍ତୁ ଯଜମାନସ୍ୟ ଦୂରିତକ୍ଷୟକାରକାଃ ।
ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ ।
ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ।
ତତଃ କଲସେ ପଞ୍ଚରତ୍ନ ପ୍ରକ୍ଷେପଣମନେନ ମନ୍ତ୍ରେଣ

ବ୍ୟାଖ୍ୟା - ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି କଳସରେ ପଞ୍ଚରତ୍ନ ପକାଇବ ।

## ୧୦୭ - କଳସରେ ପଞ୍ଚରତ୍ନ କ୍ଷେପଣ ମନ୍ତ୍ର

ଓଁ ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପରିରେକ ଆସୀତ୍ । ସଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ । ଇତି ପଞ୍ଚରତ୍ନପ୍ରକ୍ଷେପଃ ।

**ତତଃ + ସର୍ବୌଷଧିପ୍ରକ୍ଷେପଣମନେନ ମନ୍ତ୍ରେଣ ।**

ବ୍ୟାଖ୍ୟା - ତଦନନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳସ ମଧ୍ୟରେ ସର୍ବୌଷଧି ପକାଇବ ।

## ୧୦୮ - କଳସରେ ସର୍ବୌଷଧିପ୍ରକ୍ଷେପଣ ମନ୍ତ୍ର

ଓଁ ଯାଓଷଧୀଃ ପୂର୍ବାଜାତା ଦେବେଭ୍ୟସ୍ତ୍ରିଯୁଗଂ ପୁରା । ମନୈନୁବଭ୍ରୂଣାମହଂ ଶତଂ ଧାମାନି ସପ୍ତ ଚ । ଇତି ସର୍ବୌଷଧି ପ୍ରକ୍ଷେପଃ ।

ତତସ୍ତସ୍ମିନ୍ ଗନ୍ଧପ୍ରକ୍ଷେପଣମନେନ ମନ୍ତ୍ରେଣ

ବ୍ୟାଖ୍ୟା - ତଦନନ୍ତର ନିମ୍ନଲିଖିତ ମନ୍ତ୍ରପାଠ କରି କଳସ ମଧ୍ୟରେ ଗନ୍ଧ ପ୍ରକ୍ଷେପଣ କରିବ ।

## ୧୦୯ - କଳଶରେ ଗନ୍ଧ ପ୍ରଦାନ ମନ୍ତ୍ର

ଓଁ ଗନ୍ଧଦ୍ୱାରାଂ ଦୁରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ । ଈଶ୍ୱରୀଂ ସର୍ବଭୂତାନାଂ ତ୍ୱାମିହୋପହ୍ୱପେ ଶ୍ରିୟଂ । ଇତି ଗନ୍ଧଂ ।

---

* ୧୦୬ ପଞ୍ଚରତ୍ନ ପ୍ରମାଣ, ଯଥା-

ନୀଳକଂ ହୀରକଂ ଚେତି ପଦ୍ମରାଗଶ୍ଚ ମୌକ୍ତିକଂ । ପ୍ରବାଳଂ ଚେତି ବିଜ୍ଞେୟଂ ପଞ୍ଚରତ୍ନଂ ମନୀଷିଭିଃ । ଅଭାବେ ସର୍ବରତ୍ନାନାଂ ହୋମ ସର୍ବତ୍ର ଯୋଜୟେତ୍ । (ଧନ୍ୱନ୍ତରୀୟନିର୍ଘଣ୍ଟେ)

*୧୦୭ ସର୍ବୌଷଧି ପ୍ରମାଣ; ଯଥା- ମୁରାମାଂସୀ ବଚା କୁଷ୍ଠଂ ଶୈଳେୟଂ ରଜନୀଦ୍ୱୟଂ । ଶଟୀ ଚମ୍ପକ ମୁସ୍ତଂ ଚ ସର୍ବୌଷଧିଗଣଃ ସ୍ମୃତଃ । (ଶବ୍ଦଚନ୍ଦ୍ରିକାୟାଂ) । ବ୍ୟାଖ୍ୟା- ୧-ମୁରାମାଂସୀ, ୨-ବଚ, ୩-କୁଢ଼, ୪-ଶୈଳେୟ (ଶିଳାଜତୁ), ୫-ହଳଦୀ, ୬-ଦାରୁହଳଦୀ, ୭-ଗନ୍ଧଶୁଣ୍ଠି, ୮-ଚମ୍ପକ ଓ ୯-ମୁଥା । ଏହି ନଅଗୋଟି ପଦାର୍ଥକୁ ସର୍ବୌଷଧି କହନ୍ତି ।



ତତଃ ପୁଷ୍ପମାଲ୍ୟବେଷ୍ଟନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ଅନନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳସକଣ୍ଠରେ ମାଲ୍ୟବେଷ୍ଟନ କରିବ ।

## ୧୧୦ - କଳସରେ ମାଲ୍ୟବେଷ୍ଟନ ମନ୍ତ୍ର

ଓଁ ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇଷ୍ଣନ୍ନିଷାଣା ମୁମ୍ନଇଷାଣ ସର୍ବଲୋକଂ ମଇଷାଣଃ । ଇତି ପୁଷ୍ପଂ ।

## ୧୧୧ - କଳସରେ ଆମ୍ରାଦି ପଞ୍ଚପଲ୍ଲବଦାନ ମନ୍ତ୍ର

ଓଁ ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ତ ନମ ଉଦ୍‌ଗୁରମାଣାୟଚାଭିଘ୍ନତେ ଚ । ନମଃ ଆଖିଦେତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍ଭ୍ୟୋ ଧନୁଷ୍କୃଭ୍ୟଶ୍ଚବୋ ନମଃ । ନମୋବଃ କିରିକେଭ୍ୟୋ ଦେବାନାଂ ହୃଦୟେଭ୍ୟୋ ନମୋ ବିଚିନ୍ୱତ୍କେଭ୍ୟୋ ନମୋ ବିକ୍ଷିଣତ୍କେଭ୍ୟୋ ନମ ଅନିର୍ହତେଭ୍ୟଃ । ଇତିପଲ୍ଲବଂ ।

ତତଃ କଲସସ୍ୟ କଣ୍ଠେ ବସ୍ତ୍ରଦ୍ୱୟବନ୍ଧନମନେନ ମନ୍ତ୍ରେଣ ।

ବ୍ୟାଖା - ଅନନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳସକଣ୍ଠରେ ବସ୍ତ୍ରଦ୍ୱୟ ବନ୍ଧନ କରିବ ।

## ୧୧୨ - କଳଶ କଣ୍ଠରେ ବସ୍ତ୍ରଦେବା ମନ୍ତ୍ର

ବ୍ୟାଖ୍ୟା - ଅନନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳଶକଣ୍ଠରେ ବସ୍ତ୍ରଦ୍ୱୟ ବନ୍ଧନ କରିବ ।

ଓଁ ଯଦଶ୍ୱାୟ ବାସ ଉପସ୍ତୃଣଂ ତ୍ୟଧବାସଂ ଯାହିରଣ୍ୟାନ୍ୟସ୍ମୈ । ସନ୍ଦାନ ମର୍ବନ୍ତଂ । ପଡ୍‌ଵିଶଂ ପ୍ରିୟା ଦେବେଷ୍ୱାୟାମୟନ୍ତି । ଇତି ବସ୍ତ୍ରଂ ।

ତତଃ କଲସୋପରିଦଧି ଶୁକ୍ଳତଣ୍ଡୁଳଯୁକ୍ତପୂର୍ଣ୍ଣଶରାବସ୍ଥାପନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ଅନନ୍ତର ନିମ୍ନଲିଖିତ ମନ୍ତ୍ର ପଢ଼ି କଳସ ଉପରେ ଦଧି ଓ ଶୁକ୍ଳ ତଣ୍ଡୁଳ ମିଶ୍ରିତ ପୂର୍ଣ୍ଣଶରାବ ସ୍ଥାପନ କରିବ ।

## ୧୧୩ - କଳସୋପରି ପୂର୍ଣ୍ଣଶରାବସ୍ଥାପନ ମନ୍ତ୍ର

ଓଁ ପୂର୍ଣ୍ଣାଦର୍ବିପରାପତ ସୁପୂର୍ଣ୍ଣା ପୁନରାପତ । ବସ୍ନେବ ବିକ୍ରିଣାବହା ଇଷମୂର୍ଜଂ ଶତକ୍ରତୋ । ଇତି ପୂର୍ଣ୍ଣଶରାବଂ ।

ତତଃ ଶରାବୋପରି ନାରିକେଳଫଳଦାନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ଅନନ୍ତର ନିମ୍ନଲିଖିତ ମନ୍ତ୍ର ପଢ଼ି ପୂର୍ଣ୍ଣଶରାବ (ଶରା) ଉପରେ ନାରିକେଳ ଫଳ ରଖିବ ।

---

* **୧୧୧ ପଞ୍ଚପଲ୍ଲବ,** ଯଥା-ଅଶ୍ୱତ୍‌ଥୋଦୁମ୍ବରପ୍ଲକ୍ଷଚୂତନ୍ୟଗ୍ରୋଧପଲ୍ଲବା । ପଞ୍ଚପଲ୍ଲବମିତ୍ୟୁକ୍ତଂ ସର୍ବକର୍ମଣି ଶୋଭନଂ । (ଶବ୍ଦଚନ୍ଦ୍ରିକାୟାଂ)

ବ୍ୟାଖ୍ୟା-୧-ଅଶ୍ୱତ୍‌ଥ, ୨-ଉଦୁମ୍ବର, ୩-ପ୍ଲକ୍ଷ, ୪-ଚୂତ ଓ ୫-ବଟ ଏମାନଙ୍କୁ ପଞ୍ଚପଲ୍ଲବ କହନ୍ତି ।

## ୧୧୪ - କଳସରେ ଫଳଦେବା ମନ୍ତ୍ର

ଓଁ ଯାଃ ଫଳିନୀର୍ଯା ଅଫଳାଅପୁଷ୍ପାୟାଶ୍ଚ ପୁଷ୍ପିଣୀଃ । ବୃହସ୍ପତିପ୍ରସୂତାସ୍ତାନୋ ମୁଞ୍ଚନ୍ତ୍ୱଂ ହସଃ । ଇତି ଫଳଂ ।

ତତଃ କଲସେ ସିନ୍ଦୁରଂ ଦଦ୍ୟାଦନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ତଦନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳସରେ ସିନ୍ଦୁର ଦେବ ।

## ୧୧୫ - କଳଶରେ ସିନ୍ଦୁର ଦେବା ମନ୍ତ୍ର

ଓଁ ସିନ୍ଧୋରିବ ପ୍ରାଧ୍ୱନେଶୁ ଘନାସୋବାତପ୍ରମିୟଃ ପତୟନ୍ତି ଯହ୍ୱାଃ ।
ଘୃତସ୍ୟଧାରା ଅରୁଷୋନବାଜୀ କାଷ୍ଠାଭିନନ୍ଦୂର୍ମିଭିଃ ପିନ୍ୱମାନଃ ।
(ଇତି ସିନ୍ଦୁରଂ)

ତତଃ କଲସୋପରି ଦୁର୍ବାଦାନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ତଦନନ୍ତର ତଳଲିଖିତ ମନ୍ତ୍ର ପଢ଼ି କଳଶ ଉପରେ ଦୁର୍ବାଦେବ ।

## ୧୧୬ - କଳସରେ ଦୁର୍ବାଦେବ ମନ୍ତ୍ର

ଓଁ କାଣ୍ଡାତ୍କାଣ୍ଡାତ୍ ପ୍ରରୋହନ୍ତୀ ପୁରୁଷଃ ପୁରୁଷରି । ଏବାନୋଦୂର୍ବେ ପ୍ରତନୁ ସହସ୍ରେଣ ଶତେନ ଚ । ଇତି ଦୁର୍ବାଃ ।

ତତଃ କଲସମୁଖାଦୌ ରୁଦ୍ରାଦୀନାଂ ଚିନ୍ତନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ଅନନ୍ତର କଳସର ମୁଖ ପ୍ରଭୃତିରେ ରୁଦ୍ରାଦିଙ୍କୁ ଚିନ୍ତା କରିବ ।

## ୧୧୭ - କଳସରେ ରୁଦ୍ରାଦିଚିନ୍ତନ ମନ୍ତ୍ର

କଲସସ୍ୟ ମୁଖେ ରୁଦ୍ରଃ କଣ୍ଠେ ବିଷ୍ଣୁଃ ପ୍ରକୀର୍ତ୍ତିତଃ ।
ଅଧଶ୍ଚୈବ ସ୍ଥିତୋ ବ୍ରହ୍ମା ମଧ୍ୟେ ମାତୃଗଣାଃ ସ୍ମୃତାଃ ।
କୁକ୍ଷୌ ଚ ସାଗରାଃ ସପ୍ତ ସପ୍ତଦ୍ୱିପାଶ୍ଚ ମେଦିନୀ ।
ଉଦରେ ସର୍ବତୀର୍ଥାନି ଚିନ୍ତୟିତ୍ୱା ପ୍ରପୂଜୟେତ୍ ।
(ଇତି ଚିନ୍ତନ ମନ୍ତ୍ରଃ)

ଘଟ ସ୍ଥାଂ ସ୍ଥୀଂ ସ୍ଥିରୋଭବଃ । ଇତି ଘଟୋପରି ଅକ୍ଷତପ୍ରକ୍ଷେପଃ । ଇତି କଲସ ସ୍ଥାପନଂ ।

## ୧୧୮ - ବରୁଣ ପୂଜା

ତତଃ କୁମ୍ଭେ ଗଣପତ୍ୟାଦିପଞ୍ଚଦେବତାନାମାବାହନମନେନ ମନ୍ତ୍ରେଣ ।

ବ୍ୟାଖ୍ୟା - ଅନନ୍ତର ସେହି ସ୍ଥାପିତଘଟରେ ଗଣପତି, ବରୁଣ, ଆଦିତ୍ୟାଦି ନବଗ୍ରହ, ଇନ୍ଦ୍ରାଦି ଦଶଦିକ୍‌ପାଳ ଓ ଗ୍ରାମଦେବତା ଏହି ପଞ୍ଚଦେବତାଙ୍କୁ ନିମ୍ନଲିଖିତ ସ୍ୱ ସ୍ୱ ମନ୍ତ୍ର ଦ୍ୱାରା ଆବାହନ କରି ଓ ଆବାହନାଦି ଦଶମୁଦ୍ରା ଦେଖାଇବ ।

---

*-୧୧୮ ଆବାହନାଦି ଦଶମୁଦ୍ରା, ଯଥା-

ଆବାହନଂ ସ୍ଥାପନଂ ଚ ସନ୍ନିଧାନଂ ପ୍ରକୀର୍ତ୍ତିତଂ । ସାହନ୍ନିରୋଧଃ ସକଳୀକରଣଂ ଚାବଗୁଣ୍ଠନଂ । ଧେନୁଃ ପୀୟୁଷକରଣଂ ମହାମୁଦ୍ରା ତଥୈବ ଚ । ପରମୀକରଣଂ ଚୈବ ଦଶମୁଦ୍ରାଃ ପ୍ରକୀର୍ତ୍ତିତା (ତନ୍ତ୍ରସାରେ)



## ୧୧୯ - ଗଣପତିଙ୍କ ଆବାହନ ମନ୍ତ୍ର

ଓଁ ଗଣାନାଂ ତ୍ୱା ଗଣପତିଂ ହବାମହେ ପ୍ରିୟାଣାଂତ୍ୱା ପ୍ରିୟପତିଂ ହବାମହେ ନିଧୀନାଂ ତ୍ୱା ନିଧିପତିଂ ହବାମହେ ବସୋ ମମ । ଓଁ ଗଣପତୟେ ନମଃ ଗଣପତିମାବାହୟାମି ଗଣପତେଽତ୍ରାଗଚ୍ଛ । ଇତ୍ୟାବାହ୍ୟ ।

---

(୧) ଆବାହନମୁଦ୍ରା- ହସ୍ତାଭ୍ୟାମଞ୍ଜଳିଂ ବଦ୍ଧ୍ୱାନାମିକାମୂଳପର୍ବଣି । ଅଙ୍ଗୁଷ୍ଠେ ନିକ୍ଷିପେତ୍ ସେୟଂ ମୁଦ୍ରାତ୍ୱା ବାହନୀ ସ୍ମୃତା । ବ୍ୟାଖ୍ୟା-ଉଭୟ ହସ୍ତକୁ ଅଳି କରି ଦକ୍ଷିଣ ହସ୍ତର ଅନାମିକା ମୂଳପର୍ବରେ ଦକ୍ଷିଣ ହସ୍ତର ଅଙ୍ଗୁଷ୍ଠକୁ ଓ ବାମହସ୍ତର ଅନାମିକା ମୂଳପର୍ବରେ ବାମହସ୍ତର ଅଙ୍ଗୁଷ୍ଠକୁ ସଂଲଗ୍ନ କଲେ ଆବାହନୀ ଓ ଆବାହନମୁଦ୍ରା ହୁଏ । (୨) ସଂସ୍ଥାପନମୁଦ୍ରା-ଅଧୋମୁଖୀ ତ୍ୱିୟଂ ଚ ସ୍ୟାତ୍ ସ୍ଥାପନୀ ମୁଦ୍ରିକା ସ୍ମୃତା । ବ୍ୟାଖ୍ୟା-ଉପରୋକ୍ତ ଆବାହନ ମୁଦ୍ରାକୁ ଅଧୋମୁଖ ଅର୍ଥାତ୍ ଓଲଟାଇ ତଳକୁ କଲେ ସ୍ଥାପନୀ ବା ସଂସ୍ଥାପନମୁଦ୍ରା ହୁଏ । (୩) ସନ୍ନିଧାନମୁଦ୍ରା-ଉଚ୍ଛିତାଙ୍ଗୁଷ୍ଠମୁଷ୍ଟ୍ୟୋଶ୍ଚ ସଂଯୋଗାତ୍ ସନ୍ନିଧାପନୀ । ବ୍ୟାଖ୍ୟା-ଦୁଇହାତର ମୁଠାକୁ ଏକତ୍ର କରି ଉଭୟ ହସ୍ତର ବୁଢ଼ା ଆଙ୍ଗୁଳିକୁ ଉପରକୁ ସଳଖ କରି ରଖିଲେ ତାହାକୁ ସନ୍ନିଧାପନୀ ବା ସନ୍ନିଧାନମୁଦ୍ରା କୁହାଯାଏ । (୪) ସନ୍ନିରୋଧନମୁଦ୍ରା-ଅନ୍ତଃପ୍ରବେଶିକାଙ୍ଗୁଷ୍ଠା ସୈବ ସମ୍ବୋଧନୀ ମତା । ବ୍ୟାଖ୍ୟା-ଉଭୟହସ୍ତର ଅଙ୍ଗୁଷ୍ଠକୁ ମୁଠାଭିତରେ ରଖି ଉଭୟ ହସ୍ତର ମୁଷ୍ଟିକୁ ଯୋଗ କଲେ ତାହାକୁ ସମ୍ବୋଧନୀ ବା ସନ୍ନିରୋଧନମୁଦ୍ରା କହନ୍ତି । (୫) ସକଳୀକରଣମୁଦ୍ରା-ଦେବତାଙ୍ଗେ ଷଡ଼ଙ୍ଗାନାଂ ନ୍ୟାସଃ ସ୍ୟାତ୍ ସକଳୀକୃତିଃ । ବ୍ୟାଖ୍ୟା-ଦେବତାଙ୍କ ଅଙ୍ଗରେ ଷଡ଼ଙ୍ଗନ୍ୟାସ (ହୃଦୟାୟ ନମଃ, ଶିରସେ ସ୍ୱାହା, ଶିଖାୟୈ ବଷଟ୍, କବଚାୟ ହୁଂ । ନେତ୍ରାଭ୍ୟାଂ ବୌଷଟ୍, ଅସ୍ତ୍ରାୟ ଫଟ୍) କରିବାର ନାମ ସକଳୀକରଣ ମୁଦ୍ରା । (୬) ଅବଗୁଣ୍ଠନମୁଦ୍ରାସବ୍ୟହସ୍ତକୃତା ମୁଷ୍ଟିଦୀର୍ଘାଧୋମୁଖତର୍ଜନୀ । ଅବଗୁଣ୍ଠନ-ମୁଦ୍ରେୟମଭିତୋଭ୍ରାମିତା ମତା । ବ୍ୟାଖ୍ୟା-ବାମହସ୍ତର ତର୍ଜନୀ ଛଡ଼ା ସମସ୍ତ ଅଙ୍ଗୁଳିକୁ ମୁଠା କରି ତର୍ଜନୀକୁ ସଳଖ ଓ ଅଧୋମୁଖ କରି ନୈବେଦ୍ୟାଦିର ଚାରିଆଡ଼େ (ଦକ୍ଷିଣାବର୍ତ୍ତରେ) ବୁଲାଇବାର ନାମ ଅବଗୁଣ୍ଠନ ମୁଦ୍ରା । (୭) ଧେନୁମୁଦ୍ରା-ଦକ୍ଷାନାମାସମାଯୁକ୍ତ ବାମହସ୍ତକନିଷ୍ଠିକା । ବାମାନାମାସମାଯୁକ୍ତା ଦକ୍ଷପାଣିକନିଷ୍ଠିକା ଦକ୍ଷସ୍ୟ ମଧ୍ୟମାକ୍ରାନ୍ତା ବାମହସ୍ତସ୍ୟ ତର୍ଜନୀ । ବାମମଧ୍ୟ ମୟାକ୍ରାନ୍ତା ଦକ୍ଷହସ୍ତସ୍ୟ ତର୍ଜନୀ । ସଂଯୁକ୍ତୋ କାରୟେଦ୍ ନ ବିଦ୍ୱାନାଙ୍ଗୁଷ୍ଠାଦୁଭୟୋରପି । ଧେନୁମୁଦ୍ରା ନିଗଦିତା ଗୋପିତା ସାଧକୌତ୍ତମୈଃ । ବ୍ୟାଖ୍ୟା-ଉଭୟ ହସ୍ତକୁ ଛନ୍ଦି ଦକ୍ଷିଣହସ୍ତର ଅନାମିକାକୁ ବାମହସ୍ତର କନିଷ୍ଠାରେ, ଦକ୍ଷିଣ ହସ୍ତର କନିଷ୍ଠାକୁ ବାମହସ୍ତର ଅନାମିକାରେ, ଦକ୍ଷିଣହସ୍ତର ମଧ୍ୟମାକୁ ବାମହସ୍ତର ତର୍ଜନୀରେ, ଦକ୍ଷିଣହସ୍ତର ତର୍ଜନୀକୁ ବାମହସ୍ତର ମଧ୍ୟମାରେ ସଂଯୋଗ କରିବ ଓ ଉଭୟ ହସ୍ତର ବୁଢ଼ାଆଙ୍ଗୁଳିକୁ ଯୋଗ ଓ ସଳଖ କରି ଊର୍ଦ୍ଧ୍ୱମୁଖ କଲେ ଏହାକୁ ଧେନୁମୁଦ୍ରା କହନ୍ତି । (୮) ଅମୃତୀକରଣ ମୁଦ୍ରା-ଅମୃତୀକରଣଂ କୁର୍ଯ୍ୟାତ୍ତୟା ସାଧକସତ୍ତମଃ । ବ୍ୟାଖ୍ୟା-ଧେନୁମୁଦ୍ରାକୁ ଅଧୋମୁଖ କଲେ ଅମୃତୀକରଣମୁଦ୍ରା ହୁଏ । ଏହି ମୁଦ୍ରାଦ୍ୱାରା ପୂଜାର ନୈବେଦ୍ୟାଦି ଉପକରଣର

## ୧୨୦ - ବରୁଣଙ୍କର ଆବାହନ ମନ୍ତ୍ର

ଓଁ ବରୁଣସ୍ୟୋତ୍ତମ୍ଭନସମି ବରୁଣସ୍ୟ ସ୍କମ୍ଭସର୍ଜନୀ ସ୍ଥଃ । ବରୁଣସ୍ୟ ଋତସଦନ୍ୟସି ବରୁଣସ୍ୟ ଋତସଦନମସି ବରୁଣସ୍ୟ ଋତସଦନମାସୀଦ୍ । ଓଁ ବରୁଣାୟ ନମଃ ବରୁଣମାବାହୟାମି, ବରୁଣ ଅତ୍ରାଗଚ୍ଛ । ଇତ୍ୟାବାହ୍ୟ ।

## ୧୨୧ - ଆଦିତ୍ୟାଦି ନବଗ୍ରହଙ୍କର ଆବାହନ ମନ୍ତ୍ର

ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ । ହିରଣ୍ୟୟେନ ସବିତାରଥେନା ଦେବୋୟାତି ଭୁବନାନି ଭୂବନାନି ପଶ୍ୟାନ୍ । ଓଁ ଆଦିତ୍ୟାଦି ନବଗ୍ରହେଭ୍ୟୋ ନମଃ । ଆଦିତ୍ୟାଦିନବଗ୍ରହାନାବାହୟାମି ଆଦିତ୍ୟାଦିନବଗ୍ରହା ଅତ୍ରାଗଚ୍ଛତ । ଇତ୍ୟାବାହ୍ୟ ।

## ୧୨୨ - ଇନ୍ଦ୍ରାଦିଦଶଦିକ୍‌ପାଳଙ୍କର ଆବାହନ ମନ୍ତ୍ର

ଓଁ ତ୍ରାତାରମିନ୍ଦ୍ର ମବିତାରମିନ୍ଦ୍ରଂ ହବେ ହବେଷୁ ହବଂ ଶୂରମିନ୍ଦ୍ରଂ । ହ୍ୱୟାମି ଶକ୍ରଂ ପୁରୁହୂତମିନ୍ଦ୍ରଙ୍ଗଂ ସ୍ୱସ୍ତିନୋମଘବାଧାତ୍ୱିନ୍ଦ୍ରଃ । ଓଁ ଇନ୍ଦ୍ରାଦି ଦଶଦିକ୍‌ପାଳେଭ୍ୟୋନମଃ ଇନ୍ଦ୍ରାଦି ଦଶଦିକ୍‌ପାଳାନାବାହୟାମି ଇନ୍ଦ୍ରାଦିଦଶଦିକ୍ ପାଳା ଅତ୍ରାଗଚ୍ଛତ । ଇତ୍ୟାବାହ୍ୟ ।

## ୧୨୩ - ଗ୍ରାମଦେବତାଙ୍କ ଆବାହନ ମନ୍ତ୍ର

ଓଁ ଯଦଗ୍ରାମେ ଯଦରଣ୍ୟେ ଯସ୍ଭାୟାଂ ଯଦିନ୍ଦ୍ରିୟୋ ଯଦେନଶ୍ଚକୃମାବୟମିଦଂ ତଦବୟଜାମହେ । ଓଁ ଗ୍ରାମଦେବତାୟୈ ନମଃ ଗ୍ରାମଦେବତାମାବାହୟାମି ଗ୍ରାମଦେବତୋଽତ୍ରା ଗଚ୍ଛ । ଇତ୍ୟାବାହ୍ୟ ।

## ୧୨୪ - ଗଣପତ୍ୟାଦି ପଞ୍ଚଦେବତା ପୂଜା

ଗଣପତ୍ୟାଦିପଞ୍ଚଦେବତାଭ୍ୟଃ ସ୍ୱସ୍ୱମନ୍ତ୍ରୈରଥବା ସ୍ୱନାମଚତୁର୍ଥ୍ୟନ୍ତେନ ଆସନାଦି ନୈବେଦ୍ୟାନ୍ତଂ ଦତ୍ତ୍ୱା ପୂଜୟେତ୍ ।

ବ୍ୟାଖ୍ୟା - ସେହି କଳସରେ ଗଣପତ୍ୟାଦି ପଞ୍ଚଦେବତା (ଯଥା – ୧- ଗଣପତି, ୨ - ବରୁଣ, ୩- ଆଦିତ୍ୟାଦିନବଗ୍ରହ, ୪- ଇନ୍ଦ୍ରାଦିଦଶଦିକ୍‌ପାଳ ଓ ୫ - ଗ୍ରାମଦେବତା) ଏମାନଙ୍କର ସ୍ୱ ସ୍ୱ ମନ୍ତ୍ରରେ ଅଥବା ସ୍ୱନାମଚତୁର୍ଥନ୍ତ ମନ୍ତ୍ରଦ୍ୱାରା କ୍ରମରେ ପ୍ରତ୍ୟେକଙ୍କୁ ଆସନ, ପାଦାସନ, ପାଦ୍ୟ ଅର୍ଘ୍ୟ, ଗନ୍ଧ, ପୁଷ୍ପ, ଧୂପ ଧୀପ, ନୈବେଦ୍ୟ ଓ ତାମ୍ବୂଳ ଦେଇ ପୂଜା କରିବ, ଯଥା – ଓଁ ଗଣପତୟେ ଆସନଂ

---

ଅମୃତୀକରଣ କରିବ (୯) ମହାମୁଦ୍ରା ଅନ୍ୟୋଽନ୍ୟ ଗ୍ରଥିତାଙ୍ଗୁଷ୍ଠା ପ୍ରସାରିତପରାଙ୍ଗୁଳିଃ । ବ୍ୟାଖ୍ୟା-ଉଭୟହସ୍ତର ଅଙ୍ଗୁଷ୍ଠିଦ୍ୱୟକୁ ପରସ୍ପରଗଣ୍ଠି କରି ଆଉ ସମସ୍ତ ଅଙ୍ଗୁଳିକୁ ପ୍ରସାରିତ କରିବାର ନାମ ମହାମୁଦ୍ରା । (୧୦) ପରମୀକରଣମୁଦ୍ରା-ମହାମୁଦ୍ରେୟମୁଦିତା ପରମୀକରଣେ ବୁଧୈଃ । ବ୍ୟାଖ୍ୟା-ଏହି ମହାମୁଦ୍ରାକୁ ନୈବେଦ୍ୟାଦି ଉପକରଣରେ ଦକ୍ଷିଣାବର୍ତ୍ତରେ ବୁଲାଇବାର ନାମ ପରମୀକରଣ ମୁଦ୍ରା ।

***-୧୨୪ (୧) ଆସନାଦି ଉପଚାର ଦାନର ନିୟମ-**

ଆସନଂ ପ୍ରଥମଂ ଦଦ୍ୟାତ୍ ପୌଷ୍ପଂ ଦାରୁଜମେବ ବା । ବସ୍ତ୍ରଂ ବା ଚାର୍ମଣଂ କୌଶଂ ମଣ୍ଡଳସ୍ୟୋତ୍ତରେଽର୍ପୟେତ୍ । (କାଳିକା ପୁରାଣ)



ନମଃ ଓଁ ବରୁଣାୟ ଆସନଂ ନମଃ ଓ ଆଦିତ୍ୟାଦିନବଗ୍ରହେଭ୍ୟ ଆସନଂ ନମଃ, ଓଁ ଇନ୍ଦ୍ରାଦିଦଶଦିକ୍‌ପାଳେଭ୍ୟ ଆସନଂ ନମଃ, ଓଁ ଗ୍ରାମଦେବତାୟୈ ଆସନଂ ନମଃ । (ଏହା ପଢ଼ି ପ୍ରତ୍ୟେକଙ୍କୁ ଆସନ ପ୍ରଦାନ କରିବ) ।

ଓଁ ଗଣପତୟେ ପାଦାସନଂ ନମଃ, ଓଁ ବରୁଣାୟ ପାଦାସନଂ ନମଃ, ଓଁ ଆଦିତ୍ୟାଦିନବଗ୍ରହେଭ୍ୟଃ ପାଦାସନଂ ନମଃ, ଓଁ ଇନ୍ଦ୍ରାଦି ଦଶଦିଗ୍‌ପାଳେଭ୍ୟଃ ପାଦାସନଂ ନମଃ ଓଁ ଗ୍ରାମଦେବତାୟୈ ପାଦାସନଂ ନମଃ । ଏହା ପଢ଼ି ପ୍ରତ୍ୟେକଙ୍କୁ ପାଦାସନ୍ ଦେବ) ।

ଓଁ ଗଣପତୟେ ପାଦ୍ୟଂ ନମଃ, ଓ ବରୁଣାୟ ପାଦ୍ୟଂ ନମଃ, ଓଁ ଆଦିତ୍ୟାଦି ନବଗ୍ରହେଭ୍ୟଃ ପାଦ୍ୟଂ ନମଃ, ଇନ୍ଦ୍ରାଦିଦଶଦିକ୍‌ପାଳେଭଃ ପାଦ୍ୟଂ ନମଃ, ଓଁ ଗ୍ରାମଦେବତାୟେ ପାଦ୍ୟଂ ନମଃ । (ଏହା ପଢ଼ି ପ୍ରତ୍ୟେକଙ୍କୁ ପାଦ୍ୟ ଦେବ) ତତଃ ଅର୍ଘ୍ୟସଂସ୍କାରଂକୃତ୍ୱା ଦଦ୍ୟାଦନେନ ମନ୍ତ୍ରେଣ ଯଥା – ଓଁ ଗଣପତୟେ ଅର୍ଘ୍ୟଃ ସ୍ୱାହା, ଓଁ ବରୁଣାୟ ଅର୍ଘ୍ୟଃ ସ୍ୱାହା, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋଽର୍ଘ୍ୟଃ ସ୍ୱାହା । ଓଁ ଇନ୍ଦ୍ରାଦି ଦଶଦିକ୍‌ପାଳେଭ୍ୟୋଽର୍ଘ୍ୟଃ ସ୍ୱାହା । ଓଁ ଗ୍ରାମଦେବତାୟୈ ଅର୍ଘ୍ୟଃ ସ୍ୱାହା । (ଏହି ମନ୍ତ୍ର ପଢ଼ି ପ୍ରତ୍ୟେକଙ୍କୁ ଅର୍ଘ୍ୟ ଦେବ) ।

---

**ବ୍ୟାଖ୍ୟା** – ପୁଷ୍ପ, କାଷ୍ଠ, ବସ୍ତ୍ର, କୃଷ୍ଣାଜିତ କୁଶ; ଏସବୁ ଆସନମାନଙ୍କ ମଧ୍ୟରୁ ଯେକୌଣସି ଏକଗୋଟି ଆସନ ମଣ୍ଡଳର ଉତ୍ତରଭାଗରେ ଦେବତାଙ୍କୁ ଦେବ ।

ପାଦ୍ୟଂ ପାଦାମ୍ବୁଜେ ଦଦ୍ୟାଦଦ୍ୟାଚମନଂ ମୁଖେ । ମଧୁପର୍କଂ ମୁଖାଭ୍ୟାସେ ସ୍ନାନଂ ସର୍ବକଳେବରେ । କଟୌ ବସ୍ତ୍ରଂ ଯଥାଶୋଭଂ ଯଥାସ୍ଥାନେଷୁ ଭୂଷଣଂ ହୃଦିଗନ୍ଧଂ ତଥା ପୁଷ୍ପଂ ମୂର୍ଦ୍ଧ୍ନିମାଳାଂ ଗଳେଽପିଚ । ଅନୁଘ୍ରାଣଂ ତଥା ଧୂପମନୁଚକ୍ଷଃ ପ୍ରଦୀପକଂ । ଦେବସ୍ୟାଗ୍ରେଚ ନୈବେଦ୍ୟଂ ସମୀପେ ଦୃଷ୍ଟିଗୋଚରେ । (ପୂଜାପଦ୍ଧତୌ)

**ବ୍ୟାଖ୍ୟା** – ଦେବତାଙ୍କର ପାଦପଦ୍ମରେ ପାଦ୍ୟ, ମୁଖ ସମୀପରେ ଆଚମନ ଓ ମଧୁପର୍କ, ସର୍ବାଙ୍ଗରେ ସ୍ନାନଜଳ, କଟୀରେ ବସ୍ତ୍ର, ଅଙ୍ଗର ଯଥାସ୍ଥାନରେ ଭୂଷଣ, ହୃଦୟରେ ଗନ୍ଧ, ମସ୍ତକରେ ପୁଷ୍ପ, ଗଳଦେଶରେ ମାଳା, ନାସା ନିକଟରେ ଧୂପ, ଚକ୍ଷୁ ସମୀପରେ ଦୀପ, ଆଉ ଅଗ୍ର ଓ ଦୃଷ୍ଟି ସମୀପରେ ନୈବେଦ୍ୟ ଦେବ ।

***୧୨୪ - (୨) ସାମାନ୍ୟ ଅର୍ଘ୍ୟସଂସ୍କାର ବିଧି ଯଥା –**

ଭୂମିରେ ତିନିକୋଣିଆ ମଣ୍ଡଳ ଲେଖି ତାହାଉପରେ ଗନ୍ଧପୁଷ୍ପ ଦ୍ୱାରା ପୂଜା କରିବ । ମନ୍ତ୍ର ଯଥା – ଓଁ ଆଧାର ଶକ୍ତୟେ ନମଃ ଓ କୂର୍ମାୟ ନମଃ, ଓଁ ଅନନ୍ତାୟ ନମଃ, ଓଁ ପୃଥିବ୍ୟୈନମଃ, ତତ୍ପରେ "ଓଁ ଫଟ୍" ଏହି ମନ୍ତ୍ର ପଢ଼ି ଅର୍ଘ୍ୟପାତ୍ର (ଶଙ୍ଖ)କୁ ପ୍ରକ୍ଷାଳନ କରି ତ୍ରିପଦିକା (ବଇଠକୀ) ଉପରେ ରଖି "ଓଁ" ଏହି ମନ୍ତ୍ର ପଢ଼ି ଶଙ୍ଖରେ ଜଳପୂରଣ କରି ନିମ୍ନଲିଖିତ ମନ୍ତ୍ର ପଢ଼ି ଗନ୍ଧ, ପୁଷ୍ପ ଓ ଦୁର୍ବାଦ୍ୱାରା ପୂଜା କରିବ । ମନ୍ତ୍ର ଯଥା – ଓଁ ମଂ ବହ୍ନିମଣ୍ଡଳାୟ ଦଶକଳାତ୍ମନେ ନମଃ, ଓଁ ଅଂ ସୂର୍ଯ୍ୟମଣ୍ଡଳାୟ ଦ୍ୱାଦଶକଳାତ୍ମନେନମଃ, ଓଁ ଉଂ ସୋମମଣ୍ଡଳାୟ ଷୋଡ଼ଶକଳାତ୍ମନେ ନମଃ ।

ଓଁ ଗଣପତୟେ ଗନ୍ଧୋନମଃ, ଓଁ ବରୁଣାୟ ଗନ୍ଧୋନମଃ, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ଗନ୍ଧୋନମଃ, ଓଁ ଇନ୍ଦ୍ରାଦିଦଶଦିକ୍‌ପାଳେଭ୍ୟୋ ଗନ୍ଧୋନମଃ, ଓଁ ଗ୍ରାମଦେବତାୟୈ ଗନ୍ଧୋନମଃ (ଏହି ପଢ଼ି ପ୍ରତ୍ୟେକଙ୍କୁ ଗନ୍ଧ ଦେବ) ଓଁ ଗଣପତୟେ ପୁଷ୍ପଂ ବୌଷଟ୍, ଓଁ ବରୁଣାୟ ପୁଷ୍ପଂ ବୌଷଟ୍, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ପୁଷ୍ପଂ ବୌଷଟ୍, ଓଁ ଇନ୍ଦ୍ରାଦି ଦଶଦିକ୍‌ପାଳେଭ୍ୟଃ ପୁଷ୍ପଂ ବୌଷଟ୍ ଓ ଗ୍ରାମଦେବତାୟୈ ପୁଷ୍ପଂ ବୌଷଟ୍, (ଏହା ପଢ଼ି ପ୍ରତ୍ୟେକଙ୍କୁ ପୁଷ୍ପ ଦେବ) ଓଁ ଗଣପତୟେ ଧୂପଃ ସ୍ୱାହା ଓଁ ବରୁଣାୟ ଧୂପଃ ସ୍ୱାହା, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ଧୂପଃ ସ୍ୱାହା, ଓଁ ଇନ୍ଦ୍ରାଦି ଦଶଦିକ୍‌ପାଳେଭ୍ୟୋ ଧୂପଃ ସ୍ୱାହା, ଓଁ ଗ୍ରାମଦେବତାୟୈ ଧୂପଃ ସ୍ୱାହା । (ଏହା ପଢ଼ି ପ୍ରତ୍ୟେକଙ୍କୁ ଧୂପ ଦେବ) ଓଁ ଗଣପତେୟ ଧୂପାର୍ଥମାଚମନୀୟଂ ସ୍ୱାହା,

---

ତତ୍ପରେ କ୍ରମେ ଧେନୁମୁଦ୍ରାଦ୍ୱାରା ଅମୃତୀକରଣ କରି, ମତ୍ସ୍ୟମୁଦ୍ରାଦ୍ୱାରା ଆଚ୍ଛାଦନ କରି ଓ ଅଙ୍କୁଶମୁଦ୍ରାଦ୍ୱାରା ସେହି ଜଳରେ ତୀର୍ଥାବାହନ କରିବ । ଯଥା- ଓଁ ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ । ନର୍ମଦେ ସିନ୍ଧୁକାବେରୀ ଜଳେଽସ୍ମିନ୍ ସନ୍ନିଧିଂକୁରୁ । ତଦନନ୍ତର ଶଙ୍ଖ ଉପରେ "ଓଁ" ଏହି ମନ୍ତ୍ର ଦଶଥର ଜପ କରି ସେହି ଜଳକୁ ଆପଣା ଉପରେ ଓ ପୂଜୋପକରଣ ଦ୍ରବ୍ୟରେ ସେଚନ କରିବ ।

ଇତି ସାମାନ୍ୟାର୍ଘ୍ୟସଂସ୍କାର ବିଧିଃ ।

**୧୨୪ (୩) ବୃହତ୍ ଅର୍ଘ୍ୟସଂସ୍କାରବିଧି, ଯଥା-**

ସ୍ୱବାମେ ତ୍ରିକୋଣମଣ୍ଡଳଂ କୃତ୍ୱା ତତ୍ର ତ୍ରିପଦିକାମାରୋପ୍ୟ ଅସ୍ତ୍ରେଣ ଶଙ୍ଖଂ ପ୍ରକ୍ଷାଲ୍ୟ ତଦୁପରି ସଂସ୍ଥାପ୍ୟ ମନ୍ତ୍ରେଣ ଗନ୍ଧପୁଷ୍ପାକ୍ଷତଦୁର୍ବାଦି ତତ୍ର ନିକ୍ଷିପ୍ୟ ବିମଳଜଳେନ ବିଲୋମମାତୃକୟା ମୂଳେନ ଚ ପୂରୟେତ୍, ତତ୍ର ତ୍ରିପଦିକାୟାଂ ବହ୍ନି ମଣ୍ଡଳପୂଜା, ଶଙ୍ଖେ ସୂର୍ଯ୍ୟମଣ୍ଡଳପୂଜା, ଜଳେ ସୋମମଣ୍ଡଳପୂଜା, ତତୋ ମନ୍ତ୍ରେଣାଙ୍କୁଶମୁଦ୍ରୟା ସୂର୍ଯ୍ୟମଣ୍ଡଳାତ୍ତୀର୍ଥମାବାହ୍ୟ ମନ୍ତ୍ରେଣ ସ୍ୱହୃଦୟାଦେବତାଂ ତତ୍ରାବାହ୍ୟ, କୂର୍ଚ୍ଚ ମନ୍ତ୍ରେଣଃ ବୈଗୁଣ୍ଠ୍ୟା ସ୍ତ୍ରମନ୍ତ୍ରେଣ ଗଳିନୀ ମୁଦ୍ରା ପ୍ରଦର୍ଶ୍ୟା ମନ୍ତ୍ରେଣ ତଜ୍ଜଳଂ ବୀକ୍ଷ୍ୟ ଚାଙ୍ଗ ମନ୍ତ୍ରୈଃ ସକଳୀକୃତ୍ୟ, ଗନ୍ଧପୁଷ୍ପାଭ୍ୟାଂ ଦେବତାଂ ସଂପୂଜ୍ୟ ତଦୁପରି ମତ୍ସ୍ୟମୁଦ୍ରୟାଚ୍ଛାଦ୍ୟ ମୂଳମନ୍ତ୍ରମଷ୍ଟଧା ଜପ୍ତ୍ୱା ଧେନୁମୁଦ୍ରାଂ ପ୍ରଦର୍ଶାସ୍ତ୍ରେଣ ସଂରକ୍ଷ୍ୟ ତସ୍ମାତ୍ କିଞ୍ଚିଜଳଂ ପ୍ରୋକ୍ଷଣୀପାତ୍ରେ ନିକ୍ଷିପେତ୍ । (ତନ୍ତ୍ରସାରେ)

ବ୍ୟାଖ୍ୟା- ଆପଣାର ବାମଭାଗରେ ତ୍ରିକୋଣମଣ୍ଡଳ ଲେଖି ତଦୁପରି ମୂଳମନ୍ତ୍ର (ଯେଉଁ ଦେବତାଙ୍କୁ ଯେଉଁ ମନ୍ତ୍ରରେ ପୂଜା କରାଯାଏ ସେହି ତାଙ୍କର ମୂଳମନ୍ତ୍ର) ପଢ଼ି ଶଙ୍ଖର ବୈଠକି ଧୋଇ ଯଥାସ୍ଥାନରେ ରଖିବ । ତତ୍ପରେ "ଓଁ" ଅସ୍ତ୍ରାୟ ଫଟ୍ ଏହି ମନ୍ତ୍ରରେ ଶଙ୍ଖକୁ ଧୋଇ ବୈଠକ ଉପରେ ରଖିବ ଓ ମୂଳମନ୍ତ୍ର ପଢ଼ି ତହିଁରେ ଗନ୍ଧ, ପୁଷ୍ପ, ଅକ୍ଷତ, ଦୁବ, କୁଶ, ଯବଧାନ, ଖସା ଓ ଧଳା ସୋରିଷ ପକାଇବ । ତଦନନ୍ତର ବିଲୋମମାତୃକାମନ୍ତ୍ର ପଢ଼ି ଶଙ୍ଖରେ ଜଳ ପୂରଣ କରିବ । ବିଲୋମମାତୃକା, ଯଥା-

- ମନୀୟଂ ସ୍ୱଧା ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ଧୂପାର୍ଥମାଚମନୀୟଂ ସ୍ୱଧା, ଓଁ ଇନ୍ଦ୍ରାଦିଦଶଦିକପାଳେଭ୍ୟୋଧୂପାର୍ଥମାଚମନୀୟଂ ସ୍ୱଧା, ଓଁ ଗ୍ରାମଦେବତାୟୈ ଧୂପାର୍ଥମାଚମନୀୟଂ ସ୍ୱଧା । (ଏହା ପଢ଼ି ପ୍ରତ୍ୟେକଙ୍କୁ ଧୂପାର୍ଥ ଆଚମନୀୟ ଜଳ ଦେବ) ଓଁ ଗଣପତୟେ ଦୀପଃ ସ୍ୱାହା, ଓଁ ବରୁଣାୟ ଦୀପଃ ସ୍ୱାହା, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ଦୀପଃ ସ୍ୱାହା ଓଁ ଇନ୍ଦ୍ରାଦିଦଶଦିଗ୍‌ପାଳେଭ୍ୟୋ ଦୀପଃ ସ୍ୱାହା, ଓଁ ଗ୍ରାମଦେବତାୟୈ ଦୀପଃ ସ୍ୱାହା । (ଏହା ପଢ଼ି ପ୍ରତ୍ୟେକଙ୍କୁ ଦୀପ ଦେବ) ଓଁ ଗଣପତୟେ ଦୀପାର୍ଥମାଚମନୀୟଂ ସ୍ୱଧା, ଓଁ ବରୁଣାୟ ଦୀପାର୍ଥମାଚମନୀୟଂ ସ୍ୱଧା, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ଦୀପାର୍ଥମାଚମନୀୟଂ ସ୍ୱଧା, ଓଁ ଇନ୍ଦ୍ରାଦିଦଶଦିକ୍‌ପାଳେଭ୍ୟୋ ଦୀପାର୍ଥମାଚମନୀୟଂ ସ୍ୱଧା, ଓଁ ଗ୍ରାମଦେବତାୟୈ ଦୀପାର୍ଥମାଚମନୀୟଂ ସ୍ୱଧା ।

(ଏହା ପଢ଼ି ପ୍ରତ୍ୟେକଙ୍କୁ ଦୀପାର୍ଥ ଆଚମନୀୟ ଜଳ ଦେବ) ।

ତତୋ ନୈବେଦ୍ୟଂ ଅର୍ଘ୍ୟଜଳେନାଭ୍ୟୁକ୍ଷ୍ୟ ବୀକ୍ଷଣାଦିନା ସଂସ୍କୃତ୍ୟ ଦକ୍ଷିଣହସ୍ତେ ପୁଷ୍ପଜଳଂ ଗୃହୀତ୍ୱା ପଠେତ୍ ତଦ ଯଥା ଓଁ ଗଣପତେୟ ନୈବେଦ୍ୟଂ ସ୍ୱାହା, ଓଁ ବରୁଣାୟ ନୈବେଦ୍ୟଂ ସ୍ୱାହା, ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ନୈବେଦ୍ୟଂ ସ୍ୱାହା, ଓଁ ଇନ୍ଦ୍ରାଦିଦଶଦିକ୍‌ପାଳେଭ୍ୟୋ ନୈବେଦ୍ୟଂ ସ୍ୱାହା, ଓଁ ଗ୍ରାମଦେବତାୟୈ ନୈବେଦ୍ୟଂ ସ୍ୱାହା । ତତୋ ଗ୍ରାସମୁଦ୍ରା ଦର୍ଶୟିତ୍ୱା ପଞ୍ଚପ୍ରାଣାହୁତିମୁଦ୍ରାଂ ଦର୍ଶୟେତ୍ । ନୈବେଦ୍ୟାର୍ଥମାଚନୀନୀୟଂ ପୂର୍ବବଦ୍ଦଦ୍ୟାତ୍ । ପ୍ରତ୍ୟେକଂ କ୍ରମୁକତାମ୍ବୁଳଂ ଦଦ୍ୟାତ୍ ।

---

ଓଁ କ୍ଷଂ ନମଃ, ଓଁ ଳଂ ନମଃ, ଓଁ ହଂ ନମଃ, ଓଁ ସଂ ନମଃ, ଓଁ ଷଂ ନମଃ, ଓଁ ଶଂ ନମଃ, ଓଁ ବଂ ନମଃ, ଓଁ ଲଂ ନମଃ, ଓଁ ରଂ ନମଃ, ଓଁ ଯଂ ନମଃ, ଓଁ ମଂ ନମଃ, ଓଁ ଭଂ ନମଃ, ଓଁ ବଂ ନମଃ, ଓଁ ଫଂ ନମଃ, ଓଁ ପଂ ନମଃ, ଓଁ ନଂ ନମଃ, ଓଁ ଧଂ ନମଃ, ଓଁ ଦଂ ନମଃ, ଓଁ ଥଂ ନମଃ, ଓଁ ତଂ ନମଃ, ଓଁ ଣଂ ନମଃ, ଓଁ ଢଂ ନମଃ, ଓଁ ଡଂ ନମଃ, ଓଁ ଠଂ ନମଃ, ଓଁ ଟଂ ନମଃ, ଓଁ ଞଂ ନମଃ, ଓଁ ଝଂ ନମଃ, ଓଁ ଜଂ ନମଃ, ଓଁ ଛଂ ନମଃ, ଓଁ ଚଂ ନମଃ, ଓଁ ଙଂ ନମଃ, ଓଁ ଘଂ ନମଃ, ଓଁ ଗଂ ନମଃ, ଓଁ ଖଂ ନମଃ, ଓଁ କଂ ନମଃ, ଓଁ ଆଃ ନମଃ, ଓଁ ଅଂ ନମଃ, ଓଁ ଔଂ ନମଃ, ଓଁ ଓଂ ନମଃ, ଓଁ ଐଂ ନମଃ, ଓଁ ଏଂ ନମଃ, ଓଁ ଋଂ ନମଃ, ଓଁ ଋଂ ନମଃ, ଓଁ ଋଂ ନମଃ, ଓଁ ଋଂ ନମଃ, ଓଁ ଊଂ ନମଃ, ଓଁ ଉଂ ନମଃ, ଓଁ ଈଂ ନମଃ, ଓଁ ଇଂ ନମଃ, ଓଁ ଆଁ ନମଃ, ଓଁ ଅଂ ନମଃ । ଇତି ।

'ଓଁ ମଂ ଦଶକଳାତ୍ମନେ ବହ୍ନିମଣ୍ଡଳାୟ ନମଃ', ଏହି ମନ୍ତ୍ରରେ ଶଙ୍ଖର ଆଧାରକୁ ଓ ଅଂ ଦ୍ୱାଦଶକଳାତ୍ମନେ ସୂର୍ଯ୍ୟମଣ୍ଡଳାୟ ନମଃ' ଏହି ମନ୍ତ୍ରରେ ଶଙ୍ଖକୁ ଏବଂ ଓ ଉଂ

ଓଁ ଗଣପତୟେ ଦୁର୍ବାବଦରାକ୍ଷତ ପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ପ୍ରାର୍ଥୟେତ୍ । ଆୟୁର୍ଦେହି ଯଶୋଦେହି ଶ୍ରିୟଂ ଦେହି ତ୍ୱମେବ ଚ । ପୁତ୍ର ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ଗଣନାୟକ, ଓଁ ବରୁଣାୟ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ପ୍ରାର୍ଥୟେତ୍; ଯଥା-ଯସ୍ୟ ଲୋମ୍ନି ସ୍ଥିତା ମେଘାଃ ସିନ୍ଧୁ ସାଗରନିମଗ୍ନାଃ । କୁକ୍ଷୌ ସମୁଦ୍ରାଶ୍ଚତ୍ୱାରସ୍ତସ୍ମୈ ତୋୟାତ୍ମନେ ନମଃ । ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ-ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ପ୍ରାର୍ଥୟେତ୍; ଯଥା-ସୂର୍ଯ୍ୟସୋମଙ୍ଗାରକଙ୍କଜୀବଶୁକ୍ରାକିରାହବଃ । କେତୁରେତେ ପ୍ରୟଚ୍ଛନ୍ତୁ ମମାୟୁର୍ବଳମୁତ୍ତମଂ ଓଁ ଇନ୍ଦ୍ରାଦିଦଶଦିକ୍‌ପାଳେଭ୍ୟୋଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ପ୍ରାର୍ଥୟେତ୍ ।

---

ଷୋଡ଼ଶକଳାତ୍ମନେ ଚନ୍ଦ୍ରମଣ୍ଡଳାୟ ନମଃ' ଏହି ମନ୍ତ୍ରରେ ଶଙ୍ଖସ୍ଥିତ ଜଳକୁ ପୂଜା କରିବ । ତଦୁତ୍ତାରୁ "ଓଁ" ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ । ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍‌ସନ୍ନିଧିଂକୁରୁ ।" ଏହି ମନ୍ତ୍ରରେ ଅଙ୍କୁଶମୁଦ୍ରାଦ୍ୱାରା ସୂର୍ଯ୍ୟମଣ୍ଡଳରୁ ତୀର୍ଥମାନଙ୍କୁ ଏବଂ "ଓଁ ହୃଦୟାୟ ନମଃ" ଏହି ମନ୍ତ୍ରରେ ନିଜ ହୃଦୟସ୍ଥ ଦେବତାଙ୍କୁ ତହିଁରେ ଆବାହନ କରିବ । "ଓଁ ଶିରସେ ସ୍ୱାହା" ଏହି ମନ୍ତ୍ରରେ ଅବଗୁଣ୍ଠନ କରି 'ଓଁ ଅସ୍ତ୍ରାୟଫଟ୍' ଏହି ମନ୍ତ୍ରରେ ଗାଳିନୀମୁଦ୍ରା ଦେଖାଇ "ଓଁ ନେତ୍ରାଭ୍ୟାଂ ବୌଷଟ' ଏହି ମନ୍ତ୍ରରେ ସେହି ଜଳକୁ ଭଲକରି ଦେଖିବ । ତତ୍ପରେ ଦେବତାଙ୍କ ଅଙ୍ଗରେ "ଓଁ ହୃଦୟା ନମଃ, ଓଁ ଶିରସେ ସ୍ୱାହା ଓଁ ଶିଖାୟେ ବଷଟ୍, ଓଁ କବଚାୟ ହୁଁ, ଓଁ ନେତ୍ରାଭ୍ୟାଂ ବୌଷଟ୍ ଓଁ ଅସ୍ତ୍ରାୟଫଟ୍" ଏହି ଷଡ଼ଙ୍ଗନ୍ୟାସ କରି ଗନ୍ଧପୁଷ୍ପଦ୍ୱାରା ଦେବତାଙ୍କୁ ପୂଜା କରିବ ଓ ମତ୍ସ୍ୟମୁଦ୍ରାଦ୍ୱାରା ସେହି ଜଳକୁ ଆଚ୍ଛାଦନ କରି ମୂଳମନ୍ତ୍ର ଆଠବାର ଜପ କରି ଧେନୁମୁଦ୍ରା (୧୧୮ ନମ୍ବର ୧ ଟିପ୍‌ପଣୀ ମଧ୍ୟରେ ଦେଖ) ଦେଖାଇ ଓଁ ଅସ୍ତ୍ରାୟଫଟ୍" ଏହି ମନ୍ତ୍ରରେ ରକ୍ଷା କରିବ । ତତ୍ପରେ ସେଥିରୁ କିଛି ଜଳ ପ୍ରୋକ୍ଷଣୀପାତ୍ରରେ ପକାଇବ ।

**୧୨୪ (୪) ଗାଳିନୀମୁଦ୍ରା; ଯଥା-**

କନିଷ୍ଠାଙ୍ଗୁଷ୍ଠିକେ ସକ୍ତୌ କରୟୋରିତରେତରଂ ।
ତର୍ଜନୀ ମଧ୍ୟମା ନାମାସଂହତା ଭୂଗ୍ନବର୍ଜିତା ।
ମୁଦ୍ରୈଷା ଗାଳିନୀ ପ୍ରୋକ୍ତା ଶଙ୍ଖସ୍ୟୋପରି ଚାଳୟେତ୍ । (ତନ୍ତ୍ରସାରେ)

ବ୍ୟାଖ୍ୟା- ବାମହସ୍ତ ଉପରେ ଦକ୍ଷିଣହସ୍ତକୁ ରଖି ଦକ୍ଷିଣହସ୍ତର କନିଷ୍ଠାଙ୍ଗୁଳିକୁ ବାମହସ୍ତର ବୁଢ଼ା ଆଙ୍ଗୁଳିରେ ଏବଂ ବାମହସ୍ତର କନିଷ୍ଠାଙ୍ଗୁଳିକୁ ଦକ୍ଷିଣହସ୍ତର ବୁଢ଼ାଆଙ୍ଗୁଳିରେ ଯୋଗ କରି ଉଭୟହସ୍ତର ତର୍ଜନୀ, ମଧମା, ଅନାମିକା ଅଙ୍ଗୁଳିମାନଙ୍କୁ ପରସ୍ପର ସରଳଭାବରେ ଛଡ଼ା ଛଡ଼ା ରଖି ଯୋଗ କଲେ ଗାଳିନୀମୁଦ୍ରା ହୁଏ । ଏହି ମୁଦ୍ରା ଶଙ୍ଖ ସ୍ଥାପନ କାଳରେ ଶଙ୍ଖ ଉପରେ ଚାଳନ କରାଯାଏ ।

 

ଯଥା-ଇନ୍ଦ୍ରାଗ୍ନି ଯମନୈର୍ଋତ୍ୟବରୁଣାନିଳଧନାଧିପାଃ । ଶଙ୍କରଃ ପଦ୍ମଯୋନିଶ୍ଚାନନ୍ତୋମାଂ ପାନ୍ତୁ ସର୍ବଦା । ଓଁ ଗ୍ରାମଦେବତାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ପ୍ରାର୍ଥୟେତ୍, ଯଥା-ସ୍ଥାନେଶ୍ୱରି ନମସ୍ତୁଭ୍ୟଂ ରୂପସୌଖ୍ୟ ପ୍ରଦାୟିନୀ । ସ୍ଥାନକାମପ୍ରଦେ ଦେବୀ ସଦା ମଙ୍ଗଳକାରିଣୀ ଇତି ବରୁଣପୂଜା ।

## ୧୨୫-କର୍ମାଙ୍ଗସଂକଳ୍ପ

ତତୋ ଯଜମାନଃ କୁଶତ୍ରୟଗନ୍ଧପୁଷ୍ପଗୁବାକାକ୍ଷତ ସହିତେ ଜଳପୂର୍ଣ୍ଣ ତାମ୍ରପାତ୍ରେ ଗଙ୍ଗାଦିତୀର୍ଥନ୍ୟାବାହ୍ୟ ସଂକଳ୍ପବାକ୍ୟମୁଚ୍ଚାରୟେତ୍ ।

ବ୍ୟାଖ୍ୟା-ଅନନ୍ତର ଯଜମାନ ତମ୍ବାପାତ୍ରିରେ ଜଳପୂର୍ଣ୍ଣ କରି ସେଥିରେ ତିନିଗୋଟି କୁଶ, ଗନ୍ଧ, ପୁଷ୍ପ, ଗୁଆ ଓ ଅକ୍ଷତପକାଇ ଅଙ୍କୁଶମୁଦ୍ରାଦ୍ୱାରା ନିମ୍ନଲିଖିତ ମନ୍ତ୍ରରେ ତୀର୍ଥମାନଙ୍କୁ ଆବାହନ କରି ଦୁଇହସ୍ତରେ ଧରି ନିମ୍ନଲିଖିତ ବିଷ୍ଣୁସ୍ମରଣମନ୍ତ୍ର ଉଚ୍ଚାରଣ କରି ସଂକଳ୍ପବାକ୍ୟ ପଢ଼ିବ । (୭୭, ୭୮, ୭୯, ୮୦ ନମ୍ବରରେ ଏହାର ବିଷଦବିଧି ଦେଖ) ।

---

୧୨୪(୫) ମତ୍ସ୍ୟମୁଦ୍ରା; ଯଥା-

ଦକ୍ଷପାଣିପୃଷ୍ଠଦେଶେ ବାମପାଣିତଳଂ ନ୍ୟସେତ୍ ।

ଅଙ୍ଗୁଷ୍ଠୌ ଚାଳୟେତ୍ ସମ୍ୟକ୍ ମୁଦ୍ରେୟଂ ମତ୍ସ୍ୟରୂପିଣୀ । (ତନ୍ତ୍ରସାରେ)

ବ୍ୟାଖ୍ୟା- ଦକ୍ଷିଣହସ୍ତର ପିଠିଉପରେ ବାମହସ୍ତର ତଳକୁ ଠିକ୍ ସମାନଭାବରେ ରଖି ଉଭୟ ହସ୍ତର ବୁଢ଼ାଆଙ୍ଗୁଳି ଚାଳନ କଲେ ମତ୍ସ୍ୟମୁଦ୍ରା ହୁଏ ।

୧୨୪(୬) ନୈବେଦ୍ୟ ସଂସ୍କାର, ଯଥା-

ନ୍ୟସ୍ତମୂଳନୟନେନ ବୀକ୍ଷଣଂ ପ୍ରୋକ୍ଷଣ ବିତନୁତାଂ ଶରାଣୁନା ତେନ ତାଡ଼ନମଥାନୁବର୍ମଣଭ୍ୟୁକ୍ଷଣ କବଚତୋଽବଗୁଣ୍ଠନଂ । ରକ୍ଷଣଂ ବିତନୁୟାଚ୍ଛରାଣୁନା ମୁଦ୍ରୟା ଚ ସୁରଭେଃ ସ୍ୱଧୀକୃତିଃ ।

ଗନ୍ଧପୁଷ୍ପମଥ ମୂଳବିଦ୍ୟୟା ସଂସ୍ପୃଶନ୍ ଜପତୁ ମନ୍ତ୍ରମଷ୍ଟଶଃ । ଅନାମିକାଙ୍ଗୁଷ୍ଠଯୁଜା ଦୃଶେକ୍ଷଣଂ କରାଙ୍ଗୁଳୈଃ ପ୍ରୋକ୍ଷଣମୀଷଦାନତୈଃ । ପତାକୟା ତାଡ଼ନମୀରିତଂ ବୁଧୈରଭ୍ୟୁକ୍ଷଣଂ ନ୍ୟଞ୍ଚିତପାଣିନା ପୁନଃ । ସ୍ୱବାମମୁଷ୍ଟ୍ୟା ନମିତା ପ୍ରଦେଶିନୀ ପ୍ରଦକ୍ଷିଣଂଚେଦ୍ ଭମିତା ବହିର୍ଗତା । ତୟା ବିଦଧ୍ୟାଦବଗୁଣ୍ଠନଂ ସୁଧୀରଥାବରକ୍ଷାଂ ଶରମୁଦ୍ରୟା ଚରେତ୍ । (ଦୁର୍ଗୋତ୍ସବଚନ୍ଦ୍ରିକାୟାଂ)

ବ୍ୟାଖ୍ୟା- ଅଙ୍ଗୁଷ୍ଠ ଓ ଅନାମିକା ଏ ଦୁଇଆଙ୍ଗୁଳିଦ୍ୱାରା ଚକ୍ଷୁଦ୍ୱୟକୁ ବିସ୍ତାରିତ କରି ନୈବେଦ୍ୟକୁ ଉତ୍ତମରୂପେ ଦେଖିବ । ତଦନନ୍ତର ଦକ୍ଷିଣ କରର ଅଙ୍ଗୁଳିମାନଙ୍କୁ ଅଳ୍ପ ନମ୍ର କରି "ଅସ୍ତ୍ରାୟଫଟ୍" ଏହି ମନ୍ତ୍ର ପଢ଼ି କିଞ୍ଚିତ୍ ଅର୍ଘ୍ୟଜଳ ନେଇ ନୈବେଦ୍ୟ ଉପରେ ସେଚନ କରିବ । ପୁନର୍ବାର "ଅସ୍ତ୍ରାୟଫଟ୍"

## ୧୨୬-ତୀର୍ଥାବାହନ ମନ୍ତ୍ର

ଓଁ ବିଷ୍ଣୁଃ ଗଙ୍ଗାଦ୍ୟାଃ ସରିତଃ ଅତ୍ରାଗଚ୍ଛତ । ଓଁ ଗଙ୍ଗେ ଚ ଯମୁନେଚୈବ ଗୋଦାବରି ! ସରସ୍ୱତି ! ନର୍ମଦେ ! ସିନ୍ଧୁ ! କାବେରି ଜଳେସ୍ମିନ୍ ସନ୍ନିଧିଂ କୁରୁ । ଇତି ଅଙ୍କୁଶ ମୁଦ୍ରୟା ତୀର୍ଥାନାବାହୟେତ୍ ।

୧୨୭-ବିଷ୍ଣୁ ସ୍ମରଣ ମନ୍ତ୍ର

* ଓଁ ବିଷ୍ଣୁ ର୍ବିଷ୍ଣୁ ର୍ବିଷ୍ଣୁଃ ଶୁକ୍ଲାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ । ପ୍ରସନ୍ନବଦନଂ ଧ୍ୟାୟେସ୍ସର୍ବବିଘ୍ନୋପଶାନ୍ତୟେ । ସ୍ମୃତେ ସକଳକଲ୍ୟାଣଭାଜନଂ ଯତ୍ର ଜାୟତେ । ପୁରୁଷଂ ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିଂ । ଶଙ୍ଖଚକ୍ର ଗଦାପାଣେ ଦ୍ୱାରକାନିଳୟାଚ୍ୟୁତ । ଗୋବିନ୍ଦ ! ପୁଣ୍ଡରୀକାକ୍ଷ ! ରକ୍ଷ ମାଂ ଶରଣାଗତଂ । ଇତିସ୍ମୃତ୍ୱା-

---

ପଢ଼ି ପତାକାମୁଦ୍ରାଦ୍ୱାରା ତାଡ଼ନ କରିବ; ତତ୍ପରେ "କବଚାୟହୁଂ" ପଢ଼ି ଅବଗୁଣ୍ଠନ (୧୧୮ ନମ୍ବର ୧ ଟିପ୍‌ପଣୀ ମଧ୍ୟରେ ଦେଖ) ଓ ଶରମୁଦ୍ରାଦ୍ୱାରା ନୈବେଦ୍ୟକୁ ରକ୍ଷା କରିବ । ତଦନନ୍ତର ଧେନୁମୁଦ୍ରା (୧୧୮ ନମ୍ବର ଟିପ୍‌ପଣୀ ମଧ୍ୟରେ ଦେଖ) ଦେଖାଇ ନୈବେଦ୍ୟକୁ ଅମୃତୀକରଣ କରିବ । ଏହା ଉତ୍ତାରୁ ଗନ୍ଧପୁଷ୍ପଦ୍ୱାରା ହସ୍ତ ଶୁଦ୍ଧି କରି ନୈବେଦ୍ୟ ଉପରେ ମୂଳମନ୍ତ୍ର ଆଠବାର ଜପ କରିବ ।

୧୨୪(୭) ପତାକାମୁଦ୍ରା-

ମଧ୍ୟାଙ୍ଗୁଳୀଭିଃ ପରିସଂହତାଭିଃ ପତକୟା ତାଡ଼ନମାମନନ୍ତି ।

(ଦୁର୍ଗୋତ୍ସବଚନ୍ଦ୍ରିକାୟାଂ)

ବ୍ୟାଖ୍ୟା- ତର୍ଜନୀ, ମଧ୍ୟମା, ଅନାମିକା ଏମାନଙ୍କୁ ସଳଖ ଆଉ ଏକତ୍ର କରି କନିଷ୍ଠା ଓ ଅଙ୍ଗୁଷ୍ଠକୁ ପୃଥକ୍ ରଖିଲେ ପତାକାମୁଦ୍ରା ହୁଏ ।

୧୨୪(୮) ଶରମୁଦ୍ରା-

ଦଶମୁଷ୍ଟେସ୍ତୁତର୍ଜନ୍ୟା ଦୀର୍ଘୟା ବାଣମୁଦ୍ରିକା । (ତନ୍ତ୍ରସାରେ)

ବ୍ୟାଖ୍ୟା- ଦକ୍ଷିଣହସ୍ତକୁ ବିସ୍ତାର କରି ଓ ଅଙ୍ଗୁଳିମାନଙ୍କୁ ମୁଠା କରି ତର୍ଜନୀକୁ ସଳଖ ରଖିଲେ ଶରମୁଦ୍ରା ହୁଏ ।

୧୨୪(୯) ନୈବେଦ୍ୟ ଅର୍ପଣ ବିଧି-

ତୁଳସୀଗନ୍ଧପୁଷ୍ପୈଶ୍ଚ ସଂପୂଜ୍ୟାନ୍ନଂ ହରେଃ ପ୍ରିୟଂ । ସଂପ୍ରୋକ୍ଷ୍ୟାର୍ଘ୍ୟଜଳେନୈବ ସଂରକ୍ଷ୍ୟାସ୍ତ୍ରେଣ ସର୍ବଦା । ଧେନୁମୁଦ୍ରାଂ ପ୍ରଦର୍ଶ୍ୟାଥ ତତୋଦେବଂ ନିବେଦୟେତ୍ । (ବ୍ରହ୍ମସଂହିତାୟାଂ)

ଅମୃତୋପସ୍ତରଣ-ମସି ସ୍ୱାହାର୍ପୟେଜ୍ଜଳଂ । (ଗୌତମଃ)

୧୨୪-(୧୦) ନୈବେଦ୍ୟମୁଦ୍ରା, ଯଥା-

ନୈବେଦ୍ୟମୁଦ୍ରାମଙ୍ଗୁଷ୍ଠକନିଷ୍ଠାଭ୍ୟାଂ ପ୍ରଦର୍ଶୟେତ୍ । (ଯାମଳଃ)



## ୧୨୮-ସଂକଳ୍ପ ବାକ୍ୟ

ଓଁ ବିଷ୍ଣୁ ର୍ବିଷ୍ଣୁ ର୍ବିଷ୍ଣୁ * ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟ ଭୂପ୍ରଦେଶେ * ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ * ଶ୍ରୀ ଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ ଭୌମାଦିଗ୍ରହଯୋଗଲଗ୍ନକରଣମୁହୂର୍ତ୍ତକାଂଶକେଷୁ ଏବଂବିଧ-ବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଂ ଶ୍ରୀମାନ ଅମୁକଦେବଶର୍ମା ଅମୁକସଗୋତ୍ରାୟା ମଭାର୍ଯ୍ୟାୟା ଅମୁକଦେବ୍ୟାଃ ପ୍ରଥମରଜୋଦର୍ଶନସମୟେ ବାରତିଥିଗ୍ରହନକ୍ଷତ୍ରାଦି ଦୋଷବ୍ୟପୋହନାର୍ଥଂ ସାବିତ୍ରୀ ଗ୍ରହଦିକ୍‌ପାଳ ବାର ତିଥିନକ୍ଷତ୍ରାଦି ପୂଜାପୂର୍ବକ ସ୍ୱମନ୍ତ୍ରେଣ ସମିଦାଜ୍ୟଚର୍ବାହୁତିଭିଃ ଶାନ୍ତିହୋମଂ କରିଷ୍ୟେ । ଇତି ତଜ୍ଜଳଂ ଭୂମୌ ନିକ୍ଷିପ୍ୟ ପାତ୍ରପୃଷ୍ଟେ କ୍ରମୁକଂ ସଂସ୍ଥାପ୍ୟ ତଣ୍ଡୁଳାନି କ୍ଷିପେଦନେନ ମନ୍ତ୍ରେଣ ।

**ବ୍ୟାଖ୍ୟା-** ସେହି ସଂକଳ୍ପ ଜଳକୁ "ଐଶାନ୍ୟ କୋଣରେ ଭୂମିରେ ପକାଇ" ପାତ୍ରିକୁ ଓଲଟାଇ ତାହା ଉପରେ ଗୁଆରଖି ନିମ୍ନଲିଖିତ ମନ୍ତ୍ରପଢ଼ି ଅକ୍ଷତ ପକାଇ ସଂକଳ୍ପ ସୂକ୍ତ ପଢ଼ି ସେହି ଗୁଆକୁ ବ୍ରାହ୍ମଣ ହସ୍ତରେ ଦେବ ।

**ଅକ୍ଷତପ୍ରକ୍ଷେପଣ ମନ୍ତ୍ର;** ଯଥା- ଓଁ ଅସ୍ମିନ୍ ସଂକଳ୍ପିତେ କର୍ମଣି ସ୍ଥିତ୍ଧିରସ୍ତୁ ।

---

**୧୨୪(୧୧) ପ୍ରାଣାଦି ପଞ୍ଚମୁଦ୍ରା, ଯଥା-**

କନିଷ୍ଠାନାମିକାଙ୍ଗୁଷ୍ଠୈ ମୁଦ୍ରା ପ୍ରାଣସ୍ୟ କୀର୍ତ୍ତିତା । ତର୍ଜନୀମଧ୍ୟମାଙ୍ଗୁଷ୍ଠୈରପାନସ୍ୟ ତୁ ମୁଦ୍ରିକା । ଅନାମାମଧ୍ୟମାଙ୍ଗୁଷ୍ଠୈରୁଦାନସ୍ୟ ତୁ ସା ସ୍ମୃତା । ତର୍ଜନ୍ୟନାମାମଧ୍ୟାଭିଃ ସାଙ୍ଗୁଷ୍ଠଭିଶ୍ଚତୁର୍ଥିକୀ । ସର୍ବାଭିଃ ସା ସମାନସ୍ୟ ପ୍ରାଣାଦ୍ୟନ୍ନେଷୁ ଯୋଜିତା । ତାରପୂର୍ବାଂ ଜପେନ୍ମୁଦ୍ରାଂ ପ୍ରାଣାଦୀନାଂ ପ୍ରଦର୍ଶୟେତ୍ । (ଯାମଳେ)

**୧୨୪ (୧୨) ପ୍ରାଣାଦି ପଞ୍ଚମନ୍ତ୍ର, ଯଥା-**

ପ୍ରାଣାପାନବ୍ୟାନୋ ଦାନସମାନାସ୍ତାର ପୂର୍ବକାଃ । ଚତୁର୍ଥ୍ୟଗ୍ନିବଧୂକ୍ତାଃ ପ୍ରାଣମନ୍ତ୍ରାଃ ସ୍ମୃତା ଇତି । (ଚନ୍ଦ୍ରିକାୟାଂ)

**ବ୍ୟାଖ୍ୟା-** (୯) ନୈବେଦ୍ୟ ଉପରେ ତୁଳସୀ ଗନ୍ଧ ପୁଷ୍ପ ପକାଇ ଅର୍ଘ୍ୟଜଳ ସିଞ୍ଚିଦେବେ । ଓଁ ଅସ୍ତ୍ରାୟ ଫଟ୍ କହି ନୈବେଦ୍ୟର ରକ୍ଷା ବିଧାନ କରିବ । ତତ୍ପରେ ନୈବେଦ୍ୟ ଉପରେ ଧେନୁମୁଦ୍ରା ଦେଖାଇ ଦକ୍ଷିଣହସ୍ତରେ ଜଳ ତୁଳସୀ ଧରି ମୂଳମନ୍ତ୍ର ପଢ଼ି ଅର୍ପଣ କରି ନୈବେଦ୍ୟମୁଦ୍ରା ଦେଖାଇବ । (୧୦) ନୈବେଦ୍ୟମୁଦ୍ରା, ଯଥା ଅଙ୍ଗୁଷ୍ଠ ଓ କନିଷ୍ଠା ଏ ଦୁହିଙ୍କର ଅଗ୍ରଭାଗକୁ ଏକତ୍ର କରି ଦେବତାଙ୍କ ସମ୍ମୁଖରେ ଦେଖାଇଲେ ନୈବେଦ୍ୟ ମୁଦ୍ରା ହୁଏ । ତତ୍ପରେ 'ଅମୃତୋପସ୍ତରଣମସି ସ୍ୱାହା' ଏହାକହି କିଞ୍ଚିତ୍ ଜଳ ଭୂମିରେ ପକାଇଦେବ ଓ ବାମହସ୍ତରେ ଗ୍ରାସମୁଦ୍ରା କରି ଦକ୍ଷିଣହସ୍ତରେ ଓଁ ପ୍ରାଣାୟ ସ୍ୱାହା,

## ୧୨୯-ସଂକଳ୍ପ ସୂକ୍ତ

ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁସୁପ୍ତସ୍ୟ ତଥୈବୈତି ଦୂରଂ ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ନମଃ ଶିବସଂକଳ୍ପମସ୍ତୁ । ତତୋ ବ୍ରାହ୍ମଣଃ "ସଂକଳ୍ପିତକର୍ମଣଃ ସିଦ୍ଧିରସ୍ତୁ" ଇତି ପଠେତ୍ । ଯଜମାନଃ ବ୍ରାହ୍ମଣ ହସ୍ତେ କ୍ରମୁକଂ ଦଦ୍ୟାତ୍ ।

## ୧୩୦-ଆଭ୍ୟୁଦୟିକଶ୍ରାଦ୍ଧ ସଂକଳ୍ପ

**କର୍ମାଙ୍ଗ-** ସଂକଳ୍ପବତ୍ ତୀର୍ଥାବାହନାଦିକଂ କୃତ୍ୱା ହସ୍ତେ ପାତ୍ରଂ ଗୃହୀତ୍ୱା ବିଷ୍ଣୁସ୍ମରଣ ବାକ୍ୟଂ ପଠିତ୍ୱ ମାସପକ୍ଷାଦିକମୁଚ୍ଚାର୍ଯ୍ୟ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା । ଅମୁକସଗୋତ୍ରାୟା ମଭାର୍ଯ୍ୟାୟା ଅମୁକଦେବ୍ୟାଃ ପ୍ରଥମରଜୋଦର୍ଶନଶାନ୍ତିହୋମ କର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେପ୍ରାପ୍ତେ ସଂପ୍ରତି ସାକ୍ଷାକ୍ରଣଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ନେନ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀ ପ୍ରପିତାମହୀନାଂ ଅମୁକଦେବୀ ଅମୁକଦେବୀ ଅମୁକଦେବୀନାଂ ନାନ୍ଦୀମୁଖୀନାଂ, ଅମୁକସଗୋତ୍ରାଣାଂ ଅସ୍ମତ୍ପିତୃପିତାମହପ୍ରପିତାମହାନାଂ ଅମୁକଦେବ ଅମୁକଦେବ ଅମୁକଦେବଶର୍ମ୍ମାଣାଂ ନାନ୍ଦୀମୁଖାନଂ, ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ଅମୁକଦେବ ଅମୁକଦେବ ଶର୍ମାଣାଂ ନାନ୍ଦୀମୁଖାନାଂ ଗଣପତିପୂରଃ

---

ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା । ଏହି ମନ୍ତ୍ର ପଢ଼ି ତଳଲିଖିତ ମୁଦ୍ରା ଦେଖାଇବ । (୧୧) ପ୍ରାଣାଦି ପଞ୍ଚମୁଦ୍ରା, ଯଥା-ଦକ୍ଷିଣହସ୍ତର କନିଷ୍ଠା, ଅନାମିକା ଓ ଅଙ୍ଗୁଷ୍ଠ, ଏ ତିନି ଅଙ୍ଗୁଳିର ଅଗ୍ରଭାଗକୁ ସଂଯୋଗ କଲେ ପ୍ରାଣମୁଦ୍ରା ହୁଏ । ତର୍ଜନୀ, ମଧ୍ୟମା ଓ ଅଙ୍ଗୁଷ୍ଠ ଏ ତିନିଙ୍କ ଅଗ୍ରଭାଗକୁ ଏକତ୍ର କଲେ ଅପାନ ମୁଦ୍ରା ହୁଏ । ଅନାମିକା, ମଧ୍ୟମା ଓ ଅଙ୍ଗୁଙ୍ଗ ତିନିଙ୍କର ଅଗ୍ରଭାଗକୁ ଏକତ୍ର କଲେ ଉଦାନ ମୁଦ୍ରା ହୁଏ । ତର୍ଜନୀ, ଅନାମିକା, ମଧ୍ୟମା ଓ ଅଙ୍ଗୁଷ୍ଠ ଏ ଚାରିଙ୍କର ଅଗ୍ରଭାଗକୁ ଏକତ୍ର କଲେ ବ୍ୟାନ ମୁଦ୍ରା ହୁଏ । ଅଙ୍ଗୁଷ୍ଠ ସହିତ ସମସ୍ତ ଅଙ୍ଗୁଳିର ଅଗ୍ରଭାଗକୁ ଏକତ୍ର କଲେ ସମାନ ମୁଦ୍ରା ହୁଏ ।

(୧୨) ପ୍ରାଣାଦି ପଞ୍ଚଶବ୍ଦକୁ ଚତୁର୍ଥ୍ୟନ୍ତ କରି ତାହାର ଆଦ୍ୟରେ ଓଁକାର ଓ ଶେଷରେ ସ୍ୱାହା ଯୋଗ କଲେ ପ୍ରାଣାଦି ପଞ୍ଚମନ୍ତ୍ର ହୁଏ । ଯଥା- ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା । ଓଁ ସମାନାୟ ସ୍ୱାହା । ଏହାକୁ ପଞ୍ଚପ୍ରାଣମନ୍ତ୍ର କହନ୍ତି । କିନ୍ତୁ କେହି କେହି ପ୍ରଥମେ ଉଦାନ ତତ୍ପରେ ବ୍ୟାନ ଆଉ କେହି କେହି ପ୍ରଥମେ ବ୍ୟାନ ତତ୍ପରେ ଉଦାନ କହନ୍ତି ।



ସରଗୌର୍ଯ୍ୟାଦ୍ୟଷ୍ଟା ଦଶମାତୃଗଣ ପୂଜାବସୋର୍ଦ୍ଧାରାୟୁଷ୍ୟ ମନ୍ତ୍ର ଜପପୂର୍ବକ ଭୋଜ୍ୟାତ୍ମକଶ୍ରାଦ୍ଧମହଂ କରିଷ୍ୟେ । ଇତି ସଂକଳ୍ପ୍ୟ ସୂକ୍ତଂ ପଠିତ୍ୱା ବ୍ରାହ୍ମଣ ହସ୍ତେ କ୍ରମୁକଂ ଦଦ୍ୟାତ୍ ।

## ୧୩୧-ଅଷ୍ଟାଦଶମାତୃଗଣ ପୂଜା

ତତଃ ଶାଳିତଣ୍ଡୁଳୋପରି ହରିଦ୍ରାଚୂର୍ଣ୍ଣେନ ଗଣପତିଗୌର୍ଯ୍ୟାଦୀନାଂ ମଣ୍ଡଳକରଣଂ । ତତଃ ସ୍ୱନାମଚତୁର୍ଥ୍ୟନ୍ତେନ ବ୍ୟାହୃତିପୂର୍ବକଂ ଗଣପତିସହିତ ଅଷ୍ଟାଦଶମାତୃଗଣାନ୍ ଗନ୍ଧାଦ୍ୟୈଃ ପୂଜୟେତ୍ ।

**ବ୍ୟାଖ୍ୟା-** ଅନନ୍ତର ଶୁକ୍ଳତଣ୍ଡୁଳ ଉପରେ ହଳଦୀ ଚୂନାଦ୍ୱାରା ଗଣପତିଙ୍କ ସହିତ ଅଷ୍ଟାଦଶମାତୃଗଣଙ୍କ ମଣ୍ଡଳ (୬୮ ନମ୍ବର ଦେଖ) ଲେଖି ତହିଁରେ ଉଣେଇଶି ଗୋଟି ଗୁଆ ବସାଇ ପ୍ରଣବ ଓ ମହାବ୍ୟାହୃତିପୂର୍ବକ ଚତୁର୍ଥ୍ୟନ୍ତ ମନ୍ତ୍ର (୬୦ ନମ୍ବର ଦେଖ) ଦ୍ୱାରା ଭକ୍ତିପୂର୍ବକ ଗଣପତିସହିତ ଗୌର୍ଯ୍ୟାଦି ଅଷ୍ଟାଦଶମାତୃଗଣଙ୍କୁ ପ୍ରତ୍ୟେକରେ ଭିନ୍ନ ଭିନ୍ନ ପୂଜା କରିବ । ଅଥବା ଏ ସମସ୍ତଙ୍କୁ ଏକତ୍ରରେ ଆବାହନ କରି ପଞ୍ଚୋପଚାର ଦଶୋପଚାର ବା ଷୋଡ଼ଶୋପଚାରରେ ପୂଜା କରିବ । (୧୨୪, ୧ ଟିପ୍‌ପଣୀ ଦେଖ)

**ତଦ୍‌ଯଥା-** ମଣ୍ଡଳସ୍ୟ ଦକ୍ଷିଣେ ଓଁ ଭୂ ର୍ଭୂ ବଃ ସ୍ୱଃ ଗଣପତୟେ ନମଃ ଗଣପତିମାବାହୟାମି ଗଣପତେଽତ୍ରାଗଚ୍ଛ । ଓଁ ଭୂ ର୍ଭୂ ବଃ ସ୍ୱଃ ଗୌର୍ଯ୍ୟୈନମଃ,

---

***୧୨୭ ବିଷ୍ଣୁ ତିନିବାର ଉଚ୍ଚାରଣ କରିବା ପ୍ରମାଣ-**

ପ୍ରଥମେ ଚାତ୍ମନଃ ଶୁଦ୍ଧିଦ୍ୱିତୀୟେ ଭୂମିଶୋଧନଂ । ତୃତୀୟେ ଯଜମାନସ୍ୟ ବିଷ୍ଣୁତ୍ରୟମୁଦାହୃତଂ । (ଗୃହ୍ୟସୂତ୍ରକାରିକାୟାଂ ବଶିଷ୍ଠଃ)

୧୨୮(୧) * ଦିବସ ବା ରାତ୍ରିରେ ସଂକଳ୍ପ କଲେ ଅଦ୍ୟ ଶବ୍ଦ ପ୍ରୟୋଗ କରିବାର ପ୍ରମାଣ ବାକ୍ୟ, ଯଥା- "ଅଦ୍ୟ ସୋମାର୍କ ଗ୍ରହଣସଂକ୍ରାନ୍ତ୍ୟୋର୍ଦୌ ସୁତୀର୍ଥକେ" ଇତ୍ୟଗ୍ନିପୁରାଣୀୟଦାନନିମିତ୍ତୋଲ୍ଲେଖେ ସୋମଗ୍ରହଣେଽପ୍ୟ ଦ୍ୟେତି ଶ୍ରବଣାଦନ୍ୟତ୍ର ରାତ୍ରାବପି ଅଦ୍ୟେତ୍ୟୁଲ୍ଲେଖ୍ୟଂ । ଅହଃ ପଦସ୍ୟାହୋରାତ୍ର ପରତ୍ୱାଦ ବିରୁଦ୍ଧଂ । ଅଦ୍ୟପଦାନ୍ତର୍ଗତସ୍ୟାହଃ ପଦସ୍ୟ ଇତି । (ଉଦ୍‌ବାହିତତ୍ତ୍ୱେ)

**୧୨୮(୨) * ମାସ ପକ୍ଷାଦି ଉଚ୍ଚାରଣ ନ କଲେ ଦୋଷ**

ମାସପକ୍ଷତିଥୀନାଂ ଚ ନିମିତ୍ତନାଂ ଚ ସର୍ବଶଃ । ଉଲ୍ଲେଖନମକୁର୍ବାଣୋ ନ କର୍ତ୍ତା ଫଳଭାଗଭବେତ୍ । (ଇତିସ୍ମୃତିଃ) (ମାସ ପକ୍ଷ ତିଥି ଉଚ୍ଚାରଣ ନ କଲେ କର୍ତ୍ତା ଫଳଭାଗୀ ହୁଏ ନାହିଁ) ।

**୧୨୮(୩) *ନାମର ଆଦ୍ୟରେ "ଶ୍ରୀ" ପ୍ରୟୋଗ ପ୍ରମାଣ-**

ଦେବ ଗୁରୁଂ ଗୁରୁସ୍ଥାନଂ କ୍ଷେତ୍ରଂ କ୍ଷେତ୍ରାଧିଦେବତାଃ ସିଦ୍ଧାଧିକାରାଂଶ୍ଚ ଶ୍ରୀ ପୂର୍ବଂ ସମୁଦୀରୟେତ୍ ।

(ରାଘବଭଟୋଦ୍ଧୃତ ପ୍ରୟୋଗସାରଦର୍ଶନେ)

ଗୌରୀମାବାହାୟମି, ଗୌରୀ ଅତ୍ରାଗଚ୍ଛ । ଓଁ ଭୂ ର୍ଭୂ ବଃସ୍ୱଃ ପଦ୍ମାୟୈନମଃ, ପଦ୍ମାମାବାହୟାମି ପଦ୍ମେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ଶଚ୍ୟୈନମଃ, ଶଚୀମାବାହୟାମି, ଶଚ୍ୟତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ମେଧାୟୈ ନମଃ ମେଧାମାବାହୟାମି, ମେଧେଽତ୍ରାଗଚ୍ଛ । ଓଁ ଭୂର୍ଭବଃ ସ୍ୱଃ ସାବିତ୍ର୍ୟେ ନମଃ ସାବିତ୍ରୀମାବାହୟାମି, ସାବିତ୍ରୀଅତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ବିଜୟାୟୈ ନମଃ, ବିଜୟମାବାହୟାମି, ବିଜୟେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ଜୟାୟୈ ନମଃ, ଜୟମାବାହୟାମି ଜୟୈଽତ୍ରାଗଚ୍ଛ । ଓଁ ଭୂର୍ଭବଃ ସ୍ୱଃ ଦେବସେନାୟୈ ନମଃ, ଦେବସେନାମାବାହାୟାମି, ଦେବସେନେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱାହାୟୈ ନମଃ । ସ୍ୱାହା ମାବାହୟାମି ସ୍ୱାହେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ସ୍ୱଧାୟୈନମଃ ସ୍ୱଧାମାବାହୟାମି, ସ୍ୱଧେଽତ୍ରା ଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ମାତୃଭ୍ୟୋ, ମାତୃରାବାହୟାମି, ମାତରଃ ଅତ୍ରାଗଚ୍ଛତ୍ । ଭୂର୍ଭବଃ ସ୍ୱଃ ଲୋକମାତୃଭ୍ୟ ନମଃ ଲୋକମାତୃମାବାହାୟାମି ଲୋକମାତରଃ ଅତ୍ରାଗଚ୍ଛତ । ଓଁ ଭୂର୍ଭୁବଃ ଧୃତେୈ ନମଃ ଧୃତିମାବାହୟାମି, ଧୃତେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ ପୁଷ୍ଟ୍ୟୈ ନମଃ, ପୁଷ୍ଟିମାବାହୟାମି, ପୁଷ୍ଟେତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ କ୍ଷମାୟୈ ନମଃ, କ୍ଷମାମାବାହୟାମି, କ୍ଷମେଽତ୍ରାଗଚ୍ଛ । ଓଁଭୂର୍ଭୁବଃ ସ୍ୱଃ ତୃ୍ୟଷ୍ଟୈନମଃ, ତୁଷ୍ଟି ମାବାହୟାମି, ତୁଷ୍ଟେଽତ୍ରାଗଚ୍ଛ । ଆତ୍ମଦେବତାୟୈ ନମଃ ଆତ୍ମଦେବତାମାବାହୟାମି ଆତ୍ମଦେବତେଽତ୍ରାଗଚ୍ଛ । ଓଁ ଭୂର୍ଭୁବଃ ସ୍ୱଃ କୁଳଦେବତାୟୈ ନମଃ, କୁଳଦେବତାମାବାହୟାମି, କୁଳଦେବତଽତ୍ରାଗଚ୍ଛ ।

ଓଁ ଭୂର୍ଭୁବଃ ସ୍ୱଃ ଗଣପତିପୁରଃସରଗୌର୍ଯ୍ୟଦ୍ୟଷ୍ଟାଦଶମାତୃଗଣାଃ ଇହାଗଚ୍ଛତ, ଇହ ତିଷ୍ଠତ, ଅତ୍ରାଧିଷ୍ଠାନଂ କୁରୁତ, ମମ ପୂଜାଂ ଗୃହଣୀତ ଇତ୍ୟାବାହ୍ୟ "ଓଁ ମନୋଜୁତି ର୍ଜୁଷତା ମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତୁ । ଅରିଷ୍ଟଂ ଯଜ୍ଞଂ ଷମିମଂଦଧାତୁ ବିଶ୍ୱେଦେବା ସଇହ ମଦୟାନ୍ତାମେ ପ୍ରତିଷ୍ଠ" ଇତି ମନ୍ତ୍ରେଣଂ ପ୍ରାଣପ୍ରତିଷ୍ଠାଂ କୁର୍ଯ୍ୟାତ୍ । (ଉପରୋକ୍ତ ମନ୍ତ୍ର ପଢ଼ି ମଣ୍ଡଳସ୍ଥିତ ଗୁଆମାନଙ୍କରେ କୁଶସ୍ପର୍ଶ କରି ପ୍ରତ୍ୟେକଙ୍କର ପ୍ରାଣପ୍ରତିଷ୍ଠା କରିବ । ଓଁ ଭୂର୍ଭୁବଃ ସ୍ୱଃ ଗଣପତି ପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃ ଗଣେଭ୍ୟୋଯଥାବିଭାଗଂ ଗନ୍ଧୋନମଃ । ଇତି ଗନ୍ଧଂ । ଓଁ ଭୂର୍ଭୁବଃ ସ୍ୱଃ ଗଣପତିପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣେଭ୍ୟୋ ଯଥାବିଭାଗଂ ପୁଷ୍ପଂ ବୌଷଟ୍ । ଇତି ପୁଷ୍ପଂ । ଓଁ ଭୂର୍ଭୁବଃ ସ୍ୱଃ ଗଣପତି ପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶ ମାତୃଗଣେଭ୍ୟୋ ଯଥାବିଭାଗଂ ଧୂପଃ ସ୍ୱାହା ଇତି ଧୂପଂ । ଓଁ ଭୂର୍ଭୁବଃ ସ୍ୱଃଗଣପତି ପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃ ଗଣେଭ୍ୟୋ

ଯଥାବିଭାଗଂ ଧୂପାର୍ଥମାଚମନୀୟଂ ସ୍ୱଧା । ଓଁ ଭୂର୍ଭୂବଃ ସ୍ୱଃଗଣପତି ପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣେଭ୍ୟୋ ଯଥାବିଭାଗଂ ଦୀପଃ ସ୍ୱାହା । ଇତିଦୀପଂ । ଓଁ ଭୂର୍ଭୂବଃ ସ୍ୱଃ ଗଣପତି ପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣେଭ୍ୟୋ-ଯଥାବିଭାଗଂ ଦୀପାର୍ଥମାଚମନୀୟଂ ସ୍ୱଧା । ନୈବେଦ୍ୟଂ ସଂସ୍କୃତ୍ୟ (୧୨୪-(୬) ଟିପ୍‌ପଣୀ ଦେଖ) ଓଁ ଭୂର୍ଭୂବଃ ସ୍ୱଃ ଗଣପତିପୁରଃଗୌର୍ଯ୍ୟାଦ୍ୟଷ୍ଟାଦଶ-ମାତୃଗଣୈଭ୍ୟୋଯଥାବିଭାଗଂ ନୈବେଦ୍ୟଂ ସ୍ୱାହା । ଇତି ନୈବେଦ୍ୟଂ ଦତ୍ତ୍ୱା ପ୍ରାଣାଦି ପଞ୍ଚମୁଦ୍ରା ଦର୍ଶୟେତ୍ । (୧୨୪- ୧୧) ଟିପ୍‌ପଣୀ ଦେଖ) ଆଚମନୀୟ ଜଳଂ ଦଦ୍ୟାତ୍ । ତତଃ ପ୍ରତ୍ୟେକଂ * ଦୂର୍ବାବଦରାକ୍ଷତଂ ଦତ୍ୱାପ୍ରାର୍ଥୟେତ୍ ତଦ୍ ଯଥା- ଓଁ ଭୂର୍ଭୂବଃ ସ୍ୱଃ ଗଣପତୟେ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତ ପୁଷ୍ପାଣି ଦତ୍ତ୍ୱା ଗଣପତିଂ ପ୍ରାର୍ଥୟେତ୍ । ତଦ୍‌ଯଥା- ଆୟୁର୍ଦ୍ଦେହି ଯଶୋ ଦେହି ଶ୍ରିୟଂ ଦେହି ତ୍ୱମେବ ଚ । ପୁତ୍ର ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ଗଣନାୟକ । ଓଁ ଭୂର୍ଭୂବଃ ସ୍ୱଃ ଗୌର୍ଯ୍ୟୈଦୁର୍ବାଦରାକ୍ଷତ ପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଗୌରୀଂ ପ୍ରାର୍ଥୟେତ୍ । ଯଥା- ଗୌରୀ ତ୍ୱଂସୁଭଗେ ଦେବି ସର୍ବପାପକ୍ଷୟଙ୍କରି । ସଦା ଯଜ୍ଞସମାରମ୍ଭେ ବରଦେ ଶୁଭଦା ଭବ । ଓଁ ଭୂର୍ଭୂବଃ ସ୍ୱଃ ପଦ୍ମାୟେ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦାକ୍ଷତପୁଷ୍ପାଣି ଦତ୍ତ୍ୱା ପଦ୍ମାଂ ପ୍ରାର୍ଥୟେତ୍ । ଯଥା- ପଦ୍ମାଳୟା ସମାଖ୍ୟାତା ସୂର୍ଯ୍ୟବିମ୍ବସମପ୍ରଭା । ଯଜ୍ଞୋତ୍ସବବିବାହେଷୁ ଶୁଭଂ କୁରୁ ନମୋସ୍ତୁତେ । ଓଁ ଭୂର୍ଭୂବଃ ସ୍ୱଃ ଶଚୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତ ପୁଷ୍ପାଣି ଦତ୍ତ୍ୱା ଶଚୀଂ ପ୍ରାର୍ଥୟେତ୍ । ଯଥା- ଶଚି ତ୍ୱଂ ସର୍ବଦେବେଶୀ ଶ୍ୱେତପଦ୍ମ ସମାଶ୍ରିତା । ବୁଦ୍ଧିଂ କୁଳଂ କୁଳସ୍ୟାପି ମମ ବିଘ୍ନ ବ୍ୟପୋହୟ ଓଁ ଭୂର୍ଭୂବଃ ସ୍ୱଃ ମେଧାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ମେଧାଂ ପ୍ରାର୍ଥୟେତ୍ ଯଥା; ମେଧେ ତ୍ୱଂ ପରମା ଭୂତିଃ ସର୍ବକଲ୍ୟାଣଦାୟିନୀ । ଦେହସ୍ଥା ସର୍ବଭୂତାନାମତସ୍ତ୍ୱାଂ ପ୍ରଣମାମ୍ୟହଂ । ଓଁ ଭୂର୍ଭୂବଃ ସ୍ୱଃ ସାବିତ୍ରେ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ସାବିତ୍ରୀଂ ପ୍ରାର୍ଥୟେତ୍ ଯଥା- ସାବିତ୍ରୀ ତ୍ୱଂ ବେଦମାତା ବ୍ରହ୍ମଦେବସମାଶ୍ରିତା ।

---

***୧୩୧ କୁଶ, ଦୁବ, ବରକୋଳି ପତ୍ରର ଜନ୍ମ ବିବରଣ-**

ବ୍ରହ୍ମକେଶାତ୍ତୁ ଦର୍ଭସ୍ୟ ଦୂର୍ବାୟା । ବିଷ୍ଣୁ କେଶତଃ । ରୁଦ୍ର କର୍ଣ୍ଣାତ୍ତୁ ବଦରୀ ସର୍ବକର୍ମପ୍ରତିଷ୍ଠିତା ବଦରୀ ସର୍ବବିଘ୍ନଘ୍ନୀତିପତ୍ରୀ ପାପନାଶିନୀ ମଙ୍ଗଳଂ କୁରୁତେ ନିତ୍ୟଂ ଦୂର୍ବା ବିଷ୍ଣୁ ଶରୀରତଃ । (କାତ୍ୟାୟନଃ)

ଯଜ୍ଞୋତ୍ସବବିବାହେଷୁ କ୍ଷେମଂ କୁରୁ ନମୋସ୍ତୁତେ । ଓଁ ଭୂର୍ଭୂବଃ ସ୍ୱଃବିଜୟାୟେ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ବିଜୟାଂ ପ୍ରାର୍ଥୟେତ୍ । ଯଥା- ବିଜୟେ ଦେବପୂଜ୍ୟାସି ସର୍ବାରିଷ୍ଟପ୍ରଣାଶିନୀ । ସନ୍ତତିଂ ଦେହୀ ମେ ଦେବି ନିତ୍ୟଂ ଶାନ୍ତିକରୀ ଭବ । ଓଁ ଭୂର୍ଭୂବଃ ସ୍ୱଃ ଜୟାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଜୟାଂ ପ୍ରାର୍ଥୟେତ୍ । ଯଥା- ଜୟେ ତ୍ୱଂ ସର୍ବଦେବାନାଂ ସଦା ବିଜୟକାରିଣୀ ରୂପଂ ଦେହି ଯଶୋଦେହି ଜ୍ଞାନଂ ଦେହି ନମସ୍ତୁତେ । ଓଁ ଭୂର୍ଭୂବଃ ସ୍ୱଃ ଦେବସେନାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଦେବସେନାଂ ପ୍ରାର୍ଥୟେତ ଯଥା- ଦେବସେନେ ବଶିଷ୍ଠେନ ବିଶ୍ୱମିତ୍ରେଣ ଧୀମତା । ବନ୍ଦିତାସି ମହାଭାଗେ ଦେବି ତୁଭ୍ୟଂ ନମୋନମଃ । ଓଁ ଭୂର୍ଭୂବଃ ସ୍ୱଃ ସ୍ୱାହାୟୈ ଦୁର୍ବାବଦରକ୍ଷତାପୁଷ୍ପାଣି ବୌଷଟ୍ । ଇତି ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ସ୍ୱାହାଂ ପ୍ରାର୍ଥୟେତ୍ । ଯଥା- ସ୍ୱାହେ ତ୍ୱଂ ସର୍ବଯଜ୍ଞେସୁ ବେଦପୃଷ୍ଟି ପ୍ରଦାୟିନୀ । ବହ୍ନିସ୍ଥିତେ ସଦା ଦେବି ପ୍ରସୀଦ ଶୁଭଲୋଚନେ । ଓଁ ଭୂର୍ଭୂବଃ ସ୍ୱଃ ସ୍ୱାଧାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ସ୍ୱଧାଂ ପ୍ରାର୍ଥୟେତ୍ । ଯଥା- ସ୍ୱଧେ ତ୍ୱଂ ଶଙ୍ଖବର୍ଣ୍ଣାଭା ପିତୃତୁଷ୍ଟିପ୍ରଦାୟିନୀ । ସୋମବୀଜସ୍ଥିତେ ଦେବିଂ ନିତ୍ୟଂ ତ୍ୱାଂ ପ୍ରଣମାମ୍ୟହଂ । ଓଁ ଭୂର୍ଭୂବଃ ସ୍ୱଃ ମାତୃଭ୍ୟୋ ଦୁର୍ବାବଦରକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ମାତୃଃ ପ୍ରାର୍ଥୟେତ୍ । - ମାତରଃ ସର୍ବଭୂତାନାଂ ପୂଜିତାଶ୍ଚ ସୁରସୁରୈଃ ନିତ୍ୟ ପ୍ରସାଦଂ କୁରୁତ ମାତୃଭ୍ୟୋବୈ ନମୋନମଃ । ଓଁ ଭୂର୍ଭୂବଃ ସ୍ୱଃ ଲୋକମାତୃଭ୍ୟୋ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ ଇତି ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଲୋକମାତୃଃ ପ୍ରାର୍ଥୟେତ୍ । ଯଥା- ମାତରଃ ସର୍ବଲୋକନାଂ ମାତୃତୁଷ୍ଟିପ୍ରଦାୟିକାଃ । ଅସ୍ମିନ୍ ଯଜ୍ଞେ ସଦା ସ୍ୱୟଂ ମାତୃବତ୍ ପରିରକ୍ଷତ । ଓଁ ଭୂର୍ଭୂବଃ ସ୍ୱଃ ଧୃତୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଧୃତିଂ ପ୍ରାର୍ଥୟେତ୍ । ଯଥା- ଧୃତେତ୍ୱଂ ସର୍ବଯଜ୍ଞେସୁ ପୂଜିତା ଚ ସୁରାସୁରୈଃ । ମମ ପୁଷ୍ଟିଂ କୁରୁଷ୍ୱାଶୁ ଗୃହୀତ୍ୱେଦଂ ତୁ ପୂଜନଂ । ଓଁ ଭୂର୍ଭୂବଃ ସ୍ୱଃ ପୁଷ୍ଟ୍ୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ଦୂର୍ବାବଦରାକ୍ଷତ ପୁଷ୍ପାଣି ଦତ୍ତ୍ୱା ପୁଷ୍ଟିଂ ପ୍ରାର୍ଥୟେତ୍ । ଯଥା- ପୁଷ୍ଟିଦା ତ୍ୱଂ ସଦା ଦେବି ଯଜ୍ଞପୁଷ୍ଟି ବିବର୍ଦ୍ଧିନୀ । ବନ୍ଦିତାସି ମହାଭାଗେ ପୃଷ୍ଟେ ତ୍ୱାଂ ପ୍ରଣମାମ୍ୟହଂ । ଓଁ ଭୂର୍ଭୂବଃ ସ୍ୱଃ କ୍ଷମାୟୈ ଦୁର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ଦୁର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା କ୍ଷମାଂ ପ୍ରାର୍ଥୟେତ୍ । ଯଥା- କ୍ଷମା ତ୍ୱଂ ସର୍ବଭୂତାନାଂ ତ୍ରୈଲୋକ୍ୟବ୍ୟାପିନୀ ସଦା । କ୍ଷମାରୂପେଣ ଦେବିଂ ତ୍ୱଂ ମମ



ଯଜ୍ଞ ବିବର୍ଦ୍ଧୟ । ଓଁ ଭୂର୍ଭୂବଃ ସ୍ୱଃ ତୁଷ୍ଟ୍ୟୈ ଦୂର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ଦୂର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ତୁଷ୍ଟିଂ ପ୍ରାର୍ଥୟେତ୍ । ଯଥା- ତୁଷ୍ଟେପୁଷ୍ଟିକରୀ ନିତ୍ୟଂ ତ୍ରୈଲୋକ୍ୟବ୍ୟାପିନୀ ସଦା । ତୁଷ୍ଟିରୂପେଣ ଦେବି ତ୍ୱଂ ମମ ଶାନ୍ତିକରୀ ଭବ ଓଁ ଭୂର୍ଭୂବଃ ସ୍ୱଃ ଆତ୍ମଦେବତାୟୈ ଦୂର୍ବାବଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୂର୍ବାବଦରାକ୍ଷତପୁଷ୍ପାଣି ଦତ୍ତ୍ୱା ଆତ୍ମଦେବତାଂ ପ୍ରାର୍ଥୟେତ୍ । ଯଥା- ଆତ୍ମନ୍ୟର୍କ ସ୍ୱରୂପେ ତ୍ୱଂ ସେମାବିମ୍ବନିଭାନନେ । ଇହ ଯଜ୍ଞେ ସଦା ସର୍ବଂ ଦେହି ମେ ବିପୁଳଂ ଫଳଂ । ଓଁ ଭୂର୍ଭୂବଃ ସ୍ୱଃ କୁଳଦେବତାୟୈ ଦୂର୍ବାଦରାକ୍ଷତପୁଷ୍ପାଣି ବୌଷଟ୍ । ଇତି ମନ୍ତ୍ରେଣ ଦୂର୍ବାଦରାକ୍ଷତପୁଷ୍ପାଣି ଦତ୍ତ୍ୱା କୁଳଦେବତାଂ ପ୍ରାର୍ଥୟେତ୍ । ଯଥା- କୁଳଦେବିନମସ୍ତେଽସ୍ତୁ କୁଳବୃଦ୍ଧି ପ୍ରଦାୟିନୀ । ତସ୍ମାତ୍ତ୍ୱଂ ମମ ଯଜ୍ଞେଽସ୍ମିନ୍ ଫଳ ବୃଦ୍ଧିକରୀ ଭବ । ଏବଂ ଦଶୋପଚାରୈର୍ବା ଷୋଡ଼ଶୋପଚାରୈଃ ପୂଜୟେତ୍ ।

ଇତ୍ୟଷ୍ଟାଦଶମାତୃଗଣପୂଜାବିଧିଃ ।

## ୧୩୨- ବସୋର୍ଦ୍ଧାରା ଦାନବିଧି

ଦ୍ରବୀଭୂତଂ ଗବ୍ୟଘୃତଂ ଗୃହୀତ୍ୱା କୁଡ୍ୟାଦିଷ୍ଣୁ "ବସୋଃ ପବିତ୍ରମସି ଶତଧାରଂ ବସୋଃପବିତ୍ରମସି ସହସ୍ରଧାରଂ । ଦେବସ୍ତ୍ୱା ସବିତା ପୁନାତୁ ବସୋଃ ପବିତ୍ରେଣ ଶତଧାରେଣ ସୁପ୍ୱାକ୍‌କାମଧୁକ୍ଷ" ଇତି ମନ୍ତ୍ରେଣ ଧାରାଃ ପଞ୍ଚ ବା ସପ୍ତ ଦଦ୍ୟାତ୍ । *

**ବ୍ୟାଖ୍ୟା-** ତରଳ ଗୁଆଘିଅ ତମ୍ବାପାତ୍ରରେ ପୂର୍ଣ୍ଣ କରି ତାହାକୁ ଉଭୟ ହସ୍ତରେ ଧରି ପୂର୍ବଦିଗ କାନ୍ଥରେ ପୂର୍ବରୁ ଉତ୍ତରଆଡ଼କୁ ବୃଦ୍ଧିକରି ହାତେ ଉଚ୍ଚରେ ତଳଲିଖିତ ମନ୍ତ୍ର ପଢ଼ି ପାଞ୍ଚ ବା ସାତଗୋଟି ଧାରା ଦେବ । (ଏହାର ବିଶେଷ ବିଧି ୮୭, ୮୮ ନମ୍ବରରେ ଦେଖ ।)

## ୧୩୩- ବସୋର୍ଦ୍ଧାରା ପ୍ରତିଷ୍ଠା ମନ୍ତ୍ର

ଓଁ ମନୋଜୁତିର୍ଜୂଷତା ମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତୁ । ଅରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ ବିଶ୍ୱେଦେବା ସ ଇହ ମା ଦୟାତମୋଁ ପ୍ରତିଷ୍ଠ । ଇତି ମନ୍ତ୍ରେଣ ବସୋର୍ଦ୍ଧାରାପ୍ରତିଷ୍ଠାଂ କୁର୍ଯ୍ୟାତ୍ । (ଏହି ମନ୍ତ୍ର ପଢ଼ି ବସୋର୍ଦ୍ଧାରାର ପ୍ରତିଷ୍ଠା କରିବେ) ।

---

*-୧୩୨ ସପ୍ତଘୃତମାତୃକା ଯଥା-
ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ, ଚାମୁଣ୍ଡା ।ଇତି
(ପ୍ରତିଷ୍ଠା ସଂଗ୍ରହେ)

## ୧୩୪- ବସୋର୍ଦ୍ଧାରା ପୂଜାବିଧି

" ଓଁ ବସୋର୍ଦ୍ଧାରାଦେବତାଭ୍ୟୋନମଃ" । * ଇତି ମନ୍ତ୍ରେଣ ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟାନ୍ତଂ ପୂଜୟେତ୍ । (ଏହି ମନ୍ତ୍ର ପଢ଼ି ବସୋର୍ଦ୍ଧାରା ଦେବତାଙ୍କୁ ଗନ୍ଧ, ପୁଷ୍ପ, ଧୂପ, ଦୀପ ଓ ନୈବେଦ୍ୟ ଦେଇ ପୂଜା କରିବେ) ।

ତତଃ "ଓଁ କଶ୍ୟପସ୍ୟ ତ୍ର୍ୟାୟୁଷଂ । ଜମଦଗ୍ନେସ୍ତ୍ର୍ୟାୟୁଷଂ ଯଦେବାନାଂ ତ୍ର୍ୟାୟୁଷଂ ତନ୍ନୋଅସ୍ତୁ ତ୍ର୍ୟାୟୁଷଂ" । ଇତି ମନ୍ତ୍ରେଣ ବସୋର୍ଦ୍ଧାରାମସ୍ତକେ ସିନ୍ଦୂରଂ ଦଦ୍ୟାତ୍ । (ଏହି ମନ୍ତ୍ର ପଢ଼ି ପ୍ରତ୍ୟେକ ବସୋର୍ଦ୍ଧରାମସ୍ତକରେ ସିନ୍ଦୂର ଦେବ) ।

ତତଃ ଆୟୁଷ୍ମାନଗ୍ନେ ହବିଷାବୃଧାନୋ ଘୃତପ୍ରତୀକୋ ଘୃତଯୋନିରେଧି ଘୃତଂ ପୀତ୍ୱା ମଧୁଚାରୁଗବ୍ୟଂ ପିତେବ ପୁତ୍ରମଭିରକ୍ଷତାଦିମାଂସ୍ୱାହା । ଇତି ଶାନ୍ତିମନ୍ତ୍ରଂ, ଜପେତ୍, ଓଁ ଦୀର୍ଘାୟୁ ତ୍ୱାୟ ବଳାୟ ବର୍ଚ୍ଚସେ ସୁପ୍ରଜାସ୍ତ୍ୱାୟ ଆସା ଅଥୋ ଜୀବଃ ସରଦଃ ସତଂ ଦୀର୍ଘାୟୁସ୍ତ୍ୱଂ । ଇତି ମନ୍ତ୍ରେଣ ଅକ୍ଷତପ୍ରକ୍ଷେପଃ । (ପ୍ରଥମରେ ଶାନ୍ତିମନ୍ତ୍ର ତତ୍ପରେ ଅକ୍ଷତମନ୍ତ୍ର ପଢ଼ି ବସୋର୍ଦ୍ଧାରା ମସ୍ତକରେ ଅକ୍ଷତ ପକାଇବ) ।

## ୧୩୫- ଭୋଜ୍ୟୋତ୍ସର୍ଗ ବିଧି

"ସର୍ବସ୍ୱସୋପକରଣ ଭୋଜ୍ୟାୟ ନମଃ" ୩ । ଇତି ଭୋଜ୍ୟାପରି କୁଶୋଦକପ୍ରକ୍ଷେପଃ । (ଏହି ମନ୍ତ୍ର ତିନିଥର ପଢ଼ି ଭୋଜ୍ୟ ଉପରେ କୁଶୋଦକ ତିନିଥର ପକାଇବ) ।

"ଏତଦଧିପତୟେ ପ୍ରଜାପତୟେ ନମଃ" ଇତି ପୁଷ୍ପାକ୍ଷତପ୍ରକ୍ଷେପଃ । (ଏହି ମନ୍ତ୍ର ପଢ଼ି ଭୋଜ୍ୟ ଉପରେ ଅକ୍ଷତ ଓ ପୁଷ୍ପ ପକାଇବେ)

"ଏତଦପ୍ରତିଗ୍ରହିତ୍ରେ ବିଷ୍ଟରବ୍ରାହ୍ମଣାୟ ନମଃ" । ଇତି ବିଷ୍ଟରବ୍ରାହ୍ମଣ ପୂଜନଂ (ଏହି ମନ୍ତ୍ର ପଢ଼ି ଗନ୍ଧ ପୁଷ୍ପରେ ବିଷ୍ଟର ବ୍ରାହ୍ମଣଙ୍କୁ ପୂଜା କରିବେ) ।

ତତୋଦକ୍ଷିଣହସ୍ତେ କୁଶାକ୍ଷତଗନ୍ଧପୁଷ୍ପଜଳାନି ଗୃହୀତ୍ୱା ବାକ୍ୟଂ ପଠେତ୍ (ଅନନ୍ତର ଦକ୍ଷିଣହସ୍ତରେ କୁଶ, ଅକ୍ଷତ, ଗନ୍ଧ, ପୁଷ୍ପ ଓ ଜଳ ଧରି ନିମ୍ନଲିଖିତ ବାକ୍ୟ ପଢ଼ି ଉତ୍ସର୍ଗ କରିବ) ।

---

*୧୩୪ ବସୋର୍ଦ୍ଧାରା ଦେବତା, ଯଥା-

ଚେଦିରାଜବସୁଃ ।

ବୃଦ୍ଧି ଶ୍ରଦ୍ଧାପୂର୍ବକର୍ତ୍ତବ୍ୟଚେଦିରାଜବସୁଦ୍ଦେଶ୍ୟକକୁଡ୍ୟଲଗ୍ନଘୃତଧାରା ।

(ଇତି ଶବ୍ଦକଳ୍ପଦ୍ରୁମେ)



## ୧୩୬- ଭୋଜ୍ୟୋତ୍ସର୍ଗବାକ୍ୟ

ଓଁ ବିଷ୍ଣୁ ର୍ବିଷ୍ଣୁ ର୍ବିଷ୍ଣୁ ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟ ଭୂପ୍ରଦେଶେ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରରେ ଅମୁକରାଶିସ୍ଥିତେ ଶ୍ରୀଭାଷ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥସ୍ଥାନ ବସ୍ଥିତେଷୁ ଭୌମାଦିଗ୍ରହଯୋଗାଲଗ୍ନକରଣମୁହୂର୍ତ୍ତକାଂଶକେଷୁ ଏବଂ ବିଧିବିଶେଷଣବିଶିଷ୍ଟାୟାଂ ପୁଣ୍ୟଂତିଥୌକାଶ୍ୟପାଦିନାନାଗୋତ୍ରେଭ୍ୟୋ ବ୍ରାହ୍ମଣେଭ୍ୟୋନାନାବେଦନାନାଶାଖାଶାଖୈକଦେଶାଧ୍ୟାୟି ଭ୍ୟୋ ନାନାନାମଶର୍ମଭ୍ୟସ୍ତେଭ୍ୟୋମନସାର୍ଚ୍ଚି ତେଭ୍ୟଶ୍ରୀବିଷ୍ଣୁ ସ୍ୱରୂପେଭ୍ୟଃ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକସଗୋତ୍ରାୟାମଭାର୍ଯ୍ୟାୟାଅମୁକଦେବ୍ୟାଃ ପ୍ରଥମରଜୋଦର୍ଶନଶାନ୍ତିହୋମକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ଵେନବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତପିତାମହୀପ୍ରପିତାମହାନାଂ ଅମୁକ ଦେବୀଅମୁକଦେବୀ ଅମୁକଦେବଶର୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂଅମୁକସଗୋତ୍ରାଣାଂ ଅସ୍ମତ୍ ପିତୃପିତାମହ ପ୍ରପିତାମହାନାଂ ଅମୁକଦେବ ଅମୁକଦେବଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହ ପ୍ରମାତାମହ ବୃଦ୍ଧ ପ୍ରମାତା ମହାନାଂ ଅମୁକଦେବୀ ଶର୍ମଣାଂ ନାନ୍ଦୀମୁଖନାଂସ୍ଥାନେ ଭୋଜନଦ୍ୱୟଂ* । ଇମାନି ସମ୍ପୂୟାଷ୍ଟପରିମିତାନି ପ୍ରଜାପତିଦୈବତାନି ତେଭ୍ୟୋବ୍ରାହ୍ମଣେଭ୍ୟୋଦାତୁମହମୁତ୍ସୃଜେ । ଇତି ପଠତ୍ୱା କୁଶାକ୍ଷତଗନ୍ଧପୁଷ୍ପଜଳାନି ବିଷ୍ଟରବ୍ରାହ୍ମଣୋପରି କ୍ଷିପେତ୍ (ଏହି ବାକ୍ୟ ପଢ଼ି ହସ୍ତରେ ଧରିଥିବା କୁଶ, ଅକ୍ଷତ, ଗନ୍ଧ, ପୁଷ୍ପ ଓ ଜଳ ବିଷ୍ଟର ବ୍ରାହ୍ମଣ ଉପରେ ପକାଇଦେବ ।)

## ୧୩୭- ଭୋଜ୍ୟଦକ୍ଷିଣା ବାକ୍ୟ

ଦକ୍ଷିଣେହସ୍ତେ ଦକ୍ଷିଣାସହିତକୁଶାକ୍ଷତଜଳାନି ଗୃହୀତ୍ୱା । ଏତଭୋଜ୍ୟଦାନକର୍ମଣଃ ସୁପ୍ରତିଷ୍ଠାର୍ଥ ବ୍ରାହ୍ମଣାୟ ଯଥାଶକ୍ତି ଦକ୍ଷିଣାଂ ତୁଭ୍ୟମହଂ ସଂପ୍ରଦଦେ । ଇତି ବିଷ୍ଟବ୍ରାହ୍ମଣେପରି ଦକ୍ଷିଣାଂ ଦଦ୍ୟାତ୍ । (ଏହି ବାକ୍ୟ ପଢ଼ି ବିଷ୍ଟର ଉପରେ ଯଥାଶକ୍ତି ଦକ୍ଷିଣା ଦେବ) ।

## ୧୩୮- ଭୋଜ୍ୟଦାନ ପ୍ରାର୍ଥନାବାକ୍ୟ

ଅନ୍ନେପ୍ରତିଷ୍ଠିତାଦେବାଃ ସର୍ବମନ୍ନେ ପ୍ରତିଷ୍ଠିତଂ ।
ତସ୍ମାଦନ୍ନପ୍ରଦାନେନ ପ୍ରୀୟତାଂ ମେ ଜନାର୍ଦ୍ଦନ । (ଇତିପଠିତ୍ୱା ପ୍ରାର୍ଥୟେତ୍)

---

* ଇଦଂ ସମ୍ପୂୟ ଏକପରିମିତଂ ପ୍ରଜାପତିଦୈବତମିତି ପାଠାନ୍ତରଂ ।

## ୧୩୯- ସାବିତ୍ରୀ ପୂଜା

* ତତଃ ସାବିତ୍ରୀମଣ୍ଡଳେ ବା ପଦ୍ମମଣ୍ଡଳେ ଶୁକ୍ଳତଣ୍ଡୁଳୋପରି ବସ୍ତ୍ରଯୁଗାଚ୍ଛାଦିତେ ସାବିତ୍ରୀଂ ପୌଷ୍କଳଗାୟତ୍ରୀମନ୍ତ୍ରେଣ ପୂଜୟେତ୍ । (ଅନନ୍ତର ଶୁକ୍ଳତଣ୍ଡୁଳ ଉପରେ ବୃହତ୍ ସାବିତ୍ରୀମଣ୍ଡଳ (୭୫ ନମ୍ବର ଦେଖ) କିମ୍ବା ହଳଦୀଚୂନାଦ୍ୱାରା ପଦ୍ମମଣ୍ଡଳ ଲେଖି ତହିଁରେ ନଡ଼ିଆ ବା ଗୁଆ ବସାଇ ବସ୍ତ୍ରଦ୍ୱୟ ଆଚ୍ଛାଦନ କରି ସାବିତ୍ରୀଙ୍କୁ ପୌଷ୍କଳଗାୟତ୍ରୀ ମନ୍ତ୍ରରେ ପୂଜା କରିବ) ।

## ୧୪୦- ପୌଷ୍କଳଗାୟତ୍ରୀ

ଓଁ ଭୂ ର୍ଭୂ ବଃସ୍ୱସ୍ତସ୍ତବି ତୁ ର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋୟୋନଃ ପ୍ରଚୋଦୟାତ୍ । ଓଁ ସାବିତ୍ର୍ୟେ ନମଃ, ସାବିତ୍ରୀମାବାହୟାମି, ସାବିତ୍ରୀ ଅତ୍ରାଗଚ୍ଛ । ଇତ୍ୟାବାହ୍ୟ । ଆବାହାନାଦିଦଶମୁଦ୍ରାଃପ୍ରଦର୍ଶୟେତ୍ । (ଦଶମୁଦ୍ରା ୧୧୮ ନମ୍ବର ଟିପ୍‌ପଣୀରେ ଦେଖ) । ଗାୟତ୍ରୀମନ୍ତ୍ରମୁଚ୍ଚାର୍ଯ୍ୟ ଓଁ ସାବିତ୍ରୀଦେବ୍ୟୈ ଆସନଂ ନମଃ । ଆସନାଦି ଉପଚାରଦାନ ନିୟମ (୧୨୪ (୧) ନମ୍ବର ଟିପ୍‌ପଣୀ ଦେଖ) । ଗାୟତ୍ରୀ ମନ୍ତ୍ରମୁଚ୍ଚାର୍ଯ୍ୟ ସାବିତ୍ରୀଦେବ୍ୟୈ ପାଦ୍ୟଂ ନମଃ । ପୂର୍ବବଦ୍‌ଗାୟତ୍ରୀମୁଚ୍ଚାର୍ଯ୍ୟ ସାବିତ୍ରୀଦେବ୍ୟୈଃ ଅର୍ଘ୍ୟଃ ସ୍ୱାହା ଏବଂ ଆଚମନୀୟଂ ସ୍ୱଧା, ମଧୁପର୍କଃ ସ୍ୱଧା, ସ୍ନାନୀୟଂ ବୌଷଟ୍, ବସ୍ତ୍ରଯୁଗ୍ମଂ ନମଃ, ଆଭରଣାନି ନମଃ, ଗନ୍ଧୋ ନମଃ । ପୁଷ୍ପଂ ବୌଷଟ୍, ମାଲ୍ୟପୁଷ୍ପଂ ବୌଷଟ୍, ଧୂପଃ ସ୍ୱାହା, ଦୀପଃ ସ୍ୱାହା, ନୈବେଦ୍ୟଂ ସଂସ୍କୃତ୍ୟ (ନୈବେଦ୍ୟସଂସ୍କାର ୧୨୪ (୪) ନମ୍ବର ଟିପ୍‌ପଣୀ ଦେଖ) ମନ୍ତ୍ରେଣ ନିବେଦନଂ କୃତ୍ୱା, ପୁଷ୍ପାଞ୍ଜଳିଂ ଦଦ୍ୟାତ୍ ।

## ୧୪୧- ସାବିତ୍ରୀଦେବୀଙ୍କ ପ୍ରାର୍ଥନାମନ୍ତ୍ର

ସାବିତ୍ରୀ ତ୍ୱଂ ବେଦମାତା ବ୍ରହ୍ମଦେହସମାଶ୍ରିତା ।
ମମ ଯଜ୍ଞେ ବିବାହେ ତ କ୍ଷେମଂ କୁରୁ ନମୋଽସ୍ତୁତେ ।

(ଇତି ସାବିତ୍ରୀ ପୂଜା)

---

* ୧୩୯- ହଳଦୀଚୂନାର ପ୍ରଶଂସା-

ମଙ୍ଗଳୈଷ୍ଚ ହରିଦ୍ରାୟାଷ୍ଟର୍ମୈ ର୍ବିଘ୍ନବିନାଶନଂ ।
ସର୍ବକାର୍ଯ୍ୟେ ଲିଖେତ୍‌ପଦ୍ମଂ ବ୍ରହ୍ମଣା କଥିତଂ ପୁରା ।

(ଦିବ୍ୟସିଂହବାଜପେୟିପଦ୍ଧତୌ)



## ୧୪୨- ନବଗ୍ରହମଣ୍ଡଳ ପୂଜାବିଧି

ତତଃ ପ୍ରାଦେଶମାତ୍ରଂ ନବକୋଷ୍ଠସଂଖ୍ୟକଂ ନବଗ୍ରହମଣ୍ଡଳଂ ଶୁକ୍ଲତଣ୍ଡୁଳୋପରି ଲିଖିତ୍ୱା ବସ୍ତ୍ରଂ ବେଷ୍ଟୟିତ୍ୱା ସାଧିଦୈବତପ୍ରତ୍ୟଧିଦୈବତାନ ନବଗ୍ରହାନ୍ ସ୍ୱସ୍ୱମନ୍ତ୍ରେଣ ପ୍ରତ୍ୟେକଂ ଆବାହନାଦିତାମ୍ବୁଳାନ୍ତଂ ପୂଜୟେତ୍ ।

ବ୍ୟାଖ୍ୟା- ଅନନ୍ତର ଶୁକ୍ଲତଣ୍ଡୁଳ ଉପରେ ପ୍ରାଦେଶପରିମିତ ପ୍ରତ୍ୟେକ ନଅଗୋଟି କୋଠିରେ ନବଗ୍ରହମଣ୍ଡଳ (ନ ୬୧ ମ୍ବର ଦେଖ) ଲେଖି- ଅଧିଦୈବତ ପ୍ରତ୍ୟଧିଦୈବତ ସହିତ ଗ୍ରହମାନଙ୍କୁ ସ୍ୱମନ୍ତ୍ରରେ ପୂଜା କରିବ ।

## ୧୪୩- ବରାହପୁରାଣୋକ୍ତ ଗ୍ରହପୂଜାପଦ୍ଧତି ସୂର୍ଯ୍ୟପୂଜା

ମଣ୍ଡଳସ୍ୟ ମଧ୍ୟେ, ହସ୍ତେ ଦୁର୍ବାକ୍ଷତଂ ଗୃହୀତ୍ୱା "ଓଁ ଆବାହୟାମ୍ୟହଂ ଜୀବଂ ଜୀବଂ ସର୍ବଗତଂ ବିଭୁଂ । ପଞ୍ଚଧା ବସ୍ଥିତେ ଦେହେ ପଞ୍ଚଧା ବସ୍ଥିତଂ ସଦା । ବାରୁଣେନ ଚ ଭାବେନ ବାରୁଣନେ ବ୍ୟବସ୍ଥୟା । ମଣ୍ଡଳେଽସ୍ମିନ୍ନଦୃଶ୍ୟସ୍ତ୍ୱଂ ପ୍ରବିଶାଦ୍ୟ ନମୋଽସ୍ତୁତେ ।" ସାଧିଦୈବତ ପ୍ରତ୍ୟଧିଦୈବତ ଆଦିତ୍ୟଭଟ୍ଟାରକଜୀବମାବାହୟାମି । ଇତି ଦୁର୍ବାକ୍ଷତପ୍ରକ୍ଷେପଃ । (ଏହି ମନ୍ତ୍ର ପଢ଼ି ରବିମଣ୍ଡଳଗୁଆ ବା ପ୍ରତିମା ଉପରେ ଦୁର୍ବାକ୍ଷତ ପକାଇବ) । ପ୍ରତମାୟାଂ ବା କ୍ରମୁକୋପରି କୁଶଂ ସ୍ପୃଷ୍ଟ୍ୱା ଜୀବନ୍ୟାସଂ କୁର୍ଯ୍ୟାନ୍ମନ୍ତ୍ରେଣ । ତଦ୍ ଯଥା- ଓଁ ଆଁ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ରଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧି- ଦୈବତରବିମହାଗ୍ରହସ୍ୟ ପ୍ରାଣାଇହ ପ୍ରାଣାଃ ଓଁ ଆଁ ହୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତରବିମହାଗ୍ରହସ୍ୟ ଜୀବଇହ ସ୍ଥିତଃ ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତରବିମହାଗ୍ରହସ୍ୟ ସର୍ବେନ୍ଦ୍ରିୟାଣି ଓଁ ଆଁ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୌଂ ହଂ ସଃ ବାଙ୍ମନସ୍ତ୍ୱକ୍‌ଚକ୍ଷୁଃ- ଶ୍ରୋତ୍ରଘ୍ରାଣପ୍ରାଣାଃ * ପଞ୍ଚବିଂଶତିତତ୍ତ୍ୱାନି ଇହାଗତ୍ୟ ସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା । ଇତି ପଠିତ୍ୱା କୁଶପ୍ରକ୍ଷେପଃ । ସୂର୍ଯ୍ୟଗାୟତ୍ରୀ, ଯଥା ଓଁ ଦିବାକରାୟ ବିଦ୍ମହେ ପ୍ରଭାକରାୟ ଧୀମହି ତନ୍ନଃ ସୂର୍ଯ୍ୟଃ ପ୍ରଚୋଦୟାତ୍ ଓଁ ଇତ୍ୟଷ୍ଟବାରଂ ଜପେଦିତ ଜୀବନ୍ୟାସଃ ।

ବ୍ୟାଖ୍ୟା- ମଣ୍ଡଳମଧ୍ୟସ୍ଥିତ ପ୍ରତିମା ବା ଗୁଆକୁ କୁଶଦ୍ୱାରା ସ୍ପର୍ଶ କରି ଉପରଲିଖିତ ଜୀବନନ୍ୟାସ ମନ୍ତ୍ର ପଢ଼ି ମଣ୍ଡଳ ଉପରେ ସେହି କୁଶ ପକାଇଦେଇ ଉପରଲିଖିତ ଗାୟତ୍ରୀମନ୍ତ୍ର ଆଠବାର ଜପ କରି ସୂର୍ଯ୍ୟମହାଗ୍ରହଙ୍କର ଜୀବନ୍ୟାସ କରିବ ।

ହସ୍ତେ ପୁଷ୍ପାକ୍ଷତଂ ଗୃହୀତ୍ୱା ଓଁ ଭୂର୍ଭୁବଃ ସ୍ୱଃ କଳିଙ୍ଗଦେଶଜାତଂ କାଶ୍ୟପସଗୋତ୍ରଂ ସପ୍ତମ୍ୟା ଜାତଂ ଧନିଷ୍ଠାତାରକଂ କ୍ଷତ୍ରିୟଜାତିଂ ଲୋହିତବର୍ଣ୍ଣଂ ମଧ୍ୟେ ବର୍ତ୍ତୁଳାକୃତିମଣ୍ଡଳମଧ୍ୟସ୍ଥଂ ଦ୍ୱିଭୁଜଂ ପଦ୍ମହସ୍ତଂ ରକ୍ତଚନ୍ଦନ ରକ୍ତପୁଷ୍ପମାଲ୍ୟାମ୍ବରଧରଂ କିରୀଟିନଂ ସପ୍ତାଶ୍ୱରଥବାହନଂ ଈଶ୍ୱରାଧିଦୈବତଂ ଅଗ୍ନିପ୍ରତ୍ୟଧିଦୈବତଂ କପିଳନାମାଗ୍ନିଂ ପୂର୍ବାଭିମୁଖଂ ମନସି ଏବଂବିଧଂ ଚିନ୍ତୟିତ୍ୱା । ଆବାହାୟେନ୍ମନ୍ତ୍ରେଣ । ତଦ୍‌ଯଥା- କଳିଙ୍ଗଦେଶସମ୍ଭୂତ ଦାଡ଼ିମୀକୁସୁମପ୍ରଭା । କାଶ୍ୟପାନ୍ୱୟ ମାର୍ତ୍ତଣ୍ଡ ମଣ୍ଡଳେଽତ୍ରାଗତୋ ଭବ । ସାଧିଦୈବତପ୍ରତ୍ୟଧିଦୈବତ ଆଦିତ୍ୟଭଟ୍ଟାରକ ଅତ୍ରାଗଚ୍ଛ । ଇତି ପୁଷ୍ପାକ୍ଷତଂ ଦତ୍ତ୍ୱା ପ୍ରାର୍ଥୟେତ୍ ।

**ବ୍ୟାଖ୍ୟା-** ଦକ୍ଷିଣହସ୍ତରେ ଅକ୍ଷତ ପୁଷ୍ପ ଧରି ମନମଧ୍ୟରେ ତଳଲିଖିତ ଧ୍ୟାନ କରି ଆବାହାନ ଓ ପ୍ରାର୍ଥନାମନ୍ତ୍ର ପଢ଼ି ଅକ୍ଷତ ପୁଷ୍ପଦେଇ ଆବାହାନ କ୍ରିବ । ତଦ୍ ଯଥା- ଇହାଗଚ୍ଛ, ଇହତିଷ୍ଠ, ଅତ୍ରାଧିଷ୍ଠାନଂ କୁରୁ, ମମ ପୂଜାଂ ଗୃହାଣ । ପଦ୍ମାସନଃ ପଦ୍ମକରଃ ପଦ୍ମଗର୍ଭସମଦ୍ୟୁତିଃ । ସପ୍ତାଶ୍ୱରଥସଂରୁଢ଼ୋ ଦ୍ୱିଭୂଜଃ ପାତୁ ନୋରବିଃ । ଇତି ସଂପ୍ରାର୍ଥ୍ୟ ପ୍ରତିମାୟା ଉପରି ପୁଷ୍ପଂ କ୍ଷିପେତ୍ । ଆବାହାନାଦିଦଶମୁଦ୍ରାଃ (୧୧୮ ନମ୍ବର ଟିପ୍‌ପଣି ଦେଖ) ଦର୍ଶୟିତ୍ୱା ଋଷ୍ୟାଦିକଂ ସ୍ମରେତ୍ । ଆକୃଷ୍ଣେନ ମନ୍ତ୍ରର ଋଷିଛନ୍ଦ ଯଥା- ଓଁ ଆକୃଷ୍ଣେନେତି ମନ୍ତ୍ରସ୍ୟ ହିରଣ୍ୟସ୍ତୂପ୍‌ଋଷିଃ । ତ୍ରିଷ୍ଟୁପଛନ୍ଦଃ । ସବିତାଦେବତା । ସାଧିଦୈବତ-ପ୍ରତ୍ୟଧିଦୈବତରବିମହାଗ୍ରହସ୍ୟ ପୂଜାକର୍ମଣି ବିନିଯୋଗଃ । (ଏହାର ନିୟମ ୨୩ ନମ୍ବରରେ ଦେଖ) ।

**ଆକୃଷ୍ଣେନ ମନ୍ତ୍ରର କରନ୍ୟାସ ଯଥା-** ଆକୃଷ୍ଣନ ରଜସା ବର୍ତ୍ତମାନଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ନିବେଶୟନ୍ ତର୍ଜନିଭ୍ୟାଂ ସ୍ୱାହା । ଅମୃତଂ ମର୍ତ୍ତ୍ୟଂ ଚ

---

* **୧୪୩-ପଞ୍ଚବିଂଶତିତତ୍ତ୍ୱାନି ଯଥା-**

ମୂଳପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତି ବିକୃତୟଃ ସପ୍ତ । ଷୋଡ଼ଶବସ୍ତୁ ବିକାରୋ ନ ଚ ପ୍ରକୃତିର୍ନଚ ବିକୃତିଃ ପୁରୁଷଃ ।

**ବ୍ୟାଖ୍ୟା-** ୧-ପ୍ରକୃତି, ୨-ମହତତ୍ତ୍ୱ, ୩-ଅହଙ୍କାରତତ୍ତ୍ୱ, ୪-ଶବ୍ଦ, ୫-ସ୍ପର୍ଶ, ୬-ରୂପ, ୭-ରସ, ୮-ଗନ୍ଧ, ୯-ପୃଥିବୀ, ୧୦-ଜଳ, ୧୧-ତେଜ, ୧୨-ବାୟୁ, ୧୩-ଆକାଶ, ୧୪-ଶ୍ରୋତ, ୧୫-ତ୍ୱକ୍, ୧୬-ଚକ୍ଷୁ, ୧୭-ଜିହ୍ୱା, ୧୮-ଘ୍ରାଣ, ୧୯-ବାକ୍, ୨୦-ପାଣି, ୨୧-ପାଦ, ୨୨-ବାୟୁ, ୨୩-ଉପସ୍ଥ, ୨୪-ମନ, ୨୫-ପୁରୁଷ ।

 

ମଧ୍ୟମାଭ୍ୟାଂ ବଷଟ୍ । ହିରଣ୍ୟୟେନ ଅନାମିକାଭ୍ୟାଂ ହୁଂ । ସବିତାରଥେନ କନିଷ୍ଠାଭ୍ୟାଂ ବୌଷଟ୍ ଦେବୋ ଯାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠଭ୍ୟାଂ ଫଟ୍ ।

**ବ୍ୟାଖ୍ୟା-** ଆକୃଷ୍ଣେନ ରଜସା ବର୍ତ୍ତମାନଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । (ଏହା ପାଠକରି ଉଭୟ ହସ୍ତର ତର୍ଜନୀଦ୍ୱାରା ଉଭୟହସ୍ତର ଅଙ୍ଗୁଷ୍ଠକୁ ଛୁଇଁବ) । ନିବେଶୟନ୍ ତର୍ଜନୀଭ୍ୟାଂ ସ୍ୱାହା । (ଏହା ପାଠକରି ଉଭୟ ହସ୍ତର ବୁଢ଼ା ଆଙ୍ଗୁଠିଦ୍ୱାରା ଉଭୟ ହସ୍ତର ତର୍ଜନୀକୁ ଛୁଇଁବ) । ଅମୃତଂ ମର୍ତ୍ତଂ ଚ ମଧ୍ୟଭାଭ୍ୟାଂ ବିଷଟ୍ । (ଏହା ପାଠକରି ଉଭୟସ୍ତର ବୁଢ଼ା ଆଙ୍ଗୁଠିଦ୍ୱାରା ଉଭୟହସ୍ତର ମଧ୍ୟମାକୁ ଛୁଇଁବ) ହିରଣ୍ୟୟେନ ଅନାମିକାଭ୍ୟାଂ ହୁଂ । (ଏହା ପାଠକରି ଉଭୟ ହସ୍ତର ବୁଢ଼ା ଆଙ୍ଗୁଠିଦ୍ୱାରା ଉଭୟହସ୍ତର ଅନାମିକାକୁ ଛୁଇଁବ) । ସବିତାରଥେନ କନିଷ୍ଠାଭ୍ୟାଂ ବୌଷଟ୍ । (ଏହା ପାଠ କରି ଉଭୟ ହସ୍ତର ବୁଢ଼ା ଆଙ୍ଗୁଠିଦ୍ୱାରା ଉଭୟ ହସ୍ତର କନିଷ୍ଠାକୁ ଛୁଇଁବ) । ଦେବୋ ଯାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ । (ଏହା ପାଠକରି ଦକ୍ଷିଣହସ୍ତକୁ ବାମହସ୍ତର ପୃଷ୍ଠଦେଶରେ ବୁଲାଇ ଆଣି ବାମହସ୍ତର ପାପୁଲି ଉପରେ ଦକ୍ଷିଣହସ୍ତର ପୃଷ୍ଠଦେଶଦ୍ୱାରା ଫଟ୍ ଶବ୍ଦ କରିବ ।

ଆକୃଷ୍ଣେନ ମନ୍ତ୍ରର ଅଙ୍ଗନ୍ୟାସ ଯଥା ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ହୃଦୟାୟ ନମଃ । ନିବେଶୟନ୍ ଶିରସେ ସ୍ୱାହା । ଅମୃତଂ ମର୍ତ୍ତ୍ୟଂ ଚ ଶିଖାୟୈ ବଷଟ୍ । ହିରଣ୍ୟୟେନ କବଚାୟ ହୁଂ । ସବିତାରଥେନ ନେତ୍ରାଭ୍ୟାଂ ବୌଷଟ୍ । ଦେବୋଯାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟଫଟ୍ ।

**ବ୍ୟାଖ୍ୟା-** ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ହୃଦୟାୟ ନମଃ । (ଏହା ପାଠକରି ବୁଢ଼ା ଆଙ୍ଗୁଳିଛଡ଼ା ଦକ୍ଷିଣହସ୍ତର ଅପର ଆଙ୍ଗୁଳିମାନଙ୍କଦ୍ୱାରା ଆପାଣାର ହୃଦୟ ସ୍ପର୍ଶ କରିବ । ନିବେଶୟନ୍ ଶିରସେ ସ୍ୱାହା । (ଏହା ପଢ଼ି ଦକ୍ଷିଣ ହସ୍ତର ବୁଢ଼ାଆଙ୍ଗୁଳିକି ରୁଦ୍ଧ କରି ଅନ୍ୟ ଆଙ୍ଗୁଳିମାନଙ୍କଦ୍ୱାରା ଆପଣାର ମସ୍ତକ ଛୁଇଁବ) । ଅମୃତଂ ମର୍ତ୍ତ୍ୟଂଚ ଶିଖାୟୈ ବଷଟ୍ । (ଏହା ପଢ଼ି ଦକ୍ଷିଣହସ୍ତର ବୁଢ଼ାଆଙ୍ଗୁଳିଦ୍ୱାରା ଆପଣାଶିଖା ସ୍ପର୍ଶ କରିବ) । ହିରଣ୍ୟୟେନ କବଚାୟ ହୂଂ । (ଏହା ପଢ଼ି ଦକ୍ଷିଣହସ୍ତର ଆଙ୍ଗୁଳିମାନଙ୍କ ଦ୍ୱାରା ବାମସ୍କନ୍ଧ ଏବଂ ବାମହସ୍ତର ଅଙ୍ଗୁଳିମାନଙ୍କଦ୍ୱାରା ଦକ୍ଷିଣସ୍କନ୍ଧ ସ୍ପର୍ଶ କରିବ) । ସବିତାରଥେନ

ନେତ୍ରାଭ୍ୟାଂ ବୌଷଟ୍ । (ଏହା ପଢ଼ି ଦକ୍ଷିଣହସ୍ତର ତର୍ଜନୀ ଓ ମଧ୍ୟମା ଅଙ୍ଗୁଳିଦ୍ୱାରା ଆପଣାର ନେତ୍ରଦ୍ୱୟ ସ୍ପର୍ଶ କରିବ) । ଦେବୋଜାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ । ଏହା ପଢ଼ି ଦକ୍ଷିଣହସ୍ତକୁ ବାମହସ୍ତର ପୃଷ୍ଠଦେଶରୁ ବୁଲାଇ ଆଣି ବାମହସ୍ତର ତର୍ଜନୀ ଓ ମଧ୍ୟମା ଉପରେ ଦକ୍ଷିଣହସ୍ତର ତର୍ଜନୀ ଓ ମଧମାଦ୍ୱାରା ଫଟ୍ ଶବ୍ଦ କରିବ ।

ଧ୍ୟାନଂ । ସନ୍ଧ୍ୟାବିଦ୍ରୁ ମପଦ୍ମରାଗବି ଳସଦ୍ ବନ୍ଧୁକ ପୁଷ୍ପାରୁଣଂ ବନ୍ଦ୍ୟଂ କାଶ୍ୟପଗୋତ୍ରମନ୍ଦରଳସତ୍ପଦ୍ମପ୍ରଭଂ ନିର୍ମଳଂ । ତଂ ଦେବାସୁରମୌଳିଘୃଷ୍ଟଚରଣଂ ସଂସାରବନ୍ଧଚ୍ଛିଦଂ ଭକ୍ତ୍ୟାଂ ନାଥମିହାହ୍ୱୟାମି ସକଳଂ ତ୍ରୈଲୋକ୍ୟନାଥଂ ରବିଂ । ଇତି ଧ୍ୟାୟେତ୍ । ରବିମହାଗ୍ରହମନ୍ତ୍ର- ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ । ହିରଣ୍ୟୟେନ ସବିତାରଥେନା ଦେବୋଯାତି ଭୁବନାନି ପଶ୍ୟନ୍ । ସାଧିଦୈବତପ୍ରତ୍ୟଧିଦୈବତାୟ ରଂ ରବିମହାଗ୍ରହାୟ ନମଃ । ଇତି ମନ୍ତ୍ରେଣ ଷୋଡ଼ଶୋପଚାରୈର୍ବା ଦଶୋପଚାରୈର୍ବା ପଞ୍ଚୋପଚାରୈଃ ପୂଜୟେତ୍ । ଉପଚାର ଦ୍ରବ୍ୟକ୍ରମ ଯଥା- ଆସନଂ, ସ୍ୱାଗତଂ, ପାଦ୍ୟଂ, ଅର୍ଘ୍ୟଂ, ଆଚମନୀୟଂ, ମଧୁପର୍କଃ ଆଚମନଂ, ସ୍ନାନଂ, ବସନଂ, ଆଭରଣଂ, ସୁଗନ୍ଧଃ ପୁଷ୍ପଂ, ଧୂପଃ, ଦୀପଃ, ନୈବେଦ୍ୟଂ, ଚନ୍ଦନଂ । ଇତି ଷୋଡ଼ଶୋପଚାରାଣି ।

ଆସନଂ, ପାଦାସନଂ, ଅର୍ଘ୍ୟଂ, ଗନ୍ଧଃ, ପୁଷ୍ପଂ, ଧୂପଃ, ଦୀପଃ, ନୈବେଦ୍ୟଂ, ଆଚମନୀୟ, ତାମ୍ବୁଳଂ । ଇତି ଦଶୋପଚାରାଣି ।

ଗନ୍ଧଃ, ପୁଷ୍ପଂ, ଧୂପଃ, ଦୀପଃ, ନୈବେଦ୍ୟଂ । ଇତି ପଞ୍ଚୋପଚାରାଣି । ପୂର୍ବୋକ୍ତ ମନ୍ତ୍ରେଣ ବଲ୍ୟୋଷଧିପତାକାଦିକଂ ଚ ଦଦ୍ୟାତ୍ । (ଉପରୋକ୍ତ ମନ୍ତ୍ରପଢ଼ି ଷୋଳ ଉପଚାର ବା ଦଶ ଉପଚାର କିମ୍ବା ପାଞ୍ଚ ଉପଚାରରେ ଅଧିଦୈବତ ପ୍ରତ୍ୟଧିଦୈବତ ସହିତ ରବିମହାଗ୍ରହଙ୍କୁ ପୂଜା କରିବ । ବଳି ଓଷଧି ଓ ପାତାକା ପ୍ରଭୃତି ଦେବ) । (୬୨ ନମ୍ବର ଇତ୍ୟାଦି ବିବରଣ ଦେଖ) ।

## ଚନ୍ଦ୍ରମହାଗ୍ରହପୂଜା

ମଣ୍ଡଳସ୍ୟାଗ୍ନେୟେ ଚନ୍ଦ୍ରଂ ପୂଜୟେତ୍ । ଶୁକ୍ଲପୁଷ୍ପାକ୍ଷତଂ ଗୃହୀତ୍ୱ । ଆବାହୟାମୀତ୍ୟାଦି ମନ୍ତ୍ରେଣ ସାଧିଦୈବତପ୍ରତ୍ୟଧିଦୈବତ ଚନ୍ଦ୍ରମହାଗ୍ରହସ୍ୟ ଜୀବମାବାହୟେତ୍ । ତଦ୍ୟଥା- କୁଶଂ ଗୃହୀତ୍ୱାଂ ଓଁ ଆଂ ହ୍ରୀଂ କ୍ରୋଂ ଯଂ



ରଂ ଳଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତ ଚନ୍ଦ୍ର ମହାଗ୍ରହସ୍ୟ ପ୍ରାଣା ଇହ ପ୍ରାଣାଃ ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତ ଚନ୍ଦ୍ର ମହାଗ୍ରହସ୍ୟ ଜୀବଇହ ସ୍ଥିତଃ ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତଚନ୍ଦ୍ରମହଗ୍ରହସ୍ୟ ସର୍ବେନ୍ଦ୍ରିୟାଣି ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହୌଂ ହଂ ସଃ ସାଧିଦୈବତପ୍ରତ୍ୟଧିଦୈବତ ଚନ୍ଦ୍ର ମହାଗ୍ରହସ୍ୟ ବାଙ୍ମନସ୍ତ୍ୱକ୍‌ଚକ୍ଷୁଃ ଶ୍ରୋତ୍ରଘ୍ରାଣପ୍ରାଣାଃ ପଞ୍ଚବିଂଶତିତତ୍ତ୍ୱାନି ଇହାଗତ୍ୟସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା । ଇତି ପଠିତ୍ୱା କୁଶପ୍ରକ୍ଷେପଃ । ଚନ୍ଦ୍ରଗାୟତ୍ରୀ ଯଥା- ଓଁ ନିଶାକରାୟ ବିଦ୍ମହେ କ୍ଷପାକରାୟ ଧୀମହି ତନ୍ନଶ୍ଚନ୍ଦ୍ରଃ ପ୍ରଚୋଦୟାତ୍ ଓଁ । ଇତି ଗାୟତ୍ରୀମଷ୍ଟବାରଂ ଜପେଦିତି ଜୀବନ୍ୟାସଃ ।

**ବ୍ୟାଖ୍ୟା-** ମଣ୍ଡଳସ୍ଥିତ ପ୍ରତିମା କିମ୍ବା ଗୁଆକୁ କୁଶଦ୍ୱାର ସ୍ପର୍ଶ କରି, ଉପରଲିଖିତ ଜୀବନ୍ୟାସ ମନ୍ତ୍ର ପଢ଼ି ମଣ୍ଡଳ ଉପରେ ସେହି କୁଶକୁ ପକାଇଦେଇ ଉପରଲିଖିତ ଗାୟତ୍ରୀ ମନ୍ତ୍ର ଆଠବାର ଜପ କରି ଅଧିଦୈବତପ୍ରତ୍ୟଧିଦୈବତ ସହିତ ଚନ୍ଦ୍ରାମହାଗ୍ରହଙ୍କର ଜୀବନ୍ୟାସ କରିବ ।

ଶୁକ୍ଳପୁଷ୍ପାକ୍ଷତଂ ଗୃହୀତ୍ୱା ଓଁ ଭୂର୍ଭୁବଃ ସ୍ୱଃ ଯମୁନାତୀରସଂଜାତଂ ଆତ୍ରେୟସଗୋତ୍ରଂ ଚତୁର୍ଦ୍ଦଶୀଜାତଂ ରୋହିଣୀନକ୍ଷତ୍ରଂ ବୈଶ୍ୟଜାତିଂ ଶୁକ୍ଳବର୍ଣ୍ଣଂ ଆଗ୍ନେୟ୍ୟାଂ ଦିଶି ଅର୍ଦ୍ଧଚନ୍ଦ୍ରାକୃତିମଣ୍ଡଳମଧ୍ୟସ୍ଥଂ ଦ୍ୱିଭୁଜଂ ଗଦାବରଦହସ୍ତଂ ଶୁକ୍ଳଚନ୍ଦନ ଶୁକ୍ଳପୁଷ୍ପ ଶୁକ୍ଳମାଲ୍ୟାମ୍ବରଧରଂ ହେମଭୂଷଣଂ ଦଶାଶ୍ୱରଥବାହନଂ ଉମାଧିଦୈବତଂ ଅପ୍‌ପ୍ରତ୍ୟଧିଦୈବତଂ ପିଙ୍ଗଳନାମାଗ୍ନିଂ ଦକ୍ଷିଣାଭିମୁଖଂ ସୋମଭଟ୍ଟାରକମେବଂ ମନସି ବିଚିନ୍ତ୍ୟ ଆବାହୟେନ୍ମନ୍ତ୍ରେଣ । ତଦ୍‌ଯଥା- ହିଣ୍ଡୀରପିଣ୍ଡସଂକାଶ ଯମୁନାତୀରସମ୍ଭବ । ଆତ୍ରେୟଗୋତ୍ର ଶୀତାଂଶୋ ମଣ୍ଡଳେଽତ୍ରାଗତୋଭବ । ସାଧିଦୈବତ ପ୍ରତ୍ୟଧିଦୈବତସୋମଭଟ୍ଟାରକ ଅତ୍ରାଗଚ୍ଛ । ଇତି ପୁଷ୍ପାକ୍ଷତଂ ଦତ୍ତ୍ୱା ପ୍ରାର୍ଥୟେତ୍ । ତଦ୍‌ଯଥା- ଇହାଗଚ୍ଛ, ଇହତିଷ୍ଠ, ଅତ୍ରାଧିଷ୍ଠାନଂ କୁରୁ, ମମ ପୂଜାଂ ଗୃହାଣ । ଶ୍ୱେତଃ ଶ୍ୱେତାମ୍ବରଧରୋଦଶାଶ୍ୱୋହେମଭୂଷଣଃ । ଗଦାପାଣିର୍ଦ୍ୱିବାହୁସ୍ଥଂ ସର୍ବଦା ବରଦଃ ଶଶୀ । ଇତି ପ୍ରାର୍ଥ୍ୟଆବହାନାଦିଦଶମୁଦ୍ରାଃ । (୧୧୮ ନମ୍ବର ଟିପ୍‌ପଣୀ ଦେଖ) ଦର୍ଶୟିତ୍ୱା ରକ୍ଷ୍ୟାଦିକଂ ସ୍ମରତେ୍ ।

**ବ୍ୟାଖ୍ୟା-** ହସ୍ତରେ ଶୁକ୍ଳପୁଷ୍ପାକ୍ଷତ ଧରି ମନ ମଧ୍ୟରେ ଉପରଲିଖିତ ଧ୍ୟାନ କରି ଆବାହାନ ଓ ପ୍ରାର୍ଥନାମନ୍ତ୍ର ପଢ଼ି ପୁଷ୍ପ ଦେଇ ମଣ୍ଡଳରେ ଆବାହନ



ଓଁ କୁଳିକାୟ ନମଃ । (ଏହା ପଢ଼ି କୁଳିକଙ୍କୁ ପ୍ରାର୍ଥନା କରିବ) ।
ପଦ୍ମଃ ପଦ୍ମାଳୟ ସୌମ୍ୟୋ ରତ୍ନମାଳାବିଭୂଷଣଃ ।
ସଗୋତ୍ରଂ ରକ୍ଷ ମାଂ ନିତ୍ୟଂ ପୂଜାୟା ଗ୍ରହଣଂ କୁରୁ ।
ଓଁ ପଦ୍ମାୟ ନମଃ । (ଏହା ପଢ଼ି ପଦ୍ମାଙ୍କୁ ପ୍ରାର୍ଥନା କରିବ) ।
ମହାପଦ୍ମୋ ମହାମୂର୍ତ୍ତି ରୁଦ୍ରମସ୍ତକଭୂଷଣଃ ।
ଗୃହାଣ କୃପୟା ପୂଜାଂ ବରଦଃ ଶୁଭଦୋଭବ ।
ଓଁ ମହାପଦ୍ମାୟ ନମଃ । (ଏହା ପଢ଼ି ମହାପଦ୍ମଙ୍କୁ ପ୍ରାର୍ଥନା କରିବ) ।

ତତୋ ନୈବେଦ୍ୟଂ କ୍ରମୂକଂ ଚ ଗର୍ତ୍ତେକ୍ଷିପ୍ତାବେଣୁଦଣ୍ଡଦ୍ୱୟଂ ଯୂପଂ ବା ହସ୍ତେଗୃହୀତ୍ୱା ଗନ୍ଧପୁଷ୍ପେ ଦତ୍ତ୍ୱା କଳସଂ ସ୍ପୃଷ୍ଟ୍ୱା ପ୍ରୋତୟେନନ୍ତ୍ରେଣ ।

ବ୍ୟାଖ୍ୟା- ଅନନ୍ତର ନୈବେଦ୍ୟ ଓ ଗୁଆକୁ ସେହି ଗର୍ତ୍ତରେ ପକାଇବ । ତତ୍ପରେ ଦୁଇଗୋଟି ବାଂଶଦଣ୍ଡ ଅଥବା ଯୂପହସ୍ତରେ ଧରି ତହିଁରେ ଗନ୍ଧପୁଷ୍ପ ଦେଇ କଳସକୁ ସ୍ପର୍ଶ କରି ତଳଲିଖିତ ମନ୍ତ୍ର ପଢ଼ି ସେହି ଗର୍ତ୍ତରେ ପୋତିବ ।

## ୨୩୭- ଯୂପ ପ୍ରମାଣ

ଚତୁର୍ହସ୍ତୋ ଭବେଦ୍ୟୁପୋ ଯଜ୍ଞବୃକ୍ଷସମୁଦ୍ଭବଃ ।
ବର୍ତ୍ତୁଳଃ ଶୋଭନଃ ସ୍ଥୂନଃ କର୍ତ୍ତବ୍ୟୋବୃକ୍ଷମୌଳିକଃ ।
ବିଲ୍ୱଶ୍ଚ ବକୁଳଶ୍ଚୈବ କଲୌ ଯୂପଃ ପ୍ରଶସ୍ୟତେ । (ଭବିଷ୍ୟେ)

ବ୍ୟାଖ୍ୟା- ଯଜ୍ଞବୃକ୍ଷର କାଷ୍ଠରେ ଚାରିହାତ ଲମ୍ବ, ବର୍ତ୍ତୁଳାକାର ମୋଟ ସୁନ୍ଦର ଗୋଟିଏ ଯୂପ (ଦଣ୍ଡ) କରିବ । ତାହାର ମସ୍ତକରେ ଗୋଟିଏ ବୃକ୍ଷର ରୂପ ନିର୍ମାଣ କରିବ । ଏହି ରୂପ ଦଣ୍ଡକୁ ଯୁପ କହନ୍ତି । କଳିଯୁଗରେ ବିଲ୍ୱ ବା ବଉଳକାଠର ଯୂପ ପ୍ରଶସ୍ତ ।

## ୨୩୮- ଯୂପ ବା ବାଂଶଦଣ୍ଡ ପୋତିବା ମନ୍ତ୍ର

ଓଁ ସ୍ଥିରୋଭବ ବିଡ଼ବଙ୍ଗ ଆଶୁର୍ଭବ ବାଜ୍ୟର୍ବନ୍ । ପୃଥୁର୍ଭବ ସୁଖଦସ୍ତମଗ୍ନେଃ । ଇତି ନିକ୍ଷିପେତ୍ । ଏହା ପଢ଼ି ଗର୍ତ୍ତରେ ପୋତିବ) ।

ପୁରୀଷବା ହଣଃ । ଇତି ମୃତ୍ତିକାଭିଃ ସ୍ଥିରୀକରଣଂ ।
(ଏହା କହି ତାହାର ମୂଳରେ ମାଟିଦେଇ ସ୍ଥିର କରିବ) ।
ତତୋ ଯୂପମୂଳେ * ପଞ୍ଚବ୍ରୀହିପ୍ରକ୍ଷେପଣମନେନ ମନ୍ତ୍ରେଣ ।

---

* ୨୩୮- ସପ୍ତବ୍ରୀହି, ପଞ୍ଚଶସ୍ୟ ଓ ପଞ୍ଚଧାନ୍ୟର ପ୍ରମାଣ-

ଧାନ୍ୟଂମୁଦ୍ଗୋ ଯବୋମାଷୋ ଗୋଧୂମଃକୋଦ୍ରବସ୍ତିଳାଃ । ଏତାନି ସପ୍ତଦ୍ରବ୍ୟାଣି ବ୍ରୀହିରିତ୍ୟୁଚ୍ୟତେ ବୁଧୈଃ । ସର୍ଷପଧାନ୍ୟମୁଦ୍ଗଯବତିଳାନି ପଞ୍ଚଧାନ୍ୟାନି ।

(ଏହା ଉତ୍ତାରୁ ସେହି ଯୂପମୂଳରେ ତଳଲିଖିତ ମନ୍ତ୍ର ପଢ଼ି ପଞ୍ଚଶସ୍ୟ ପକାଇବ) ।

ମନ୍ତ୍ରୋଯଥା- ଓଁ ବ୍ରୀହୟଶ୍ଚ ମେ ଯବାଶ୍ଚ ମେ ମାସାଶ୍ଚ ମେ ତିଳାଶ୍ଚ ମେ ମୁଦ୍‌ଗାଶ୍ଚ ମେ ଖଲ୍ୱାଶ୍ଚ ମେ ପ୍ରିୟଙ୍ଗବଶ୍ଚ ମେ ଅଣବଶ୍ଚ ମେ ଶ୍ୟାମାକାଶ୍ଚ ମେ ନୀବାରାଶ୍ଚ ମେ ଗୋଧୁମାଶ୍ଚ ମେ ମସୁରାଶ୍ଚ ମେ ଯଜ୍ଞେନ କଳ୍ପନ୍ତାଂ ।

## ୨୩୯- ହରିଦ୍ରାଧିବାସ ବିଧି

ଗନ୍ଧାଧିବାସବତ୍ ହରିଦ୍ରାଧିବାସଃ ।

(ବ୍ୟାଖ୍ୟା- ଭର୍ତ୍ତା ହସ୍ତରେ ହରିଦ୍ରା ଧରି ଗନ୍ଧାଧିବାସ ମନ୍ତ୍ର ପଢ଼ି ସେହି ହରିଦ୍ରାକୁ ଗର୍ଭିଣୀ ଅଙ୍ଗରେ ଲେପନ କରବ) ।

ପୁଣ୍ୟାହବାଚନଂ । ଅଚ୍ଛିଦ୍ରାବଧାରଣଂ । ଆଶୀର୍ଗ୍ରହଣଂ ।

## ୨୪୦- ସୀମାନ୍ତୋନ୍ନୟନ କର୍ମର ବରୁଣପୂଜା

ଅପରେଽହନି କର୍ତ୍ତା ନିତ୍ୟ କର୍ମ୍ମ ସମାପ୍ୟ ବେଦ୍ୟାଂ ବରୁଣପୂଜାଂ କୁର୍ଯ୍ୟାତ୍ ।

(ପରଦିନ କର୍ତ୍ତା ନିତ୍ୟକର୍ମସାରି ବେଦୀ ଉପରେ ବରୁଣପୂଜା କରିବ, ୨୨୦ ନମ୍ବର ଦେଖ) ।

## ୨୪୧- ସୀମନ୍ତୋନ୍ନୟନର ଅନାଦେଶ ପ୍ରାୟଶ୍ଚିତ୍ତ ସଂକଳ୍ପ

ସୀମନ୍ତୋନ୍ନୟନକର୍ମ୍ମକାଳାତିକ୍ରମେଽନାଦେଶ ପ୍ରାୟଶ୍ଚିତ୍ତହୋମସଂକଳ୍ପଃ ।

ତଦ୍‌ଯଥା- ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକସଗୋତ୍ରାୟା ମଦ୍‌ଭାର୍ଯ୍ୟାୟାଅମୁକଦେବ୍ୟାଃସୀମନ୍ତୋନ୍ନୟନ-କର୍ମକାଳାତିକ୍ରମଦୋଷବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତହୋମକର୍ମାହଂ କରିଷ୍ୟେ ।

(ଏହାର ବିଶେଷ ବିଧି ୧୨୫- ୧୨୯ ନମ୍ବର ଦେଖ) ।

## ୨୪୨- ସୀମନ୍ତୋନ୍ନୟନକର୍ମର ଅନାଦେଶ ପ୍ରାୟଶ୍ଚିତ ହୋମ

ପଞ୍ଚଭୂସଂସ୍କାରେଣାଗ୍ନିସ୍ଥାପନଂ । (ଅଗ୍ନିସ୍ଥାପନର କ୍ରମ ୧୪୬ ନମ୍ବର ଦେଖ) ।

ମଙ୍ଗଳନାମାଗ୍ନୟେ ନମଃ, ମଙ୍ଗଳନାମାଗ୍ନିମାଦାହୟାମି ମଙ୍ଗଳନାମାଗ୍ନେଽତ୍ରାଗଚ୍ଛ । "ମଙ୍ଗଳନାମାଗ୍ନୟେନମଃ" ଇତି ମନ୍ତ୍ରେଣ ଆସନାଦିନୈବେଦ୍ୟାନ୍ତଂ ପୂଜୟେତ୍ ।

---

ବ୍ୟାଖ୍ୟା- ଧାନ୍ୟ, ମୁଗ, ଯବ, ବ୍ରୀହି, ଗହମ, କୋଦୁଅ ଓ ତିଳ ଏମାନଙ୍କୁ ସପ୍ତବ୍ରୀହି କହନ୍ତି । ବିଶ୍ୱକୋଷମତରେ ସର୍ଷପ, ଧାନ୍ୟ, ମୁଦ୍‌ଗ, ଯବ ଓ ତିଳ ଏମାନେ ପଞ୍ଚଶସ୍ୟ । ଶବ୍ଦକଳ୍ପଦ୍ରୁମ ମତରେ ବ୍ରୀହି ଅର୍ଥ ଧାନ୍ୟ ।



ବ୍ୟାଖ୍ୟା- କୁଶତ୍ରୟାଦି ପଦାର୍ଥଦ୍ୱାରା ଭୂସଂସ୍କାର କରି ଉପରୋକ୍ତ ମନ୍ତ୍ର ପଢ଼ି ମଙ୍ଗଳ ନାମକ ଅଗ୍ନିକୁ ସ୍ଥାପନ କରି ତାହାଙ୍କୁ ଆସନଠାରୁ ନୈବେଦ୍ୟ ପର୍ଯ୍ୟନ୍ତ ଉପଚାର ଦେଇ ପୂଜା କରିବ ।

ଆଜ୍ୟସ୍ଥାଳୀ, କୁଶାଃ- ୩, ସ୍ରୁବଃ, ସ୍ରୁକ୍, ଏକାସମିତ୍, ଆଜ୍ୟଂ, ଇତ୍ୟାସାଦ୍ୟ ଆଜାସ୍ଥାଲ୍ୟାମାଜ୍ୟନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଜ୍ୱଲତ୍କାଷ୍ଠେନ ପର୍ଯ୍ୟଗ୍ନିକରଣଂ । ପ୍ରଥମକୁଶତ୍ରୟେଣ ସ୍ରୁବସ୍ରୁଚୋଃ ସମ୍ମାର୍ଜନଂ । ଭୂମୌ ନିଧାନଂ । ଆଜ୍ୟୋଦ୍‌ବାସନଂ । ଦ୍ୱିତୀୟକୁଶତ୍ରୟେଣାଜ୍ୟୋତ୍ପବନଂ । ଆଜ୍ୟାବେକ୍ଷଣଂ । ସ୍ରୁବେଣ ସ୍ରୁଚି ଚତୁରାଜ୍ୟ ଗ୍ରହଣଂ । ତଦୂପରି ସବିଦାଧାନଂ । ପୁଣ୍ୟାହବାଚନଂ । ତଦ୍ୟଥା- ପୁଣ୍ୟାହ-୩ ଏବମସ୍ତୁ ବିଜ୍ଞାପୟାମୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂଚ ଶାନ୍ତିର୍ଭବତୁ ଅମୁକସାଗୋତ୍ରେଣ ଶ୍ରୀମତୀ ଅମୁକଦେବାର୍ମ୍ମଣା ମୟା ଅମୁକସଗୋତ୍ରୟା ମଦ୍‌ଭାର୍ଯ୍ୟାୟା ଅମୁକଦେବ୍ୟାଃ ସୀମନ୍ତୋନ୍ନୟନ କର୍ମକାଳାତିକ୍ରମଦୋଷବ୍ୟପୋହନାର୍ଥମନାଦେଶ ପ୍ରାୟଶ୍ଚିତ୍ତହୋମକର୍ମାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହା ଏକାଦଶସ୍ଥା ଫଳଦା ଭବନ୍ତୁ ଶୁଭଂ ଭବନ୍ତୁ । ଉତ୍ତିଷ୍ଠନ୍ ସମିଧମଗ୍ନୌ ପ୍ରକ୍ଷେପଃ । ତୁଷ୍ଣୀଂ ବା ସମିଧାଗ୍ନିଦୁବସ୍ୟତ ଘୃତୈର୍ବୋଧୟତାତିଥିଂ । ଅସ୍ମିନ୍‌ହବ୍ୟା ଜୁହୋତନ ସ୍ୱାହା ଇତି ମନ୍ତ୍ରେଣ । (ତୁନି ହୋଇ କିମ୍ବା ଉପରୋକ୍ତ ମନ୍ତ୍ର ପଢ଼ି ଅଗ୍ନିରେ ସମିଧ ପକାଇବ) ଓଁ ଭୂଃସ୍ୱାହା ଇଦଂ ଭୂବାଃ ଇଦମଗ୍ନୟେ । ପୁନଶ୍ଚତୁ ରାଜ୍ୟଗ୍ରହଣଂ । ଓଁ ଭୂବଃ ସ୍ୱାହା ଇଦଂ ଭୂବଃ ବା ଇଦଂ ବାୟବେ । ପୁନଶ୍ଚତୁ ରାଜ୍ୟଗ୍ରହଣଂ । ଓଁ ସ୍ୱଃ ସ୍ୱାହା ଇଦଂ ସ୍ୱଃ ବା ସୂର୍ଯ୍ୟାୟ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ଭୂର୍ଭୂବଃ ସ୍ୱଃ ସ୍ୱାହା ଇଦଂ ଭୂର୍ଭୂବଃ ସ୍ୱଃ ବା ଇଦମଗ୍ନିବ । ୟୁସୂର୍ଯ୍ୟେଭ୍ୟାଃ । ସ୍ରୁବେଣ ହୋମଃ- ଓଁ ତ୍ୱନ୍ନୋଅଗ୍ନେ- ଇଦମଗ୍ନିବରୁଣ୍ୟାଭ୍ୟାଂ । ଓଁ ସତ୍ୱନ୍ନୋଅଗ୍ନେଇଦଂମଗ୍ନିବରୁଣାଭ୍ୟାଂ ଓଁ ଆୟାଶ୍ଚାଗ୍ନେ- ଇଦମଗ୍ନେୟୋ ଓଁ ଯେତେ ଶତଂ- ଇଦଂ ବରୁଣାୟ ସବିତ୍ରେ ବିଷ୍ଣବେ ବିଶ୍ୱେଭ୍ୟୋ ଦେବଭ୍ୟୋ ମରୁତ୍‌ଭ୍ୟଃ ସ୍ୱର୍କେଭ୍ୟଃ । ଓଁ ଉଦୁତ୍ତମଂ ଇଦଂବରୁଣାୟ । ପୁଣ୍ୟାହବାଚନଂ । ଅଚ୍ଛିଦ୍ରାବଧାରଣଂ । (ଏହି ଅନାଦେଶ ପ୍ରାୟଶ୍ଚିତ୍ତର ବିଶେଷ ବିଧି ୨୨୨ ଓ ୨୨୩ ନମ୍ବର ଦେଖ) ।

## ୨୪୩- ସୀମନ୍ତୋନ୍ନୟନ କର୍ମ ସଂକଳ୍ପ

ଦେଶକାଳବାକ୍ୟାନନ୍ତରଂ- ଅମୁକସଗୋତ୍ରଂ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରାୟା ମଦ୍‌ଭାର୍ଯ୍ୟାୟା ଅମୁକଦେବ୍ୟାଃ ସୀମନ୍ତୋୟନକର୍ମ୍ମାହଂ କରିଷ୍ୟେ । (ଏହାର ବିଶେଷ ବିଧି ୧୨୫- ୧୨୯ ନମ୍ବର ଦେଖ) ।

## ୨୪୪- ସୀମନ୍ତୋନ୍ନୟନକର୍ମର ଆଭ୍ୟୁଦୟିକ ଶ୍ରାଦ୍ଧସଂକଳ୍ପ

ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକସଦେବଶର୍ମ୍ମା ଅମୁକସଗୋତ୍ରୟା ମଦ୍‌ଭାର୍ଯ୍ୟାୟା ଅମୁକଦେବ୍ୟାଃ ସୀମନ୍ତୋନ୍ନୟନକର୍ମଣୋଽଙ୍ଗ ତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍‌ପ୍ରତ୍ୟମ୍ନାୟଦ୍ରବ୍ୟେନ ଅମୁକସଗୋତ୍ରାଣାଂ ଅସ୍ମନ୍ନା ତୃପିତାମହପ୍ରପିତମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖାନାଂ ଅମୁସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧ ପ୍ରମାତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖାନାଂ ଗଣପତିପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶ-ମାତୃଗଣପୂଜାବସୋର୍ଦ୍ଧାରୟୁଷମନ୍ତ୍ରଜପପୂର୍ବକ ଭୋଜ୍ୟଦାନମହଂ କରିଷ୍ୟେ ।

ତତଃପାଠେ ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣାନ୍ ପୂଜୟେତ୍ । କୁଡ୍ୟଭିଗ୍ନାଂବସୋର୍ଦ୍ଧାରଂ ଦଦ୍ୟାତ (ଅଷ୍ଟାଦଶମାତୃଗଣଙ୍କର ମଣ୍ଡଳ ଓ ପୂଜାବିଧି ୬୮- ୬୯ ନମ୍ବର ଦେଖ ଓ ବସୋର୍ଦ୍ଧାରାର ସମୁଦାୟ ବିଧି ୧୩୨ ଠାରୁ ୧୩୪ ନମ୍ବର ପର୍ଯ୍ୟନ୍ତ ଦେଖ) ।

## ୨୪୫- ସୀମାନ୍ତୋନ୍ନୟନର ଭୋଜ୍ୟୋତ୍ସର୍ଗ

ଅଥଭୋଜସର୍ଗଃ । ତଦ୍‌ଯଥା- ଓଁ ବିଷ୍ଣୁର୍ନମଃ ଅଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂ ବିଧିବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରାୟା ମଦ୍‌ଭର୍ଯ୍ୟାୟା ଅମୁକଦେବ୍ୟାଃ ସୀମାନ୍ତୋନ୍ନୟନକର୍ମ୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍‌ପ୍ରତ୍ୟାମ୍ନାୟଦ୍ରବ୍ୟେନ ବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମତ୍ପିତୃପିତମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମ୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଇମାନି ସମ୍ଭୂୟ* ଏକପରିମିତାନି ପ୍ରଜାପତିଦୈବତାନି ଭୋଜ୍ୟାନିତେଭ୍ୟୋ ବ୍ରାହ୍ମଣେଭ୍ୟୋ ଦାତୁ ମହମୁତ୍ସୃଜେ ।

ପ୍ରାର୍ଥନା ଯଥା- ଅନ୍ନେ ପ୍ରତିଷ୍ଠିତାଦେବା ସର୍ବମନ୍ନେ ପ୍ରତିଷ୍ଠିତଂ ।
ତସ୍ମାଦନ୍ନପ୍ରଦାନେନ ପ୍ରିୟତାଂ ମେ ଜନାର୍ଦ୍ଦନ ।

---

* ଇଦଂ ସମ୍ଭୁୟ ଏକ ପରିମିତଂ ପ୍ରଜାପତିଦୈବତମିତି ପାଠାନ୍ତରଂ ।



ଏତଦାଭୋଜ୍ୟଦାନକର୍ମାଚ୍ଛିଦ୍ରମସ୍ତୁ । (ଭୋଜ୍ୟୋତ୍ସର୍ଗର ବିଶେଷ ବିବରଣ ୧୩୫- ୧୩୮ ନମ୍ବର ପର୍ଯ୍ୟନ୍ତ ଦେଖ) ।

## ୨୪୬- ସୀମାନ୍ତୋନ୍ନୟନ କର୍ମାରମ୍ଭ

ତତୋ ଲୌକିକବ୍ୟବହାରେଣ ଜାୟାପତୀ ନବବସ୍ତ୍ରଦ୍ୱୟଂ ପରିଧାୟ କୃତଗ୍ରନ୍ଥିକୋତ୍ତରୀୟବସ୍ତ୍ରଦ୍ୱୟଂ ଚ ପରିବେଷ୍ଟ୍ୟ ଗନ୍ଧପୁଷ୍ପମାଲ୍ୟମୁକୁଟଂ ଚ ଧୃତ୍ୱା ନାରିକେଳଫଳାଦିକଂ ଗୃହୀତ୍ୱା ବହିରାଗତ୍ୟ ବେଦ୍ୟାମଗ୍ନେଃ ପ୍ରତ୍ୟରାବରସ୍ୟ ଦକ୍ଷିଣେ * ସ୍ତ୍ରୀ କୋମଳାସନେ ଉପବିଶତି ।

ବ୍ୟାଖ୍ୟା- ଲୌକିକ ବ୍ୟବହାରରେ ପତି ଓ ପତ୍ନୀ ଦୁହେଁ ଦଶିଥିବା ନୂତନବସ୍ତ୍ର ପିନ୍ଧିବେ ଏବଂ ଦଶିଥିବା ନୂଆ ଉତ୍ତରୀ ଓ ଓଢ଼ଣୀ ଉପରେ ପକାଇ ବରକନ୍ୟା ଉଭୟଙ୍କର କାନିର ଅଗ୍ରଭାଗକୁ ମିଶାଇ ଗଣ୍ଠି ପକାଇବେ । ତପ୍ରରେ ପତି ପତ୍ନୀ ଦୁହେଁ ଚନ୍ଦନ, ମାଲ୍ୟ, ପୁଷ୍ପ ଓ ମୁକୁଟଦ୍ୱାରା ଶୋଭିତ ହୋଇ ହସ୍ତରେ ନାରିକେଳଫଳାଦି ଗ୍ରହଣ କରି ବାହାରୁ ଆସି ବେଦୀ ଉପରେ କୁଣ୍ଡ ବା ସ୍ଥଣ୍ଡିଳର ପଶ୍ଚିମଭାଗରେ ବସିବା ସମୟରେ ପୁରୁଷର ଦକ୍ଷିଣ ଦିଗରେ କୋମଳ ଆସନ ଉପରେ ସ୍ତ୍ରୀ ବସିବ ।

## ୨୪୭- ସୀମନ୍ତୋନ୍ନୟନକର୍ମର ଅଗ୍ନିସ୍ଥାପନ

କୁଶତ୍ରୟାଦିପଞ୍ଚଭୂସଂସ୍କାରଂ କୃତ୍ୱା ମଙ୍ଗଳନାମାଗ୍ନିମାବାହ୍ୟ ଯଥାଶକ୍ତ୍ୟୁପଚାରେଣ ପୂଜୟେତ୍, ଘୃତେନ ବା । (ଅଗ୍ନିସ୍ଥାପନର ସମୁଦାୟ ବିଧି ୧୪୬ ନମ୍ବର ଦେଖ) ।

ତତୋ ବ୍ରହ୍ମାବରଣଂ- ଆସନାଦିକଂ ତଦ୍ୟାତ୍ । ବିଷ୍ଣୁର୍ନମଃ ଅଦ୍ୟେହେତ୍ୟାଦି ସୀମାନ୍ତୋନ୍ନୟନାଙ୍ଗହୋମକର୍ମାଣି କୃତାକୃତାବେକ୍ଷକତ୍ୱେନ ବ୍ରହ୍ମାଣଂ

---

୨୪୬ (ଟି) * ବରର ଦକ୍ଷିଣରେ ସ୍ତ୍ରୀ ଯେଉଁ ୨ କର୍ମରେ ବସିବ ତାହାର ପ୍ରମାଣବାକ୍ୟ- ସୀମନ୍ତେ ଚ ବିବାହେ ଚ ଚତୁର୍ଥ୍ୟାଂ ସହଭୋଜନେ ।

ବ୍ରତେ ଦାନେ ମଖେ ଶ୍ରାଦ୍ଧେ ପତ୍ନୀ ତିଷ୍ଠତି ଦକ୍ଷିଣେ । (ପଦ୍ଧତିକାରଃ)

ବ୍ୟାଖ୍ୟା- ସୀମନ୍ତୋନ୍ନୟନକର୍ମରେ, ବିବାହରେ, ଚତୁର୍ଥୀ କର୍ମରେ ବ୍ରତରେ ଦାନଦେବା ସମୟରେ, ଯଜ୍ଞରେ, ଶ୍ରାଦ୍ଧରେ ଓ ସହଭୋଜନରେ ପୁରୁଷର ଦକ୍ଷିଣଭାଗରେ ସ୍ତ୍ରୀ ବସିବ ।

ତ୍ୱାମହଂ ବୃଣେ । ବୃତୋ- ସ୍ମୀତି ପ୍ରତିତବଦନଂ । ଯଥା ବିହିତଂ କର୍ମ ପଶ୍ୟ ପଶ୍ୟାମୀତି ବ୍ରହ୍ମା ।

ପ୍ରାର୍ଥନା ଯଥା- ସୁରାଣାମସୁରାଣାଂ ତ ଯଜ୍ଞେ ବ୍ରହ୍ମା ଭବେଦ୍ ଯଥା ।
ତଥାହି ମମ ଯଜ୍ଞେଽସ୍ମିନ୍ ବ୍ରହ୍ମା ଭବ ଦ୍ୱିଜୋତ୍ତମ ।

(ଏହି ବ୍ରହ୍ମାବରଣର ସମୁଦାୟ ବିଧି ୧୪୯ ନମ୍ବର ଦେଖ)

## ୨୪୮- ସୀମନ୍ତୋନ୍ନୟନର କୁଶାଣ୍ଡି ଓ ହୋମ

ଦକ୍ଷିଣତୋ ବ୍ରହ୍ମାସନଂ । ଉତ୍ତରେ ପ୍ରଣୀତାପ୍ରଣୟନଂ । ପ୍ରାଚ୍ୟାଦିଚତୁର୍ଦିକ୍ଷୁ କୁଶୈଃ ପରିସ୍ତରଣଂ । ପାତ୍ରାସାଦନଂ । ପବିତ୍ରାଚ୍ଛେଦନାନି କୁଶତ୍ରୟ ବ୍ରହ୍ମଗ୍ରନ୍ଥିନା କୁଶଦ୍ୱିଦଳେ ସୂତ୍ରବେଷ୍ଟିତ ପବିତ୍ରେ ଦ୍ୱେ । ପ୍ରୋକ୍ଷଣିପାତ୍ରଂ । ଆଜ୍ୟସ୍ଥାଲୀ । ଚର୍ବର୍ଥଂ ତିଳତଣ୍ଡୁଳମୁଦ୍‌ଗାଃ । ସମ୍ମାର୍ଜନକୁଶାଃ ୧୦ । ଉପଯମନକୁଶାଃ ୧୩ । ତିସ୍ରଃ ସମିଧଃ । ସ୍ରୁବଃ । ଆଜ୍ୟଂ । ତଣ୍ଡୁଳଃ ପୂର୍ଣ୍ଣପାତ୍ରଂଚ । ଦକ୍ଷିଣା ବରୋବା । (୧୧୫ ନମ୍ବର କୁଶାଣ୍ଡି ବିଧିର ଟିପ୍‌ପଣୀ ଓ ଅର୍ଥସହିତ ଦେଖିଲେ ଜାଣିପାରିବ) ।

* ପାତ୍ରାସାଦନେ ଅୟଂବିଶେଷଃ । (୧) ମୃଦୁପୀଠଂ । (୨) ଯୁଗ୍ମାନ୍ୟୌଦୁମ୍ବରଫଳାନ୍ୟେକସ୍ତବକନିବଦ୍ଧାନି ଅପକ୍ୱାନି ବା (୩) ତ୍ରୀଣି ଦର୍ଭପିଞ୍ଜୁଳାନି । (୪) ତ୍ରେ୍ୟଣୀ ଶଲଲୀ । (୫) ବୀରତରଙ୍କୁଃ । (୬) ପୂର୍ଣ୍ଣସୂତ୍ରତର୍କୁଃ । (୬) ବୀଣାଗାଥିନୌ ଚ ଏତାନ୍ୟସାଦ୍ୟ ।

---

* (୧) କୋମଳାସନ । (୨) ଏକଡ଼େମ୍ଫରେ ଲାଗୁଥିବା ଦୁଇଗୋଟି କଞ୍ଚା ଉଦୁମ୍ବର ଫଳଯୁକ୍ତ ଗୋଟିଏ ଗୁଚ୍ଛ । (ପେଣ୍ଡା) ଅନନ୍ତର୍ଗର୍ଭିଣଂ ସାଗ୍ରଂ କୌଶଂ ଦ୍ୱିଦଳମବେ ଚ ପ୍ରାଦେଶମାତ୍ରଂ ବିଜ୍ଞେୟଂ ପବିତ୍ରଂ ଯୁକ୍ତ କୁତ୍ରଚିତ୍ ॥ ଏତଦେବହି ପିଞ୍ଜୁଲ୍ୟା ଲକ୍ଷଣଂ ସମୁଦାହୃତଂ ॥

ବ୍ୟାଖ୍ୟା- ଗର୍ଭଶୂନ୍ୟ ଅଗ୍ରବିଶିଷ୍ଟ ପ୍ରାଦେଶ ପରିମିତ ଯୋଡ଼ିଏ କୁଶକୁ ପବିତ୍ର ଓ ପିଞ୍ଜୁଳୀ କହନ୍ତି । ଏପରି ତିନିଗୋଟି ଦର୍ଭପିଞ୍ଜୁଳୀ ରଖିବ । (୪) ତ୍ରିଷୁସ୍ଥାନେଷୁଶ୍ୱେତାତ୍ରେ୍ୟଣୀ ଶଲଲୀ । ଶଲଲ୍ୟାଖପକ୍ଷ କଣ୍ଟକ ମିତି ଗଦାଧରଃ । ବ୍ୟାଖ୍ୟା- ତିନିସ୍ଥାନରେ ଧଳାଚିହ୍ନ ଥିବା ଗୋଟିଏ ଝିଙ୍କକାଠି ରଖିବ । (୫) ବୀରତରଶଙ୍କୁ- ଶରଂ, ଇତି ଜୟରାମଃ । ଅଶ୍ୱତ୍‌ଥଶଙ୍କୁଃ- ଶରୈଷିକା ଇତି ହରିହରଃ । ଅଶ୍ୱତ୍‌ଥଶଙ୍କୁରିତ କର୍କଃ । ଖାଦିରଶଙ୍କୁରିତି ଗର୍ଗଃ ।



ପବିତ୍ରଚ୍ଛେଦନୋପରି ପବିତ୍ରଂ ଦତ୍ତ୍ୱା ପ୍ରଦକ୍ଷିଣଂ ବେଷ୍ଟୟିତ୍ୱା ପ୍ରଦେଶମାତ୍ରଂ ପବିତ୍ରଚ୍ଛେଦନଂ କୃତ୍ୱା ପ୍ରୋକ୍ଷଣ୍ୟୁପରି ପବିତ୍ରଂ ସ୍ଥାପୟିତ୍ୱା ପ୍ରଣୀତାଜଳେନ ପ୍ରୋକ୍ଷଣୀଂ ପୁରୟିତ୍ୱା ତଜ୍ଜଳେନାସାଦିତପାତ୍ରାଣାଂ ପ୍ରୋକ୍ଷଣଂ । ଅଗ୍ନିପ୍ରଣୀତୟୋର୍ମଧ୍ୟେ ପ୍ରୋକ୍ଷଣୀନିଧାନଂ । ଆଜ୍ୟସ୍ଥାଲ୍ୟା ମାଜ୍ୟନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଚରୁପାତ୍ରେଷୁମୁଦ୍‌ଗପ୍ରକ୍ଷେପଣଂ କୃତ୍ୱା ଆଜ୍ୟୋତ୍ତରତଃ ଚରୋରଧିଶ୍ରୟଣଂ । ଈଷଚ୍ଛ୍ରତେଷୁ ମୁଦ୍‌ଗେଷୁ ତିଳତଣ୍ଡୁଳ ପ୍ରକ୍ଷେପଃ । ତତଃ ପର୍ଯ୍ୟଗ୍ନିକରଣାଦି ଆଜ୍ୟଭାଗାନ୍ତଂ କୃତ୍ୱା ପୁଣ୍ୟାହବାଚନଂ- ପୁଣ୍ୟାହମିତ୍ୟାଦି- ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମ୍ମଣାମୟା ଅମୁକସଗୋତ୍ରୟା ମଦ୍‌ଭାର୍ଯ୍ୟାୟା ଅମୁକଦେବ୍ୟାଃ ସୀମାନ୍ତୋନ୍ନୟନାଙ୍ଗହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । (୧୫୫ ନମ୍ବର ଦେଖିଲେ ଏହି କୁଶଣ୍ଡିର ଅର୍ଥ ଓ କାର୍ଯ୍ୟ ସବୁ ବୁଝିପାରିବ) ।

ସୀମନ୍ତୋନ୍ନୟନ କର୍ମର ହୋମ ଯଥା-

* ତତଶ୍ଚରୁଣା ହୋମଃ- ଓଁ ପ୍ରଜାପତୟେ ସ୍ୱାହା ଇଦଂ ପ୍ରଜାପତୟେ ଇତି ତ୍ୟାଗଃ । ଓଁ ଆଗ୍ନେୟ ସ୍ୱିଷ୍ଟକୃତେ ସ୍ୱାହା ଇଦମଗ୍ନୟେ ସ୍ୱିଷ୍ଟକୃତେ ଇତି ତ୍ୟାଗଃ । (ଏହି ଉପରୋକ୍ତ ମନ୍ତ୍ର ପଢ଼ି ଚରୁଦ୍ୱାରା ଦୁଇଥର ହୋମ କରିବ) ।

---

ବ୍ୟାଖ୍ୟା- ଜୟରାମଙ୍କ ମତରେ ବିରତରଶଙ୍କୁର ଅର୍ଥ- ଶର; ହରିହରଙ୍କ ମତରେ ବୀରତରଶଙ୍କୁର ଅର୍ଥ- ଅଶ୍ୱତ୍ଥ କାଠରେ ଶଲ୍ୟ ବା କାଣ୍ଡଶର; କର୍କମତରେ କେବଳ ଅଶ୍ୱତଥ କାଠର ଶଲ୍ୟ, ଗର୍ଗଙ୍କମତରେ କେବଳ ଖଦିର କାଠର ଶଲ୍ୟ ରଖିବ (୬) ସୂତାପୂର୍ଣ୍ଣ ତାକୁଡ଼ି । (୭) ବୀଣାବଜାଇ ଗାଇଜାଣୁଥିବା ଦୁଇଜଣ ନିମନ୍ତ୍ରଣ ବ୍ରାହ୍ମଣ ନିମନ୍ତ୍ରଣ କରି ବସାଇବ ।

* ୨୪୮ ସ୍ୱିଷ୍ଟକୃତ୍ ହୋମ ଚରୁହୋମ ବିଚାରଃ । ସ୍ଥାଲୀପାକେନ ପ୍ରଜାପତୟେ ସ୍ୱାହେତି ହୁତ୍ୱା ଇଦଂ ପ୍ରଜାପତୟେ ଇତି ତ୍ୟାଗଂ ବିଧାୟ ସ୍ଥାଲୀପାକେନୋତ୍ତରାର୍ଦ୍ଧାତ୍ ସ୍ୱିଷ୍ଟକୃଦାହୃତିଂ ହୁତ୍ୱା ଇତି ହରିହରଃ ।

ବ୍ୟାଖ୍ୟା- 'ପ୍ରଜାପତୟେ ସ୍ୱାହା' ଏହା କହି ଚରୁର ପୂର୍ବଭାଗରୁ ଚରୁ ନେଇ ଇଦଂ ପ୍ରଜାପତୟେ କହି ଅଗ୍ନିରେ ତ୍ୟାଗ କରିବ । ଏହିପରି ଉତ୍ତରଭାଗରୁ ଚରୁନେଇ ସ୍ୱିଷ୍ଟକୃତ୍ ହୋମ କରିବ ।

ଯସ୍ମିନ୍ କର୍ମଣି ବିହତଶ୍ଚରୁ ସ୍ତତ୍ର ସ୍ୱିଷ୍ଟକୃଦନନ୍ତରଂ ଭୂରାଦିହୋମଃ । ଅନ୍ୟତ୍ର ଭୂରାଦିହୋମାନନ୍ତରଂ ସ୍ୱିଷ୍ଟ କୃଦ୍ଧୋମଃ ଇତି (ପଦ୍ଧତିକାରଃ) ।

ବ୍ୟାଖ୍ୟା- ଯେଉଁ କର୍ମରେ ଚରୁହୋମ କରିବ ସେ କର୍ମରେ ଆଗେ ସ୍ୱିଷ୍ଟିକୃତ୍ ହୋମ କରି ପରେ ଭୂରାଦି ହୋମ କରିବ, କିନ୍ତୁ ଅନ୍ୟ କର୍ମରେ ଭୂରାଦି ହୋମ କଲାପରେ ସ୍ୱିଷ୍ଟକୃତ୍ ହୋମ କରିବ ।

ତତ ଆଜ୍ୟେନ ଭୂରାଦିପ୍ରାଜାପତ୍ୟାନ୍ତା ନବାହୁତ୍ୟଃ । ଯଥା- ଓଁ ଭୂଃ ସ୍ୱାହା ଇଦଂ ଭୂଃ । ଓଁ ଭୂବଃ ସ୍ୱାହା ଇଦଂ ଭୂବଃ । ଓଁ ସ୍ୱଃ ସ୍ୱାହା ଇଦଂ ସ୍ୱଃ । ଓଁ ତ୍ୱନ୍ନୋଅଗ୍ନେ....ଇଦମଗ୍ନୀ ବରୁଣାଭ୍ୟାଂ । ଓଁ ସତ୍ୱନ୍ନୋଅଗ୍ନେ.. ଇଦମଗ୍ନୀବରୁଣାଭ୍ୟା । ଓଁ ଆୟାଶ୍ଚାଗ୍ନେ... ଇଦମଗ୍ନେୟେ । ଓଁ ଯେତେ ଶତଂ ...ଇଦଂ ବରୁଣାୟ ସବିତ୍ରେ ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋ ମରୁଭ୍ୟଃ ସ୍ୱର୍କେଭ୍ୟଃ । ଓଁ ଉଦୁତ୍ତମଂ...ଇଦଂ ବରୁଣାୟ । ଓଁ ପ୍ରଜାପତେୟ ସ୍ୱାହା ଇଦଂ ପ୍ରଜାପତୟେ (ସମ୍ପୂର୍ଣ୍ଣ ମନ୍ତ୍ର ୨୨୩ ନମ୍ବର ଦେଖ) ।

(ଶ୍ରୁବଦ୍ୱାରା ଏହି ନଅକାଣ୍ଡି ମନ୍ତ୍ର ପଢ଼ି ନଅ ଆହୁତି ଦେବ) ।

**ସଂଶ୍ରବପ୍ରାଶନଂ । ମାର୍ଜନଂ । ବ୍ରହ୍ମଣେ ପୂର୍ଣ୍ଣପାତ୍ରଦକ୍ଷିଣାଦାନଂ ।**

**ପ୍ରାଶନମନ୍ତ୍ରୋ ଯଥା-** ଓଁ ଆୟୁଷ୍ମାନଗ୍ନେ ହବିପା ବୃଧାନୋ ଘୃତପ୍ରତୀକୋ ଘୃତୟୋନିରେଧି । ଘୃତଂ ପୀତ୍ୱା ମଧୁଚାରୁ ଗବ୍ୟଂ ପିତେବ ପୁତ୍ର ମଭିରକ୍ଷତାଦିମାଂ ସ୍ୱାହା ।

**ମାର୍ଜନମନ୍ତ୍ରୋ ଯଥା-** ଓଁ ସୁମିତ୍ରିୟାନ ଆପଓଷଧୟଃ ସନ୍ତୁ ଦୁର୍ମିତ୍ରିୟା ସ୍ତସ୍ମୈ ସନ୍ତୁ ଯୋଽସ୍ମାଂ ଦ୍ୱେଷ୍ଟି ୟଂ ଚ ବୟଂ ଦ୍ୱିଷ୍ମଃ ।

**ପୂର୍ଣ୍ଣପାତ୍ର ଦକ୍ଷିଣାବାକ୍ୟଂ ଯଥା-** ଏତତ ସୀମନ୍ତୋନ୍ନୟନାଙ୍ଗହୋମକର୍ମଣଃ ସୁପ୍ରତିଷ୍ଠାର୍ଥ ବ୍ରହ୍ମଣେ ପୂର୍ଣ୍ଣପାତ୍ରଦକ୍ଷିଣାସ୍ତୁଭ୍ୟମହଂ ସଂପଦଦେ ।

**ତତଃ ପୁଣ୍ୟା ହବାଚନଂ-** ପୁଣ୍ୟାହମିତ୍ୟାଦି- ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବ ଶର୍ମଣା ମୟା ଅମୁକଗୋତ୍ରୟା ମଦ୍‌ଭାର୍ଯ୍ୟାୟା ଅମୁକଦେବ୍ୟାଃ ସୀମନ୍ତୋନ୍ନୟନକର୍ମାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣା-ମମୃତଯୋଗୋଽସ୍ତୁ ସର୍ବେଗ୍ରହା ଏକାଦଶସ୍ଥାଃ ଫଳଦା ଭବନ୍ତୁ ।

## ୨୪୯- ସୀମନ୍ତୋନ୍ନୟନ କର୍ମ

ତତୋଭର୍ତ୍ତୁର୍ଦକ୍ଷିଣତୋ ମୃଦୁପୀଠେ ଆସୀନାୟା ଗର୍ଭିଣ୍ୟାଃ ସୀମନ୍ତଂ ତ୍ରେ୍ୟଣ୍ୟାଶଲଲ୍ୟ । ଊର୍ଦ୍ଧ୍ୱଂବିନୟତି ମନ୍ତ୍ରେଣ ଭର୍ତ୍ତା । ତଦ୍‌ୟଥା- ଓଁ ଭୂର୍ବିନୟାମି । ଓଁ ଭୁବଃ ବିନୟାମି । ଓଁ ସ୍ୱଃ ବିନୟାମି । ଇତି ମନ୍ତ୍ରେଣ କେଶାନ ତ୍ରିଭାଗଂ କୃତ୍ୱା ବେଣୀ କରୋତି ।

ଓଁ ଭୂର୍ଭୂବଃସ୍ୱର୍ବିନୟାମୀତି ମନ୍ତ୍ରେଣ ବା ଦ୍ୱିଧା କରୋତି ।



**ବ୍ୟାଖ୍ୟା-** ଭର୍ତ୍ତାର ଦକ୍ଷିଣ ଭାଗରେ କୋମଳ ଆସନ ଉପରେ ବସିଥିବା ଗର୍ଭିଣୀ ସ୍ତ୍ରୀର କେଶକୁ ଭର୍ତ୍ତା ଝିଙ୍କକାଠିଦ୍ୱାରା ଉପରଲିଖିତ ବ୍ୟାହୃତିମନ୍ତ୍ର ପଢ଼ି ଉପରୁ ତଳକୁ ତିନିଭାଗ କରି ଜଟ କରିବ । ଅଥବା ଓଁ ଭୂର୍ଭୁବଃ ସ୍ୱର୍ବିନୟାମି ଏହି ମନ୍ତ୍ରରେ କେଶ ଦୁଇଭାଗ କରିବ ।

ତତଃ ଔଦୁମ୍ବରଫଳାନି ଦର୍ଭପିଞ୍ଜୁଲାନି ବୀରତରଶଙ୍କୁଃ ତ୍ରେ୍ୟଣୀ ଶଲଲୀ ପୂର୍ଣ୍ଣସୁତ୍ରତର୍କୁଃ ସର୍ବମେକୀକୃତ୍ୟ ବେଣ୍ୟାଂ ବଧ୍ନାତି ମନ୍ତ୍ରେଣ ।

**ବ୍ୟାଖ୍ୟା-** ତତ୍ପରେ ଔଦୁମ୍ବରଫଳ, ଦର୍ଭପିଞ୍ଜୁଳ, ଶର, ଝିଙ୍କର କାଠି, ସୂତାଟାକୁଡ଼ି, ଏସମସ୍ତଙ୍କୁ ଏକତ୍ର କରି ନିମ୍ନଲିଖିତ ମନ୍ତ୍ର ପଢ଼ି ବେଣୀରେ ବାନ୍ଧିବ, କିମ୍ବା ବେଣୀ ବାନ୍ଧିଲାବେଳେ ପ୍ରତ୍ୟେକ ଛିଦ୍ରରେ ଏ ପଦାର୍ଥମାନ ଗୋଟିଏ ଗୋଟିଏ ଦିଆଯାଏ, ଏହା ଦେଶ ପ୍ରଚଳିତ ।

**ମନ୍ତ୍ରୋଯଥା-** ଅୟମୁର୍ଜା ବତୋବୃକ୍ଷ ଉର୍ଜୀବ ଫଳିନୀଭବ ।ଇତି ।

ତତୋ ବୀଣାଗାଥିନୌ ରାଜାନଂ ସ୍ୱଂଗାୟେଥାମିତି ପ୍ରୈଷଂ, ଦଦାତି । ତତୋ ବୀଣାଗାଥିନୋ ଅମୁକଶର୍ମ୍ମମହାବୀରୋରାଜା ଇତି ଗାୟତଃ ।

**ବ୍ୟାଖ୍ୟା-** ତତ୍ପରେ ଆସାଦିତ ବୀଣାଗାଥି ବ୍ରାହ୍ମଣଦ୍ୱୟଙ୍କୁ କର୍ତ୍ତା କହିବେ, ତୁମ୍ଭେ ବୀଣା ଧରି ରାଜାଙ୍କର ଗାଥା ଗାନ କର । ସେ ବ୍ରାହ୍ମଣ ଦୁହେଁ ରାଜାଙ୍କ ନାମ ଧରି ଗାଥା(ଗୀତ) ଗାନ କରିବେ ।

**ଗାଥାମନ୍ତ୍ରୋ ଯଥା-** ସୋମ ଏବାନୋ ରାଜେ ମାମାନୁଷୀଃ ପ୍ରଜାଃ । ଅଭିମୁକ୍ତ ଚକ୍ର ଆସୀରଂ ସ୍ତୀରେ ତୁଭ୍ୟାମସୌ ଇତି । ଅଭାବେ ତୁ ସ୍ୱୟଂ ଗାଥାଂ ଚ ଗାୟତି ।

(ବ୍ରାହ୍ମଣ ଅଭାବରେ କର୍ତ୍ତା ନିଜେ ଗାଥାଗାନ କରବ) ।

ଯସ୍ୟା ନଦ୍ୟସ୍ତୀରେ ବାସସ୍ତସ୍ୟା ନାମ ସଂବୁଧ୍ୱା ଗୃହଣୀୟାଦ୍ଧ ଗର୍ଭିଣୀ । ଗଙ୍ଗେ ଯମୁନେ ଇତ୍ୟାଦି । କର୍ମାଙ୍ଗଦଶବ୍ରାହ୍ମଣ ଭୋଜନୋତ୍ସର୍ଗଃ । ତଦ୍ୟଥା- ସୀମାନ୍ତୋନ୍ନୟନକର୍ମ୍ମଣଃ ସୁପ୍ରତିଷ୍ଠାର୍ଥଂ ଇମାନି ଦଶବ୍ରାହ୍ମଣଭୋଜନାନି ପ୍ରଜାପତିଦୈବତାନି ତେଭ୍ୟୋ ବ୍ରାହ୍ମଣେଭ୍ୟୋ ଦାତୁମହ ମୁତ୍ସୃଜେ । ଅନ୍ନେ ପ୍ରତିଷ୍ଠିତା ଇତି ପ୍ରାର୍ଥନା ।

ପବିତ୍ର ପ୍ରତିପତ୍ତିଃ (ଜଳରେ ପବିତ୍ରତ୍ୟାଗ କରିବ) । ପ୍ରଣୀତାବିମୋକଃ । (ପ୍ରଣୀତାକୁବିସର୍ଜ୍ଜନ କରିବ) । ବ୍ରହ୍ମାନ୍ତି ବିସର୍ଜନଂ । ଶାନ୍ତିକରଣଂ ପୁଣ୍ୟାହବାଚନଂ । ଅଚ୍ଛିଦ୍ରାବଧାରଣଂ । ଆଶୀର୍ଗ୍ରହଣଂ ।

ଇତି ସୀମନ୍ତୋନ୍ନୟନକର୍ମ ସମାପ୍ତଂ ।

## ୨୫୦- ଜାତକର୍ମ ବିଚାର

ଶ୍ରୁତ୍ୱା ଜାତଂ ପିତା ପୁତ୍ରଂ ସଚେଳଂ ସ୍ନାନମାଚରେତ୍ । (ମନୁଃ)
ଜନ୍ମନୋଽନନ୍ତରଂ କାର୍ଯ୍ୟଂ ଜାତକର୍ମ ଯଥାବିଧି ।
ଦୈବାଦତୀତକାଳଂ ଚେଦତୀତେ ସୂତକେ ଭବେତ୍ । (ହେମାଦ୍ରୌ)

ବ୍ୟାଖ୍ୟା- ପିତା ପୁତ୍ରର ଜନ୍ମ ହେବା ଶୁଣି ସବସ୍ତ୍ରରେ ସ୍ନାନ କରିବ । ତଦୁତ୍ତାରୁ ଯଥାବିଧି ଜାତକର୍ମ କରିବ । ଦୈବାତ୍ ଯଦି ଜାତକର୍ମର କାଳ ଅତୀତ ହୁଏ ତାହାହେଲେ ସୁତକାଶୌଚ ଉତ୍ତାରୁ ଜାତକର୍ମ କରିବ ।

ମୁଖ୍ୟାଲାଭେ ବିଧିଜ୍ଞେନ ବିଧିଷ୍ଟିନ୍ତ୍ୟଃ ପ୍ରମାଣତଃ ।
ନକ୍ଷତ୍ରତିଥିଲଗ୍ନନାଂ ବିଚାର୍ଯ୍ୟୈବଂ ପୁନଃପୁନଃ ॥ (ବୃହସ୍ପତି)

ବ୍ୟାଖ୍ୟା- ମୁଖ୍ୟକାଳରେ ବ୍ୟାଘାତ ଜନ୍ମିଲେ ଅର୍ଥାତ୍ ଉପଯୁକ୍ତ ସମୟରେ ଜାତକର୍ମ ହୋଇ ନ ପାରିଲେ ବିଜ୍ଞବ୍ୟକ୍ତି, ନକ୍ଷତ୍ର, ତିଥି ଓ ଲଗ୍ନରେ ବିଚାର କରି ଶୁଭଦିନରେ ଜାତକର୍ମ କରିବେ ।

## ୨୫୧- ଜାତକର୍ମର ଆଭ୍ୟୁଦୟିକ ଶ୍ରାଦ୍ଧ ବିଚାର

ପ୍ରାଦୁର୍ଭାବେ ପୁତ୍ରପୁତ୍ର୍ୟୋଃ ଗ୍ରହଣେ ଚନ୍ଦ୍ର ସୂର୍ଯ୍ୟୟୋଃ ।
ସ୍ନାତ୍ୱାନନ୍ତରାମାତ୍ମୀୟାନ୍ ପିତୃଂଶ୍ଚାଦ୍ଧେନ ତର୍ପୟେତ୍ । (କାର୍ଷ୍ଣ୍ୟଜିନଃ)
ଅଚ୍ଛିନ୍ନାଡ୍ୟାଂ କର୍ତ୍ତବ୍ୟଂ ଶ୍ରାଦ୍ଧଂ ସ୍ନାନାଦନନ୍ତରଂ ।
ଆମଦ୍ରବ୍ୟେଣ ତତ୍କାର୍ଯ୍ୟଂ ବଚନାତ୍ତୁ ପ୍ରଜାପତେଃ ।
ହିରଣ୍ୟେନ ଭବେଚ୍ଛାଦ୍ଧମାମଦ୍ରବ୍ୟଂ ଗୃହେ ନ ଚେତ୍ ।
ଇତି ବ୍ୟାସବଚଃ ପ୍ରୋକ୍ତଂ ପକ୍ୱାନ୍ନଂ ସ ନିଷେଧତି ।(ବ୍ୟାସଃ)

ବ୍ୟାଖ୍ୟା- ପୁତ୍ର ଓ କନ୍ୟା ଜାତମାତ୍ରେ ଅର୍ଥାତ୍ ନାଡ଼ୀଚ୍ଛେଦନ ପୂର୍ବରୁ ପିତା ସବସ୍ତ୍ରରେ ସ୍ନାନ କରି ଆତ୍ମୀୟବର୍ଗଙ୍କୁ ସନ୍ତୁଷ୍ଟ କରି ଓ ପିତୃଗଣଙ୍କୁ ଶ୍ରାଦ୍ଧଦ୍ୱାରା ସନ୍ତୁଷ୍ଟ କରିବେ । ଏହିପରି ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ମଧ୍ୟ କରାଯାଏ । ବ୍ୟାସ କହିଅଛନ୍ତି ଜାତକର୍ମରେ ସିଦ୍ଧାନ୍ନଦ୍ୱାରା ଶ୍ରାଦ୍ଧ କରିବ ନାହିଁ । କେବଳ ଆମାନ୍ନ(ତଣ୍ଡୁଳାଦି) ଉତ୍ସର୍ଗ କରିବ । ସେ ସମୟରେ ଘରେ ଆତପତଣ୍ଡୁଳ ନ ଥିଲେ ସୁବର୍ଣ୍ଣରେ ଶ୍ରାଦ୍ଧ କରିବ । ଅର୍ଥାତ୍ ଉତ୍ସର୍ଗ କରିବ ।



## ୨୫୨- ଜାତକର୍ମ କାରିକା

କୃତ୍ୱା ସ୍ଥଣ୍ଡିଳମାଦିତଃ ଶୁଚିଗୃହେ ସଂସ୍ଥାପ୍ୟ ପୂର୍ବେ ଘଟଂ ।
ତତ୍ରେଭାନନପୂର୍ବକଂ ଚ ବିଧିନା ପାଶ୍ୟାଦିକାନ୍ ପୂଜୟେତ୍ ।
କାଳାତିକ୍ରମଦୋଷନାଶକମନାଦେଶଂ ଚ ହୁତ୍ୱା ତତଃ ।
ସଂକଳ୍ପଂ ବିଧିନା କରୋତି ଚ ତତଃ ଶ୍ରାଦ୍ଧଂ ଚ ନାନ୍ଦୀମୁଖଂ ।
ପୁଣ୍ୟାହମୁକ୍ତ୍ୱାଥ କଟେ ନବୀନେ ନବାମ୍ବରା ବୈ ଜନନୀ ସପୁତ୍ରା ।
ବାମେ ଧବସ୍ୟୋପବିଶେଦ୍‌ବିଧାନୈଃ କୁର୍ଯ୍ୟାଛେଚମଧାଜନନଂ ସୁତସ୍ୟ ।
ଆୟୁଷ୍ୟମନ୍ତ୍ରଂ ଜପେତ୍ରିବାରଂ ସୁତସ୍ୟ ଦକ୍ଷଶ୍ରବଣ ପ୍ରଦେଶେ ।
ସଂସ୍ପୃଶ୍ୟ ଦକ୍ଷାଂ ଶମଥାତ୍ମଜସ୍ୟ ବାତ୍ସପ୍ରମନ୍ତ୍ରଂ ପ୍ରଜପେତ୍ପିତା ଚ ।
ଚତୁର୍ଦ୍ଦିକ୍‌ସସ୍ଥାନ ବିପ୍ରାନ୍ ଶିବଦିଶି ଚ ସଂସ୍ଥ ଦ୍ୱିଜବରଂ ।
ବଦେତ୍ ପ୍ରାଣାଦୀନାଂ ମନୁଗଣଯୁତଂ ପ୍ରୈଷବଚନଂ ।
ସ୍ପୃଶେଦ୍‌ବେଦେତ୍ୟୁକ୍ତ୍ୟା ତନୟଜନିଦେଶଂ ଚ ଜନନୀଂ ।
ପ୍ରଜପେ୍ୟଳାସୀତି ସ୍ପୃଶତି ସୁତମଶ୍ମେତି ମନ୍ତୁନା ।
ଦାତୁଂ ଭୋଜ୍ୟାନୁସ୍ପୃଜେଦ୍ ବ୍ରାହ୍ମଣେଭ୍ୟଃ ପୂର୍ଣ୍ଣଂ କର୍ମାଚ୍ଛିଦ୍ରମତ୍ରାବଧାର୍ଯ୍ୟ ।
ଗୃହଣୀୟାତ୍ତାମାଶିଷଂ ମାତୃପୁତ୍ରୌ ଜାତଂ କର୍ମାଚ୍ଛିଦ୍ରମେବଂ ସମାପ୍ତଂ ।
(ଲୋକନାଥଦାସେନ କୃତା)

ବ୍ୟାଖ୍ୟା- ପିତା ପ୍ରଥମରେ ଶୁଦ୍ଧଗୃହରେ ସ୍ଥଣ୍ଡିଳ ନିର୍ମାଣ କରି ତାହାର ପୂର୍ବଦିଗରେ ଘଟସ୍ଥାପନ କରିବ । ସେହି ଘଟରେ ପ୍ରଥମେ ଗଣେଶଙ୍କୁ ପୂଜା କରି ବରୁଣାଦିଙ୍କର ପୂଜା କରିବ । ତତ୍ପରେ କାଳାତିକ୍ରମ ଦୋଷ ନାଶ ନିମିତ୍ତ ଅନାଦେଶ ପ୍ରାୟଶ୍ଚିତ ହୋମ କରି କର୍ମର ସଂକଳ୍ପ, ନାନ୍ଦୀମୁଖ ଶ୍ରାଦ୍ଧ ଓ କର୍ମାରମ୍ଭର ପୁଣ୍ୟାହବାଚନ କରିବ । ତତ୍ପରେ ମାତା ନୂଆଲୁଗା ପିନ୍ଧି ପୁତ୍ରକୁ କୋଳରେ ଧରି ନୂତନ କଟମସିଣା ଉପରେ ପତିର ବାମଭାଗରେ ବସିବ । ତଦନନ୍ତର ମାତା ବିଧିଅନୁସାରେ କୁମାରର ମେଧାଜନନ ନାମକ କର୍ମ କରିବ ଏବଂ ପିତା ପୁତ୍ରର ଦକ୍ଷିଣ କର୍ଣ୍ଣରେ ଆୟୁଷ ମନ୍ତ୍ର ତିନିଥର ଜପି ଓ ଦକ୍ଷିଣସ୍କନ୍ଧକୁ ସ୍ପର୍ଶ କରି ବାତ୍ସପ୍ରମନ୍ତ୍ର ପାଠ କରିବ । ତତ୍ପରେ ଚାରିଦିଗରେ ଚାରିଜଣ ବ୍ରାହ୍ମଣ ଓ ଐଶାନ୍ୟ କୋଣରେ ଜଣେ ବ୍ରାହ୍ମଣ ଏ ରୂପ ପାଞ୍ଚଜଣ ବ୍ରାହ୍ମଣ ବସାଇ "ପ୍ରାଣାଦିମନୁଗଣଯୁକ୍ତପ୍ରୈଷମନ୍ତ୍ର" ପ୍ରଶ୍ନ କରିବ । ତତ୍ପରେ "ବେଦ" ଏହି ମନ୍ତ୍ର ପଢ଼ି ସୁତ ଯେଉଁ ଦେଶରେ ଜନ୍ମ ହୋଇଅଛି ସେହି ଦେଶର ନାମ ଧରି

ଭୂମିସ୍ପର୍ଶ କରିବ ଏବଂ "ଇଳାସି" ମନ୍ତ୍ର ପଢ଼ି ପୁତ୍ରର ଜନନୀକି ସ୍ପର୍ଶ କରିବ ଓଁ "ଅଶ୍ମା" ଏହି ମନ୍ତ୍ର ପଢ଼ି ପୁତ୍ରକୁ ସ୍ପର୍ଶ କରିବ । ତତ୍ପରେ ବ୍ରାହ୍ମଣଭୋଜନଉତ୍ସର୍ଗ କରି କର୍ମର ଅଛିଦ୍ରାବଧାରଣ ଓ ମାତା ପୁତ୍ରଙ୍କର ଆଶୀର୍ବାଦ କରି ଜାତକର୍ମ ସମାପ୍ତ କରିବ ।

## ୨୫୩- ଜାତକର୍ମର ଆରମ୍ଭ

ଶୁଚୌଦେଶେ ସ୍ଥଣ୍ଡିଳଂକୃତ୍ୱା ତତ୍ପୂର୍ବେ କଳସଂ ସ୍ଥାପୟିତ୍ୱା ତତ୍ର ବରୁଣ ପୂଜାଂ କୁର୍ଯ୍ୟାତ୍

(୫୦ ନମ୍ବରରେ ସ୍ଥଣ୍ଡୀଳଂ ନିର୍ମାଣ ବିଧି ଓ ୧୧୮- ୧୨୪ ନମ୍ବରରେ କଳସ ଓ ବରୁଣ ପୂଜା ଦେଖ) । ଜାତକର୍ମର ଅନାଦେଶ ପ୍ରାୟଶ୍ଚିତ ହୋମସଂକଳ୍ପ । ତତ୍ଯଥା- ଦେଶକାଳ ବାକ୍ୟାନନ୍ତରଂ- ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ମମାସ୍ୟ କୁମାରସ୍ୟ ଜାତକର୍ମକାଳତିକ୍ରମଦୋଷ-ବ୍ୟପୋହନାର୍ଥ ମନାଦେଶପ୍ରାୟଶ୍ଚିତ୍ତହୋମକର୍ମ୍ମାହଂ କରିଷ୍ୟେ । (ଏହାର ସମୁଦାୟ ବିଧି ୧୨୫- ୧୨୯ ନମ୍ବର ଦେଖ) ।

## ୨୫୪- ଜାତକର୍ମର ଅଗ୍ନିସ୍ଥାପନ

ଗୃହାଅଭ୍ୟନ୍ତରେ ପଞ୍ଚଭୂସଂସ୍କାରନ୍ କୃତ୍ୱା ପ୍ରଗଲଭନାମାଗ୍ନି ସ୍ଥାପୟେତ୍ । ଓଁ ପ୍ରଗଲଭ ନାମାଗ୍ନୟେ ନମଃ । ପ୍ରଗଲଭ ନାମାଗ୍ନିମାବାହୟାମି ପ୍ରଗଲଭ ନାମାଗ୍ନେଃତ୍ରାଗଚ୍ଛ । ଇତ୍ୟାବାହ୍ୟ ପ୍ରଗଲଭନାମାଗ୍ନୟେ ନମଃ ଇତି ମନ୍ତ୍ରେଣ ଆସାନଦି ନୈବେଦ୍ୟାନ୍ତଂ ପୂଜୟେତ୍ (ଏହାର ସମୁଦାୟ ବିଧି ୧୪୬ନମ୍ବର ଦେଖ) ।

**ଜାତର୍କମର କୁଶାଣ୍ଡି ଯଥା-** ଅଗ୍ନେରୁତ୍ତରତଃ ପାତ୍ରାସାଦନଂ । ତଦ୍ଯଥା- ଆଜ୍ୟସ୍ଥାଳୀ । କୁଶାଃ ୩, ସ୍ରୁବଃ, ସ୍ରୁକ୍, ଏକାସମିତ୍, ଆଜ୍ୟଂ, ଆର୍ଯ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଜ୍ୱଲତ୍କାଷ୍ଠେନ ପର୍ଯ୍ୟଗ୍ନିକରଣଂ । ପ୍ରଥମ କୁଶତ୍ରୟେଣ ସ୍ରୁବସ୍ରୁଚୋଃ ସମ୍ମାର୍ଜନଂ । ଆଜ୍ୟୋବାସନଂ । ଅପର କୁଶତ୍ରୟେଣାଜ୍ୟୋତ୍ପବନଂ । କୁଶନାମାଗ୍ନୌ ପ୍ରକ୍ଷେପଃ । ଆଜ୍ୟାବେକ୍ଷଣଂ । ସ୍ରୁବେଣ ସ୍ରୁଚି ଚତୁରାଜ୍ୟଗ୍ରହଣଂ । ତଦୁପରି ସମିଧମେକାଂ ଦତ୍ୱା ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି- ଅମୁକସଗୋତ୍ରଣ ଶ୍ରୀମତୀ ଅମୁକଦେବଶର୍ମଣା ମୟାମମାସ୍ୟ କୁମାରସ୍ୟ ଜାତକର୍ମକାଳତିକ୍ରମଦୋଷ-ବ୍ୟପୋହନାର୍ଥମନାଦେଶ ପ୍ରାୟଶ୍ଚିତ୍ତହୋମାକର୍ମ୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । ଉତ୍ଥାୟ ତୁଷ୍ଣୀଂ ସମିଧମଗ୍ନୌ



ପ୍ରକ୍ଷିପେତ୍ । ସମିଧାଗ୍ନିଂ ଦୁବସ୍ୟତ ଇତି ମନ୍ତ୍ରେଣ ବା । ନାତ୍ର ସଂଶ୍ରବଧାରଣଂ ଓଁ ଭୂଃ ସ୍ୱାହା ଇଦଂ ଭୂଃ ବା ଇଦମଗ୍ନୟେ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ଭୂବଃ ସ୍ୱାହା ଇଦଂ ଭୂବଃ ବା ବାୟବେ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ସ୍ୱଃ ସ୍ୱାହା ଇଦଂ ସ୍ୱଃ ବା ସୂର୍ଯ୍ୟାୟ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ଭୂ ର୍ଭୂ ବଃ ସ୍ୱଃ ସ୍ୱାହା ଇଦଂ ଭୂ ର୍ଭୂ ବଃ ସ୍ୱଃ ବା ଇଦମଗ୍ନିବାୟୁସୂର୍ଯ୍ୟେଭ୍ୟଃ । ସ୍ରୁବେଣ-ଓଁ ତ୍ୱନ୍ନୋଅଗ୍ନେ ଇଦମଗ୍ନିବରୁଣାଭ୍ୟାଂ । ଓଁ ସତ୍ୱନ୍ନୋଅଗ୍ନେ ଇଦମଗ୍ନିବରୁଣାଭ୍ୟାଂ । ଓଁ ଅୟାଶ୍ଚାଗ୍ନେ ଇଦମଗ୍ନୟେ । ଓଁ ଯେତେଶତଂ ଇଦଂ ବରୁଣାୟ ସବିତ୍ରେ ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋମରୁଦଭ୍ୟଃ ସ୍ୱର୍କେଭ୍ୟଃ । ଓଁ ଉଦୁତ୍ତମଂ ଇଦଂ ବରୁଣାୟ । ଏତାନବାହୁତୟୋଽନାଦେଶସଂଜ୍ଞକାଃ । କାଳତିକ୍ରମେ ଏତତ୍ ପ୍ରାୟଶ୍ଚିତ୍ତଂ କୁର୍ଯ୍ୟାତ୍ । (ଏହି କୁଶାଣ୍ଡି ଓ ଅନାଦେଶ ପ୍ରାୟଶ୍ଚିତ୍ତ ହୋମ ଅର୍ଥସହିତ ସମୁଦାୟ ବିଧି ୨୨୩ ନମ୍ବର ଦେଖ) ।

ତତଃପୁଣ୍ୟାହବାଚନଂ- ପୁଣ୍ୟାହମିତ୍ୟାଦି- ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକ ଦେବାଶର୍ମଣା ମୟା- ମମାସ୍ୟ କୁମାରସ୍ୟ ଜାତକର୍ମ୍ମକାଳତିକ୍ରମ-ଦୋଷବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତହୋମକର୍ମ ଯତ୍କୃତଂ ତତ୍ସୁକୃତମସ୍ତୁ ଯନ୍ନ୍ୟୁନମିତ୍ୟାଦି ।

## ୨୫୫- ଜାତକର୍ମର କର୍ମାଙ୍ଗ ସଂକଳ୍ପ *

ଦେଶକାଳବାକ୍ୟାନନ୍ତରଂ- ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମାମମାସ୍ୟ କୁମାରସ୍ୟ ଜାତକର୍ମ୍ମାହଂ କରିଷ୍ୟେ । ଅସ୍ମିନ୍ନିତି । ସଂକଳ୍ପ ସୂକ୍ତଂ ପଠେତ୍ । (ଏହାର ବିଧି ୧୨୫- ୧୨୯ ନମ୍ବର ଦେଖ) ।

## ୨୫୬- ଜାତକର୍ମର ଆଭ୍ୟୁଦୟିକ ଶ୍ରାଦ୍ଧସଂକଳ୍ପ

ଦେଶକାଳବାକ୍ୟାନନ୍ତରଂ- ଅମୁକସଗୋତ୍ରଂ ଶ୍ରୀମାନ୍ ଅମୁକଦେବଶର୍ମ୍ମା ମମାସ୍ୟ କୁମାରସ୍ୟ ଜାତକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କାରଣାଶକ୍ତେତ୍ତପ୍ରତ୍ୟାମ୍ନାୟଦ୍ରବ୍ୟେନ ଅମୁକସଗୋତ୍ରାଣାମସ୍ମନ୍ମାତୃପିତାମହୀ

---

*୨୨୫- ସୂତକାଶୌଚରେ ପୂର୍ବ ସଂକଳ୍ପିତ କର୍ମ ବନ୍ଦ ନ ହେବାର ବାକ୍ୟ-

ଯଜ୍ଞୋତ୍ସବେ ବ୍ରତେ ଶ୍ରାଦ୍ଧେ ସୂତକେ ସମୁପାଗତେ ।
ପୂର୍ବସଂକଳ୍ପିତଂ କର୍ମ ନ ଦୁଷ୍ୟଂ ମନୁରବ୍ରବୀତ୍ ।

ପ୍ରପିତାମହୀନାଂ ଅମୁକଦେବୀ୩ ନାଂ ନାନ୍ଦୀମୁଖାନାଂ ଅମୁକସ-ଗୋତ୍ରାଣାମସ୍ମପିତୃପିତାମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖାନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ୩ ଶର୍ମ୍ମଣାଂ ନାନ୍ଦୀମୁଖାନାଂ ଗଣପତି ପୂରଃସରଗୌର୍ଯ୍ୟାଦ୍ୟଷ୍ଟାଦଶ-ମାତୃଗଣପୂଜାବସୋର୍ଦ୍ଧାରାୟୁଷ୍ୟମନ୍ତ୍ରଜପପୂର୍ବକଭୋଜ୍ୟଦାନମହଂ କରିଷ୍ୟେ । ଅସ୍ମିନ୍ନିତି ।

## ୨୫୭- ଜାତକର୍ମର ଅଷ୍ଟାଦଶମାତୃଗଣ ପୂଜା

ତତୋଽକ୍ଷତପୁଞ୍ଜେଷୁ ହରିଦ୍ରାଚୂର୍ଣ୍ଣେନା ମଣ୍ଡଳଂ କୃତ୍ୱା ମାତୃଗଣାନ ପୂଜୟେତ୍ । ତଦ୍‌ଯଥା- ଓଁ ଭୂର୍ଭୁବଃସ୍ୱଃ ଗଣପତିପୁରଃସରଗୌର୍ଯ୍ୟା-ଦ୍ୟଷ୍ଟାଦଶମାତୃଗଣେଭ୍ୟ ଆସନାଦିକଂ ଦତ୍ତ୍ୱା ସ୍ୱନାମ ଚତୁର୍ଥ୍ୟନ୍ତେନ ପୂଜୟେତ୍ । (ଏହାର ବିଶେଷ ବିଧି ୧୩୧ ନମ୍ବର ଦେଖ) ।

## ୨୫୮- ଜାତକର୍ମର ବସୋର୍ଦ୍ଧାରା ଦାନ ବିଧି

ତତଃ କୁଡ୍ୟଲଗ୍ନାଂ ଘୃତେନ ପଞ୍ଚ ବା ସପ୍ତ ବସୋର୍ଦ୍ଧାରାଂ ଦଦ୍ୟାତ୍ ବସୋଃ ପବିତ୍ର ମସୀତି ମନ୍ତ୍ରେଣ । କଶ୍ୟପସ୍ୟେତି ମନ୍ତ୍ରେଣ ସିନ୍ଦୂରାଦିନା ମଣ୍ଡୟେତ୍ । ଏହାର ସମୁଦାୟ ବିଧି ୧୩୨ ଠାରୁ ୧୩୪ ନମ୍ବର ପର୍ଯ୍ୟନ୍ତ ଦେଖ) ।

## ୨୫୯- ଜାତକର୍ମର ଆଭ୍ୟୁଦୟିକ ଶ୍ରାଦ୍ଧ ବିଧି

ହିରଣ୍ୟତିଳଯୁକ୍ତାନି ଦଶ ତାମ୍ରପାତ୍ରାଣି ପଂକ୍ତିକ୍ରମେଣ ସ୍ଥାପୟେତ୍ । କୁଶଯବଗନ୍ଧପୁଷ୍ପଜଳାନି ଗୃହୀତ୍ୱା ଅମୁକସଗୋତ୍ରେ ଅସ୍ମନ୍ମାତଃ ଅମୁକଦେବୀ ନାନ୍ଦୀମୁଖୀ ଇଦଂ ସହିରଣ୍ୟତିଳପାତ୍ରଂ ସଦକ୍ଷିଣଂ ତେ ସ୍ୱାହା ଏବଂ ପିତାମହୀପ୍ରପିତାମହ୍ୟୋଃ । ଅସୁକସଗୋତ୍ର ଅସ୍ମତ୍‌ପିତଃ ଅମୁକଦେବଶର୍ମ୍ମାନ୍ନାନ୍ଦୀମୁଖ ଇଦଂ ସହିରଣ୍ୟତିଳପାତ୍ରଂ ସଦକ୍ଷିଣଂ ତେ ସ୍ୱାହା ଏବଂ ପିତାମହପ୍ରପିତାମହୟୋଃ ।

---

* ୨୫୯- (ଟି) ସହିରଣ୍ୟ ତିଳପାତ୍ରରେ ଆଭ୍ୟୁଦୟିକ ଶ୍ରାଦ୍ଧ କରିବାର ପ୍ରମାଣବାକ୍ୟ- ଜାତେ ଶ୍ରାଦ୍ଧେ ନ ଦଦ୍ୟାତ୍ତୁ ପକ୍ୱାନ୍ନଂ ବ୍ରାହ୍ମଣେଷ୍ୱପି ଇତି ହାରିତେନ ତୁ ଅତ୍ରଶ୍ରାଦ୍ଧମାମେନ ହେମ୍ନା ବା କାର୍ଯ୍ୟମିତ୍ୟୁକ୍ତଂ ପୃଥ୍ୱିଚନ୍ଦ୍ରୋଦୟେ । ହେମାଦ୍ରୌତୁ ସହିରଣ୍ୟତିଳଂଦତ୍ତ୍ୱା ପିତୃଭ୍ୟୋ ଜାତକର୍ମାଣି ।

ବ୍ୟାଖ୍ୟା- ଜାତକର୍ମରେ ସିଦ୍ଧାନ୍ନଦ୍ୱାରା ଆଭ୍ୟୁଦୟିକ ଶ୍ରାଦ୍ଧ କରିବ ନାହିଁ । ଆମାନ୍ନ (ଅରୁଆ ଚାଉଳ) ରେ ଶ୍ରାଦ୍ଧ କରିବ, ନଚେତ୍ ସହିରଣ୍ୟ ତିଳପାତ୍ର ଉତ୍ସର୍ଗ କରିବ ।



ଅମୁକସଗୋତ୍ର ଅସ୍ମନମାତାମହ ନାନ୍ଦୀମୁଖ ଇଦଂ ସହିରଣ୍ୟତିଳପାତ୍ରଂ ସଦକ୍ଷିଣଂ ତେ ସ୍ୱାହା ଏବଂ ପ୍ରମାତାମହବୃଦ୍ଧପ୍ରମାତାମହୟୋଃ । ଓଁ ପ୍ରଜାପତେ ଇଦଂ ସହିରଣଂ ତିଳପାତ୍ରଂ ସଦକ୍ଷିଣଂ ତେ ସ୍ୱାହା । ଇତି ଦଶହିରଣ୍ୟତିଳପାତ୍ରାଣି ଦଶବ୍ରାହ୍ମଣେଭ୍ୟୋ ଦଦ୍ୟାତ୍ । କାଳତିକ୍ରମେଽପି ଜାତକର୍ମ୍ମଣି ସହିରଣ୍ୟତିଳପାତ୍ରମେବ ନତ୍ୱନ୍ନେନ ।

**ବ୍ୟାଖ୍ୟା-** ଦଶଗୋଟି ତାମ୍ରପାତ୍ରରେ ସୁନା, ଖସା ଓ ଦକ୍ଷିଣା ରଖି ତାହାକୁ ପୁରୁଷାନୁକ୍ରମେ ଧାଡ଼ିକରି ରଖିବ ଅର୍ଥାତ୍ ମାତୃ ତିନିପୁରୁଷଙ୍କର ୩, ପିତୃତିନିପୁରୁଷଙ୍କର ୩, ମାତାମହତିନିପୁରୁଷଙ୍କର ୩ ଓ ପ୍ରଜାପତିଙ୍କର ୧ ଏହିପରି ଦଶଗୋଟି ହିରଣ୍ୟତିଳପାତ୍ର ଉପରୋକ୍ତ ବାକ୍ୟପଢ଼ି ଉତ୍ସର୍ଗ କରି ଦଶଗୋଟି ବ୍ରାହ୍ମଣଙ୍କୁ ଦେବ । କାଳତୀତ ହେଲେ ମଧ୍ୟ ଜାତକର୍ମରେ ଏହି ହିରଣ୍ୟତିଳପାତ୍ର ଉତ୍ସର୍ଗ କରିବ । ଅନ୍ୟକର୍ମରେ କରିବ ନାହିଁ; କିନ୍ତୁ ଏହି କର୍ମରେ ସିଦ୍ଧ ହୋଇଥିବା ଅନ୍ନରେ ଆଭ୍ୟୁଦୟିକ ଶ୍ରାଦ୍ଧ କରିବ ନାହିଁ; ଆମାନ୍ନ (ଧୂଆ ଅରୁଆଚାଉଳ) ରେ କରିବ ।

## ୨୬୦- ଜାତକର୍ମ

ଗୃହ୍ୟାଭ୍ୟନ୍ତରେ ନବକଟମାସ୍ତୀର୍ଯ୍ୟ ତଦୁପରି ବସ୍ତ୍ରମାଚ୍ଛାଦ୍ୟ ମାତା କୁମାରମାଦାୟ ପିତୁରୁତ୍ତରତ ଉପବିଶତି ।

**ବ୍ୟାଖ୍ୟା-** ଘରଭିତରେ ନୂତନ ପରୁଡ଼ିମସିଣା ବିଛାଇ ତାହା ଉପରେ ନୂଆ ଲୁଗା ପକାଇ ମାତା ପୁତ୍ରକୁ କୋଳରେ ଧରି ସ୍ୱାମୀର ବାମଭାଗରେ ବସିବ ।

ତତଃ ପିତା ପୁଣ୍ୟାହବାଚନଂ କୁର୍ଯ୍ୟାତ୍- ପୁଣ୍ୟାହମିତ୍ୟାଦି- ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମଣା ମୟା ଅସ୍ୟ କୁମାରସ୍ୟ ଜାତକର୍ମ୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

## *୨୬୧- ମେଧାଜନକ କର୍ମ

ମଧୁଘୃତେ ଏକୀକୃତ୍ୟ ତତ୍ର ସୁବର୍ଣ୍ଣଂ ସଂଘୃଷ୍ୟ ସୁବର୍ଣ୍ଣାନ୍ତର୍ହିତୟା (ସୁବର୍ଣ୍ଣାଚ୍ଛାଦିତୟା) ନାମିକୟା ଅଙ୍ଗୁଲ୍ୟାମଧୁମିଶ୍ରିତଂଘୃତଂ କେବଳଂ ଘୃତଂ ବା କୁମାରଂ ବକ୍ଷ୍ୟମାଣମନ୍ତ୍ରେଣ ପ୍ରାଶୟେତ୍ ।

---

*- ୨୬୧ (୧) କାଳତୀତରେ ମେଧାଜନନାଦି କର୍ମ କରିବାର ପ୍ରମାଣ ବାକ୍ୟ- ଅଛିନ୍ନାୟାଂ ନାଡ଼ିକାୟାଂ ପୁତ୍ରେଜାତେ ଦ୍ୱିଜନ୍ମନଃ । କରୋତି ମେଧାଜନନ ମାୟୁଷ୍ୟକରଣଂ ତତଃ । ଅନୁପ୍ରାଣ ନବାସପ୍ରାଭିମର୍ଶଣାନୁମନ୍ତ୍ରେଣ । କାଳାନ୍ତରେଽପି କୁର୍ବୀତ ଆୟୁଷ୍ୟକରଣଂ ତଥା । କାଳାତ୍ୟୟେନ ତତ୍କାର୍ଯ୍ୟଂ ମେଧାଜନନ କର୍ମଯତ୍ । ସ୍ତନ ପ୍ରକ୍ଷାଳନଂ ମାତୃଃ ସ୍ତନ ଦାନାବିକଂ ଯତ୍ । କଳାତ୍ୟୟେ ପୁନଃ କାର୍ଯ୍ୟମନାଦେଶଂ ଚ ପୂର୍ବବତ୍ ।

**ବ୍ୟାଖ୍ୟା-** ମଧୁ ଓ ଘୃତ ଏ ଦୁହିଁଙ୍କି ଏକତ୍ର କରି ସେଥିରେ ଟିକିଏ ସୁବର୍ଣ୍ଣ ଘସିଦେଇ ଅନାମିକା ଆଙ୍ଗୁଳିରେ ସୁବର୍ଣ୍ଣ ମୁଦ୍ରିକା ଧାରଣକରି ତଦ୍ୱାରା ପିତା ତଳଲିଖିତ ମନ୍ତ୍ର ପଢ଼ି କୁମାରକୁ ସେହି ମିଶ୍ରିତ ମଧୁଘୃତ ଚଟାଇବ ଅଥବା କେବଳ ଘୃତ ଚଟାଇଦେବ ।

**ମନ୍ତ୍ରୋ; ଯଥା-** ଓଁ ଭୂସ୍ତ୍ୱୟିଦଧାମି, ଓଁ ଭୂବସ୍ତୟି ଦଧାମି, ଓଁ ସ୍ୱସ୍ତ୍ୱୟି ଦଧାମି, ଭୂର୍ଭୂବଃ ସ୍ୱଃ ସର୍ବତ୍ୱୟି ଦଧାମିତି ।

## ୨୬୨- ଆୟୁଷ୍ୟକରଣ କର୍ମ

କୁମାରସ୍ୟ ନାଭିସମୀପେ ଦକ୍ଷିଣକର୍ଣ୍ଣସମୀପେ ବା ଆୟୁଷମନ୍ତ୍ରଂ ତ୍ରିବାରଂ ପଠେତ୍ ।

**ବ୍ୟାଖ୍ୟା-** ପିତା ପୁତ୍ରର ନାଭିସମୀପରେ ବା ଦକ୍ଷିଣକର୍ଣ୍ଣସମୀପରେ ତିନିଥର ଆୟୁଷ ମନ୍ତ୍ର ପଢ଼ିବେ ।

**ଆୟୁଷ୍ୟମନ୍ତ୍ରୋ ଯଥା-** ଓଁ ଅଗ୍ନିରାୟୁଷ୍ମାଂସବନସ୍ପତି ଭି ରାୟୁଷ୍ମାଂସ୍ତେନ ତ୍ୱାୟୁଷାୟୁଷ୍ମନ୍ତଂ କରୋମି । ସୋମ ଆୟୁଷ୍ମାଂସଔଷଧି କିରାୟୁଷ୍ମାସ୍ତେନ ତ୍ୱାୟୁସାୟୁଷ୍ମନ୍ତଂ କରୋମି । ବ୍ରହ୍ମାୟୁଷ୍ମତ୍ତଦ୍‌ବ୍ରାହ୍ମଣୈ ରାୟୁସ୍ମତ୍ତେ ନ ତ୍ୱାୟୁଷାୟୁଷ୍ମନ୍ତଂ କରୋମି । ଦେବାଆୟୁଷ୍ମନ୍ତସ୍ତେଽମୃତେନାୟୁଷ୍ମନ୍ତସ୍ତେନ ତ୍ୱାୟୁଷାୟୁଷ୍ମନ୍ତଂ କରୋମି । ଋଷୟ ଆୟୁଷନ୍ତସ୍ତେବ୍ରତୈରାୟୁଷ୍ମନ୍ତସ୍ତେନ ତ୍ୱାୟୁଷାୟୁଷ୍ମନ୍ତଂ କରୋମି । ପିତର ଆୟୁଷ୍ମନ୍ତସ୍ତେ-

---

ବ୍ୟାଖ୍ୟା- ଦ୍ୱିଜାତିମାନେ ପୁତ୍ରର ନାଡ଼ି ଛେଦନ ନହେବା ପୂର୍ବରୁ ମେଧାଜନନ କର୍ମ କରିବେ । କାଳାତିତ ହେଲେ ମେଧାଜନନ, ମାତୃସ୍ତନପ୍ରକ୍ଷାଳନ ଓ ସ୍ତନପାନକର୍ମ କରିବେ ନାହିଁ; କିନ୍ତୁ ଅନୁପ୍ରାଣନ ବାତ୍ସପ୍ରମନ୍ତ୍ରଦ୍ୱାରା ଅଭିମର୍ଷଣ (ସ୍ପର୍ଶ), ଅନୁମନ୍ତ୍ରଣ (ଅଭିମନ୍ତ୍ରଣ), ଆୟୁଷ୍ୟକରଣ ଓ ଅନଦେଶପ୍ରାୟଶ୍ଚିତ୍ତ ହୋମ, ଏହି କର୍ମ ମାନ କରିବେ ।

* ୨୬୧- (୨) କେବଳ ଘୃତପ୍ରାଶନ କରିବାର ପ୍ରମାଣ ବାକ୍ୟ-

ପ୍ରାଶୟେନ ମଧୁନା ସାର୍ଦ୍ଧଂସାଜ୍ୟଂହେମରସଂ ଶୁଭଂ

ଘୃତଂ ବାପ୍ରାଶୟେଦେକଂ 'ଓଁ ଭୂସ୍ତ୍ୱୟି ଦଧାମି ଚ । (କର୍କାଚାର୍ଯ୍ୟଃ)

ବ୍ୟାଖ୍ୟା- ଏହି ଉପରୋକ୍ତ ଚିହ୍ନିତ ପ୍ରତ୍ୟେକ ମନ୍ତ୍ର ପଢ଼ି ଘୃତ ମିଶ୍ରିତ ସ୍ୱର୍ଣ୍ଣ ଘର୍ଷିତ ମଧୁ "ପିଲାମୁଖରେ ତିନିଥର ଦେବ କିମ୍ୱା ଓଁ ଭୂର୍ଭୂବଃ ସ୍ୱଃ ସର୍ବଂତ୍ୱୟ ଦଧାମି"କହି ଘୃତ ଥରେ ମାତ୍ର ପିଲାମୁଖରେ ଦେବ ।



ସ୍ୱଧାବିରାୟୁଷ୍ମନ୍ତସ୍ତେନ ତ୍ୱାୟୁଷ୍ମାୟୁଷ୍ମନ୍ତଂ କରୋମି । ଯଜ୍ଞ ଆୟୁଷ୍ମାଂସ୍ୱଦକ୍ଷିଣାଭିରାୟୁଷ୍ମାଂସ୍ତେନ ତ୍ୱାୟୁଷ୍ମାୟୁଷ୍ମନ୍ତଂ କରୋମି । ସମୁଦ୍ରଆୟୁଷ୍ମଂସ୍ୱସ୍ରବନ୍ତୀଭିରାୟୁଷ୍ମାଂ ସ୍ତେନତ୍ୱାୟୁସାୟୁଷ୍ମନ୍ତଂ କରୋମି । କଶ୍ୟପସ୍ୟ ତ୍ରାୟୁଷ୍ୟ ଯମଦଗ୍ନେ ସ୍ତ୍ର୍ୟାୟୁଷଂ ଯଦ୍ଦେବାନାଂ ତ୍ର୍ୟାୟୁଷଂ ତନ୍ନେସ୍ତୁତ୍ରାୟୁଷଂ । ଇତି ମନ୍ତ୍ରଂତ୍ରିର୍ଜପେତ୍ ।

## ୨୬୩- ବାତ୍ସପ୍ର ମନ୍ତ୍ର

ସଯଦି କାମୟେତ ସର୍ବମାୟୁ ରିୟାତ୍ତଦା କୁମାରସ୍ୟ ଦକ୍ଷିଣାଂ ସଂସ୍ପୃଷ୍ଟ୍ୱା ବାତ୍ସପ୍ରମନ୍ତ୍ରାନ୍ ପଠିତ୍ୱା ଅଭିମୃଷେତ୍ ।

**ବ୍ୟାଖ୍ୟା-** ପିତା ଯଦି ପୁତ୍ରର ପୂର୍ଣ୍ଣାୟୁ ଇଚ୍ଛା କରେ ତେବେ ସେହି ପୁତ୍ରର ଦକ୍ଷିଣସ୍କନ୍ଧ ସ୍ପର୍ଶକରି ତଳ ଲିଖିତ ଏଗାରକାଣ୍ଡି ବାତ୍ସପ୍ରମନ୍ତ୍ର ପଢ଼ିବ । ତଦ୍‌ଯଥା.....

ଓଁ ଦିବସ୍ପରି ପ୍ରଥମମ ଯଜ୍ଞେ ଅଗ୍ନିର ସ୍ମଦ୍ଵିତୀୟଂ ପରିଜାତବେଦାଃ । ତୃତୀୟଯମପସୁ ନୃମଣା ଅଜସ୍ରମିନ୍ଧାନ ଏନଂ ଜରତେ ସ୍ୱାଧୀଃ ।୧। ଓଁ ବିଦ୍ମାତେ ଅଗ୍ନେ ତ୍ରେଧା ତ୍ରୟାଣି ବିଦ୍ମାତେ ଧାମ ବିଭୃତା ପୁରୁତ୍ରା । ବିଦ୍ମାତେ ନାମ ପରମଂ ଗୁହାୟଦ୍‌ବିଦ୍ମାତ୍ ମୁସଂ ଯତଆଯଗନ୍ଥ ।୨। ଓ ସମୁଦ୍ରେ ତ୍ୱା ନୃମଣା ଅପ୍‌ସ୍ୱନ୍ତର୍ନୃଚକ୍ଷାଇଧେ ଦିବୋ ଅଗ୍ନଉଧନ୍ । ତୃତୀୟେ ତ୍ୱାରଜସି ତସ୍ଥିବାଂଙ୍ଗ ସମପାମୁପସ୍ଥେ ମହିଷା ଅବର୍ଦ୍ଧନ୍ ।୩। ଅକ୍ରନ୍ଦଦଗ୍ନି ସ୍ତନୟନ୍ନିବ ଦୌଃକ୍ଷମାରେରିହଦ୍ ବୀରୁଧଃ ସମଞ୍ଜନ୍ । ସଦ୍ୟୋଯଜ୍ଞନୋ ବିହୀମୁଦ୍ଧୋ ଅଖ୍ୟଦ ରୋଦସି ଭାନୁନା ଭାତ୍ୟନ୍ତଃ ।୪। ଶ୍ରୀଣାମୁଦାରୋ ଧରୁଣୋ ରୟିଣାଂ ମନୀଷଣାଂ ପ୍ରାର୍ପଣଃ ସୋମ ଗୋପାଃ । ବସୁଃ ସୁନୁଃ ସହସୋ ଅପ୍‌ସୁ ରାଜା ବିଭାତ୍ୟଗ୍ର ଉଷସାମିଧାନଃ ।୫। ବିଶ୍ୱସ୍ୟକେର୍ତୁଭବନସ୍ୟ ଗର୍ଭ ଆରୋଦସି ଅପୃଣାଜ୍ୟାୟମାନଃ । ବିଡୁଂଚିଦଦ୍ରି ମଭିନପ୍ରାୟଂ ଜନାୟ ଦଗ୍ନି ମୟଜନ୍ତ ପଞ୍ଚ ।୬। ଉଶିକପାବକୋ ଅରତିଂ ସୁମେଦ୍ଧା ମର୍ତ୍ତେଷ୍ୱଗ୍ନି ରମୃତୋ ନିଧାୟି । ଇୟର୍ତ୍ତି ଧୂମ ମରଷମ୍ଭରିଭଦ୍ରୁଚ୍ଛୁକ୍ରେଣ ଶୋଚିଷାଦ୍ୟାମିନକ୍ଷନ୍ ।୭। ଦୃଶାନୋରୁକ୍ମଉର୍ବ୍ୟାବ୍ୟେଦୌଦୁର୍ମର୍ଷ ମାୟୁ ଶ୍ରିୟେରୁଚାନଃ । ଅଗ୍ନିରମୃତୋ ଅଭବଦ୍‌ବୟୋଭୀର୍ଯଦେନଂ ଦୈରଜନୟତ ସୁରେତାଃ ।୮। ଯସ୍ତେ ଅଦ୍ର କୃଣଭଭଦ୍ରଶୋଚେ ପୂପଂଦେବ ଘୃତବନ୍ତମଗ୍ନେ । ପ୍ରତନ୍ନୟ ପ୍ରତରମ୍ବସୋ ଅଚ୍ଛାଭିସୁମ୍ନଂ ଦେବଭକ୍ତଂ ଯବିଷ୍ଠ ।୯। ଆତଂଭଜ ସୌଶ୍ରବ ସେଷ୍ୱଗ୍ନଉକ୍‌ଥଉକ୍‌ଥ ଆଭଜଶସ୍ୟମାନେ । ପ୍ରିୟଃସୂର୍ଯ୍ୟେପ୍ରିୟୋଅଗ୍ନାଭବାତ୍ୟୁଜ୍ଜା ତେଦଭିନଦଦ୍ଭୂଜନିତ୍ୱୈଃ ।୧୦। ତ୍ୱମଗ୍ନେ ଯଜମାନା ଅନୂଦ୍ୟୂନ୍ ବିଶ୍ୱବସୁ ଦଧିରେ ବାର୍ଯ୍ୟାଣି । ତ୍ୱୟାସହ ଦ୍ରବିଣମିଚ୍ଛମାନା ବ୍ରଜଂଗୋମନ୍ତ ମୁଶିଜୋବିବବ୍ରୁଃ ।୧୧। ଇତ୍ୟେକାଦଶର୍ଚ୍ଚୋ ବାତ୍ସପ୍ରମନ୍ତ୍ରାଃ ।

## ୨୬୪- ଅନୁପ୍ରାଣନ

ତତଃ କୁମାରସ୍ୟ ଚତୁର୍ଦ୍ଦିକ୍ଷୁ ଚ ଈଶାନେ ବ୍ରାହ୍ମଣପଞ୍ଚକଂ ସ୍ଥାପୟିତ୍ୱା କୁମାରଭିମୁଖାନ ତାନ୍ ପ୍ରତି ବ୍ରୁୟାତ୍ ।

**ବ୍ୟାଖ୍ୟା-** ତତ୍ପରେ କୁମାରର ଚାରିଦିଗ ଅର୍ଥାତ୍ ପୂର୍ବ, ଦକ୍ଷିଣ, ପଶ୍ଚିମ ଓ ଉତ୍ତରରେ ଚାରିଜଣ ଏବଂ ଈଶାନ କୋଣରେ ଏକ ଜଣ ଏପରି ପାଞ୍ଚ ଜଣ ବ୍ରାହ୍ମଣ ବସାଇ ଏମାନଙ୍କଦ୍ୱାରା କୁମାରକୁ ଅନୁପ୍ରାଣନ (ପଞ୍ଚପ୍ରାଣବାୟୁଦାନ) କରାଇ ଦୀର୍ଘାୟୁ କରାଇବ । ତଦ୍‌ଯଥା-

ଇମମନୁପ୍ରାଣିତ ଇତି ପ୍ରୈଷଃ, ପ୍ରାଣେତି ପୂର୍ବସ୍ଥୋବ୍ରୁୟାତ୍ । ବ୍ୟାନେତି ଦକ୍ଷିଣସ୍ଥ । ଅପାନେତି ପଶ୍ଚିମସ୍ଥଃ । ଉଦାନେତି ଉତ୍ତରସ୍ଥଃ । ସମାନେତି ଈଶନାସ୍ଥଃ ।

**ବ୍ୟାଖ୍ୟା-** ପିତା ସେହି ବ୍ରାହ୍ମଣମାନଙ୍କୁ "ଇମମନୁପ୍ରାଣିତ" ଏହା କହି ପ୍ରୈଷ ଅର୍ଥାତ ୍ପ୍ରେରଣକରି କହିବ କି ତୁମ୍ଭେମାନେ ପୁତ୍ରକୁ ପଞ୍ଚପ୍ରାଣଦାନକରି ଦୀର୍ଘାୟୁ କର । ସେହି ପ୍ରେରିତ ବ୍ରାହ୍ମଣମାନେ କୁମାର ଆଡ଼କୁ ଚାହିଁ କ୍ରମରେ ପ୍ରାଣ, ବ୍ୟାନ, ଅପାନ, ଉଦାନ ଓ ସମାନ ଏହା କହିବେ । ଅର୍ଥାତ୍ ପୂର୍ବସ୍ଥ ବ୍ରାହ୍ମଣ ପ୍ରାଣ ଦକ୍ଷିଣସ୍ଥ ବ୍ରାହ୍ମଣ ବ୍ୟାନ, ପଶ୍ଚିମସ୍ଥଃ ବ୍ରାହ୍ମଣ ଅପାନ, ଉତ୍ତରସ୍ଥ ବ୍ରାହ୍ମଣ ଉଦାନ ଓ ଈଶାନକୋଣସ୍ଥ ବ୍ରାହ୍ମଣ ସମାନ ବୋଲି କହିବେ ।

ଅବିଦ୍ୟମାନେଷ୍ଟୁ ବ୍ରାହ୍ମଣେଷୁ ସ୍ୱୟମେବ ତସ୍ୟାଂ ତସ୍ୟାଂ ଦିଶି କୁମାରଭିମୁଖଂ ସ୍ଥିତ୍ୱା । ପ୍ରାଣେତ୍ୟାଦି ପୂର୍ବୋକ୍ତଂ ବ୍ରୁୟାତ୍ । ସ୍ୱୟଂପକ୍ଷେ ପ୍ରୈଷାଭାବଃ ।

**ବ୍ୟାଖ୍ୟା-** ବ୍ରାହ୍ମଣ ଅଭାବରେ ପିତା ନିଜେ ସେହି ସେହି ଦିଗକୁ ଯାଇ କୁମାର ଆଡ଼କୁ ଚାହିଁ ପୂର୍ବୋକ୍ତ ପ୍ରାଣାଦି କହି ପଞ୍ଚପ୍ରାଣବାୟୁ ଅର୍ପଣ କରିବ । ଆପଣା ପକ୍ଷରେ "ଇମମନୁପ୍ରାଣିତ ଇତି ପ୍ରୈଷଃ" ଏହା କହିବ ନାହିଁ ।

## ୨୬୫- ଜନ୍ମସ୍ଥାନର ଅଭିମନ୍ତ୍ରଣ

ତତଃ କୁମାରୋଯସ୍ମିନଦେଶେ ଜାତଭବତି ତଂ ଦେଶମଭିମନ୍ତ୍ରୟତେ ହସ୍ତେନଂ କୁଶେନ ବା ।

**ବ୍ୟାଖ୍ୟା-** ତତ୍ପରେ ହସ୍ତ ବା କୁଶଦ୍ୱାରା ଭୂମିସ୍ୱର୍ଶକରି କୁମାର ଯେଉଁ ଦେଶରେ ଜାତ ହୋଇଥିବ ସେହି ଦେଶକୁ ତଳଲିଖିତ ମନ୍ତ୍ର ପଢ଼ି ଅଭିମନ୍ତ୍ରଣ କରିବ ।

ମନ୍ତ୍ରୋଯଥା- ଓଁ ବେଦତେ ଭୂମି ହୃଦୟଂ ଦିବି ଚନ୍ଦ୍ରମସି ଶ୍ରିତଂ। ବେଦାହଂ ତନ୍ମଂ ତଦ୍‌ବିଦ୍ୟାତ୍ ପଶ୍ୟେମ ଶରଦଃଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ।

(ଗୃହ୍ୟସୂତ୍ରେ)

## ୨୬୬- କୁମାରର ଅଭିମର୍ଶଣ

ତତଃ କୁମାରଭିମୃଶତି (ସ୍ପୃଶତି) ପିତା ହସ୍ତେନ। (ତପ୍ରରେ ପିତା ତଳ ଲିଖିତ ମନ୍ତ୍ର ପଢ଼ି ହସ୍ତରେ କୁମାରକୁ ସ୍ପର୍ଶ କରିବ)।

ମନ୍ତ୍ରଯଥା- ଓଁ ଅଶ୍ମାଭବଂ ପରଶୁର୍ଭବ ହିରଣ୍ୟମସ୍ତୁତଂ ଭବ। ଆତ୍ମା ବୈପୁତ୍ର ନାମାସି ସା ଜୀବ ଶରଦଃ ଶତଂ।

## ୨୬୭- ମାତାର ଅଭିମନ୍ତ୍ରଣ

ତତଃ କୁମାରସ୍ୟ ମାତରଭିମନ୍ତ୍ରୟତେ। (ତପ୍ରରେ କର୍ତ୍ତା କୁମାରର ମାତା ଆଗରେ ତଳ ଲିଖିତ ମନ୍ତ୍ର ପଢ଼ି ତାହାକୁ ଅଭିମନ୍ତ୍ରିତ କରିବ)।

ମନ୍ତ୍ରୋଯଥା- ଓଁ ଇଡ଼ାସି ମୈତ୍ରାବରୁଣୀ ବୀରେ ବୀରମଜୀଜନଥାଃ। ସା ତ୍ୱଂ ବୀରବତୀ ଭବ ଯାସ୍ମାନ୍ ବୀରବତୋଽକରତ୍।

## ୨୬୮- ନାଡ଼ୀଛେଦନ

ଓଁ ଏଜତୁ ଦଶମାସ୍ୟ ଗର୍ଭୋ ଜରାୟୁନାସହ। ଯଥାୟଂ ବାୟୁରେଜତି ଯଥା ସମୁଦ୍ର ଏଜତି। ଏବାୟଂ ଦଶମାସ୍ୟୋ ଅସ୍ରଜରାୟୁଣା ସହ। ଇତି ମନ୍ତ୍ରେଣ ତୃଷ୍ଣୀଂ ବା ନାଡ଼ିଛେଦନଂ। *

ବ୍ୟାଖ୍ୟା- ଏହି ମନ୍ତ୍ର ପଢ଼ି ଆଠଆଙ୍ଗୁଳି ଛାଡ଼ି କ୍ଷୁର ପ୍ରଭୃତିରେ ନାଡ଼ୀଛେଦନ କରିବ। ଅଥବା ମନ୍ତ୍ର ନ ପଢ଼ି ମଧ୍ୟ ନାଡ଼ୀଛେଦନ କରିବ। କାଳାତୀତରେ ପୀଠ ଉପରେ ଯେ ନାଡ଼ିଛେଦନ କରାଯାଏ ତାହା ମାତା କୁଶଦ୍ୱାରା ଛେଦନ କରେ।

---

୨୬୮ (ଟି)* ନାଡ଼ୀଛେଦନ ବିଚାର- ଅଷ୍ଟାଙ୍ଗୁଳଂ ପରିତ୍ୟଜ୍ୟ ନାଳଂ ଛିନ୍ଦ୍ୟାତ୍ କ୍ଷୁରାଦିନା। ଇତି ଗଦାଧରଃ। ଯାବନ୍ନ ଛିନ୍ଦ୍ୟତେ ନାଳଂ ତାବନ୍ନାପ୍ନୁତି ସୂତକଂ। ଛିନ୍ନେ ନାଳେ ତତଃ ପଶ୍ଚାତେ ସୂତକଂ ତୁ ବିଧିୟତେ। ଇତି୍ ଜୈମିନିଃ।

ବ୍ୟାଖ୍ୟା - ଯେ ପର୍ଯ୍ୟନ୍ତ ନାଭିଛେଦନ ହୋଇନାହିଁ ସେ ପର୍ଯ୍ୟନ୍ତ ସୂତକାଶୌଚ ହୁଏ ନାହିଁ। କିନ୍ତୁ ଛେଦନ ହେଲା ଉତାରୁ ସୂତକାଶୌଚ ବ୍ୟାପେ।

## *୨୬୯- ଦକ୍ଷିଣସ୍ତନପ୍ରକ୍ଷାଳନ ଓ ପାନମନ୍ତ୍ର

ଅଥାସ୍ୟ ପୁତ୍ରସ୍ୟ ମାତୁର୍ଦକ୍ଷିଣସ୍ତନଂ ପ୍ରକ୍ଷାଲ୍ୟ ପିତା କୁମାରାୟ ପ୍ରୟଚ୍ଛତି

ବ୍ୟାଖ୍ୟା-ତତ୍ପରେ ମାତାର ଦକ୍ଷିଣସ୍ତନ ପ୍ରକ୍ଷାଳନ (ଜଳରେ ଧୋଇଦେଇ) କରି ପିତା ସନ୍ତାନକୁ ତଳଲିଖିତ ମନ୍ତ୍ର ପଢ଼ି ସ୍ତନପାନ କରାଇବ ।

ମନ୍ତ୍ରୋଯଥା-ଓଁ ଇମଙ୍ଗଂସ୍ତନ ମୁର୍ଜସ୍ୱନ୍ତଂ ଧୟାପାଂ ପ୍ରପୀନମଗ୍ରେ ସରି ରସ୍ୟ ମଧ୍ୟେ ଉସ୍ଂ ଜୁଷସ୍ୱ ମଧୁମନ୍ତ ମର୍ବଂସ୍ୱମୁଦ୍ରିୟଂ ସଦନାମାବିଶସ୍ୱ । ବାମ ସ୍ତନଂ ପ୍ରକ୍ଷାଲ୍ୟ ପ୍ରୟଚ୍ଛତି ଇମଙ୍ଗଂ ସ୍ତନ ଯସ୍ତେ ସ୍ତନ" ଇତି ଦ୍ୱାଭ୍ୟାଂ ।

ବ୍ୟାଖ୍ୟା-ତତ୍ପରେ "ଇମଙ୍ଗଂସ୍ତନ" ଓ ଯସ୍ତେସ୍ତନ ଏହି ଦୁଇ ମନ୍ତ୍ର ପଢ଼ି ବାମସ୍ତନ ପ୍ରକ୍ଷାଳନ କରି ସନ୍ତାନକୁ ସ୍ତନପାନ କରାଇବ ।

## ୨୭୦-ବାମସ୍ତନପାନ ମନ୍ତ୍ର

ଓଁ ଯସ୍ତେ ସ୍ତନଃ ଶଶୟୋଭୂୟୋ ରନ୍ତଧାବସୁ ବିଦ୍ୟଃ ସୁଦତ୍ତଃ । ଯେନ ବିଶ୍ୱାୟୁଷସି ବାର୍ୟ୍ୟାଣି ସରସ୍ୱତି ତମିହ ଧାତବେକଃ ।

---

*-(୨୬୯ଟି) ଜାତକର୍ମର ଗୃହ୍ୟ ସୂତ୍ରୋକ୍ତ ବିଶେଷ-ଗୃହ୍ୟସୂତ୍ରେ ଅୟଂ ତୁ ବିଶେଷଃ ।

ତଦ୍ୟଥା-(୧) ତତଃ ପ୍ରସବିତ୍ରୀ ଶୟନୀୟ ମସ୍ତକୋପରି ଭୂମୌ ବାରିପୂର୍ଣ୍ଣଭାଜନଂ ନିଦଧ୍ୟାତ୍ । ମନ୍ତ୍ରୋଯଥା-ଓଁ ଆପୋଦେବେଷୁ ଜାଗ୍ରତଯଥା ଦେବେଷୁ ଜାଗ୍ରଥ । ଏବମସ୍ୟାଂ ସୁତିକାୟାଂ ସପୁତ୍ରିକାୟାଂ ଜାଗ୍ରଥ । ଏତତ୍ତୁ ସୂତିକୋତ୍ଥାପନପର୍ଯ୍ୟନ୍ତଂ । ସୂତିକା ଗୃହଦ୍ୱାର-ପ୍ରଦେଶେ ପଞ୍ଚଭୂସଂସ୍କାରାନ୍ କୃତ୍ୱା ସୂତିକାଗ୍ରେରୁପସମାଧାୟ ଉତ୍ଥାନଦିନପର୍ଯ୍ୟନ୍ତଂ ।

ବ୍ୟାଖ୍ୟା-(୧) ପ୍ରସୂତିର ମୁଣ୍ଡଆଡ଼ୁ ଭୂମିରେ ଉପରୋକ୍ତ ମନ୍ତ୍ର ପଢ଼ି କର୍ତ୍ତା ଜଳପୂର୍ଣ୍ଣ ପାତ୍ର ଉଠିଆରି ଦିନ ପର୍ଯ୍ୟନ୍ତ ରଖିବ ଏବଂ ସୂତିକା ଗୃହଦ୍ୱାର ଦେଶରେ ପଞ୍ଚଭୂସଂସ୍କାର କରି ଉଠିଆରି ଦିନ ପର୍ଯ୍ୟନ୍ତ ସୂତିକାଗ୍ନି ସ୍ଥାପନ କରିବ ।

(୨) ପୁତ୍ରମୁଖ ଦର୍ଶନରେ ଦାନ-

ଅତ୍ର ଦଦ୍ୟାତ୍ ସୁବର୍ଣ୍ଣଂ ବା ଭୂମିଂ ଗାଂ ତୁରଗଂ ରଥଂ । ଛତ୍ରଂ ଛାଗଂ ବସ୍ତ୍ରମାଲ୍ୟଂ ଶୟନଂ ଚାସନଂ ଗୃହଂ । ଧାନ୍ୟଂ ଗୁଡ଼ତିଳାନ ସର୍ପିରନ୍ୟଦ୍ ବାସ୍ତୀଗୃହେ ବସୁ । ଆୟାନ୍ତି ପିତରୋଦେବା ଜାତେପୁତ୍ରେ ଗୃହଂ ପ୍ରତି । ତସ୍ମାତ୍ପୁଣ୍ୟମହଃ ପ୍ରୋକ୍ତଂ ଭାରତେ ଚାଦିପର୍ବଣି ।

ବ୍ୟାଖ୍ୟା-ପିତା ପୁତ୍ରର ମୁଖ ଦେଖିଲାକ୍ଷଣି ସୁବର୍ଣ୍ଣ, ଭୂମି, ଗୋରୁ, ଅଶ୍ୱ, ରଥ, ଛତ୍ର, ଛାଗ, ବସ୍ତ୍ର, ମାଲ୍ୟ, ଶଯ୍ୟା, ଆସନ, ଗୃହ ଧାନ୍ୟ, ଗୁଡ଼, ତିଳ ଓ ଘୃତ କିମ୍ବା



କର୍ମାଙ୍ଗଦଶବ୍ରାହ୍ମଣଭୋଜନୋତ୍ସର୍ଗଃ । ତଦ୍‌ଯଥା-ଓଁ ବିଷ୍ଣୁର୍ନମଅଦ୍ୟେହେତ୍ୟାଦି ଅମୁକସଗୋତ୍ରଂ ଶ୍ରୀମାନ୍ ଅମୁକଦେବଶର୍ମା ଅସ୍ୟ କୁମାରସ୍ୟ ଜାତକର୍ମଣଃ ସୁପ୍ରତିଷ୍ଠାର୍ଥଂ ଇମାନି ଦଶପରିମିତାନି ବ୍ରାହ୍ମଣଭୋଜନାନି ପ୍ରଜାପତିଦୈବତାନି ନାନାଗୋତ୍ରେଭ୍ୟୋ ବ୍ରାହ୍ମଣଭ୍ୟୋ ଦାତୁମହମୁସୃଜେ । ଅନ୍ନେ ପ୍ରତିଷ୍ଠିତା ଇତି ପ୍ରାର୍ଥୟେତ୍ । ଅଚ୍ଛିଦ୍ରାବଧାରଣଂ

---

ଘରେ ଆଉ ଯେ କିଛି ଧନ ଥାଏ ଏହା ମଧ୍ୟରୁ ଯାହା ଇଚ୍ଛା ହୁଏ, ତାହା ଦାନ କରିବେ । କାରଣ ପୁତ୍ର ଜାତହେବା ମାତ୍ରେ ପିତୃଗଣ ଗୃହକୁ ଆସନ୍ତି । ଏହି ହେତରୁ ମହାଭାରତ ଆଦିପର୍ବରେ ପୁଣ୍ୟ ଦିବସ ବୋଲି କଥିତ ଅଛି ।

ତସ୍ମିନ୍ନଗ୍ନୌ ସନ୍ଧ୍ୟୟୋଃ ଫଳୀକରଣମିଶ୍ରାନ୍ ସର୍ଷପାନ୍ ପିତା ଅନ୍ୟୋବା ବ୍ରାହ୍ମଣୋନିତ୍ୟଂ ହସ୍ତେନ ଜୁହୋତି ।

ବ୍ୟାଖ୍ୟା-ସୂତିକାଗୃହଦ୍ୱାରା ଦେଶରେ ସ୍ଥାପିତ ହୋଇଥିବା ଅଗ୍ନିରେ ସାୟଂକାଳ ଓ ପ୍ରଭାତକାଳରେ ଖୁଦ ଓ ସୋରିଷ ମିଶାଇ ପିତା ନିଜେ ହୋମ କରିବ କିମ୍ବା ବ୍ରାହ୍ମଣଦ୍ୱାରା କରାଇବ ।

ହୋମମନ୍ତ୍ରୋ ଯଥା-ଓଁ ଶଣ୍ଡାମର୍କା ଉପବୀରଃ ଶୌଣ୍ଡିକେୟ ଉଲୁଖଳଃ । ମଳିମ୍ଳୁଚୋଦ୍ରୋଣାସଶ୍ଚ୍ୟବନୋ ନଶ୍ୟତାଦିତଃ ସ୍ୱାହା । ଇଦମଗ୍ନୟେ ବା ଇଦଂ ଶଣ୍ଡାମର୍କାଭ୍ୟାମୁପବୀରାୟ ମଳିମ୍ଳୁଚାଦ୍ରୋଣେଭ୍ୟଂଶ୍ଚ୍ୟବନାୟ । ଇତିପ୍ରଥମାହୁତି ।

ଆଲିଖନ୍ନ ନିମିଷଃ କିଂବଦନ୍ତ ଉପଶ୍ରୁତିର୍ହର୍ଯ୍ୟକ୍ଷଃ କୁମ୍ଭୀଶତ୍ରୁ ପାତ୍ର ପାଣି ନୃମଣି ହନ୍ତ୍ରୀମୁଖଃ ସର୍ଷପାରୁଣଶ୍ଚ୍ୟବନୋ ନଶ୍ୟତାଚିତ ସ୍ୱାହା । ଇଦମାଲିଖତେ ଅନିମିଷାୟ କିଂବଦଭ୍ୟ ଉପଶ୍ରୁତୟେ ହର୍ଯ୍ୟକ୍ଷାୟ କୁମ୍ଭୀଶତ୍ରବେ ପାତ୍ରପାଣୟେ ନୃମଣୟେ ହସ୍ତିମୁଖାୟ ସର୍ଷପାୟାରୁଣାୟ ।

(୩) ବାଳଗ୍ରହ ନିବାରଣ-

ଯଦି ବାଳଂ କୂରଗ୍ରହ ଉପଦ୍ରବତି ତଦା ତଂ ଜାଲେନ ଉତ୍ତରୀୟେଣ ବା ଆଚ୍ଛାଦ୍ୟ ପିତା ସ୍ୱୋତ୍ସଙ୍ଗେ ସ୍ଥାପୟିତ୍ୱା କୂର୍କୁର ଇତି ଜପତି । ମନ୍ତ୍ରୋଯଥା-କୂର୍କୁରଃ ସୁକୂର୍କୁରଃ କୂର୍କୁରୋବାଳବନ୍ଧନଃ । ଚେଚ୍ଛେଚ୍ଛୁନକୁ ସୃଜ ନମସ୍ତେ ଅସ୍ତୁ ସୀସରୋ ଲପେତାପହ୍ୱରତସ୍ତ୍ୟଂ । ଯତ୍ତେଦେବା ବରମଦଦୂଃ ସତ୍ୱଂ କୁମାରମେବ ବା ବୃଣୀଥାଃ । ଚେଚ୍ଛେଚ୍ଛୁନକ ସୃଜ ନମସ୍ତେ ଅସ୍ତୁ ସୀସରୋ ଲପେତାପହ୍ୱର । ତସ୍ତ୍ୟଂ ଯତ୍ତେସରମା ମାତା ସୀସରଃ ପିତା ଶ୍ୟାମଶବଳୌ ଭ୍ରାତରୌ । ଚେଚ୍ଛେଚ୍ଛୁନକ ସୃଜ ନମସ୍ତେ ଅସ୍ତୁ ସୀସରୋଲପେତାପହ୍ୱରେତ୍ୟଭିମୃଶତି ନ ନାମୟତି ନ ରୁଦତି ନ ହୃଷ୍ୟତି ନ ଗ୍ଲାୟତି ଯତ୍ର ବୟଂ ବଦାମ୍ଭ ଯତ୍ର ଚାଭିମୃଶାମସୀତି ।

ବ୍ୟାଖ୍ୟା-ଯେବେ ଦଶଦିନ ମଧ୍ୟରେ ଜାତପୁତ୍ରକୁ କୂର ବାଳଗ୍ରହମାନେ ଉପଦ୍ରବ କରନ୍ତି ତାହାହେଲେ ପିତା ପୁତ୍ରକୁ ଜାଲ ବା ଉତ୍ତରୀୟଦ୍ୱାରା ଘୋଡ଼ାଇ କୋଳରେ ଧରି ଉପରଲିଖିତ କୂର୍କୁର ମନ୍ତ୍ର ପଢ଼ି ଝାଡ଼ିଦେବ ।

ପୁଣ୍ୟାହମିତ୍ୟାଦି-ମମାସ୍ୟ କୁମାରସ୍ୟ ଜାତକର୍ମ ଯତ୍କୃତଂ ତସ୍ତୁ କୃତମସ୍ତୁ । ଯନ୍ନ୍ୟୂନମିତ୍ୟାଦି ଆଶୀର୍ବାଦାର୍ଥଂ ପୁଣ୍ୟାହବାଚନଂ । ତଦ୍‌ଯଥା-ଜାତକର୍ମ ନିମିତ୍ତଂ ବ୍ରାହ୍ମଣୈରାଶୀର୍ବାଦାରମ୍ଭଃ କ୍ରିୟତେ ଯଦେତ୍ୟାଦି । ମାତୃକୁମାରୟୋରାଶୀର୍ଦାନଂ । ମନ୍ତ୍ରୋ ଯଥାଅଧତ୍ତ ପିତରୋଗର୍ଭଂ କୁମାରଂ ପୁଷ୍କରସ୍ରଜଂ ଯଥେହ ପୁରୁଷୋଽସତ୍ । ଓଁ ଯେନଧାତା ବୃହସ୍ପତେରିନ୍ଦ୍ରସ୍ୟ ଚାୟୁଷେଽବପତ୍ । ତେନ ତେ ବପାମି ବ୍ରହ୍ମଣା ଜୀବାତବେ ଜୀବନାୟ । ଇତି ମନ୍ତ୍ରେଣ ବା ପତ୍ନୀଭିରନୁଗଛେନ୍-ମଦେବାପୁତ୍ରୈର୍ଭର୍ତୃଭିରତବୋ ହିରଣ୍ୟୈଃ । କାକଂ ଗୃଭ୍ଣାନାସୁକୃତସ୍ୟ ଲୋକେ ତୃତୀୟେ ପୃଷ୍ଟେ ଅଧିରୋଚନେ ଦିବି । ଇତି ମନ୍ତ୍ରେଣ ବା ।

ଇତି ଜାତକର୍ମ ସମାପ୍ତଂ ।

---

(୪) **ଷଷ୍ଠୀ ଦେବୀ ପୂଜା**-ପଞ୍ଚମେ ଷଷ୍ଠେ ଚ ଦିବସେ ଷଷ୍ଠ ଏବ ବା ପୂର୍ବରାତ୍ରୌ ପିତା ଦ୍ୱିରାଚମ୍ୟ ପ୍ରାଣନାଯମ୍ୟଦେଶକାଲୌସ୍ମୃତ୍ୱାଅସ୍ୟଶିଶୋରାୟୁ-ରାରୋଗ୍ୟସକଳାରିଷ୍ଟଶାନ୍ତିଦ୍ୱାରା ଶ୍ରୀପରମେଶ୍ୱରପ୍ରୀତ୍ୟର୍ଥଂ । ବିଘ୍ନେଶସ୍ୟ ଜନ୍ମଦାନାଂ ଷଷ୍ଠୀଦେବ୍ୟାଃ ଜୀବନ୍ତିକାୟାଶ୍ଚ ଯଥାମିଳିତୋପଚାରୈଃ ପୂଜନଂ କରିଷ୍ୟ ଇତି ସଂକଳ୍ପ୍ୟ ଷୋଡ଼ଶୋପଚାରୈର୍ମନ୍ତ୍ରେଣ ପୃଥଗ୍ ବା ସଂକଳ୍ପ୍ୟ ପୃଥଗେବ ପୂଜା କାର୍ଯ୍ୟ । ଏତତ୍ ପ୍ରତିମାଶ୍ଚଲେପନାଦିନା କୁଡ୍ୟେ ଲେଖନୀୟାଃ । ପୀଠାଦୌ ବା କ୍ଷତପୁଞ୍ଜରୂପେଣ ନିବେଶ୍ୟାଃ । ପୁରୁଷାଃ ଶସ୍ତ୍ରହସ୍ତାଃସ୍ତ୍ରିୟଶ୍ଚ ନୃତ୍ୟଗୀତକାରିଣ୍ୟୋଽସ୍ୟାଂରାତ୍ରୌଜାଗରଣଂ କୁର୍ଯ୍ୟାଃ । ସୂତିକାଗୃହଂ ଚ ସଧୂମାଗ୍ନିଦୀପଶସ୍ତ୍ରମୁଷଳାମ୍ବୁବିଭୁତିଯୁତଂ କାର୍ଯ୍ୟଂ ସର୍ଷପାଂଶ୍ଚ ସର୍ବତୋଽବକିରେତ୍ । ଅନ୍ୟଦପି ଯଥାଚାରଂ ସର୍ବକାର୍ଯ୍ୟଂ । ଜନ୍ମଦାଭ୍ୟୋଽନ୍ନାଦିନା ବଳିର୍ଦେୟଃ । ବିପ୍ରେଭ୍ୟଶ୍ଚ ତାମ୍ବୁଲଖ୍ୟାଦ୍ୟଦକ୍ଷିଣାଦି ଦଦ୍ୟାଦତି ଜନାନାଶୌଚମଧ୍ୟେ ପ୍ରଥମଷଷ୍ଠ ଦଶମଦିନେଷ୍ବୁ ଦାନେ ପ୍ରତିଗ୍ରହେ ଚ ନ ଦୋଷଃ । ଅନ୍ନଂ ତୁ ନିଷିଦ୍ଧଂ ।

**ଷଷ୍ଠୀ ଦେବୀ ପ୍ରାର୍ଥନା ଯଥା-**

ଗୌରୀପୁତ୍ରୋ ଯଥାସ୍କନ୍ଦଃଶିଶୁତ୍ୱେ ରକ୍ଷିତଃ ପୂରା ।।
ତଥା ମମାପ୍ୟୟଂ ବାଳଃ ଷଷ୍ଠିକେ ରକ୍ଷତାଂ ନମଃ ।।

(୫) **ଜନ୍ମ ଦା ମାତୃଗଣଙ୍କ ବଳିଦାନର ପ୍ରମାଣ ବାକ୍ୟ ଯଥା-** ରକ୍ଷଣୀୟା ତଥା ଷଷ୍ଠୀ ନିଶା ତତ୍ର ବିଶେଷ୍ୟ । ରାତ୍ରୌ ଜାଗରଣଂ କାର୍ଯ୍ୟଂ ଜନ୍ମଦାନାଂ ତଥା ବଳିଃ । ପୁରୁଷାଃ ଶସ୍ତ୍ରହସ୍ତାଶ୍ଚ ନୃତ୍ୟଗୀତାଶ୍ଚ ଯୋଷିତଃ । ରାତ୍ରୌ ଜାଗରଣଂ କୁର୍ଯ୍ୟୁର୍ଦଶମ୍ୟାଂ ଚୈବ ସୁତକେ । (ମାର୍କଣ୍ଡେୟଃ)

(୬) **ଜନନାଶୌଚରେ ଦାନ ପ୍ରତିଗ୍ରହ ବିଚାର-**

ସୂତିକାବାସନିଳୟା ଜନ୍ମଦାନାମଦେବତାଃ ।
ତାସାଂ ଯାଗନିମିତ୍ତଂ ତୁ ଶୁଦ୍ଧିର୍ଜନ୍ମନି କୀର୍ତ୍ତିତା ।

 

## ୨୭୧-ନାମକରଣ ବିଚାର

ଦଶମ୍ୟାମୁତ୍‌ଥାପ୍ୟ ବ୍ରାହ୍ମଣାନ୍ ଭୋଜୟିତ୍ୱା ପିତାନାମ କରୋତି । ଇତି ସୂତ୍ରକାରଃ । ସୁତକାନ୍ତେ ନାମକର୍ମ୍ମ ବିଧେୟଂ ସ୍ୱକୁଳୋଚିତଂ । ଇତି ମଦନରତ୍ନେ ନାରଦୀୟେ ।

**ଯସ୍ୟ ଯାବନ୍ତି ଦିନାନି ସୁତକଂ ତଦନ୍ତଦିନେ କାର୍ଯ୍ୟମିତି ହରିହରଃ**

ବ୍ୟାଖ୍ୟା-ଯାହାର ଯେତେଦିନ ସୁତକ ହୁଏ ସେ ଶୁଦ୍ଧି ହେବା ମାତ୍ରକେ ପିତା କୁଳାଚାର ଅନୁସାରେ ସନ୍ତାନର ନାମକରଣ କରିବ । ଅର୍ଥାତ୍ ବ୍ରାହ୍ମଣର ଏଗାର ଦିନେ; କ୍ଷତ୍ରିୟର ତେରଦିନେ, ବୈଶ୍ୟର ଷୋଳଦିନେ, ଶୂଦ୍ରର ଏକତିରିଶ ଦିନେ ନାମକରଣ କରିବାର ବିଧି ।

ଏକାଦଶେଽହନି ନାମକରଣାଶକ୍ତୌ ସ୍ମୃତ୍ୟନ୍ତରୋକ୍ତ ଦ୍ୱାଦଶାହାଦିକାଳୋଗ୍ରାହ୍ୟଃ । ତଦୁକ୍ତଂ କାରିକାୟାଂ-ମୁଖ୍ୟକାଳେ ଯଦା ନାମଧେୟଂ କର୍ତ୍ତୁଂ ନଶକ୍ୟତେ ।

ବ୍ୟଖା-ମୁଖ୍ୟ ଅର୍ଥାତ୍ ଉପରୋକ୍ତ କାଳରେ ନାମକରଣ କରି ନ ପାରିଲେ ଅନ୍ୟ କୌଣସି ଶୁଭଦିନରେ କରିବ ।

---

ପ୍ରଥମେ ଦିବସେ ଷଷ୍ଠେ ଦଶମେ ଚୈବ ସର୍ବଦା ।
ତ୍ରିଷ୍ୱେତେଷୁ ନ କୁର୍ବୀତ ସୁତକଂ ପୁତ୍ରଜନ୍ମନି ।। (ବ୍ୟାସଃ)

ବ୍ୟାଖ୍ୟା-ପଞ୍ଚମ ବା ଷଷ୍ଠ ଦିବସ ରାତ୍ରିରେ କର୍ତ୍ତା ଆଚମନ ଓ ପ୍ରାଣାୟାମ କରି ପୁତ୍ରର ଆୟୁ ବୃଦ୍ଧି ଓ ସର୍ବାରିଷ୍ଟ ଶାନ୍ତି ନିମିତ୍ତ ସଂକଳ୍ପ କରି ମାତୃଗଣ, ଷଷ୍ଠୀ ଦେବୀ ଓ ଜୀବନ୍ତିକା ଏମାନଙ୍କ ପୂଜା ଏକତ୍ରରେ କରିବ । ପୃଥକ୍ ପୂଜା କଲେ ପୃଥକ୍ ୨ ସଂକଳ୍ପ କରିବ । ମୃତ୍ତିକା ଗୋମୟାଦିଦ୍ୱାରା କାନ୍ଥରେ ଲେପନ କରି ସେମାନଙ୍କ ମୂର୍ତ୍ତି ଲେଖିବ କିମ୍ବା ଅକ୍ଷତ ପୁଞ୍ଜରେ ପୀଠାଦିରେ ସେମାନଙ୍କର ମୂର୍ତ୍ତି ଲେଖିବ । ଶସ୍ତ୍ରଧାରୀ ପୁରୁଷମାନେ ଓ ନୃତ୍ୟ ଗୀତକାରିଣୀ ସ୍ତ୍ରୀମାନେ ନୃତ୍ୟଗୀତାଦି କରି ରାତିଯାକ ଉଜାଗର ରହିବେ । ସୁତିକାଗୃହରେ ଧୂମଯୁକ୍ତ ଅଗ୍ନି, ଦୀପ, ଶସ୍ତ୍ର, ମୂଷଳ, ଜଳ ଓ ଭସ୍ମ ରଖିବ ଏବଂ ଘର ଭିତରେ ଚାରିଆଡ଼େ ସୋରିଷ ବୁଣିଦେବ । ଯାହାର ଯେ କୁଳାଚାର ଅଛି ତାହା ମଧ୍ୟ ସେ କରିବେ । ଜନ୍ମଦାତାମାତୃଗଣମାନଙ୍କୁ ଅନ୍ନାଦି ବଳିଦେବ । ବିପ୍ରମାନଙ୍କୁ ତାମ୍ବୁଳ ଓ ଭୋଜ୍ୟ ଦକ୍ଷିଣା ପ୍ରଭୃତି ଦେବ । ଜନନାଶୌଚ ମଧ୍ୟରେ ପ୍ରଥମ, ଷଷ୍ଠ ଓ ଦଶମଦିନରେ ଦାନ ଓ ପ୍ରତିଗ୍ରହରେ ଦୋଷ ହୁଏ ନାହିଁ । କିନ୍ତୁ ଭୋଜନ ନିଷିଦ୍ଧ ଅବଶେଷରେ ପ୍ରାର୍ଥନାମନ୍ତ୍ର ପଢ଼ି ଷଷ୍ଠୀଦେବୀଙ୍କୁ ପ୍ରାର୍ଥନା କରିବ ।

ଇତି ଷଷ୍ଠୀଦେବୀ ପୂଜା ।

## ୨୭୨-ନାମକରଣ ଶୁଭଦିନ ନିର୍ଣ୍ଣୟ

ମିତ୍ରାଦିତ୍ୟମଘୋତ୍ତରାଶତଭିଷକ ସ୍ୱାତା ଧନିଷ୍ଠାଚ୍ୟୁତ-
ପ୍ରାଜେଶାଶ୍ୱିଶଶାଙ୍କପୌଷ୍ଣଦିନକୃତ୍ ପୁଷ୍ୟେଷୁ ରାଶୌ ସ୍ଥିରେ ।
ଛିଦ୍ରାଂ ପଞ୍ଚଦଶାଂ ବିହାୟ ନବମୀଂ ଶୁଦ୍ଧେଽଷ୍ଟମେ ଭାର୍ଗବ-
ଜ୍ଞାଚାର୍ଯ୍ୟାମୃତପାଦଭାଗଦିବସେ ନାମାନି କୁର୍ଯ୍ୟାଚ୍ଛିଶୋଃ । (ଶ୍ରୀଧରଃ)

ବ୍ୟାଖ୍ୟା-ଅନୁରାଧା, ପୁନର୍ବସୁ, ମଘା, ଉତ୍ତରାଫାଲଗୁନୀ, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ, ଶତଭିଷା, ସ୍ୱାତୀ, ଧନିଷ୍ଠା, ଶ୍ରବଣା, ରୋହିଣୀ, ଅଶ୍ୱିନୀ, ମୃଗଶିରା, ରେବତୀ, ହସ୍ତା, ପୁଷ୍ୟା ଏହି ନକ୍ଷତ୍ରମାନଙ୍କରେ, ଆଉ ମଧ୍ୟ ସ୍ଥିର ରାଶିରେ (ବୃଷ, ସିଂହ, ବୃଶ୍ଚିକ ଓ କୁମ୍ଭ) ଅମାବାସ୍ୟା, ପୂର୍ଣ୍ଣିମା, ନବମୀ ଏ ତିଥିମାନଙ୍କ ଛଡ଼ା ଅନ୍ୟ ତିଥିରେ ଯେ ଲଗ୍ନରେ ନାମକରଣ କରାଯିବ ତାହାର ଅଷ୍ଟମ ସ୍ଥାନରେ ପାପଗ୍ରହ ନ ଥିବେ । ଶୁକ୍ର, ବୁଧ, ବୃହସ୍ପତି ଓ ସୋମବାରରେ ଶିଶୁର ନାମକରଣ କରିବ ।

## ୨୭୩-ନାମକର୍ମ କାରିକା

ଆଦୌସମର୍ଚ୍ଚେଦ୍‌ବରୁଣଂ ଚ କୁମ୍ଭେଽନାଦେଶହୋମଂ ବିଧିନା ଚ କୁର୍ଯ୍ୟାତ୍
କର୍ମାଙ୍ଗସଂକଳ୍ପମଥ ପ୍ରକଳ୍ପ୍ୟ ନାନ୍ଦୀମୁଖଂ ଶ୍ରାଦ୍ଧମପୀହ କୁର୍ଯ୍ୟାତ୍
ପୁଣ୍ୟାହବାଚଂ ସମୁଦୀର୍ଯ୍ୟ ପୂର୍ବଂ ସମୁତ୍ସୃଜେଦ୍ ବ୍ରାହ୍ମଣଭୋଜନଂ ଚ ।
ସ୍ୱବନ୍ଧୁଯୁକ୍ତଃ ସୁତଦକ୍ଷକର୍ଣ୍ଣେ ନାମ ପ୍ରଦଦ୍ୟାଚ୍ଛୁଭଘୋଷଯୁକ୍ତଂ ।
ତତ୍କର୍ମଣୋଽଚ୍ଛିଦ୍ରମଥାବଧାର୍ଯ୍ୟାଶିଷଂ ପ୍ରଗୃହୀତ ସମାତୃପୁତ୍ରଃ ।
(ଲୋକନାଥଦାସେନ କୃତା)

ବ୍ୟାଖ୍ୟା-ପ୍ରଥମତଃ କଳସରେ ବରୁଣପୂଜା କରିବ, ଯେବେ କାଳାତୀତ ହୋଇଥାଏ ତେବେ ବିଧିପୂର୍ବକ ଅନାଦେଶ ପ୍ରାୟଶ୍ଚିତ୍ତ ହୋମ କରି କର୍ମାଙ୍ଗ ସଂକଳ୍ପ କରିବ । ତଦନନ୍ତର ନାନ୍ଦୀମୁଖଶ୍ରାଦ୍ଧ କରି ପୁଣ୍ୟାହବାଚନ କରିବ । ବ୍ରାହ୍ମଣଭୋଜନୋନତ୍ସର୍ଗ କରି ବନ୍ଧୁବାନ୍ଧବ ସହିତରେ ମିଳି ପିତା, ପୁତ୍ରର ଦକ୍ଷିଣକର୍ଣ୍ଣରେ ଶୁଭଘୋଷବର୍ଣ୍ଣଯୁକ୍ତ ନାମ ଦେବ । କର୍ମର ଅଚ୍ଛିଦ୍ରାବଧାରଣ କରି ମାତା ପୁତ୍ର ସହିତ କର୍ତ୍ତା ଆଶୀର୍ବାଦ ଗ୍ରହଣ କରିବ ।



## ୨୭୪-ନାମକରଣ କର୍ମାରମ୍ଭ

ପୁତ୍ରସ୍ୟୈକଦଶେଽହ୍ନି କୁଳାଚାରତୋ ବା ପିତା ନାମ କୁର୍ଯ୍ୟାତ୍ । ଦିଗିନଶିବଶତାହେ ତତ୍କୁଳାଚାରତୋ ବା ଇତି । ଆଦୌ ବରୁଣ ପୂଜା (ଏହାର ବିଧି ୧୧୮-୧୨୪ ନମ୍ବର ଦେଖ ।)

## ୨୭୫-ନାମକରଣ ଅନାଦେଶ ହୋମ ବିଧି

କାଳାତିକ୍ରମେ ଅନାଦେଶପ୍ରାୟଶ୍ଚିତ୍ତସଂକଳ୍ପଂ ପୂର୍ବବତ୍ କୁର୍ଯ୍ୟାତ୍ । ତଦ୍ୟଥା-ଦେଶକାଳବାକ୍ୟାନନ୍ତରଂ-ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ମମାସ୍ୟ କୁମାରସ୍ୟ ନାମକରଣକାଳାତିକ୍ରମମଦୋଷବ୍ୟପୋହନାର୍ଥମନାଦେଶ-ପ୍ରାୟଶ୍ଚିତ୍ତହୋମକର୍ମାହଂ କରିଷ୍ୟେ ଇତି ସଂକଳ୍ପ ।

(ଏହାର ବିଶେଷ ବିଧି ୧୨୫-୧୨୯ ନମ୍ବର ଦେଖ)

**ତତଃ ପଞ୍ଚଭୂସଂସ୍କାରେଣାଗ୍ନିସ୍ଥାପନଂ**-ଓଁ ପାର୍ଥିବନାମାଗ୍ନୟେ ନମଃ ଇତି ମନ୍ତ୍ରେଣ ଆବାହନାଦିତାମ୍ବୂଳାନ୍ତଂ ପୂଜୟେଦ୍ଘୃତେନ ବା । (୨୨୨ ନମ୍ବର ଦେଖ ।)

ଆଜ୍ୟସ୍ଥାଲୀ, କୁଶାଃ ୩, କୁଶାଃ ୩, ସ୍ରୁବଃ, ସ୍ରୁଚ, ଏକା ସମିତ୍, ଆଜ୍ୟଂ, ଏତାନ୍ୟାସାଦ୍ୟ ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଜ୍ୱଲତ୍କାଷ୍ଠେନ ପର୍ଯ୍ୟଗ୍ନିକରଣଂ । ପ୍ରଥମକୁଶତ୍ରୟେଣ ସ୍ରୁବସ୍ରୁଚୋଃ ସମ୍ମାର୍ଜନଂ । ଅପରକୁଶତ୍ରୟେରୋଜ୍ୟୋତ୍ପବନଂ । ଆଜ୍ୟାବେକ୍ଷଣଂ । ସ୍ରୁବପ୍ରତପନଂ ଭୂମୌ ନିଧାନଂ । ଆଜ୍ୟୋଦ୍ୱାସନଂ ସ୍ରୁବେଣ ସ୍ରୁଚି ଚତୁରାଜ୍ୟଗ୍ରହଣଂ । ତଦୁପରି ସମିଦାଧାନଂ । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ମମାସ୍ୟ କୁମାରସ୍ୟ ନାମକରଣ-କାଳାତିକ୍ରମଦୋଷବ୍ୟପୋହନାର୍ଥମନାଦେଶ-ପ୍ରାୟଶ୍ଚିତ୍ତହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । ଉତ୍ତିଷ୍ଠନ୍ ସମିଧମଗ୍ନୌପ୍ରକ୍ଷେପଃ । ଓଁ ଭୂଃ ସ୍ୱାହା ଇଦଂ ଭୂଃ ବା ଇଦମଗ୍ନୟେ । ପୁନଶ୍ଚତୁରାଜ୍ୟ ଗ୍ରହଣଂ । ଓଁ ଭୁବଃ ସ୍ୱାହା ଇଦଂ ଭୁବଃ ବା ଇଦଂ ବାୟବେ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ସ୍ୱଃ ସ୍ୱାହା ଇଦଂ ସ୍ୱଃ ସୂର୍ଯ୍ୟାୟ । ପୁନଶ୍ଚତୁରାଜ୍ୟଗ୍ରହଣଂ-ଓଁ ଭୂର୍ଭୁବଃ ସ୍ୱଃ ସ୍ୱାହା ଇଦଂ ଭୂର୍ଭୁବଃ ସ୍ୱଃ ବା ଇଦମଗ୍ନିବାୟୁସୂର୍ଯ୍ୟେଭ୍ୟଃ । ତତଃ ସ୍ରୁବେଣ-ଓଁ ତ୍ୱନ୍ନୋଅଗ୍ନେ । ସତ୍ୱନ୍ନୋଅଗ୍ନେ । ଆୟାଶ୍ଚାଗ୍ନେ । ଯେତେଶତଂ । ଉଦୁତ୍ତମଂ । (ପୂର୍ଣ୍ଣମନ୍ତ୍ର ସହିତ ସମୁଦାୟ ବିଧି ୨୨୨ ନମ୍ବର ଦେଖ)

## ୨୭୬-ନାମକରଣ କର୍ମାଙ୍ଗ ସଂକଳ୍ପ

ଦେଶକାଲବାକ୍ୟନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍‌ଅମୁକଦେବଶର୍ମା ମମାସ୍ୟ କୁମାରସ୍ୟ ନାମକରଣକର୍ମାହଂ କରିଷ୍ୟେ । (ଏହାର ବିଶେଷ ବିଧି ୧୨୫-୧୨୯ ନମ୍ବର ଦେଖ)

## ୨୭୭-ନାମକରଣର ଆଭ୍ୟୁଦୟିକ ଶ୍ରାଦ୍ଧ ବିଧି

ତତୋ ମାତୃପୂଜାପୂର୍ବକମାଃ ଭ୍ୟୁଦୟିକଶ୍ରାଦ୍ଧସଂକଳ୍ପଂ କୁର୍ଯ୍ୟାତ୍ । ତଦ୍‌ଯଥା- ଦେଶକାଲବାକ୍ୟାନନ୍ତରଂ-ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ମମାସ୍ୟ କୁମାରସ୍ୟ ନାମକରଣକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷକ୍‌ରଣାଶକ୍ତୌ ତତ୍‌ପତ୍ୟାମ୍ନାୟେତ୍ୱନ୍ନ । ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରପତିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମତ୍‌ପିତୃପିତାମହପ୍ରପତିମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମଣାାଂ ନାନ୍ଦୀମୁଖାନାଂ ଗଣପତିପୂରଃସର- ଗୌର୍ଯ୍ୟଦ୍ୟଷ୍ଟାଦଶମାତୃଗଣପୂଜାବସୋର୍ଦ୍ଧାର ୟୁଷ୍ୟମନ୍ତ୍ରଜପପୂର୍ବକଭୋଜ୍ୟ-ଦାନମହଂ କରିଷ୍ୟେ । (ଏହାର ବିଶେଷ ବିଧି ୧୩୦ ନମ୍ବର ଦେଖ) ।

ତତୋଽକ୍ଷତପୁଞ୍ଜେଷୁ ହରିଦ୍ରାଚୂର୍ଣ୍ଣେନ ଗଣପତିଗୌର୍ଯ୍ୟାଦୀନାଂ ମଣ୍ଡଳକରଣଂ । ତତ୍ର ଗଣପତି ପୂର୍ବକଂ ଗୌର୍ଯ୍ୟାଦି ପୂଜନଂ । ତଦ୍‌ଯଥା-ଓଁ ଭୂ ର୍ଭୂ ବଃ ସ୍ୱଃ ଗଣପତିପୂରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣେଭ୍ୟୋନମଃ ଇତି ଆସନାଦି ନୈବେଦ୍ୟାନ୍ତଂ ପୂଜୟେତ୍ (ଏହାର ସମୁଦାୟ ବିଧି ୬୮ ଓ ୬୯ ନମ୍ବର ଦେଖ)

## ତତଃ ପଞ୍ଚବାସପ୍ତ କୁଡ୍ୟଲଗ୍ନାବସୋଧାରା ଦଦ୍ୟାତ୍

(ଏହାର ବିଶେଷ ବିଧି ୧୩୨ ନମ୍ବରରୁ ୧୩୪ ନମ୍ବର ଦେଖ)

ତତୋଭୋଜ୍ୟୋତ୍ସର୍ଗଃ-ତଦ୍‌ଯଥା-ଓଁ ବିଷ୍ଣୁର୍ନମଃ ଅଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂ ବିଧବିଷେଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ମମାସ୍ୟ କୁମାରସ୍ୟ ନାମକରଣକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତିସାକ୍ଷାକ୍‌କରଣଶକ୍ତୌ ତତ୍‌ପ୍ରତ୍ୟାମ୍ନାୟଦ୍ୱେନ *ବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍‌ମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମତ୍ ପିତୃପିତାମହପ୍ରପିତାମହାନାଂ ଅମୁକଦେବ

---

* ଆମାତଦ୍ୱେନ ଇତି ପାଠାନ୍ତର ।

ଘ ଶର୍ମଣା ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ଘ ଶର୍ମଣା ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଇମାନି * ସମୁୟାଷ୍ଟପରିମିତାନି ପ୍ରଜାପତିଦୈବତାନି ଭୋଜ୍ୟାନି ତେଭ୍ୟୋ ବ୍ରାହ୍ମଣେଭ୍ୟୋ ଦାତୁମହମୁସ୍ସୃଜେ ! ଅନ୍ନେ ପ୍ରତିଷ୍ଠିତାଦେବା ଇତି ପ୍ରାର୍ଥନା (ଏହାର ବିଶେଷ ବିଧି ୧୩୫-୧୩୮ ନମ୍ବର ଦେଖ) ।

## ୨୭୮-ନାମକରଣ କର୍ମ

ତତୋନାମକରଣେ ତ୍ରୀଣି ବ୍ରାହ୍ମଣଭୋଜନାନି ଯଥା-ବିଷ୍ଣୁର୍ନମଃ ଅଦ୍ୟେହେତ୍ୟାଦି ମମାସ୍ୟ କୁମାରସ୍ୟ ନାମକରଣନିମିତ୍ତାନି ତ୍ରୀଣି ବ୍ରାହ୍ମଣଭୋଜନାନିପ୍ରଜାପତିଦୈବତାନି ତେଭ୍ୟୋବ୍ରହ୍ମଣେଭ୍ୟୋ ଦାତୁମହମୁସ୍ସୃଜେ । ଅନ୍ନେ ପ୍ରତିଷ୍ଠିତା ଦେବା ଇତି ପ୍ରାର୍ଥନା ।

ତତଃ ପୁଣ୍ୟାହବାଚନଂ-ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବ ଶର୍ମଣା ମୟା ମମାସ୍ୟ କୁମାରସ୍ୟ ନାମକରଣକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । (ପୁଣ୍ୟାହବାଚନର ସଂପୂର୍ଣ୍ଣ ବିଧି ୧୦୦ ନମ୍ବର ଦେଖ) ।

* ତତୋଘୋଷବଦାଦ୍ୟଂ ଦ୍ୟକ୍ଷରଂ ଚତୁରକ୍ଷରଂ ବା କୁମାରସ୍ୟ ଦକ୍ଷିଣକର୍ଣ୍ଣେ ପିତା ନାମ କୁର୍ଯ୍ୟାତ୍ । ତଦ୍ୟଥା-ଅମୁକ ନାମା ଭବ ଇତି ତ୍ରିବାର ବଦେତ୍ । କର୍ମାଙ୍ଗଦଶବ୍ରାହ୍ମଣଭୋଜନଂ । ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । ମାତୃକୁମାରୟୋରାଶୀର୍ଦାନଂ । ମନ୍ତ୍ରୋଯଥା-ଓଁ ତ୍ରୟୋଦେବା ଏକାଦଶତ୍ରୟସ୍ତ୍ରିଂଶାସୁରସଃ ବୃହସ୍ପତି ପୁରୋହିତା ଦେବସ୍ୟ ସବିତୁଃ ଶିବେ ଦେବାଦେବୈରବତୁ ମା ।

ଇତି ନାମକରଣକର୍ମ ସମାପ୍ତଂ

---

* ସମୁୟ ଏକ ପରିମିତମିତି ପାଠାନ୍ତରଂ । ୨୭୮ * ଘୋଷବନ୍ତବର୍ଣ୍ଣକଥନ । ବର୍ଗାଣାଂ ପ୍ରଥମଦ୍ୱିତୀୟବର୍ଣ୍ଣାଃ ଶଷସହାଶ୍ଚ ଅଘୋଷାଃ । ଅନ୍ୟେ ଘୋଷବନ୍ତଃ ଇତି କର୍କଃ । ଜନ୍ମନକ୍ଷତ୍ରପାଦପ୍ରଯୁକ୍ତାକ୍ଷରାଦିନାମ ବା ବ୍ୟାବହାରିକଂ ସ୍ୱେଷ୍ଟଂ ନାମ ଦଦ୍ୟାଦିତି ଗଦାର୍ଧରଃ । ବ୍ରାହ୍ମଣସ୍ୟ ନାମ ସୁଖନୀୟଂ କ୍ଷତ୍ରିୟସ୍ୟ ନାମ ଶୌର୍ଯ୍ୟଯୁକ୍ତଂ ବୈଶ୍ୟସ୍ୟ ନାମ ଅର୍ଥ୍ୟାଭିଧାୟୀ କର୍ତ୍ତବ୍ୟମିତି କର୍କଃ ।

ବ୍ୟାଖ୍ୟା-ପିତା ଦୁଇଅକ୍ଷର ବା ଚାରି ଅକ୍ଷରଯୁକ୍ତ ଗୋଟିଏ ନାମ ପୁତ୍ରର ଦକ୍ଷିଣ କର୍ଣ୍ଣରେ "ଅମୁକନାମାଭବ" ବୋଲି ତିନିଥର କହିବେ । ସେ ନାମଟି ରାଶି ଓ ନକ୍ଷତ୍ର ଅନୁସାରେ ହେଉ କିମ୍ବା ବ୍ୟାବହାରିକ ମତରେ ହେଉ ଅଥବା ନିଜର ପ୍ରିୟର ହେଉ ଏହିପରି ଗୋଟିଏ ନାମ ଦେବେ ସେହି ନାମର ଆଦ୍ୟଅକ୍ଷର କ, ଚ, ଟ, ତ, ପ, ଖ, ଛ, ଠ, ଥ, ଫ, ଓ ଶ ଷ ସ ହ ଛଡ଼ା ଅନ୍ୟବର୍ଣ୍ଣଯୁକ୍ତ ହୋଇଥିବ ।

## ୨୭୯-ବହିର୍ନିଷକ୍ରମଣ ବିଚାର

ଚତୁର୍ଥେ ମାସି ନିଷ୍କ୍ରମଣ କାର୍ଯ୍ୟଂ । ତତ୍ର ସୂର୍ଯ୍ୟମୁଦୀକ୍ଷୟତି ପିତା ତଚ୍ଚକ୍ଷୁରିତି ମନ୍ତ୍ରେଣ ! ଇତି ପାରସ୍କରଃ ।

ବ୍ୟାଖ୍ୟା-ଜନ୍ମଠାରୁ ଚତୁର୍ଥ ମାସରେ ପିତା ପୁତ୍ରର ବହିର୍ନିଷ୍କ୍ରମଣ କରିବ ଅର୍ଥାତ୍ ପୁତ୍ରକୁ ବାହାରକୁ ବାହାର କରି "ତଚ୍ଚକ୍ଷୁ" ମନ୍ତ୍ର ପଢ଼ି ସୂର୍ଯ୍ୟ ଦର୍ଶନ କରାଇବ ।

## ୨୮୦-ବହିର୍ନିଷ୍କ୍ରମଣର ଶୁଭଦିନ ନିର୍ଣ୍ଣୟ

ମୈତ୍ରେ ପୁଷ୍ୟପୁନର୍ବସୁପ୍ରଥମଭେ ପୌଷ୍ଣେଽନୁକୂଲେ ବିଧୌ
ହସ୍ତେ ଚୈବ ସୁରେଶ୍ୱରେ ଚ ମୃଗଭେ ତାରାସୁ ଶସ୍ତାସୁ ଚ ।
କୁର୍ଯ୍ୟାନ୍ନିଷ୍କ୍ରଣମଣଂ ଶିଶୋର୍ବୁଧଗୁରୁଶୁକ୍ରଷ୍ୱରିକ୍ତାତିଥୌ
କନ୍ୟାକୁମ୍ଭତୁଲାମୃଗାରି ଭବନେ ସୌମ୍ୟଗ୍ରହାଲୋକିତେ । (ବ୍ୟାସଃ)

ବ୍ୟାଖ୍ୟା-ଅନୁରାଧା, ପୁଷ୍ୟା, ପୁନର୍ବସୁ, ଅଶ୍ୱିନୀ, ରେବତୀ, ହସ୍ତା, ଜ୍ୟେଷ୍ଠା, ମୃଗଶିରା, ଏହି ୨ ନକ୍ଷତ୍ରମାନଙ୍କରେ ଶୁଭଚନ୍ଦ୍ର ଓ ଶୁଭତାରାରେ ବୁଧ, ଗୁରୁ ଓ ଶୁକ୍ରବାରରେ ରିକ୍ତା ବର୍ଜିତ ତିଥିରେ ଏବଂ ଶୁଭଗ୍ରହମାନଙ୍କଦ୍ୱାରା ଦୃଷ୍ଟ ହୋଇଥିବା କନ୍ୟା, କୁମ୍ଭ, ତୁଳା ଓ ସିଂହ ଲଗ୍ନମାନଙ୍କ ମଧ୍ୟରୁ କୌଣସି ଲଗ୍ନରେ ପୁତ୍ରର ବହିର୍ନିଷ୍ତ୍ରମଣ କରିବ ।

## ୨୮୧-ବହିର୍ନିଷ୍କ୍ରମଣ କର୍ମକାରିକା

ତତୋଘଟେ ପ୍ରାଗ୍‌ବରୁଣାଦିପୂଜାଂ କୁର୍ଯ୍ୟାଦନାଦେଶବିଧିଂ ବିଧିଜ୍ଞଃ ।
କର୍ମାଙ୍ଗସଂକଳ୍ପମପୀହ କୃତ୍ୱା ନାନ୍ଦୀମୁଖାନ୍ତଂ ଖଳୁ କର୍ମ କୁର୍ଯ୍ୟାତ୍ ।
ପୁଣ୍ୟାହବାଚଂ ସମୁଦୀର୍ଯ୍ୟ ପୁତ୍ରଂ,ମନ୍ତ୍ରେଣ ପୂତଂ ପରିଧାପ୍ୟ ବସ୍ତ୍ରଂ ।
ଅଲଂକୃତଂ ଚନ୍ଦନପୁଷ୍ପଶୋଭଂ ବହିର୍ବିନିଷ୍ତ୍ରମ୍ୟ ସମୀକ୍ଷ୍ୟ ସୂର୍ଯ୍ୟଂ ।
ଆଚମ୍ୟ ଭୋଜ୍ୟଂ ପ୍ରଦଦେଦ୍ଧିଜେଭ୍ୟୋଽଚ୍ଛିଦ୍ରଂନିୟମ୍ୟାଶିକ୍ଷମାଦଧାତି ।
ଏବଂବହିର୍ନିଷ୍ତ୍ରମଣଂ ଚ କର୍ମ ସମାପୟେଦ୍‌ବୈ ଜନକଃ ସୁତସ୍ୟ ।
(ଲୋକନାଥଦାସେନ କୃତା)

ବ୍ୟାଖ୍ୟ-ପ୍ରଥମରେ ପିତା କଳସରେ ବରୁଣପୂଜା କରି କାଳାତିକ୍ରମ ହୋଇଥିଲେ ଅନାଦେଶ ପ୍ରାୟଶ୍ଚିତ୍ତ ହୋମ କରିବ ନଚେତ୍ କରିବ ନାହିଁ ।

 

ତଦନନ୍ତର କର୍ମାଙ୍ଗସଂକଳ୍ପ ଓ ନାନ୍ଦୀମୁଖୀ ଶ୍ରାଦ୍ଧ କରିବ । ତତ୍ପରେ ପୁଣ୍ୟାହବାଚନ ଓ ନୂତନ ବସ୍ତ୍ର ଅଭିମନ୍ତ୍ରଣ କରି ସେହି ବସ୍ତ୍ର ଓ ଅଳଙ୍କାର ପୁତ୍ରକୁ ପିନ୍ଧାଇ ଚନ୍ଦନ ପୁଷ୍ପଦ୍ୱାରା ଶୋଭିତ କରି ବାହାରକୁ ଆଣି ସୂର୍ଯ୍ୟ ଦର୍ଶନ କରାଇବ । ତଦୁତ୍ତାରୁ ନିଜେ କର୍ତ୍ତା ଆଚମନ କରି ବ୍ରାହ୍ମଣଭୋଜନ କରାଇବେ । ତଦନନ୍ତର ଅଚ୍ଛିଦ୍ରାବଧାରଣ ଓ ଆଶୀର୍ବାଦ କର୍ମ ଶେଷ କରି ପୁତ୍ରର ବହିର୍ନିଷ୍କ୍ରମଣ କର୍ମ ସମାପ୍ତ କରିବ ।

## ୨୮୨-ବହିର୍ନିଷ୍କ୍ରମଣ କର୍ମାରମ୍ଭ

ଚତୁର୍ଥେମାସି ଶୁଭେ ଦିନେ ପୁତ୍ରଂ ବହିର୍ନିଷ୍କ୍ରମୟେତ୍ ।
ତତ୍ରାଦୌ ବରୁଣପୂଜା (୧୧୮-୧୨୪ ନମ୍ବର ଦେଖ) ।

## ୨୮୩-ବହିର୍ନିଷ୍କ୍ରମଣର ଅନାଦେଶ ପ୍ରାୟଶ୍ଚିତ୍ତ ହୋମ

କାଳାତୀତେ ଅନାଦେଶପ୍ରାୟଶ୍ଚିତ୍ତସଂକଳ୍ପ କୁର୍ଯ୍ୟାତ୍ । ତଦ୍ୟଥା- ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଂ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକନାମ୍ନୋମମ କୁମାରସ୍ୟ କାଳାତିକ୍ରମଦୋଷବ୍ୟପୋହାର୍ଥମନା- ଦେଶପ୍ରାୟଶ୍ଚିତ୍ତହୋମକର୍ମାହଂ କରିଷ୍ୟେ । ଯଜ୍ଞାଗ୍ରତ ଇତି । (ଏହାର ବିଶେଷ ବିଧି ୧୨୫-୧୨୯ ନମ୍ବର ଦେଖ) ।

ତତଃ ପଞ୍ଚଭୂସଂସ୍କାରେଣାଗ୍ନିସ୍ଥାପନଂ । (୨୨୨ ନମ୍ବର ଦେଖ) ।

* ଓଁ ସୂର୍ଯ୍ୟାନାମାଗ୍ନୟେ ନମଃ ଇତି ମନ୍ତ୍ରେଣ ଆସନାଦିତାମ୍ବୁଲାନ୍ତଂ ପୂଜୟେଦ୍ ଘୃତେନ ବା ।

**ପାତ୍ରାସାଦନଂ**-ଆଜ୍ୟସ୍ଥାଲ୍ୟ, କୁଶାଃ ୩, କୁଶାଃ ୩ ସ୍ରୁବଃ, ସ୍ରୁକ୍, ଏକା ସମିତ୍, ଆଜ୍ୟଂ, ଏତାନ୍ୟାସାଦ୍ୟ ଆଜ୍ୟସ୍ଥାଲ୍ୟମାଜ୍ୟର୍ନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଜ୍ୱଲତ୍କାଷ୍ଠେନ ପର୍ଯ୍ୟଗ୍ନିକରଣଂ । ପ୍ରଥମକୁଶତ୍ରୟେଣ ସ୍ରୁବସ୍ରୁଚୋଃ ସମ୍ମାର୍ଜନଂ । ଦ୍ୱିତୀୟକୁଶତ୍ରୟେଣାଜ୍ୟୋତ୍ପବନଂ । ଆଜ୍ୟାବେକ୍ଷଣଂ । କୁଶାନାମାଗ୍ନୌ ପ୍ରକ୍ଷେପଣଂ । ସ୍ରୁବେଣ ସ୍ରୁଚି ଚତୁରାଜ୍ୟ ଗ୍ରହଣଂ । ତଦୁପରି ସମିଦାଧାନଂ । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତ ଅମୁକଦେବଶର୍ମଣା ମୟା ଅମୁକନାମ୍ନୋମମ କୁମାରସ୍ୟ ବହିର୍ନିଷ୍କ୍ରମଣକାଳାତି କ୍ରମଦୋଷବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । (ଏହାର ବିଶେଷ ବିଧି ୨୨୨ ନମ୍ବର ଦେଖ ।)

---

*-ବିହର୍ନିଷ୍କ୍ରମଣେ ସୂର୍ଯ୍ୟୋଽପ୍ୟନ୍ନେ ଶୁଚ୍ୟଗ୍ନିକଂ ତଥା ।

ଆସନାକ୍ଟିଂଚିଦୁତ୍‌ଥାୟ ସମିଧମଗ୍ନୌ ପ୍ରକ୍ଷପେତ୍ ତୁଷ୍ଣୀଂ ବା ସମିଧାଗ୍ନିଂଦୁ ବସ୍ୟେତ ଇତି ମନ୍ତ୍ରେଣ । ଓଁ ଭୂଃ ସ୍ୱାହା ଇଦଂ ଭୂଃ ବା ଇଦମଗ୍ନୟେ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଁ ଭୁବଃ ସ୍ୱାହା ଇଦଂ ଭୁବଃ ବା ବାୟବେ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓଂ ସ୍ୱଃ ସ୍ୱାହା ଇଦଂ ସ୍ୱଃ ବା ସୂର୍ଯ୍ୟାୟ । ପୁନଶ୍ଚତୁରାଜ୍ୟଗ୍ରହଣଂ । ଓ ଭୁର୍ଭୁବଃ ସ୍ୱଃ ସ୍ୱାହା ଇଦଂ ଭୁର୍ଭୁବଃ ସ୍ୱଃ ବା ଇଦମଗ୍ନିବାୟୁସୂର୍ଯ୍ୟେଭ୍ୟଃ । ସ୍ରୁବେଣାଜ୍ୟଂ ଗୃହୀତ୍ୱା । ଓଁ ତ୍ୱନ୍ନୋଅଗ୍ନେ । ଓଁ ସତ୍ୱନ୍ନୋଅଗ୍ନେ । ଓଁ ଅୟାଶ୍ଚାଗ୍ନେ । ଓଁ ଯେତେଶତଂ । ଓ ଉଦୁତ୍ତମଂ ଏତାନବାହୁତୟୋଽନାଦେଶସଂଜ୍ଞକାଃ । (ଏହାର ପୂର୍ଣ୍ଣ ମନ୍ତ୍ର ସହିତ ସମୁଦାୟ ବିଧି ୨୨୨ ନମ୍ବର ଦେଖ ।)

ପୁଣ୍ୟାହବାଚନଂ-ପୁଣ୍ୟାହମିତ୍ୟାଦି ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ବହିର୍ନିଷ୍କ୍ରମଣକାଲାତିକ୍ରମଦୋଷବ୍ୟପୋହନାର୍ଥ ମନାଦେଶପ୍ରାଶ୍ଚିତ୍ତହୋମକର୍ମ ଯକ୍ଷୃତଂ ତତ୍ ସୁକୃତମସ୍ତୁ । ଯନ୍ନ୍ନମିତ୍ୟାଦି ।

## ୨୮୪-ବହିର୍ନିଷ୍କ୍ରମଣକର୍ମାଙ୍ଗ ସଂକଳ୍ପ

ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକନାମ୍ନୋମମ କୁମାରସ୍ୟ ବହିର୍ନିଷ୍କ୍ରମଣକର୍ମାହଂ କରିଷ୍ୟେ ଯଜ୍ଞାଗ୍ରତ ଇତି ପଠେତ୍ । (ଏହାର ସମୁଦାୟ ବିଧି ୧୨୫-୧୨୯ ନମ୍ବର ଦେଖ ।)

## ୨୮୫-ବହିନିଷ୍କ୍ରମଣର ଆଭ୍ୟୁଦୟିକ ଶ୍ରାଦ୍ଧ ବିଧି

ତତଃ ସଂକଳ୍ପଃ ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକାନାମ୍ନୋ ମମ କୁମାରସ୍ୟ ବହିର୍ନିଷ୍କ୍ରମଣକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାନୟତ୍ୱେନ * ଗଣପତିପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣପୂଜାବ ସୋର୍ଦ୍ଧାରାୟୁଷ୍ୟମନ୍ତ-ଜପପୂର୍ବକଭୋଜ୍ୟଦାନମହଂ କରିଷ୍ୟେ । (ବିଶେଷ ବିଧି ୧୩୦ ନମ୍ବର ଦେଖ ।)

ଗଣପତିପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣାନ୍ ଆବାହନାଦି ତାମ୍ବୁଲାନ୍ତ ପୂଜୟେତ୍ । (ଏହାର ବିଶେଷ ବିଧି ୧୩୧ ନମ୍ବର ଦେଖ ।)

## ତତଃପଞ୍ଚ ବା ସପ୍ତ ବାସୋର୍ଦ୍ଧାରା ଦଦ୍ୟାତ୍ ।

(ଏହାର ସମୁଦାୟ ବିଧି ୧୩୨-୧୩୪ ନମ୍ବର ଦେଖ ।)

**ଭୋଜ୍ୟସର୍ଗଃ ତଦ୍ୟଥା**-ଓଁ ବିଷ୍ଣୁନମଃ ଅଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା

---

* ଆମ୍ନାତତ୍ୱେନେତି ପାଠାନ୍ତରଂ ।



ଅମୁକନାମ୍ନୋ ମମ କୁମାରସ୍ୟ ବହିର୍ନିଷ୍କ୍ରମଣକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍‌କରଣାଶକ୍ତେ ପ୍ରତା ତ୍ୟପ୍ରମ୍ନାୟଦ୍ଧେନ * ବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃ ପିତାମହୀ ପ୍ରପିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମତ୍ପିତୃପିତାମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣା ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତମହପ୍ରମାତାମହବୃଦ୍ଧପ୍ରମାତା-ମହୀନାଂଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ * । ଇମାନି ସମ୍ମୁୟାଷ୍ଟପରିମିତାନି ପ୍ରଜାପତିଦୈବତାନି ଭୋଜ୍ୟାନି ନାନାଗୋତ୍ରେଭ୍ୟୋ ବ୍ରାହ୍ମଣେଭ୍ୟୋ ଦାତୁ ମହମୁସ୍ଠ୍ଜେ । ଅନ୍ନେ ପ୍ରତିଷ୍ଠିତା ଇତି ପ୍ରାର୍ଥନା ଏତଦ୍ ଭୋଜ୍ୟଦାନକର୍ମାଛିଦ୍ରମସ୍ତୁ ।

(ଏହାର ସମୁଦାୟ ବିଧି ୧୩୪-୧୩୮ ନମ୍ବର ଦେଖ)

## ୨୮୬-ବହିର୍ନିଷ୍କ୍ରମଣ କର୍ମ

ତତଃ ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ବହିର୍ନିଷ୍କ୍ରମଣକର୍ମାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହା ଏକାଦଶସ୍ଥା ଫଳଦା ଭବନ୍ତୁ । ଶୁଭଂ ଭବତୁ ୩ । ତତଃ ପିତା ନୂତନ ବସ୍ତ୍ରଂ ଅଭିମନ୍ତ୍ୟ କୁମାରଂ ପରିଧାପୟେତ୍ । ମନ୍ତ୍ରୋଯଥା-ଓଁ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟୁତ୍ୱାୟ ଜରଦଷ୍ଟିରସ୍ମି । ଶତଂଚ ଜୀବାମି ଶରଦଃ ପୁରୁଚୀରାୟସ୍ପୋଷମଭି ସଂବ୍ୟୟିଷ୍ୟେ । (ଏହି ମନ୍ତ୍ରରେ ନୂତନବସ୍ତ୍ର ଅଭିମନ୍ତ୍ରଣ କରି ପିତା କୁମାରକୁ (ପିନ୍ଧାଇବ) * ଗନ୍ଧପୁଷ୍ପ ସିନ୍ଦୂରକଜ୍ଜଳାଦିକଂ ସ୍ୱ ସ୍ୱ ମନ୍ତ୍ରେଣ ଦଦ୍ୟାତ୍ । ମନ୍ତ୍ରୋ ଯଥା-ଓଁ ସୁରକ୍ଷା ଅହମକ୍ଷିଭ୍ୟାଂ ଭୂୟାସଗୁଂ ସୁବର୍ଚ୍ଚା ମୁଖେନ । ଶୁଶ୍ରୁତ୍କର୍ଣ୍ଣାଭ୍ୟାଂ ଭୂୟାସଂ । ଇତି ଗନ୍ଧମନ୍ତ୍ରାଃ । ଓଁ ଶ୍ରୀଷ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇନ୍ନିଷାଣ ମୁମ୍ମଇଷାଣଃସର୍ବଲୋକଂ ମଇଷାଣା । ଇତି ପୁଷ୍ପମନ୍ତ୍ରଃ । ଓଁ ସିନ୍ଧୋରିବ ପ୍ରାଧ୍ୱନେଶୂଘନାସୋବାତପ୍ରମିୟଃ ପତୟନ୍ତିୟହ୍ୱାଃ । ଘୃତସ୍ୟ ଧାରା ଅରୁଷୋନବାଜୀ କାଷ୍ଠାଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ । ଇତିସିନ୍ଦୂରମନ୍ତ୍ରଃ । ଓଁ ମହୀନାଂ

---

ଇଦଂ ସମ୍ମୁୟ, ଏକପରିମିତଂ ବା

* କାଳାତୀତେଽପି ଜନକଃ ପରିଧାପ୍ୟ ନବାମ୍ବରଂ

ଗନ୍ଧାଦୈର୍ଭୂଷିତଂ ବାହ୍ୟଂ ନିଷ୍କ୍ରାମ୍ୟାର୍କମୁଦୀକ୍ଷୟେତ୍ (ଇତି ସ୍ମୃତିଃ)

ପୟୋଽସି ବର୍ଚ୍ଚୋଦା ଅସି ବର୍ଚ୍ଚୋମେ ଦେହି ବୃତ୍ରସ୍ୟାସି କନୀନକଶ୍ଚକ୍ଷୁର୍ଦା ଅସି ଚକ୍ଷୁର୍ମେଦେହି । ଇତି କଜ୍ଜଳ ମନ୍ତ୍ରଃ । ତତଃ ପିତା ଅଳଙ୍କୃତଂ କୁମାରଂ ଅଙ୍କେ ଗୃହୀତ୍ୱା ବହିରାନୀୟ ତଚ୍ଚକ୍ଷୁରିତି ମନ୍ତ୍ରେଣ ସୂର୍ଯ୍ୟମୁଦୀକ୍ଷୟେତ୍ । (ତପ୍ରରେ ପିତା କୁମାରକୁ ଅଳଙ୍କୃତ କରି କୋଳରେ ଧରି ବାହାରକୁ ଆଣି ତଳଲିଖିତ ତଚ୍ଚକ୍ଷୁମନ୍ତ୍ର ପଢ଼ି ସୂର୍ଯ୍ୟଦର୍ଶନ କରାଇବ ।)

ମନ୍ତ୍ରୋଯଥା-ଓଁ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁତ୍ରମୁଚ୍ଚରତ୍ ପଶ୍ୟମେ ଶରଦଃ ଶତଂ ଜୀବମେ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ । ତତୋଗୃହଂ ଗତ୍ୱା ଚମ୍ୟକର୍ମାଙ୍ଗଦଶବ୍ରାହ୍ମଣଭୋଜନୋତ୍ସର୍ଗଃ ଅଚ୍ଛିଦ୍ରାବଧାରଣଂ । ବହିର୍ନିଷ୍କ୍ରମଣକର୍ମ ଯକ୍ଷୃତଂ ତତ୍ ସୁକୃତମସ୍ତୁ । ଯନ୍ନ୍ୟୂନମିତ୍ୟାଦି । ଆଶୀର୍ବାଦାର୍ଥଂ ପୁଣ୍ୟାହବାଚନଂ । କୁମାରସ୍ୟ ଆଶୀର୍ବାଦଂ । ଇତି ବହିର୍ନିଷ୍କ୍ରମଣକର୍ମ ସମାପ୍ତଂ ।

## ୨୮୭-ଅନ୍ନପ୍ରାଶନ କର୍ମ ବିଚାର

ଷଷ୍ଠେ ମାସେଽନ୍ନପ୍ରାଶନଂ ଇତି ପାରସ୍କରଃ ।
ଜନ୍ମତୋମାସିଷଷ୍ଠେ ସ୍ୟାତ୍ ସୌରେଣାନ୍ନାଶନଂ ପରଂ ।
ତଦଭାବେଽଷ୍ଟମେ ମାସି ନବମେ ଦଶମେଽପିବା ।
ଦ୍ୱାଦଶେ ବାପି କୁର୍ବୀତ ପ୍ରଥମାନ୍ନାଶନଂ ପରଂ ।
ଷଷ୍ଠେ ବାପ୍ୟଷ୍ଟମେ ମାସି ପୁଂସାଂ ସ୍ତ୍ରୀଣାଂ ଚ ପଞ୍ଚମେ ।
ସପ୍ତମେ ମାସି ବା କାର୍ଯ୍ୟଂନବାନ୍ନପ୍ରାଶନଂ ଶୁଭଂ ।(ନାରଦଃ)

ବ୍ୟାଖ୍ୟା-ବାଳକର ଜନ୍ମଠାରୁ ସୌରମାସ (ସଂକ୍ରାନ୍ତି) ଅନୁସାରେ ଷଷ୍ଠମାସରେ ଅନ୍ନପ୍ରାଶନ କରିବା ଶ୍ରେଷ୍ଠ; ଯଦି ଏହି ଷଷ୍ଠମାସରେ ନ ହୋଇପାରେ ତେବେ ଅଷ୍ଟମ, ନବମ, ଦଶମ ବା ଦ୍ୱାଦଶମାସରେ ଅନ୍ନପ୍ରାଶନ କରିବ । ପୁତ୍ରପକ୍ଷରେ ଷଷ୍ଠ ଅଷ୍ଟମ ମାସରେ ଅନ୍ନପ୍ରାଶନ ଶୁଭ । କନ୍ୟାପକ୍ଷରେ ପଞ୍ଚମ ଓ ସପ୍ତମମାସରେ ଅନ୍ନପ୍ରାଶନ ଶୁଭ ।

## ୨୮୮-ଅନ୍ନପ୍ରାଶନର ଶୁଭଦିନ ନିର୍ଣ୍ଣୟ

ପୂର୍ବାଦ୍ରାଭରଣୀଭୁଜଙ୍ଗବରୁଣଂ ତ୍ୟକ୍ତ୍ୱା କୁଜାର୍କୀ ତଥା ।
ନନ୍ଦାଂ ପର୍ବ ଚ ସପ୍ତମୀମପି ତଥାରିକ୍ତାମପି ଦ୍ୱାଦଶୀଂ ।
ଷଷ୍ଠେ ମାସ୍ୟଥବାନ୍ନଭକ୍ଷଣ ବିଧିଂ ସ୍ତ୍ରୀଣାମଯୁକ୍ ପଞ୍ଚମେ ।



ଗୋକନ୍ୟାଝଷମନ୍ମଥେ ବୁଧବଳେ ପକ୍ଷେ ଚ ଯୋଗେ ଶୁଭେ ।
(ଜ୍ୟୋତିଷସାରେ)

ବ୍ୟାଖ୍ୟା-ପୂର୍ବାଫାଲ୍ଗୁନୀ, ପୂର୍ବାଷାଢ଼ା, ପୂର୍ବଭାଦ୍ରପଦ, ଆର୍ଦ୍ରା, ଦ୍ୱିଜା, ଅଶ୍ଳେଷା ଏମାନଙ୍କ ଭିନ୍ନ ଅନ୍ୟ ନକ୍ଷତ୍ରମାନଙ୍କର ମଙ୍ଗଳ ଓ ଶନିବାରକୁ ଛାଡ଼ି ଅନ୍ୟବାରମାନଙ୍କରେ ନନ୍ଦା ଅର୍ଥାତ୍ ପ୍ରତିପଦ, ଷଷ୍ଠୀ, ଏକାଦଶୀତିଥି ପର୍ବଦିବସ ଅର୍ଥାତ୍ ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା ପୂର୍ଣ୍ଣିମା ଓ ସଂକ୍ରାନ୍ତି ଦିବସ ସପ୍ତମୀତିଥି ଆଉ ରିକ୍ତାତିଥି ଅର୍ଥାତ୍ ଚତୁର୍ଥୀ, ନବମୀ ଚତୁର୍ଦ୍ଦଶୀତିଥି ଏବଂ ଦ୍ୱାଦଶୀ ଏ ତିଥିମାନଙ୍କୁ ଛାଡ଼ି ଅନ୍ୟତିଥିମାନଙ୍କରେ ବୃଷ, କନ୍ୟା, ମୀନ ଓ ମିଥୁନଲଗ୍ନରେ ବୁଧ ବଳବାନ ଥିବା ସମୟରେ ଶୁକ୍ଳପକ୍ଷ ଓ ଶୁଭଯୋଗରେ ଷଷ୍ଠ ବା ଅଷ୍ଟମମାସରେ ପୁତ୍ରର ଅନ୍ନପ୍ରାଶନ କରିବ । ପଞ୍ଚମ ବା ସପ୍ତମ ମାସରେ କନ୍ୟାର ଅନ୍ନପ୍ରାଶନ କରିବ ।

## ୨୮୯-ଅନ୍ନପ୍ରାଶନ କର୍ମକାରିକା

ପ୍ରାଗ୍‌ବଚ୍ଚ କୁମ୍ଭେ ବରୁଣାର୍ଚ୍ଚନଂ କୁର୍ଯ୍ୟାଦନାଦେଶବିଧିଂ ବିଧାୟ ।
କର୍ମାଙ୍ଗସଂକଳ୍ପମପୀହ କୃତ୍ୱା ନାନ୍ଦୀମୁଖଂ ଶ୍ରାଦ୍ଧବିଧିଂ ଚରେଚ୍ଚ ।
ସଂସ୍ଥାପ୍ୟ ବହ୍ନିଂ ଭୁବି ସଂସ୍କୃତାୟାଂ ବ୍ରହ୍ମାଣମସ୍ମିନ୍‌ବୃଣୁୟାଦ୍‌ବିଧାନୈଃ ।
ବ୍ରହ୍ମାସନଂ ଦକ୍ଷିଣତୋ ନିଧାୟ ତଦୁତ୍ତରେ ସ୍ଥାପୟିତା ପ୍ରଣୀତାଂ ।
ଦର୍ଭାନ୍ ପରିସ୍ତୀର୍ଯ୍ୟ ଚ ସର୍ବଦିକ୍ଷୁ ପାତ୍ରାଣି ଚାସାଦ୍ୟ ଚ ଯାମ୍ୟତୋଽପି ।
କୁର୍ଯ୍ୟାତ୍ କୁଶାଣ୍ଡିଂ ଚରୁସଂଯୁତଂ ଚ ଶ୍ରୁତେଃ ସମାରମ୍ଭ ଇବାବତିଷ୍ଠନ୍ ।
ଆଘାରକାଦିନ୍ ଜୁହୁୟାତ୍ ସ୍ୱମନ୍ତ୍ରୈର୍ଦ୍ଦେବୀମିତି ସଂଜୁହୁୟାତ୍ ସକୃଚ୍ଚ ।
ଦୈବୀଂ ଚ ବାଜୋନ ଇତି ଦ୍ୱୟେନ ଋଚାଥ ବାରଂ ଜୁହୁୟାତ୍‌ପୁନଶ୍ଚ ।
ପ୍ରାଣ-ତ୍ୱପାନଂ ତ୍ୱଥ ଚାକ୍ଷୁଷଂ ଚ ଶ୍ରୋତ୍ରଂ ତଥା ବୈଚରୁଣା ଚ ହୁତ୍ୱା ।
ଭୂରାଦିକାନ୍‌ବୈ ଜୁହୁୟାଦ୍ ଘୃତେନ ତତଃ ସମଶ୍ନାତି ଚ ସଂସ୍ରବାଜ୍ୟଂ ।
ସମ୍ମାର୍ଜ୍ୟ ଦଦ୍ୟାଦଥ ଦକ୍ଷିଣାଂ ଚ ସଂଗୃହ୍ୟ ଚାନ୍ନଂ ନବକାଂସ୍ୟପାତ୍ରେ ।
ରସୈସ୍ତୁ ଷଡ଼୍‌ଭିର୍ଯୁତମେତଦନ୍ନଂ ସଂପ୍ରାଶ୍ୟ ମନ୍ତ୍ରେଣ ତଥାଚମେଦ୍ଧିଃ ।
ଆଚାରତୋଗୋମୟଭୂମିଧାନ୍ୟଂ ସ୍ୱର୍ଣ୍ଣଂ ତଥା ପୁସ୍ତକମାତୃକାଗ୍ରେ ।
ଏତେଷୁ ପୁତ୍ରସ୍ୟ ଚ ଯଦ୍ଧୁ ଚିଃ ସ୍ୟାଦ୍‌ବିଚାର୍ଯ୍ୟ ଗୃହ୍ଣୀତ ତଦେକମଗ୍ରଂ ।
ଦଶଦ୍ୱିଜେଭ୍ୟୋ ବହୁଧାଶନାନି ଦତ୍ତ୍ୱା ପବିତ୍ରଂ ଚ ତତଃପ୍ରଣୀତାଂ ।
ବିସର୍ଜୟେତ୍ତତ୍‌ଖଳୁ ବ୍ରହ୍ମବହ୍ନୀ ମାତା ସୁତଂ ଶାନ୍ତିଋଚାଭିଷିଞ୍ଚେତ୍ ।

ଅନ୍ନାଶନାଚ୍ଛିଦ୍ରମଥାବଧାର୍ଯ୍ୟ ପ୍ରଗ୍ରାହୟେଦାଶିଷମାତ୍ମଜଂ ଚ ।
ସମ୍ଭୋଜ୍ୟ ଯତ୍ନାଦ୍ଦ୍ୱିଜଗୋତ୍ରବର୍ଗାନନ୍ନାଶନଂ କର୍ମସମାପ୍ତମେବଂ ।
(ଲୋକନାଥଦାସେନ କୃତା)

ବ୍ୟାଖ୍ୟା-ପୂର୍ବପରି କଳସରେ ବରୁଣପୂଜା, ଅନାଦେଶପ୍ରାୟଶ୍ଚିତ୍ତ ହୋମ ଓ କର୍ମାଙ୍ଗ ସଂକଳ୍ପ କରି ଆଭ୍ୟୁଦୟିକଶ୍ରାଦ୍ଧ କରିବ । ତତ୍ପରେ ପଞ୍ଚଭୂସଂସ୍କାର ଓ ଅଗ୍ନିସ୍ଥାପନ କରି ବିଧିପୂର୍ବକ ବ୍ରହ୍ମାଙ୍କୁ ବରଣ କରିବ । ଅଗ୍ନିର ଦକ୍ଷିଣରେ ବ୍ରହ୍ମାଙ୍କ ଆସନ ରଖି ଉତ୍ତରରେ ପ୍ରଣୀତାପାତ୍ର ସ୍ଥାପନ କରିବ । ଅଗ୍ନିର ଚାରିଦିଗରେ କୁଶ ପରିସ୍ତରଣ କରି ଦକ୍ଷିଣଦିଗରୁ କ୍ରମେ ଉତ୍ତରକୁ ପାତ୍ରାସାଦନ କରିବ । ତତ୍ପରେ ଚରୁଯୁକ୍ତକୁଶାଣ୍ଡି କରି ବ୍ରହ୍ମନ୍ୱାରବ୍ଧ (ବ୍ରହ୍ମାଙ୍କଦ୍ୱାରା ସ୍ପୃଷ୍ଟ) ହୋଇ ଆଘାର ଓ ଆଜ୍ୟଭାଗ ହୋମ କରିବ । "ଦୈବୀଂ" ମନ୍ତ୍ର ପଢ଼ି ଅଗ୍ନିରେ ଏକ ଆହୁତି ଦେବ । "ଦୈବୀ" ଓ "ବାଜୋନ" ଏହି ଉଭୟ ମନ୍ତ୍ର ପଢ଼ି ଅଗ୍ନିରେ ପୁଣି ଆହୁତିଏ ଦେବ । "ପ୍ରାଣେନ" "ଅପାନେନ" "ଚକ୍ଷୁଷା" ଶ୍ରୋତ୍ରେଣ ଏହି ମନ୍ତ୍ର ପଢ଼ି ପ୍ରତ୍ୟେକ ମନ୍ତ୍ରରେ ଥରେ ଥରେ ଚରୁହୋମ କରିବ । ତତ୍ପରେ ଘୃତରେ ଭୂରାଦିହୋମ କରି ସଂସ୍ରବପାତ୍ରରୁ କିଞ୍ଚିତ ଘୃତ ଖାଇବ । ତତ୍ପରେ ମାର୍ଜନ ଓ ବ୍ରହ୍ମାଙ୍କର ଦକ୍ଷିଣାଦାନ କରି ନୂତନ କାଂସ୍ୟପାତ୍ରରେ ଷଡ଼ରସଯୁକ୍ତ ଅନ୍ନ ରଖି ମନ୍ତ୍ରଦ୍ୱାରା ସନ୍ତାନକୁ ପ୍ରାଶନ କରାଇ ଛଅଥର ଆଚମନ କରାଇବ । କୁଳାଚାର ଅନୁସାରେ ଗୋମୟ, ଭୂମି, ଧାନ୍ୟ, ସୁବର୍ଣ୍ଣ ଓ ପୁସ୍ତକ ପୁତ୍ରର ଆଗରେ ରଖିବ । ଏହି ପଦାର୍ଥମାନଙ୍କ ମଧ୍ୟରୁ ପୁତ୍ର ଇଚ୍ଛା ଅନୁସାରେ ଯାହା ପ୍ରଥମ ସ୍ପର୍ଶ କରିବ ତାହାକୁ ସେହି ଲାଭ ହେବ । ତଦନନ୍ତର ଦଶଜଣ ବ୍ରାହ୍ମଣଭୋଜନ କରାଇ ପବିତ୍ର ଓ ପ୍ରଣୀତାପାତ୍ର ବ୍ରହ୍ମା ଏବଂ ଅଗ୍ନି ଏମାନଙ୍କୁ କ୍ରମେ ବିସର୍ଜନ କରିବ ଏବଂ ଶାନ୍ତିମନ୍ତ୍ର ପଢ଼ି ସୁତ ମସ୍ତକରେ ମାତା ଜଳସେଚନ କରିବ । ପିତା ଅନ୍ନପ୍ରାଶନକର୍ମର ଅଚ୍ଛିଦ୍ରାବଧାରଣ କରି ପୁତ୍ରକୁ ଆଶୀର୍ବାଦ କରିବ । ଦ୍ୱିଜ ଓ ଗୋତ୍ରଜମାନଙ୍କୁ ଭୋଜନ ଦେଇ ଅନ୍ନପ୍ରାଶନକର୍ମ ସମାପ୍ତ କରିବ ।

## ୨୯୦-ଅନ୍ନପ୍ରାଶନ କର୍ମାରମ୍ଭ

ଜନ୍ମତଃ ଷଷ୍ଠେ ମାସେ ଅନ୍ନପ୍ରାଶନଂ । ତତ୍ରାଦୌ ବରୁଣ ପୂଜା ।
(୨୨୦ ନମ୍ବର ଦେଖ ।)



କାଳାତିକ୍ରମେଽନାଦେଶପ୍ରାୟଶ୍ଚିତ୍ତହୋମସଂକଳ୍ପଂ କୁର୍ଯ୍ୟାତ୍ । ତଦ୍‌ଯଥାଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକନାମ୍ନୋ ମମ କୁମାରସ୍ୟ ଅନ୍ନପ୍ରାଶନକର୍ମ୍ମ କାଳାତିକ୍ରମଦୋଷ-ବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତହୋମକର୍ମାହଂ କରିଷ୍ୟେ ।

(ଏହାର ବିଶେଷ ବିଧି ୧୨୫-୧୨୯ ନମ୍ବରେ ଦେଖ ।)

ପଞ୍ଚଭୂସଂସ୍କାରରେଣାଗ୍ନିସ୍ଥାପନଂ । ଓଁ ଶୁଚିନାମାଗ୍ନୟେ ନମଃ ଇତି ମନ୍ତ୍ରେଣ ଆସନାଦି ତାମ୍ବୁଳାନ୍ତଂ ପୂଜୟେତ୍ । (ଏହାର ବିଶେଷ ବିଧି ନଂ ୧୨୪-୧ (ଟିପ୍‌ପଣୀ ଦେଖ ।)

ପାତ୍ରାସାଦନଂ ଯଥା-ଆଜ୍ୟସ୍ଥାଲୀ, କୁଶାଃ୩, କୁଶାଃ ୩ ସ୍ରୁବଃ, ସ୍ରୁକ୍, ଏକାସମିତ, ଆଜ୍ୟଂ । ଏତାନ୍ୟାସାଦ୍ୟ ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ । ଆଜ୍ୟାଧିଶ୍ରୟଣମଗ୍ନୌ । ଜ୍ୱଳତ୍କାଷ୍ଠେନପର୍ଯ୍ୟଗ୍ନିକରଣ । ପ୍ରଥମ କୁଶତ୍ରୟେଣ ସ୍ରୁବସ୍ରୁଚୋଃ ସମ୍ମାର୍ଜନଂ । ଅପର କୁଶତ୍ରୟେଣାଜ୍ୟୋତ୍ପବନଂ । କୁଶାନାମଗ୍ନୌ ପ୍ରକ୍ଷେପଣଂ । ସ୍ରୁବେଣସ୍ରୁଚି ଚତୁରାଜ୍ୟଂ ଗୃହୀତ୍ୱା ତଦୁପରି ସମିଧମେକାଂ ଦତ୍ତ୍ୱା ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ଅନ୍ନପ୍ରାଶନ କର୍ମ କାଳାତିକ୍ରମଦୋଷବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତହୋମକର୍ମାରମ୍ଭଃ କ୍ରିୟତେ ଯଦାତଦା ତାରାବାର ଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହାଃ ଏକାଦଶସ୍ଥା ଫଳଦା ଭବନ୍ତୁ । ଆସନାତ୍‌କିଂଚିଦୁତ୍‌ଥାୟ ସମିଧମଗ୍ନୌ ପ୍ରକ୍ଷିପେତ୍ । ତୁଷ୍ଣୀଂ ବା ସମିଧାଗ୍ନିଂ ଦୁବସ୍ୟତ ଇତି ମନ୍ତ୍ରେଣ ବା । ଓଁ ଭୂଃ ସ୍ୱାହା ଇଦଂ ଭୂଃ ବା ଇଦମଗ୍ନୟେ । ପୁନଶ୍ଚତୁରାଜ୍ୟଂ ଗୃହୀତ୍ୱା ଓଁ ଭୁବଃ ସ୍ୱାହା ଇଦଂ ଭୁବଃ ବା ଇଦଂ ବାୟବେ । ପୁନଶ୍ଚତୁରାଜ୍ୟଂ ଗୃହୀତ୍ୱା । ଓଁ ସ୍ୱଃ ସ୍ୱାହା ଇଦଂ ସ୍ୱଃ ବା ଇଦଂ ସୂର୍ଯ୍ୟାୟ । ପୁନଶ୍ଚତୁ ରାଜ୍ୟଂ ଗୃହୀତ୍ୱ । ଓ ଭୁ ର୍ଭୂ ବଃ ସ୍ୱଃ ସ୍ୱାହା ଇଦଂ ଭୁ ଭୁ ର୍ବଃ ସ୍ୱଃ ବା ଇଦମଗ୍ନିବାୟୁସୂର୍ୟ୍ୟେଭ୍ୟଃ । ସ୍ରୁବେଣାଜ୍ୟଂଗୃହିତ୍ୱା । ଓଁ ତ୍ୱ ନ୍ନୋଅଗ୍ନେ । ଓଁ ସତ୍ୱନ୍ନୋଅଗ୍ନେ । ଓଁ ଅୟାଶ୍ଚାଗ୍ନେ । ଓଁ ଯେତେଶତଂ । ଓଁ ଉଦୁତ୍ତମଂ ।

(ଏହାର ସଂପୂର୍ଣ୍ଣ ମନ୍ତ୍ର ସହିତ ବିଧି ୨୨୧ ନମ୍ବର ଦେଖ ।)

## ୨ ୯ ୧-ଅନ୍ନପ୍ରାଶନର କର୍ମାଙ୍ଗ ସଂକଳ୍ପ

ଦେଶକାଲବାକ୍ୟାନନ୍ତରଂ-ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକନାମ୍ନୋ ମମ କୁମାରସ୍ୟ ଅନ୍ନପ୍ରାଶନକର୍ମାହଂ କରିଷ୍ୟେ ।

(ଏହାର ବିଶେଷ ବିଧି ୧୨୫-୧୨୯ ନମ୍ବର ଦେଖ ।)

## ୨ ୯ ୨-ଅନ୍ନପ୍ରାଶନର ଆଭ୍ୟୁଦୟିକ ଶ୍ରାଦ୍ଧ

ତତୋମାତୃପୂଜାପୂର୍ବକର୍ମାଭ୍ୟୁଦୟିକଶ୍ରାଦ୍ଧସଂକଳ୍ପଂ କୁର୍ଯ୍ୟାତ୍ । ତଦ୍ୟଥା-ଦେଶକାଲବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକନାମ୍ନୋ ମମ କୁମାରସ୍ୟ ଅନ୍ନପ୍ରାଶନକର୍ମଣେଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ ପ୍ରତ୍ୟାମ୍ନାୟତ୍ୱେନ * ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀ ପ୍ରପିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖାନାଂ ଅମୁକସଗୋତ୍ରାଣାଂ ଅସ୍ମପିତୃପିତାମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମ୍ମଣାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମ୍ମଣାଂ ନାନ୍ଦୀମୁଖୀନାଂ ଗଣପତିପୁରଃସରଗୌର୍ଯ୍ୟଦ୍ୟଷ୍ଟାଦଶମାତୃଗଣପୂଜା-ବସୋର୍ଦ୍ଧାରାୟୁଷ୍ୟମନ୍ତ୍ରଜପପୂର୍ବକଭୋଜ୍ୟଦାନମହଂ କରିଷେ ସଂକଳ୍ପସୂକ୍ତଂ ପଠେତ୍ । (୧୨୯ ନମ୍ବର ଦେଖ ।)

ତତୋମଣ୍ଡଳେ ଗଣପତିପୁରଃସରଗୌର୍ଯ୍ୟଦ୍ୟଷ୍ଟାଦଶମାତୃଗଣାନ୍ ସ୍ୱନାମଚତୁର୍ଥ୍ୟନ୍ତେନ ପୂଜୟେତ୍ । (ଏହାର ବିଶେଷ ବିଧି ୧୩୧ ନମ୍ବର ଦେଖ)

ତତଃ କୁଡ୍ୟଲଗ୍ନ ବସୋର୍ଦ୍ଧାରାଃ ପଞ୍ଚବା ସପ୍ତ ବା ଦଦ୍ୟାଦ୍ ଘୃତେନ ।

(ଏହାର ବିଶେଷ ବିଧି ୧୩୨ -୧୩୪ ନମ୍ବର ଦେଖ ।)

ଅଥ ଭୋଜ୍ୟୋତ୍ସର୍ଗଃ-ତଦ୍ୟଥା-ବିଷ୍ଣୁର୍ନମଃ ଅଦ୍ୟେହତ୍ୟାଦି ପୂର୍ବୋକ୍ତ ଏବଂ ବିଧିବିଶେଷେଣବିଶିଷ୍ଟାୟାଂ ପୁଣ୍ୟତିଥୌ କାଶ୍ୟପାଦିନାନାଗୋତ୍ରେଭ୍ୟୋ ବ୍ରାହ୍ମଣେଭ୍ୟୋ ନାନାବେଦନାନାଶାଖାଶାଖୈକଦେଶାଧ୍ୟାୟିଭ୍ୟୋ ନାନାନାମଶର୍ମ୍ମଭ୍ୟସ୍ତେଭ୍ୟୋ ମନସାର୍ଚ୍ଚିତେଭ୍ୟଃ ଶ୍ରୀ ବିଷ୍ଣୁସ୍ୱରୂପେଭ୍ୟଃ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକନାମ୍ନୋ ମମକୁମାରସ୍ୟ ଅନ୍ନପ୍ରାଶନକର୍ମ୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ୱେନ * ବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀ ୩ ନାଂ

---

* ତତ୍ପ୍ରତ୍ୟାମ୍ନାତତ୍ୱେନ ଇତି ପାଠାନ୍ତରଂ ।



ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମତ୍‌ପିତୃପିତା-ମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍‌ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀ ମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ * ଇମାନି ସମ୍ମୁୟାଷ୍ଟପରିମିତାନି ପ୍ରଜାପତିଦୈବତାନି ଭୋଜ୍ୟାନି ତେଭ୍ୟୋଃ ବ୍ରାହ୍ମଣେଭ୍ୟୋଃ ଦାତୁମହମୁସୃଜେ । ଅନ୍ନେ ପ୍ରତିଷ୍ଠିତାଦେବା ଇତି ପ୍ରାର୍ଥନା ।

## ୨୯୩-ଅନ୍ନପ୍ରାଶନର କୁଶାଣ୍ଡି ଓ ହୋମ

ଗୃହାଭ୍ୟନ୍ତରେ ପଞ୍ଚଭୂସଂସ୍କାରାନ୍ କୃତ୍ୱା ଶୁଚିନାମାଗ୍ନିଂ ସଂସ୍ଥାପ୍ୟ ତଦ୍‌ଦକ୍ଷିଣେ ବ୍ରହ୍ମା ସନମାସ୍ତୀର୍ଯ୍ୟ ବ୍ରହ୍ମାବରଣଂ କୁର୍ଯ୍ୟାତ୍ । ତଦ୍‌ଯଥା-ଓଁ ବିଷ୍ଣୁର୍ନମଃ ଅଦ୍ୟେହେତ୍ୟାଦି ପୁଣ୍ୟତିଥାଦିତ୍ୟନ୍ତଂ ପଠିତ୍ୱା ଅମୁକସଗୋତ୍ରଂ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନଂ ଅମୁକଦେବଶର୍ମାଣଂ ବ୍ରାହ୍ମଣମର୍ଚ୍ଚିତଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକନାମୋ ମମ କୁମାରସ୍ୟ ଅନ୍ନପ୍ରାଶନାଙ୍ଗହୋମକର୍ମଣି କୃତାକୃତାବେକ୍ଷକତ୍ୱେନ ବ୍ରହ୍ମାଣଂ ତ୍ୱାମହଂ ବୃଣେ । ବୃତୋଽସ୍ମୀତ୍ୟାଦି । (ଏହାର ବିଶେଷ ବିଧି ୧୪୯ ନମ୍ବର ଦେଖ ।)

ଦକ୍ଷିଣତୋ ବ୍ରହ୍ମାସନଂ । ଉତ୍ତରେ ପ୍ରଣୀତାପ୍ରଣୟନଂ । ପରିସ୍ତରଣଂ ଚତୁର୍ଦ୍ଦିକ୍ଷୁ । ଦକ୍ଷିଣତଃ ପାତ୍ରାସାଦନମୁତ୍ତରସଂସ୍ଥଂ । ପବିତ୍ରଛେଦନାନି ପବିତ୍ରେ । ପ୍ରୋକ୍ଷଣୀପାତ୍ରଂ । ଆଜ୍ୟସ୍ଥାଲୀ । ଚରୁସ୍ଥାଲୀ ସମ୍ମାର୍ଜନକୁଶାଃ ୧୦ ଉପଯମନକୁଶାଃ ୧୩ । ତିସ୍ରଃସମିଧଃ, ସ୍ରୁବଃ, ଆଜ୍ୟଂ । ଚର୍ବର୍ଥତଣ୍ଡୁଲାଃ । ପୂର୍ଣ୍ଣପାତ୍ରଂ ଚ । ଦକ୍ଷିଣା * ବରୋବା । ଇତ୍ୟାସାଦ୍ୟ । ପବିତ୍ରଛେଦନୋପରି ପବିତ୍ରଂ ଦତ୍ତ୍ୱା ପ୍ରଦକ୍ଷିଣାଂ ବେଷ୍ଟୟିତ୍ୱା ପ୍ରାଦେଶମାତ୍ରଂ ପବିତ୍ରଛେଦନଂ କୃତ୍ୱା ପ୍ରୋକ୍ଷଣ୍ୟୁପରି ପବିତ୍ରଂ ସ୍ଥାପୟିତ୍ୱା । ପ୍ରଣୀତା ଜଳେନ ପ୍ରୋକ୍ଷଣୀ ପୂରୟିତ୍ୱାତଜ୍ଜଳେ ନାସାଦିତ ପାତ୍ର ପ୍ରୋକ୍ଷଣଂ । ଅଗ୍ନିପ୍ରଣୀତୟୋ ମଧ୍ୟେ ପ୍ରୋକ୍ଷଣୀନିଧାନଂ । ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ । ଚରୁସ୍ଥାଲ୍ୟାଂ ପ୍ରଣୀତୋଦକମାସିଚ୍ୟ ଚରୁତଣ୍ଡୁଳପ୍ରକ୍ଷେପଃ । ଆଜ୍ୟାଧିଶ୍ରୟଣଂ ତଦୁତ୍ତରେ ଚରୋରଧିଶ୍ରୟଣଂ । ଜ୍ୱଳାତ୍କାଷ୍ଠେନ ଉଭୟୋଃ ପର୍ଯ୍ୟଗ୍ନିକରଣଂ । ଅର୍ଦ୍ଧଶୃତେ ଚରୌ । ସ୍ରୁବପ୍ରତପନଂ । ସମ୍ମାର୍ଜନକୁଶୈଃ ସ୍ରୁବସମ୍ମାର୍ଜନଂ । ପ୍ରଣୀତୋଦକେନା ଭ୍ୟୁକ୍ଷଣଂ ।

---

* ତତ୍ରପ୍ରତ୍ୟାମ୍ନାତତ୍ୱେନ ଇତି ପାଠାନ୍ତରଂ । * ଉଦଂସମ୍ମୁୟ ଏକ ପରିମିତଂ ପ୍ରଜାପତିଦୈବତମିତି ପାଠାନ୍ତରଂ । * ଚତୁଃକାର୍ଷାପଣୋ ବରଃ ।

ପୁନଶ୍ଚରୁପ୍ରତପନଂ । ଅଧୋମୁଖଂ । ଭୂମୌ ନିଧାନଂ । ଆଜ୍ୟୋଦ୍‌ବାସନଂ । ଚରୋରୁଦ୍‌ବାସନଂ । ଅଗ୍ନେରୁତ୍ତରାଦାନୀୟ ସ୍ଥାପନଂ । ପବିତ୍ରାଭ୍ୟାମାଜ୍ୟୋତ୍ପବନଂ ପ୍ରୋକ୍ଷଣ୍ୟୁତ୍ପବନଂ । ଆଜ୍ୟାବେକ୍ଷଣଂ । ଚରୋରବେକ୍ଷଣଂ । ପ୍ରୋକ୍ଷଣ୍ୟବେକ୍ଷଣଂ । ସ୍ରୁବନିଯୋଜନଂ । ଉପଯମନକୁଶାନାଦାୟ ବାମହସ୍ତେ ଧୃତ୍ୱା ଉତ୍ତିଷନ୍ ସମିଧମଗ୍ନୌ ପ୍ରକ୍ଷିପେତ୍ । ପ୍ରୋକ୍ଷଣୀଂ ସପବିତ୍ରଂ ଗୃହୀତ୍ୱା ଈଶାନାଦିତଦନ୍ତଂ ପର୍ଯ୍ୟୁକ୍ଷଣଂ । ପ୍ରଣୀତାୟାଂ ପବିତ୍ରସ୍ଥାପନଂ । ଦକ୍ଷିଣଂ ଜାନ୍ୱାଚ୍ୟ (ନିପାତ୍ୟ) ବ୍ରହ୍ମାନ୍ୱାରବେଧେନ ସ୍ରୁବେଣ ହୋମଃ । ଓଁ ପ୍ରଜାପତୟେ ସ୍ୱାହା ଇଦଂ ପ୍ରଜାପତୟେ । ଓଁ ଇନ୍ଦ୍ରାୟ ସ୍ୱାହା ଇଦମିନ୍ଦ୍ରାୟ । ଓଁ ଅଗ୍ନେୟ ସ୍ୱାହା ଇଦମଗ୍ନୟେ । ଓଁ ସୋମାୟା ସ୍ୱାହା ଇଦଂ ସୋମାୟ । ଇତ୍ୟାଘାରାବାଜ୍ୟଭାଗୌ ହୁତ୍ୱା ।

ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମ୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ଅନ୍ନପ୍ରାଶନାଙ୍ଗହୋମକର୍ମ୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

ତତଃ ଆଜ୍ୟେନ ଆହୁତିଦ୍ୱୟଂ ଜୁହୋତ୍ୟନେନ ମନ୍ତ୍ରଦ୍ୱୟେନ । ତଦ୍‌ଯଥା-ଓଁ ଦୈବୀଂ ବାଚମଜନୟନ୍ତ ଦେବାସ୍ତା ବିଶ୍ୱରୂପାଃ ପଶବୋ ବଦନ୍ତି । ସାନୋ ମନ୍ଦ୍ରେଷମୁର୍ଜଦୁହାନା ଧେନୁବାଗସ୍ମାନୁପସୁଷ୍ଟୁ ତୈ ତୁ ସ୍ୱାହା । ଇଦଂ ବାଚେ ।୧ । ଇତ୍ୟୋକାଂ । ପୁନର୍ଦୈବୀଂ ବାଚମିତି ପଠିତ୍ୱା ଓଁ ବାଜୋନୋ ଅଦ୍ୟ ପ୍ରସୁବାତି ଦାନଂ ବାଜୋଦେବାଂ ଋତୁଭି କଳ୍ପୟାତି । ବାଜୋହି ମା ସର୍ବବୀରଂ ଚକାର ସର୍ବା ଆଶା ବାଜପତିର୍ଜୟେୟ ଜୁଂ ସ୍ୱାହା । ଇଦଂ ବାଚେ ବାଜାୟ ।୨ । ଇତ୍ୟେକାଂ ଏବଂ ଆହୁତିଦ୍ୱୟଂ ।

ବ୍ୟାଖ୍ୟା-ଏହି ଉପରୋକ୍ତ "ଦୈବୀଂବାଚଂ" ମନ୍ତ୍ର ପଢ଼ି ସ୍ରୁବଦ୍ୱାରା ଆଜ୍ୟରେ ଆହୁତିଏ ଦେବ । ତତ୍ପରେ "ଦୈବୀଂ ବାଚଂ" ଓ ଉପରୋକ୍ତ "ବାଜୋନୋ" ଏହି ଉଭୟ ମନ୍ତ୍ର ପଢ଼ି ଆହୁତିଏ ଦେବ, ଏହିପରି ଦୁଇ ଆହୁତି ଦେବ ।

ତତଃ ସ୍ଥାଲୀପାକେନାହୁତିଚତୁଷ୍ଟୟଂ ଦଦ୍ୟାଦନେନ ମନ୍ତ୍ରଚତୁଷ୍ଟୟେନ । ତଦ୍‌ଯଥା-ଓଁ ପ୍ରାଣେନାନ୍ନମଶୀୟ ସ୍ୱାହା ଇଦଂ ପ୍ରାଣାୟ ।୧ । ଓଁ ଅପାନେନ ଗନ୍ଧାନଶୀୟ ସ୍ୱାହା । ଇଦମପାନାୟ ।୨ । ଓଁ ଚକ୍ଷୁଷା ରୂପାଣ୍ୟଶୀୟ ସ୍ୱାହା । ଇଦଂ ଚକ୍ଷୁଷେ ।୩ । ଓଁ ଶ୍ରୋତ୍ରେଣ ଯଶୋଽଶୀୟ ସ୍ୱାହା । ଇଦଂ ଶ୍ରୋତାୟ । ୪ । (ଏହି ଉପରୋକ୍ତ ଚାରିକାଣ୍ଡି ମନ୍ତ୍ର ପଢ଼ି ଚରୁଦ୍ୱାରା ଚାରିଆହୁତି ଦେବ) ।



ତତଃ ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା ଇଦମଗ୍ନୟେ ସ୍ୱିଷ୍ଟକୃତେ । (ତତ୍ପରେ ଏହି ଉପରୋକ୍ତ ମନ୍ତ୍ର ପଢ଼ି ଚରୁ ଆହୁତିଏ ଦେବ ।)

ତତଃ ଆଜ୍ୟେ ନ ଭୂରାଦିପ୍ରଜାପତ୍ୟାନ୍ତା ନବାହୁତୟଃ । ତଦ୍‌ଯଥା-ଓଁ ଭୂଃ ୧, ଓଁ ଭୁବଃ ୨, ଓଁ ସ୍ୱଃ ୩, ତ୍ୱନ୍ନୋଅଗ୍ନେ ୪, ଓଁ ସତ୍ୱନ୍ନୋଗ୍ନେ ୫, ଓଁ ଅୟାଶ୍ଚାଗ୍ନେ ୬, ଓଁ ଯେତେଶତଂ ୭, ଓଁ ଉଦୁତ୍ତମଂ ୮, ଓଁ ପ୍ରଜାପତୟେ ୯ । (ଏ ନଅ ଆହୁତି ଘୃତରେ ଶ୍ରୁବଦ୍ୱାରା ଦେବ । (ସମ୍ପୂର୍ଣ୍ଣ ମନ୍ତ୍ର ଓ ବିଶେଷ ବିଧି ୨ ୨୩ ନମ୍ବର ଦେଖ ।)

ସଂଶ୍ରବପ୍ରାଶନଂ । ଓଁ ସୁମିତ୍ରିୟାନ ଆପ ଔଷଧୟଃ ସନ୍ତୁ ଦୁର୍ମିତିୟାସ୍ତସ୍ମୈ ସନ୍ତୁ ଯୋଽସ୍ମାଂଦ୍ୱେଷ୍ଟିୟଂ ଚ ବୟଂ ଦ୍ୱିଷ୍ମଃ । ଇତି ମନ୍ତ୍ରେଣ ମାର୍ଜନଂ । (ଏହା ପଢ଼ି କୁଶଜଳରେ ପୁତ୍ରକୁ ମାର୍ଜନ କରିବ) ବ୍ରହ୍ମଣେ ଦକ୍ଷିଣାଦାନଂ ।

## ୨୯୪-ଅନ୍ନପ୍ରାଶନ କର୍ମ

ତତଃ * ସର୍ବାନେବ ରସାନ୍ ଯବଶାଲ୍ୟାଦୀନି ଅନ୍ନାନି ଯଥାସମ୍ଭବମେକସ୍ମିନ୍ନୁତନ * କାଂସ୍ୟପାତ୍ରେ ଉଦ୍ଧୃତ୍ୟ କୁମାରଂ ସକୃଦେବ ତୁଷ୍ଣୀଂ ପ୍ରାଶୟେତ୍ ହନ୍ତେତି ମନ୍ତ୍ରେଣ ବା ।

ବ୍ୟାଖ୍ୟା-ଷଡ଼୍‌ରସ ଯୁକ୍ତ ଶାଳିଅନ୍ନକୁ ଗୋଟିଏ ନୂତନ କାଂସ୍ୟପାତ୍ରରେ ଏକତ୍ର କରି ରଖି ପିତା କୁମାରକୁ "ହନ୍ତ" ଏହି ତଳଲିଖିତ ମନ୍ତ୍ର ପଢ଼ି କିମ୍ବା ମୌନହୋଇ ସେହି ଅନ୍ନକୁ ଥରେ ଖାଇଦେବ । ମନ୍ତ୍ରୋଯଥା-

ଓଁ ହନ୍ତ ସତ୍ୟଂ ଚନ୍ଦ୍ରମାଦିତ୍ୟାପତସ୍ତ୍ୟାଗାମଭିନନ୍ଦନଂ । ଘର୍ମାୟୈନଂ ସଦକ୍ଷିଣଂସୋମେ କାମଃ ସମୃଦ୍ଧାତାଙ୍ଗଂ ସ୍ୱାହା । ଇତି ପ୍ରାଶୟେତ୍ ।

---

* ଦେବତାପୁରତସ୍ତସ୍ୟ ଧାତ୍ର୍ୟ୍ୟ ସ୍ୱଙ୍ଗଗତସ୍ୟ ଚ ।
ଅଳଙ୍କୃତସ୍ୟ ଦାତବ୍ୟମନ୍ନଂ ପାତ୍ରେ ସକାଞ୍ଚନଂ ।
ମଧ୍ୱାଜ୍ୟଦଧିସଂଯୁକ୍ତଂ ପ୍ରାଶୟେତ୍ପାୟସଂ ତୁ ବା । (ମାର୍କଣ୍ଡେୟଃ)

ବ୍ୟାଖ୍ୟା-ବାଳକକୁ ବସ୍ତ୍ରାଳଙ୍କାରାଦି ପିନ୍ଧାଇ ଧାଈ କୋଳରେ ଦେଇ ପିତା ଇଷ୍ଟଦେବତାଙ୍କ ସମ୍ମୁଖରେ ପାତ୍ରରେ ଥିବା ଦଧି, ମଧୁ, ଘୃତଯୁକ୍ତ ଅନ୍ନକୁ ସୁବର୍ଣ୍ଣଦ୍ୱାରା ଉଠାଇ ଖୋଇଦେବ ।

* ସୁବର୍ଣ୍ଣାଦିପାତ୍ରେ ଇତି ଗଦାଧରଃ ।

ତତଃ ପୁତ୍ରମାଚାସୟେତ୍ କାଳାତିକ୍ରମେ ଦୈବବଶାତ୍ ଜ୍ଞାନବତି କୁମାରେ ଲୌକିକବ୍ୟବହାରାଦ * ଗୋମୟଭୁ ମିହି ରଣ୍ୟଧାନ୍ୟପୁସ୍ତକାନ୍ୟାସାଦ୍ୟ କୁମାରଂ ବଦେତ୍ । କୁମାର ଏଷାମେକତମଂ ତୁଭ୍ୟଂ ଯଦ୍ରୋଚତେ ତଦ୍‌ଗୃହ୍ୟତାଂ । ପିତରୀତ୍ୟୁକ୍ତେ କୁମାରୋ ତଦ୍ଦୃଛୟା ତଦ୍‌ଗୃହ୍‌ଣାତି ତଦ୍‌ବିଚାରୟେତ୍ । ଗୋମୟେ ଗୌଃ । ମୃତ୍ତିକାୟାଂ ଭୂମିଃ । ସୁବର୍ଣ୍ଣେ ସୁବର୍ଣ୍ଣଂ । ଧାନ୍ୟେ ଧାନ୍ୟଂ । ପୁସ୍ତକେ ବିଦ୍ୟାଲାଭ ଇତି ।

**ବ୍ୟାଖ୍ୟା**-ଯଦି ଦୈବବଶରୁ କାଳାତିକ୍ରମ ହୁଏ ଆଉ ପୁତ୍ର ଜ୍ଞାନବାନ୍ ହୁଏ ସେହି ଅବସ୍ଥାରେ ଲୌକିକବ୍ୟବହାର ଅନୁସାରେ ତାହା ସମ୍ମୁଖରେ ଗୋମୟ, ଭୂମି, ହିରଣ୍ୟ, ଧାନ୍ୟ ଓ ପୁସ୍ତକ ରଖି କହିବ କି ଏହା ମଧ୍ୟରୁ ଯେ ତୁମ୍ଭର ରୁଚି ହୁଏ ଗୋଟିଏ ପଦାର୍ଥ ଗ୍ରହଣ କର । ପଦାର୍ଥ ଗ୍ରହଣର ଫଳାଫଳ ଯଥା-ଗୋବର ଗ୍ରହଣ କଲେ ଗୋରୁ, ମୃତ୍ତିକା ଗ୍ରହଣ କଲେ ଭୂମି, ସୁବର୍ଣ୍ଣ ଗ୍ରହଣ କଲେ ସୁବର୍ଣ୍ଣ, ଧାନ୍ୟ ଗ୍ରହଣ କଲେ ଧାନ୍ୟ ଓ ପୁସ୍ତକ ଗ୍ରହଣ କଲେ ବିଦ୍ୟାଲାଭ ହୁଏ ।

କର୍ମାଙ୍ଗଦଶବ୍ରାହ୍ମଣଭୋଜନଂ । ପବିତ୍ରପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବିସର୍ଜନଂ । ଶାନ୍ତିକରଣଂ । ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । କୁମାରସ୍ୟ ଆଶୀର୍ବାଦଂ । ଅନ୍ନପତେ ଇତି ମନ୍ତ୍ରେଣ । ତଦ୍‌ଯଥା-ଓଁ ଅନ୍ନପତେଽନ୍ନସ୍ୟ ନୋ ଦେହ୍ୟନ ମୀବସ୍ୟ ଶୁଷ୍ମିଣଃ । ପ୍ରପ୍ରଦାତାରନ୍ତାରିଷ ଉର୍ଜନ୍ନୋଧେହି ଦ୍ୱିପଦେଶ ଚତୁଷ୍ପଦେ । ଇତ୍ୟନ୍ନପ୍ରାଶନକର୍ମ ସମାପ୍ତଂ ।

-୦-

## ୨୯୫-ଚୂଡ଼ାକର୍ମ ବିଚାର

ପ୍ରଥମେଽବ୍ଦେତୃତୀୟେ ବା ଚୂଡ଼ାକର୍ମ ଦ୍ୱିଜନ୍ମନାଂ ।
ସର୍ବେଷାଂ ଚ ଯଥାଧର୍ମଂ ଶିଖାଂ ସ୍ଥାପ୍ୟ ଯଥାକୁଳଂ ।

---

* କୃତପ୍ରାଶନମୁତ୍ସଙ୍ଗାଦ୍ଧାତ୍ରୀବାଲ ସମୁତ୍ସୃଜେତ୍ ।
କାର୍ଯ୍ୟଂ ତସ୍ୟ ପରିଜ୍ଞାନଂ ଜୀବିକାୟାଃ ଅନନ୍ତରଂ ।
ଦେବତାଗ୍ରେଽଥ ବିନ୍ୟସ୍ୟ ଶିଳ୍ପଭାଣ୍ଡାନି ସର୍ବଶଃ ।
ଶାସ୍ତ୍ରାଣି ଚୈବ ଶସ୍ତ୍ରାଣି ତତଃ ପଶ୍ୟେତ୍ତୁଲକ୍ଷଣଂ ।
ପ୍ରଥମଂ ଯତ୍‌ସ୍ପୃଶେଦ୍ ବାଳସ୍ତତୋ ଭାଣ୍ଡଂ ସ୍ୱୟଂ ତଦା ।
ଜୀବିକା ତସ୍ୟ ବାଳସ୍ୟ ତେନୈବତି ଭବିଷ୍ୟତି । (ଇତି ଗଦାଧରଃ)



ସାମ୍ବତ୍ସରିକସ୍ୟ ଚୂଡ଼ାକରଣଂ ତୃତୀୟେ ବାଽପ୍ରତିହତେ (ଅସଂପୂର୍ଣ୍ଣେ) ପାରସ୍କରଃ । ଦୈବଯୋଗେ ଦ୍ୱୟୋଭାବେ ସ୍ମୃତ୍ୟନ୍ତରୋକ୍ତାନ୍ୟତମେ କାଳେ କୁର୍ଯ୍ୟାତ୍ ।

ଜନ୍ମତସ୍ତୁ ତୃତୀୟେଽବ୍ଦେ ଶ୍ରେଷ୍ଠମିଚ୍ଛନ୍ତି ପଣ୍ଡିତାଃ ।
ପଞ୍ଚମେ ସପ୍ତମେ ବାପି ଜନ୍ମତୋ ମଧ୍ୟମଂ ଭବେତ୍ ।
ଅଧମଂ ଗର୍ଭତଃ ସ୍ୟାତ୍ତୁ ନବମୈକାଦଶେଽପି ବା । (ନାରଦଃ)
ତୃତୀୟେଽବ୍ଦେଶିଶୋଗର୍ଭାଜ୍ଜନ୍ମତୋ ବା ବିଶେଷତଃ ।
ପଞ୍ଚମେ ସପ୍ତମେ ବାପି ସ୍ତ୍ରିୟାଃ ପୁଂ ସୋଽପିବା ସମଂ ।(ବୃହସ୍ପତିଃ)
ଆଦ୍ୟେଽବ୍ଦେ କୁର୍ବତେ କେଚିତ୍ ପଞ୍ଚମେଽବ୍ଦେ ତୃତୀୟକେ ।
ଉପନୀତ୍ୟା ସହୈବେତିବିକଳ୍ପାଃ କୁଳଧର୍ମତଃ । (ପ୍ରୟୋଗପାରିଜାତେ)

ବ୍ୟାଖ୍ୟା-ଦ୍ୱିଜାତିମାନଙ୍କର ପ୍ରଥମ ବା ତୃତୀୟ ବର୍ଷରେ ଚୂଡ଼ାକର୍ମ କରିବ । ଯେଉଁ କୁଳରେ ଯେପରି ଶିଖା ରଖିବାର ବିଧି ଅଛି ସେମାନେ ସେହିପରି ରଖିବେ । ପାରସ୍କର କରିଅଛନ୍ତି ପ୍ରଥମ ବର୍ଷରେ ବା ତୃତୀୟ ବର୍ଷ ମଧ୍ୟରେ ଚୂଡ଼ାକର୍ମ କରିବ । ଦୈବାତ୍ ଯଦି ପ୍ରଥମ ବା ତୃତୀୟ ବର୍ଷରେ କରାଯାଇ ନ ପାରେ ତେବେ ସ୍ମୃତ୍ୟନ୍ତରୋକ୍ତ ନିମ୍ନଲିଖିତ ସମୟରେ କରିବ । ନାରଦ କହନ୍ତି ପଣ୍ଡିତମାନଙ୍କ ମତରେ ଜନ୍ମଠାରୁ ତୃତୀୟ ବର୍ଷ ଶ୍ରେଷ୍ଠ; ଜନ୍ମଠାରୁ ପଞ୍ଚମ ବା ସପ୍ତମବର୍ଷ ମଧ୍ୟମ, ଗର୍ଭାଧାନଠାରୁ ନବମ ବା ଏକାଦଶବର୍ଷ ଅଧମ; ବୃହସ୍ପତି କହନ୍ତି ଗର୍ଭାଧାନଠାରୁ କିମ୍ବା ଜନ୍ମ ହେଲା ଉତ୍ତାରୁ ତୃତୀୟ ବା ପଞ୍ଚମ କିମ୍ବା ସପ୍ତମ ବର୍ଷରେ କନ୍ୟା ବା ପୁତ୍ରର ଚୂଡ଼ାକରଣ କରିବ । ପ୍ରୟୋଗପାରିଜାତରେ କଥିତ ଅଛି ଯେ, କେହି କେହି ପ୍ରଥମ ବର୍ଷରେ, କେହି କେହି ତୃତୀୟ ବର୍ଷରେ, କେହି କେହି ପଞ୍ଚମ ବର୍ଷରେ, କେହି କେହି ପଞ୍ଚବ ବର୍ଷରେ, କେହି କେହି ବା ଉପନୟନ ସଙ୍ଗରେ, କେହି କେହି ବା କୁଳଧର୍ମ ଅନୁସାରେ କରନ୍ତି । ଯେଉଁମାନଙ୍କ କୁଳରେ ଚୂଡ଼ାକର୍ମ ନାହିଁ ସେମାନଙ୍କ ପକ୍ଷରେ "ବିକଳ୍ପ" ଅର୍ଥାତ୍ ଇଚ୍ଛାହେଲେ କରିପାରନ୍ତି ବା ନ କରିପାରନ୍ତି ।

## ୨୯୬-ଚୂଡ଼ାକର୍ମରେ ପତ୍ନୀ ରଜସ୍ୱଳା ହେଲେ କର୍ମ କରିବାର ନିଷିଦ୍ଧ ବାକ୍ୟ

ପ୍ରାପ୍ତମଭ୍ୟୁଦୟଂ ଶ୍ରାଦ୍ଧଂ ପୁତ୍ରସଂସ୍କାରକର୍ମଣି ।
ପତ୍ନୀ ରଜସ୍ୱଳା ଚେତ୍ ସ୍ୟାନ୍ନକୁର୍ଯ୍ୟାତ୍ତତ୍ ପିତା ତଦା । (ବୃହସ୍ପତି)
ପିତେତି କର୍ତ୍ତୃମାତ୍ରୋପଲକ୍ଷଣମିତି ଗଦାଧରଃ ।
ବିବାହୋତ୍ସବଯଜ୍ଞେଷୁ ମାତା ଯଦି ରଜସ୍ୱଳା ।

ତଦା ସ ମୃତ୍ୟୁମାପ୍ନୋତି ପଞ୍ଚମଂ ଦିବସଂ ବିନା । (ଗାର୍ଗ୍ୟଃ)
ଅଲାଭେ ସୁମୁହୂର୍ତ୍ତସ୍ୟ ରଜୋଦୋଷେ ଉପସ୍ଥିତେ ।
ଶ୍ରିୟଂ ସଂପୂଜ୍ୟ ବିଧିବତ୍ତତୋ ମଙ୍ଗଳମାଚରେତ୍ । (ବାକ୍ୟସାରେ)

ବ୍ୟାଖ୍ୟା-ବୃହସ୍ପତି କହନ୍ତି ପୁତ୍ରର ସଂସ୍କାର କର୍ମରେ ଯଦି ମାତା ରଜସ୍ୱଳା ହୁଏ ତେବେ ପିତା ଅଥବା କର୍ତ୍ତା ମଧ୍ୟ ଆଭ୍ୟୁଦାୟିକ ଶ୍ରାଦ୍ଧ କରିବ ନାହିଁ । ଗାର୍ଗ୍ୟ କହନ୍ତି କି ବିବାହ ଉତ୍ସବ ଓ ଯଜ୍ଞକର୍ମରେ ମାତା ଯଦି ରଜସ୍ୱଳା ହୁଏ ତେବେ ଅଶୌଚର ପାଞ୍ଚଦିନ ପରିତ୍ୟାଗ ନ କରି କର୍ମ କଲେ ପୁତ୍ରର ମୃତ୍ୟୁ ହୁଏ । ବାକ୍ୟସାରରେ କଥିତ ଅଛି ଯେବେ ସୁମୁହୂର୍ତ୍ତର ଅଭାବ ହୁଏ (ଚୂଡ଼ା କର୍ମର ଶୁଭଦିନ ଯେବେ ଆଗକୁ ନ ଥାଏ) ତେବେ ରଜୋଦୋଷ ଉପସ୍ଥିତ ହେଲେ ବିଧି ଅନୁସାରେ ଲକ୍ଷ୍ମୀଦେବୀଙ୍କୁ ପୂଜା କରି ମଙ୍ଗଳକାର୍ଯ୍ୟ କରିବ ।

## ୨୯୭-ଚୂଡ଼ାକର୍ମରେ ମାତା ଗର୍ଭବତୀ ଥିବା ସମୟରେ କର୍ମ କରିବା ନିଷେଧ ବାକ୍ୟ

ଗର୍ଭିଣ୍ୟାଂ ମାତରି ଶିଶୋଃ କ୍ଷୌରକର୍ମ ନ କାରୟେତ୍ ।
ବ୍ରତେଽଭିଷେକେଽପ୍ୟେବଂ ସ୍ୟାତ୍ କାଲୋବେଦବ୍ରତେଷ୍ୱପି ।।
(ବୃହସ୍ପତି)

ପୁତ୍ରଚୂଡ଼ାକୃତୌ ମାତା ଯଦି ସା ଗର୍ଭିଣୀ ଭବେତ୍ ।
ଶସ୍ତ୍ରେଣ ମୃତ୍ୟୁମାପ୍ନୋତି ତସ୍ମାତ୍ କ୍ଷୌରଂ ବିବର୍ଜୟେତ୍ ।।
(ମଦନରତ୍ନେ)

ପଞ୍ଚମାସାଦଧଃ କୁର୍ଯ୍ୟାଦତ୍ତଉର୍ଦ୍ଧ୍ୱଂନ କାରୟେତ୍ ।(ମଦନରତ୍ନେ)
ପଞ୍ଚମାସାଦୁର୍ଦ୍ଧ୍ୱଂ ମାତୁର୍ଗର୍ଭସ୍ୟ ଜାୟତେ ମୃତ୍ୟୁରିତି ତତ୍ରୈବୋକ୍ତଂ ।

ବ୍ୟାଖ୍ୟା-ଯଦି ମାତା ଗର୍ଭବତୀ ହୁଏ ତେବେ ଶିଶୁର କ୍ଷୌରକର୍ମ ବ୍ରତ (ଉପନୟନ) ଅଭିଷେକ (ସମାବର୍ତ୍ତନ) ଓ ବେଦବ୍ରତ ଏମାନ କରାଇବ ନାହିଁ । କାରଣ ମାତାର ଗର୍ଭାବସ୍ଥାରେ କ୍ଷୌରକର୍ମ କରାଇଲେ ଅସ୍ତ୍ରଦ୍ୱାରା ପୁତ୍ରର ମୃତ୍ୟୁ ହୁଏ । ଅତଏବ କ୍ଷୌରକର୍ମ କରାଇବ ନାହିଁ । ମଦନରତ୍ନରେ କଥିତ ଅଛି ଯେ ମାତାର ଗର୍ଭ ପାଞ୍ଚମାସରୁ ଶୂନ୍ୟ ଥିଲେ ଚୂଡ଼ାକର୍ମ କରିବ । ତହିଁରୁ ଉର୍ଦ୍ଧ୍ୱ ହେଲେ କର୍ମ କରିବ ନାହିଁ । କଲେ ମାତାର ଗର୍ଭସ୍ଥ ଶିଶୁ ନଷ୍ଟ ହୁଏ ।



## ୨୯୮-ଜ୍ୱରପୀଡ଼ିତ ଶିଶୁର ମଙ୍ଗଳକାର୍ଯ୍ୟ କରିବାର ନିଷେଧ ବାକ୍ୟ

ଜ୍ୱରସ୍ୟୋତ୍ପାଦନଂ ଲଗ୍ନଂ ତସ୍ୟ ନ କାରୟେତ୍ ।
ଦୋଷନିର୍ଗମନାତ୍ ପଶ୍ଚାତ୍ ସ୍ୱସ୍ଥୋ ଧର୍ମଂ ସମାଚରେତ୍ ।। (ଗାର୍ଗ୍ୟଃ)
ଲଗ୍ନଂ ସର୍ବମଙ୍ଗଳୋପଲକ୍ଷଣମିତି ଗଦାଧରଃ ।

ବ୍ୟାଖ୍ୟା-ଯେଉଁ ବାଳକକୁ ଜ୍ୱର ହୋଇଥାଏ ତାହାର କୌଣସି ମଙ୍ଗଳକର୍ମ କରିବ ନାହିଁ । ଦୋଷ ଅର୍ଥାତ୍ ଜ୍ୱରମୁକ୍ତ ହେଲେ କର୍ମ କରିବ ।

## ୨୯୯-ଚୂଡ଼ାକର୍ମର ଶୁଭଦିନ ନିର୍ଣ୍ଣୟ

ରେବତ୍ୟାଦ୍ୟକରତ୍ରୟାଦିତିମୃଗଜ୍ୟୋଷ୍ଠାସୁ ବିଷ୍ଣୁତ୍ରୟେ ।
ପୁଷ୍ୟେ ଚୋତ୍ତରଗେ ରବୌ ଗୁରୁକବୀନ୍ଦୁଜ୍ଞେଷୁ ପକ୍ଷେ ସିତେ ।
ଗୋସ୍ତ୍ରୀମନ୍ମଥଚାପକୁମ୍ଭମକରେ ହିତ୍ୱା ଚ ରିକ୍ତାତିଥିଂ ।
ଷଷ୍ଠୀଂ ପର୍ବମାଥାଷ୍ଟମୀମପି ସିନୀବାଲୀଂ ଚ ଚୂଡ଼ା ଶୁଭା ।
(ଜ୍ୟୋତିଷସାରେ)

ବ୍ୟାଖ୍ୟା-ରେବତୀ, ଅଶ୍ୱିନୀ, ହସ୍ତା, ଚିତ୍ରା, ସ୍ୱାତୀ, ପୁନର୍ବସୁ, ମୃଗଶିରା, ଜ୍ୟେଷ୍ଠା, ଶ୍ରବଣା, ଧନିଷ୍ଠା, ଶତଭିଷା, ପୁଷ୍ୟା ଏହି ନକ୍ଷତ୍ରମାନଙ୍କରେ ଓ ଉତ୍ତରାୟଣରେ ଏବଂ ଗୁରୁ ଶୁକ୍ର ଚନ୍ଦ୍ର ବୁଧ ଏହି ବାରମାନଙ୍କରେ ଓ ଶୁକ୍ଳପକ୍ଷରେ ଏବଂ ବୃଷ କନ୍ୟା, ମିଥୁନ, ଧନୁ, କୁମ୍ଭ, ମକର ଏ ଲଗ୍ନମାନଙ୍କରେ କିନ୍ତୁ ଚତୁର୍ଥୀ, ନବମୀ, ଚତୁର୍ଦ୍ଦଶୀ, ଷଷ୍ଠୀ, ପୂର୍ଣ୍ଣିମା, ସଂକ୍ରାନ୍ତି ଦିବସ, ଅଷ୍ଟମୀ, ଅମାବାସ୍ୟା ଏହି ଦୁଷ୍ଟ ତିଥିମାନଙ୍କୁ ତ୍ୟାଗ କରି ଅନ୍ୟ ତିଥିମାନଙ୍କରେ ଚୂଡ଼ାକର୍ମ କରିବ ।

## ୩୦୦-ଚୂଡ଼ାକର୍ମକାରିକା

ଚୂଡ଼ୋପନାୟସ୍ୟ ଶୁଭେ ମୁହୂର୍ତ୍ତେ ତତ୍ପୂର୍ବରାତ୍ରାବଧିବାସକର୍ମ
କୁର୍ଯ୍ୟାଦ୍‌ଗୃହୀତ୍ୱା ଦ୍ୱିଜଗୁର୍ବନୁଜ୍ଞାଂ ଶକ୍ତ୍ୟା ପ୍ରଦଦ୍ୟାତ୍ କନକଂ ଦ୍ୱିଜେଭ୍ୟଃ ।
ପ୍ରାତଃ ପରେଦ୍ୟୁଃ ଖଳୁ ନିତ୍ୟକର୍ମ ସମାପ୍ୟ ବେଦ୍ୟାଂ କଲସଂ ନିଧାୟ
ସଂଭୃତ୍ୟ ସମ୍ଭାରଗଣାନ୍ ପବିତ୍ରାନ୍ ସ୍ମୃତେଷ୍ଟଦେବଃ ଶୁଭଘୋଷଯୁକ୍ତଃ ।
ଚୂଡ଼ାୟାଂ ବରୁଣୋର୍ଚ୍ଚନଂ ନ କଲସେ କୁର୍ଯ୍ୟାଦନାଦେଶକଂ
କାଳାତିକ୍ରମତୋ ବିଧାୟ ବିଧିନା କର୍ମ୍ମାଙ୍ଗସଂକଳ୍ପକଂ ।
ବୃଦ୍ଧିଶ୍ରାଦ୍ଧମଥୋ ସୁସଂସ୍କୃତଭୁବି ସଂସ୍ଥାପୟେତ୍ପାବକଂ
ବସ୍ତ୍ରାଦ୍ୟୈଶ୍ଚ ନିଧାନତୋଽଥ ବରୟେଦ୍ ବ୍ରହ୍ମାଣମାମ୍ନାୟଗଂ ।

ସଂସ୍ଥାପ୍ୟ ଯାମ୍ୟେ ଜନନୀ ସ୍ୱପୁତ୍ରଂ ବାସୋଽହତଂ ସଂପରିଧାପ୍ୟ ଯତ୍ନାତ୍ ।
ଆଦାୟ ବେଦ୍ୟା ମୁପବେଶୟେତ୍ତମଙ୍କେ ଚ କୃତ୍ୱାଥ କଟେଽଗ୍ନିପଷ୍ଚାତ ।
ଆରଭ୍ୟ ବ୍ରହ୍ମାସନତୋ ମନୀଷୀ ସୁତଣ୍ଡୁଳାପୂରିତଭାଜନାନ୍ତଂ ।
ଆସାଦ୍ୟ ଶୀତୋଦକମୁଷ୍ଣତୋୟଂ ଦଧ୍ୟାଜ୍ୟଯୁକ୍ତଂ ନବନୀତପିଣ୍ଡଂ ।
ତତସ୍ତୁ ତ୍ରେ୍ୟଣୀଂ ଶଲଲୀଂ ତ୍ରିଦର୍ଭବନ୍ଧାନି ଚାସାଦ୍ୟ ପୃଥଙ୍‌ନବୈବ ।
ଲୌହଃକ୍ଷୁରଂ ତାମ୍ରପରିଷ୍କୃତଂ ଚ ପିଣ୍ଡତ୍ରୟଂ ସୌରଭଗୋମୟସ୍ୟ ।
ତତଃ ସମାସାଦ୍ୟ ଚ ନାପିତଂ ଚ ତତଃ ପବିତ୍ରୀକରଣାଦି କୁର୍ଯ୍ୟାତ୍ ।
ହୁତ୍ୱାଘାରାନ୍ ପ୍ରୋଚ୍ୟ ପୁଣ୍ୟାହବାଚଂ ଭୂରାଦୀନ୍ ବୈ ହୋମୟେତ୍ତାନ୍ ଦଶୈବ
ସଂପ୍ରାଶ୍ନୀୟାତ୍ ସଂଶ୍ରବାଜ୍ୟଂ ଚ ମୃଜ୍ୟାତ୍ ସ୍ୱର୍ଣ୍ଣଂ ଦେୟଂ ବ୍ରହ୍ମଣେ ଦକ୍ଷିଣାର୍ଥଂ ।
ଶୀତୋଦକଂ ଚୋଷ୍ଣଜଳେନ ମିଶ୍ରଂ ତତ୍ରୈବ ଦଧ୍ନା ନବନୀତ ମିଶ୍ରଂ ।
ଗୋଦାନକଂ ଦକ୍ଷିଣମାତ୍ମଜସ୍ୟ ତେନାମୁନାଚୋନ୍ଦୟିତ୍ୱା ଚ ଯତ୍ନାତ୍ ।
ଉନ୍ଦେତ୍ ସବିତ୍ରେତ୍ୟଥ ମନ୍ତ୍ରବର୍ଜ୍ଜଂ କେଶାନ୍ ତ୍ରିଭାଗଂ ଶଲଳେନ କୁର୍ଯ୍ୟାତ୍ ।
ବଦ୍ଧ୍ୱା କୁଶୈର୍ଭାଗମଥୋଷଧେତି କ୍ଷୁରଂ ଗୃହୀତ୍ୱାଥ ଶିବେତି ମନ୍ତ୍ରୈଃ ।
କ୍ଷୁରଂ ଚ କେଶେ ପରିସଂଦଧୀତ ନିବର୍ତ୍ତୟାମୀତ୍ୟଥ ମନ୍ତ୍ରକେଣ ।
ଯେନାବପନ୍ମନ୍ତ୍ରମୁଦୀର୍ଯ୍ୟ ତସ୍ୟ ଛିତ୍ତ୍ୱା କଚାନ୍ ପ୍ରାସ୍ୟତି ଗୋମୟେ ଚ ।
ଏବଂ ଚ ତୁଷ୍ଣୀମପରଂ ଦ୍ୱିବାରଂ କୃତ୍ୱୋନ୍ଦନାଦୀନି ଚ ତତ୍ର ସୁନୋଃ ।
ଗୋଦାନକଂ ପଶ୍ଚିମମେବମୁହ୍ୟଂ ଛିନ୍ଦ୍ୟାତ୍କଚଂ କଶ୍ୟପମନ୍ତ୍ରକେଣ ।
ତଥୈବ ଗୋଦାନକମୁତ୍ତରଂ ଚ ଯେନେତି ମନ୍ତ୍ରେଣ କଚଂ ଚ ଛିନ୍ଦ୍ୟାତ୍ ।
ପ୍ରଦକ୍ଷିଣୀକୃତ୍ୟ ଶିରସ୍ତ୍ରିବାର ମୋକ୍ଷତ୍କ୍ଷୁରେଣେତ୍ୟଥ ତୈକ୍ଷ୍ଣୁରେଣ ।
ଅଭିସ୍ତୁ ତାଭିଃ ଶିରସଂ ତଥୋନ୍ଦ୍ୟାତ୍ତଂ ନାପିତାୟ କ୍ଷୁରମର୍ପୟେଚ୍ଚ ।
ଶିଖାଂ ଚ ସଂସ୍ଥାପ୍ୟ କୁଳପ୍ରମାଣଂ କ୍ଷୌରଂ ଚ କୃତ୍ୱା ସ୍ୱପୟେର୍ଜ୍ଜଳେନ ।
ନବାମ୍ବରଂ ସଂପରିଧାପ୍ୟ ଗନ୍ଧପୁଷ୍ପାଦିସିନ୍ଦୂରସୁକଜ୍ଜଳେନ ।
ବିଭୂଷ୍ୟ ଯତ୍ନାଦ୍‌ବରଦକ୍ଷିଣାଂ ସ୍ୱାଚାର୍ଯ୍ୟାୟ ଦଦ୍ୟାତ୍ତୁ ଯଥା ସ୍ୱଶକ୍ତ୍ୟା ।
କୁର୍ଯ୍ୟାଦ୍ଦଶବ୍ରାହ୍ମଣଭୋଜନସ୍ୟୋତ୍ସର୍ଗଂ ତଦଶୀର୍ଗ୍ରହଣାନ୍ତମେବ ।
ସର୍ବାଂଶ୍ଚ କେଶାନଥ ଗୋମୟସ୍ଥାନେ କୀକୃତାନମ୍ବରବେଷ୍ଟକେନ ।
ଗୁପ୍ତାଥ ଗୋଷ୍ଠେ ଖଲୁ ପଲ୍ୱକେ ବା ସଂସ୍ଥାପୟେଦ୍ ବା ଜଳସନ୍ନିକର୍ଷେ ।
ସଂସ୍କୃତ୍ୟ ବେଦୀ ଜଳଗୋମୟୈଷ୍ଟ କର୍ମୈବ ଚୂଡ଼ାକରଣଂ ସମାପ୍ତଂ ।

(ଲୋକନାଥଦାସେନ କୃତା)



ବ୍ୟାଖ୍ୟା-ଗୁରୁ ଓ ଦ୍ୱିଜଙ୍କର ଆଜ୍ଞାନେଇ ଯେଉଁ ଶୁଭ ମୁହୂର୍ତ୍ତରେ ଚୂଡ଼ା ଓ ଉପନୟନ କର୍ମ ଏକତ୍ରରେ କରିବ, ତାହାର ପୂର୍ବରାତ୍ରିରୁ ଅଧିବାସକର୍ମ କରି ଶକ୍ତି ଅନୁସାରେ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣଦାନ କରିବ । କର୍ମଦିବସରେ ପ୍ରାତଃକାଳରେ କର୍ତ୍ତା ନିତ୍ୟକର୍ମ ସାରି ବେଦୀରେ ବରୁଣପୂଜାନିମିତ୍ତ ଘଟ ସ୍ଥାପନ କରିବ । ତତ୍ପରେ କର୍ମର ଉପକରଣ ସାମଗ୍ରୀ ଏକତ୍ରରେ ରଖି ହସ୍ତରେ ପବିତ୍ର ଧାରଣ କରି ମଙ୍ଗଳସୂଚକ ବାଦ୍ୟାଦି ଧ୍ୱନି କରାଇ ଓ ଇଷ୍ଟଦେବୀଙ୍କୁ ସ୍ମରଣ କରି ବେଦୀ ଉପରେ ବସି କଳସରେ ବରୁଣପୂଜା କରିବ । ତଦନନ୍ତର କାଳାତିକ୍ରମଦୋଷ ଶାନ୍ତି ନିମିତ୍ତ ଅନାଦେଶ ପ୍ରାୟଶ୍ଚିତ୍ତ ହୋମ କରି କର୍ମାଙ୍ଗସଂକଳ୍ପ ଓ ଆଭ୍ୟୁଦୟିକ ଶ୍ରାଦ୍ଧ କରିବ । ଏହାଉତ୍ତାରୁ ଭୂମିକୁ ଶୁଦ୍ଧ କରି ଅଗ୍ନି ସ୍ଥାପନ କରିବ । ବେଦଜ୍ଞ ବ୍ରାହ୍ମଣଙ୍କୁ ଅଗ୍ନିର ଦକ୍ଷିଣରେ ବସାଇ ବସ୍ତ୍ରାଦିଦେଇ ବ୍ରହ୍ମାବରଣ କରିବ । ତତ୍ପରେ ମାତା ପୁତ୍ରକୁ ଦଶିଥିବା ଲୁଗା ପିନ୍ଧାଇ ଅଗ୍ନିର ପଶ୍ଚିମରେ ବେଦୀ ଉପରେ କଟ୍ (ମଣିଣା) ବିଛାଇ କୋଳରେ ଧରି ବସିବ । ତଦୁତ୍ତାରୁ କର୍ତ୍ତା କୁଶାଣ୍ଡି କରି ଶୀତୋଦକ ଉଷ୍ଣୋଦକ, ଘୃତଦଧି ମିଶ୍ରିତ ନବନୀତପିଣ୍ଡ, ତିନିଗୋଟି ଧଳା ଗାରଯୁକ୍ତ ଝିଙ୍କକାଠି ଓ ତିନି ୨ ଟା କୁଶରେ ଗୋଟିଏ ଲେଖାଏଁ ବିଷ୍ଟର କରି ଏହିପରି ନଅଟି ବିଷ୍ଟର କ୍ରମେ ଏ ସମସ୍ତଙ୍କୁ ଦକ୍ଷିଣରୁ ଉତ୍ତରକୁ ରଖିବ । ଆଉ ତାମ୍ର ଆଚ୍ଛାଦିତ ଲୁହାକ୍ଷୁର ତିନିଗୋଟି ଗୋମୟ ପିଣ୍ଡ ଓ ନାପିତ ଏମାନଙ୍କୁ ଆସାଦନ କରି ମନ୍ତ୍ରଦ୍ୱାରା ପବିତ୍ର କରିବ । ତଦନନ୍ତର ଆଘାର ଓ ଆଜ୍ୟଭାଗ ହୋମ କରି ପୁଣ୍ୟାହବାଚନ କରିବ । ତଦୁତ୍ତାରୁ ଭୂଠାରୁ ସ୍ୱିଷ୍ଟକୃତ୍‌ପର୍ଯ୍ୟନ୍ତ ଏହି ଦଶଗୋଟି ମନ୍ତ୍ର ପଢ଼ି ପ୍ରତ୍ୟେକରେ ଆହୁତି ଦେବ ଓ ସଂଶ୍ରବ ପାତ୍ରରୁ ଘୃତପାନ କରି ମୁଖ ଧୋଇ ବ୍ରହ୍ମାଙ୍କୁ ସୁବର୍ଣ୍ଣ ଦକ୍ଷିଣା ଦେବ । ତତ୍ପରେ ଶୀତୋଦକରେ ଉଷ୍ଣୋଦକ ମିଶାଇ ସେଥିରେ ଲହୁଣୀ ଘିଅ ଦହି ପକାଇ ସେହି ଜଳ ପ୍ରଥମେ ପୁତ୍ରର ଦକ୍ଷିଣଆଡ଼ କେଶରେ "ସବିତାପ୍ରସୁତା" ଏହି ମନ୍ତ୍ର ପଢ଼ି ଲଗାଇଦେବ, ତତ୍ପରେ ସେହି ଦକ୍ଷିଣଆଡ଼ର କେଶକୁ ଝିଙ୍କକାଠିଦ୍ୱାରା ତିନିଭାଗ କରି ପ୍ରତ୍ୟେକ ଭାଗରେ ତିନି ୨ କୁଶଯୁକ୍ତ ଆସାଦିତ ବିଷ୍ଟରକୁ "ଔଷଧେତ୍ରାୟସ୍ୱ" ଏହି ମନ୍ତ୍ର ପଢ଼ି ବାନ୍ଧିଦେବ ଏବଂ "ଶିବଃ" ଏହି ମନ୍ତ୍ର ପଢ଼ି କ୍ଷୁର ଧରିବ । "ନିବର୍ତ୍ତୟାମି" ଏହି ମନ୍ତ୍ର ପଢ଼ି କେଶର କ୍ଷୁର ଲଗାଇବ । ତତ୍ପରେ "ଯେନାବପତ୍" ଏହି ପଢ଼ି ତିନିଭାଗ ହୋଇଥିବା କେଶ ଦକ୍ଷିଣ ଭାଗକୁ ଛେଦନ କରିବ ଏବଂ ଅନ୍ୟ ଦୁଇଭାଗକୁ ମୌନ ଭାବରେ ଛେଦନ କରି ସେ ସମସ୍ତ କେଶ ନେଇ ଦକ୍ଷିଣଆଡ଼କୁ ଗୋମୟ ପିଣ୍ଡରେ ରଖିବ । ଏହିପରି ପଶ୍ଚିମ ଭାଗର କେଶକୁ ଉପରୋକ୍ତ

ଦକ୍ଷିଣ ଗୋଦାନବିଧି (ମୁଣ୍ଡନ) ଅନୁସାରେ ସମସ୍ତ କାର୍ଯ୍ୟକରି "କଶ୍ୟପସ୍ୟ" ଏହି ମନ୍ତ୍ର ପଢ଼ି ଛେଦନ କରି ପଶ୍ଚିମ ଗୋମୟପିଣ୍ଡରେ ରଖିବ । ସେହିପରି ଉପରୋକ୍ତ ଉତ୍ତର (ବାମ) ଦିଗର କେଶକୁ ଦକ୍ଷିଣ ଗୋଦାନବିଧି ଅନୁସାରେ ସମସ୍ତ କାର୍ଯ୍ୟ କରି "ଯେନ" ଏହି ମନ୍ତ୍ର ପଢ଼ି କେଶ ଛେଦନ କରି ଉତ୍ତର ଗୋମୟପିଣ୍ଡରେ ସ୍ଥାପନ କରିବ । 'ଓଁ ଯତ୍କ୍ଷୁରେଣ' ଏହି ମନ୍ତ୍ର ପଢ଼ି ପୁତ୍ରର ମସ୍ତକ ଚତୁର୍ଦ୍ଦିରେ ତିନିଥର କ୍ଷୁର ବୁଲାଇବ ଏବଂ ସେହି ଆସାଦିତ ଜଳରେ ପୁତ୍ରର ମୁଣ୍ଡକୁ ଓଦା କରି ସେହି କ୍ଷୁର ନାପିତ ହସ୍ତରେ ଦେବ । ନାପିତ କୁଳବିଧି ଅନୁସାରେ ଶିଖାସ୍ଥାପନ କରି ଆଉ ସମସ୍ତ ମସ୍ତକକୁ କ୍ଷୌର କରିଦେଇ ଜଳରେ ସ୍ନାନ କରାଇବେ । ତପ୍ତରେ କର୍ତ୍ତା ପିଲାକୁ ନୂଆଲୁଗା ପିନ୍ଧାଇ ଏବଂ ଗନ୍ଧ ପୁଷ୍ପ କଳା ଓ ସିନ୍ଦୂରଦ୍ୱାରା ରଞ୍ଜିତ କରି ଆଚାର୍ଯ୍ୟଙ୍କୁ ଯଥାଶକ୍ତି ଦକ୍ଷିଣା ଦେବ । ତପ୍ତରେ ଦଶ ବ୍ରାହ୍ମଣଭୋଜନୋତ୍ସର୍ଗ କରି ପୁତ୍ରକୁ ଆଶୀର୍ବାଦ କରାଇ ଗୋମୟପିଣ୍ଡରେ ଥିବା ସମସ୍ତ କେଶକୁ ଏକତ୍ର କରି ନୂଆଲୁଗା ଘୋଡ଼ାଇ ଗୋଷ୍ଠରେ କିମ୍ବା ଜଳାଶୟ ତଟରେ ଗୋପନ ଭାବରେ ରଖି ଆସିବ । ତଦନନ୍ତର ବେଦୀକୁ ଗୋମୟଜଳଦ୍ୱାରା ପରିଷ୍କୃତ କରି ଚୂଡ଼ାକରଣ କର୍ମ ସମାପ୍ତ କରିବ ।

## ୩୦୧-ଚୂଡ଼ାକରଣ କର୍ମାରମ୍ଭ

* ଚୂଡ଼ାକରଣସ୍ୟ ପୂର୍ବଦିନେ ରାତ୍ରିପ୍ରହରାଭ୍ୟନ୍ତରେ ବହିଃଶାଳାୟାଂ ବରୁଣପୂଜାଂ କୃତ୍ୱା ଗନ୍ଧାଧିବାସବିହିଃଶାଳାରୋପହରିଦ୍ରାଧିବାସାନ୍ କୁର୍ଯ୍ୟାତ୍ ।

ବ୍ୟାଖ୍ୟା-ପିତା ଚୂଡ଼ାକରଣ ପୂର୍ବଦିନ ରାତ୍ରି ପ୍ରହରକ ମଧ୍ୟରେ ବେଦୀଉପରେ ବରୁଣପୂଜା କରି ପୁତ୍ରର ଗନ୍ଧାଧିବାସ ବହିଃଶାଳାରୋପଣ ଓ ହରିଦ୍ରାଧିବାସ କର୍ମ କରିବ । ତଦ୍ୟଥା-ପ୍ରଥମତୋ ବରୁଣ ପୂଜା (୨୨୦ ନମ୍ବର ଦେଖ) ତତଃ ପୁଣ୍ୟାହବାଚନଂ । ପୁଣ୍ୟାହଂ ୩ ଏବମସ୍ତୁ ବିଜ୍ଞାପୟାମ୍ୟୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଶାନ୍ତିର୍ଭବତୁ ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବ ଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ଶ୍ୱଷ୍ଟୁଡ଼ୋପନୟନେ କର୍ତ୍ତବ୍ୟେ ତଦଙ୍ଗୀଭୂତଗନ୍ଧାଧିବାସବହିଃଶାଳାରୋପଣ ହରିଦ୍ରାଧିବାସାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହାଏକାଦଶସ୍ଥା ଫଳଦା ଭବନ୍ତୁ ।

---

* ଚୂଡ଼ପୂର୍ବଦିନେ ରାତ୍ରୌ ସୁତିଥୌ ବେଦିକୋପରି ।
ବରୁଣାଦୀଂସ୍ତୁ ସଂପୂଜ୍ୟ ଗନ୍ଧାଦ୍ୟୈରଧିବାସୟେତ୍ ।
(ଦିବ୍ୟସିଂହବାଜପେୟିପଦ୍ଧତୌ)



ଶୁଭଂ ଭବତୁ ୩ । ପୃଥକ ପୁଣ୍ୟାହବଚାନେ ଚୂଡ଼ାୟାଂ "ଶ୍ୱଶ୍ଚୂଡ଼ାକରଣେ କର୍ତ୍ତବ୍ୟ" ଉପନୟନେ "ଶ୍ୱଉପନୟନେ କର୍ତ୍ତବ୍ୟ" ଇତି ବିଶେଷଃ ।

ବ୍ୟାଖ୍ୟା-ଉପରଲିଖିତପୁଣ୍ୟାନହବାଚନର ବାକ୍ୟ ପଢ଼ି ଅଧିବାସ କର୍ମର ପୁଣ୍ୟାହବାଚନ କରିବ । କେବଳ ଚୂଡ଼ାକର୍ମର ଅଧିବାସ କଲେ ପୁଣ୍ୟହବଚାନରେ "ଶ୍ୱଶ୍ଚୂଡ଼ୋପୟେନ କର୍ତ୍ତବ୍ୟେ" ଆଉ କେବଳ ଉପନୟନର ଅଧିବାସ କଲେ "ଶ୍ୱଉପନୟନେ କର୍ତ୍ତବ୍ୟ" ଏତିକି ଯୋଗ କରିବ ।

**ତତଃ ପରେଽହନି କୃତନିତ୍ୟକ୍ରିୟଃ ପିତା ବେଦ୍ୟାଂ ବରୁଣପୂଜାଂ କୁର୍ଯ୍ୟାତ୍ ।**

ବ୍ୟାଖ୍ୟା-ତପ୍ରେ ଚୂଡ଼ାକରଣ ଦିବସରେ ପିତା ନିତ୍ୟକର୍ମସାରି ବେଦୀ ଉପରେ ବରୁଣପୂଜା କରିବ । (ଏହି ବରୁଣପୂଜା ବିଧି ୨୨୦ ନମ୍ବର ଦେଖ)

## ୩୦୨-ଚୂଡ଼ାକର୍ମର ଅନାଦେଶ ପ୍ରାୟଶ୍ଚିତ୍ତ ହୋମ ସଂକଳ୍ପ

ଦେଶକାଲବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ ଅମୁକଦେବଶର୍ମ୍ମା ଅମୁକ ନାମ୍ନୋ ମମ କୁମାରସ୍ୟ ଚୂଡ଼ାକରଣକର୍ମକାଳାତିକ୍ରମଦୋଷବ୍ୟାପୋହନାର୍ଥମନା-ଦେଶପ୍ରାୟଶ୍ଚିତ୍ତ ହୋମକର୍ମାହଂ କରିଷ୍ୟେ । ଇତି ବିଶେଷଃ (ଏହାର ସମୁଦାୟ ବିଧି ୧୨୫-୧୨୯ ନମ୍ବର ଦେଖ ।)

## ୩୦୩-ଚୂଡ଼ାକରଣର ଅଗ୍ନିସ୍ଥାପନ, ଅନାଦେଶ ପ୍ରାୟଶ୍ଚିତ୍ତ ହୋମ ଆଭ୍ୟୁଦୟିକ ଶ୍ରାଦ୍ଧ

ତତଃ ପଞ୍ଚଭୁସଂସ୍କାରେଣାଗ୍ନିସ୍ଥାପନଂ । ସବ୍ୟେନାମାଗ୍ନି ପୂଜୟେତ୍ । (୨୨୨ ନମ୍ବର ଦେଖ) ଆଜ୍ୟସ୍ଥାଲୀ, କୁଶାଃ ୩, କୁଶାଃ ୩, ଏକା ସମିତ୍, ଆଜ୍ୟଂ ଏତାନ୍ୟାସାଦ୍ୟ ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ, ଆଦ୍ୟାଧିଶ୍ରୟଣମଗ୍ନୌ, ଜ୍ୱଳତ୍କାଷ୍ଠେନ ପର୍ଯ୍ୟଗ୍ନିକରଣଂ, ପ୍ରଥମକୁଶତ୍ରୟେଣ ଶ୍ରୁବୋଶ୍ରୁଚୋଃସମ୍ମାର୍ଜନଂ, ଅପରକୁଶତ୍ରୟେଣାଜ୍ୟୋତ୍ପବନଂ କୁଶାନମଗ୍ନୌ ପ୍ରକ୍ଷେପଃ । ଶ୍ରୁବେଣ ଶ୍ରୁଚି ଚତୁରାଜଂ ଗୃହୀତ୍ୱା ତଦୁପରି ସବିଧମେକାଂ ଦତ୍ୱା ପୁଣ୍ୟାହବାଚନଂ । ପୁଣ୍ୟହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଅମୁକନାମ୍ନୋମମକୁମାରସ୍ୟ ଚୂଡ଼ାକରଣକର୍ମ କାଳାତିକ୍ରମ ଦୋଷବ୍ୟପୋହନାର୍ଥମନାଦେଶପ୍ରାୟଶ୍ଚିତ୍ତ ହୋମ କର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । ଆସନାତ୍କିଂଦିତ୍ଥାୟ ସମିଧମଗ୍ନୌ ପ୍ରକ୍ଷିପେତ୍ । ତୁଷ୍ଣୀଂ ବା ସମିଧାଗ୍ନି ଦୁବସ୍ୟତ ଇତି ମନ୍ତ୍ରେଣ । ଓଁ ଭୁଃ ସ୍ୱାହା । ଇଦଂ ଭୁଃ ବା

ଇଦମଗ୍ନୟେ । ପୁନଶ୍ଚତୁରାଜ୍ୟଂ ଗୃହୀତ୍ୱା ଓଁ ଭୁବଃ ସ୍ୱାହା । ଇଦଂ ଭୁବଃ ବା ଇଦଂ ବାୟବେ । ପୁନଶ୍ଚତୁରାଜ୍ୟଂଗୃହୀତ୍ୱା ଓ ସ୍ୱଃ ସ୍ୱାହା । ଇଦଂ ଉବଃ ବା ସୂର୍ଯ୍ୟାୟ । ପୁନଶ୍ଚ ରାଜ୍ୟଂ ଗୃହୀତା ର୍ଭୁ ଭୁର୍ଭୁବଃ ସ୍ୱଃ ସ୍ୱାହା । ଇଦଂ ଭୁର୍ଭୁବଃ ସ୍ୱଃ ବା ଇଦମଗ୍ନିବାୟୁସୂର୍ଯ୍ୟେଭ୍ୟଃ । ଶ୍ରୁବେଣ-ଓଁ ତ୍ୱନ୍ନୋଅଗ୍ନେ, ସତ୍ୱନ୍ନୋଅଗ୍ନେ, ଅୟାଶ୍ଚାଗ୍ନେ, ଯେତେଶତଂ । ଉଦୁତ୍ତମଂ । (୨୨୨ ନମ୍ବର ଦେଖ)

ତତଃ କର୍ମାଙ୍ଗସଂକଳ୍ପଃ-ଦେଶକାଲବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକନାମ୍ନୋ ମମ କୁମାରସ୍ୟ ଚୂଡ଼ାକରଣକର୍ମାହଂ କରିଷ୍ୟେ । ଯଜ୍ଞାଗ୍ରତ ଇତି ପଠିତ୍ୱା । (୧୨୫-୧୨୯ ନମ୍ବର ଦେଖ) ତତଃଆଭ୍ୟୁଦୟିକଶ୍ରାଦ୍ଧସଂକଳ୍ପଃ-ଦେଶକାଲବାକ୍ୟାନନ୍ତରଂ ଅମୁକସଗୋତ୍ର ଓ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକନାମ୍ନୋ ମମ କୁମାରସ୍ୟ ଚୂଡ଼ାକରଣକର୍ମ୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ୱେନ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରମିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମ୍ମଣାଂ ନାନ୍ଦୀମୁଖାନାଂ ଗଣପତିପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣପୂଜା-ବସୋର୍ଦ୍ଧାରୟୁଷ୍ୟମନ୍ତ୍ରଜପପୂର୍ବକ ଭୋଜ୍ୟଦାନ ମହଂ କରିଷ୍ୟେ ।

ତତଃପୀଠେ ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣାନ୍ ପୂଜୟେତ୍ । (ମାତୃଗଣମଣ୍ଡଳନିର୍ମାଣ ୬୮ ନମ୍ବର ଓ ପୂଜାବିଧି ୧୩୧ ନମ୍ବର ଦେଖ) । ବସୋଃପବିତ୍ରମସୀତି ମନ୍ତ୍ରେଣ ବସୋର୍ଦ୍ଧାରା ଦଦ୍ୟାତ୍ । (ବସୋର୍ଦ୍ଧାରା ବିଧି ୧୩୨-୧୩୪ ନମ୍ବର ଦେଖ । ତତୋ ଭୋଜ୍ୟୋତ୍ସର୍ଗଃ । ୧୩୫-୧୩୮ ନମ୍ବର ଦେଖ) ।

## ୩୦୪-ଚୂଡ଼ାକରଣ କର୍ମ

ମାତା କୁମାରମାଦାୟ ସ୍ନାପୟିତ୍ୱା ଅହତେ ବାସସୀ ପରିଧାପ୍ୟ କୁମରଂ ଅଙ୍କେ କୃତ୍ୱା ପଶ୍ଚାଦଗ୍ନେର୍ଭର୍ତ୍ତୁରୁତ୍ତରତଃ କଟମାସ୍ତୀର୍ଯ୍ୟ ଉପବିଶତି ।

ବ୍ୟାଖ୍ୟା-ମାତା କୁମାରକୁ ସ୍ନାନ କରାଇ ଦଶିଥିଲା ଲୁଗା ପିନ୍ଧାଇ କୋଳରେ ଘେନି ବେଦୀ ଉପରେ ସ୍ୱାମୀର ଉତ୍ତର ଓ ଅଗ୍ନିର ପଶ୍ଚିମ ଦିଗରେ କଟମସିଣା ପକାଇ ବସିବ ।



ତତୋବ୍ରହ୍ମାବରଣଂ । ତଦ୍‌ଯଥା-ଅମୁକନାମ୍ନୋମମ କୁମାରସ୍ୟ ଚୂଡ଼ା କରଣକର୍ମାଙ୍ଗହୋମକର୍ମଣି କୃତା ବେକ୍ଷକତ୍ୱେନ ବ୍ରହ୍ମାଣଂ ତ୍ୱାମହଂ ବୃଣେ (ଏହାର ସମୁଦାୟ ବିଧି ୧୪୯ ନମ୍ବର ଦେଖ ।)

## ୩୦୫-ଚୂଡ଼ାକରଣ କର୍ମର କୁଶାଣ୍ଡି ଓ ହୋମ

ଦକ୍ଷିଣତୋବ୍ରହ୍ମାସନଂ । ଉତ୍ତରେ ପ୍ରଣୀତାପ୍ରଣୟନଂ । ପ୍ରାଚ୍ୟାଦିଚତୁର୍ଦ୍ଦିକ୍ଷୁ ପରିସ୍ତରଣଂ । ଦକ୍ଷିଣତଃ ପାତ୍ରାସାଦନମୁତ୍ତରସଂସ୍ଥଃ ପବିତ୍ରଚ୍ଛେଦନାନି । ପବିତ୍ରେ । ପ୍ରୋକ୍ଷଣୀପାତ୍ରଂ ! ଆଜ୍ୟସ୍ଥାଲୀ । ସମ୍ମାର୍ଜନକୁଶାଃ ୧୦ । ଉପଯମନକୁଶାଃ ୧୩ । ତିସ୍ରଃ ସମିଧଃ । ସ୍ରୁବଃ । ଆଜ୍ୟଂ । ପୂର୍ଣ୍ଣପାତ୍ରଂଚଦକ୍ଷିଣାବରୋଦା । ଏତାନ୍ୟାସାଦ୍ୟ । (କୁଶାଣ୍ଡି ବିଧି ୧୫୫ ନମ୍ବର ଟିପ୍‌ପଣୀ ଦେଖ ।)

ଆସାଦାନେ ଅୟଂ ତୁ ବିଶେଷଃ । ତତଃ ଶୀତୋପଦକଂ (ଶୀତଳଜଳ) ଉଷ୍ଣଦକଂ (ଗରମଜଳ) ନବନୀତଘୃତଦଧିପିଣ୍ଡାନାମେକତମଃ ପିଣ୍ଡଃ (ଲହୁଣୀ, ଘୃତ ଓ ଦଧି ମଧ୍ୟରୁ ଯେକୌଣସି ଗୋଟିଏ ପଦାର୍ଥ) ତ୍ରେଣି ଶଲଲୀ (ତିନିଗୋଟି ଧଳା ଚିହ୍ନଯୁକ୍ତ ଗୋଟିଏ ଝିଙ୍କ କାଠି) ତ୍ରୀଣି ତ୍ରୀଣି କୁଶତରୁଣାନି ପୃଥଗ୍‌ବଦ୍ଧାନି ନବ (ତିନିଗୋଟି କଢ଼କୁଶରେ ନଅଗୋଟି ବିଷ୍ଟର) * ତାମ୍ରପରିଷ୍କୃତ ଆୟସଃ କ୍ଷୁର (ତମ୍ବାମଡ଼ା ହୋଇଥିବା ଲୁହାକ୍ଷୁର ।) ଶରାବସ୍ଥିତ ଅନୁଡ୍ଡୁହଗୋମୟପିଣ୍ଡଂ (ଶରାରେଥିବା ଅଣ୍ଡିରା ବାଛୁରୀର ଗୋବର) ନାପିତଶ୍ଚ (ବାରିକ) । ଏତନ୍ୟାସାଦ୍ୟ ଚ (ଏମାନଙ୍କୁ ଆସାଦନ କରି)

ତତଃ ପବିତ୍ରଚ୍ଛେଦନାଦି ପ୍ରଣୀତାୟାଂ ପବିତ୍ରସ୍ଥାପନାନ୍ତଂ କୃତ୍ୱା ଆଘାରାବାଜ୍ୟଭାଗୌହୁତ୍ୱା ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବ ଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ଚୂଡ଼ାକରଣହୋମକର୍ମାରମ୍ଭ କ୍ରିୟତେ

---

* ୩୦୫ କ୍ଷୁରବିଚାର-

ତାମାଧାରା କ୍ଷୂରଂ ଲୌହଂ ତତ୍ରାନୁଡୁହଗୋମୟଂ
ଅମ୍ଳେନ ନବନୀତେନ ତାମ୍ରଶୁଦ୍ଧିର୍ଘୃତେନ ବା ।
ଦଧ୍ନା କେଶବିଶୁଦ୍ଧିଃ ସ୍ୟାତ୍ତସ୍ମାଦାସାଦୟେତ୍ତୁତାନ୍ ।

(ଦିବ୍ୟସିଂହବାଜପେୟି ପଦ୍ଧତୌ)

ବ୍ୟାଖ୍ୟା-ତାମ୍ରାଧାର (ତମ୍ବାମଡ଼ା) ଲୁହାକ୍ଷୁର, ଅଣ୍ଡିରା ବାଛୁରୀ ଗୋବର ଅମ୍ଳଲହୁଣୀ ଅଥବା ଘୃତ ବା ଦଧି ଏମାନ ଆସାଦନ କରିବ । କାରଣ ଅମ୍ଳ ଲହୁଣୀ କିମ୍ବା ଘୃତଦ୍ୱାରା ତାମ୍ର ଶୁଦ୍ଧି ହୁଏ ଓ ଦହିଦ୍ୱାରା କେଶ ଶୁଦ୍ଧି ହୁଏ ।

ଯତେଦ୍ୟାଦି । ତତୋଭୂରାଦି ସ୍ୱିଷ୍ଟକୃଦନ୍ତା ଦଶହୁତାୟଃ ପ୍ରାଶନଂ । ମାର୍ଜ୍ଜନଂ ବ୍ରହ୍ମଣେ ପୂର୍ଣ୍ଣପାତ୍ରଦକ୍ଷିଣଦାନଂ ।

**ବ୍ୟାଖ୍ୟା**-ତତ୍ପରେ-ପବିତ୍ରଚ୍ଛେଦନଠାରୁ ଆରମ୍ଭି ଆଘାର ଓ ଆଜ୍ୟଭାଗ ହୋମ ପର୍ଯ୍ୟନ୍ତ ସମସ୍ତ କୁଶାଣ୍ଡି ଶେଷକରି ପୁଣ୍ୟାହବାଚନ କରିବ । ତଦନନ୍ତର ଭୂରାଦିଠାରୁ ସ୍ୱିଷ୍ଟକୃତ୍‌ପର୍ଯ୍ୟନ୍ତ ଦଶଗୋଟି ଆହୁତି ଦେଇ ପ୍ରାଶନ, ମାର୍ଜ୍ଜନ ଓ ବ୍ରହ୍ମାଙ୍କୁ ପୂର୍ଣ୍ଣପାତ୍ର ଦକ୍ଷିଣା ଦେବ । (ଭୂରାଦି ମନ୍ତ୍ର ୧୯୫ ନମ୍ବରେ ଦେଖ) ।

ତତଃ ଶୀତୋଦକଂ ଉଷ୍ଣୋଦକେନ ମିଶ୍ରୟତି । ମନ୍ତ୍ରେଣ-ଓଁ ଉଷ୍ଣେନ ବାୟ ଉଦକେନେହ୍ୟଦିତେ କେଶାନ୍ ବପ । (ଏହି ମନ୍ତ୍ର ପଢ଼ି ଶୀତଳ ଜଳକୁ ଉଷ୍ଣଜଳରେ ମିଶାଇ ଦେବ) ।

**ଅଥୋଦକମିଶ୍ରିତାସୁ ଅପ୍‌ସୁ ନବନୀତଂ ଘୃତଂ ଦଧି ବା ତୁଷ୍ଣାଂ ମିଶ୍ରୟତି ।**

(ସେହି ମିଶ୍ରିତ ଜଳରେ ଲହୁଣୀ ବା ଦଧି ଅଥବା ଘୃତ ବିନା ମନ୍ତ୍ରରେ ମିଶାଇ ଦେବ) ।

ତତଃ ପ୍ରଭୃତ୍ୟନେନୈବୋଦକେନ ସର୍ବତ୍ର ଉନ୍ଦନଂ କାର୍ଯ୍ୟଂ । ଉନ୍ଦନଂ-ଆର୍ଦ୍ରୀଭାବଃ ।

(ସେହି ଜଳରେ ସମସ୍ତ ଦିଗର କେଶ ଓଦା କରିଦେବ)

ତଦସ୍ମୁଦୃଦକମାଦାୟ ଦକ୍ଷିଣଗୋଦାନଂ ଉନ୍ଦତି-ମନ୍ତ୍ରେଣ-ଓଁ ସବିତ୍ରା ପ୍ରସୂତା ଦୈବ୍ୟା ଆପ ଉନ୍ଦନ୍ତୁ ତେତନ୍ନୂଂ । ଦୀର୍ଘାୟୁତ୍ୱାୟବର୍ଚ୍ଚସେ । (ଏହି ମନ୍ତ୍ର ପଢ଼ି ଦକ୍ଷିଣଦିଗର କେଶକୁ ଓଦା କରିଦେବ ।

ତତସ୍ତୁଷ୍ଣୀଂ ତ୍ରେ୍ୟଣ୍ୟା ଶଲଲ୍ୟା କେଶାନ୍ ତ୍ରିଭାଗଂ କୃତ୍ୱା ଭାଗେ ତ୍ରାଣି କୁଶତରୁଣାନ୍ୟନ୍ତର୍ଦଧାତି । ମନ୍ତ୍ରେଣ-

ଓଁ ଓଷଧେ ତ୍ରାୟସ୍ୱ ସ୍ୱସ୍ତିତେ ମୈନଂ ହିଂସୀଃ । ଦିବ ମାଲେକ୍ଷୀରନ୍ତରିକ୍ଷଂ ମାହିଂସୀଽପୃଥିବ୍ୟା ସମ୍ଭବଃ ।

(ବିନା ମନ୍ତ୍ରରେ ଝିଙ୍କାଠିରେ କେଶକୁ ତିନିଭାଗ କରି ତତ୍ପରେ ଉପରୋକ୍ତ ମନ୍ତ୍ର ପଢ଼ି ସେହି ପ୍ରତ୍ୟେକ ଭାଗରେ ତିନି ତିନି ତରୁଣ କୁଶର ବିଷ୍ଟର ପୃଥକ ପୃଥକ ବାନ୍ଧିବ) ।

**ତତଃ କ୍ଷୁର ମାଦତ୍ତେ । ମନ୍ତ୍ରେଣ-**

ଓଁ ଶିବୋ ନାମାସି ସ୍ୱଧିତିସ୍ତେ ପିତା ନମସ୍ତେ ଅସ୍ତୁ ମା ମା ହିଂସୀଃ ।

(ଏହି ମନ୍ତ୍ର ପଢ଼ି ହସ୍ତରେ କ୍ଷୁର ଧରିବ)

ତତଃ କୁଶତରୁଣାନ୍ତର୍ହିତେଷୁ କେଶେଷୁ କ୍ଷୁରମଭିସଂଦଧାତି ଲଗୟତି ସ୍ଥାପୟତୀତ୍ୟର୍ଥଃ । ମନ୍ତ୍ରେଣ-

 

ନିର୍ବର୍ତ୍ତୟାମ୍ୟାୟୁଷେଽନ୍ନାଦ୍ୟାୟ ପ୍ରଜନନାୟ ରାୟସ୍ପୋଷାୟ ସୁପ୍ରଜାସ୍ତ୍ୱାୟ ସୁବୀର୍ଯ୍ୟାୟ । (ଏହି ମନ୍ତ୍ର ପଢ଼ି କେଶରେ ବନ୍ଧା ହୋଇଥିବା ବିଷ୍ଟରଗଣ୍ଠିରେ କ୍ଷୁର ଲଗାଇବ) ।

ଛେଦନ ମନ୍ତ୍ରୋଯଥା-ଓଁ ଯେନାବପତ୍ ସବିତା କ୍ଷୁରେଣ ସୋମସ୍ୟ ରାଜ୍ଞୋ ବରୁଣସ୍ୟ ବିଦ୍ୱାନ୍ । ତେନ ବ୍ରହ୍ମାଣୋ ବପତେଦମସ୍ୟାୟୁଷ୍ୟଂ ଜରଦଷ୍ଟି ର୍ଯଥାସତ୍ । ଇତି ମନ୍ତ୍ରେଣ ସକେଶାନି କୁଶତରୁଣାନି ପ୍ରଚ୍ଛିଦ୍ୟ ଆନୁଡୁହେ ଗୋମୟପିଣ୍ଡେ ଉତ୍ତରତୋ * ଧ୍ରିୟମାଣେ (ସ୍ଥାପ୍ୟମାନେ) ପ୍ରକ୍ଷିପତି । ତତସ୍ତସ୍ମିନ୍ନେବ ଗୋଦାନେ ଏବମେବାପରଂ ବାରଦ୍ୱୟଂ ସର୍ବକର୍ମ ତୁଷ୍ଣୀଂ କୁର୍ଯ୍ୟାତ୍ । ଯଥା-

ଉନ୍ଦନକେଶବିନୟନକୁଶତରୁଣାନ୍ତର୍ଧାନକ୍ଷୁରାଭିନିଧାନସକେଶକୁଶ-ତରୁଣପ୍ରଚ୍ଛେଦନଗୋମୟପିଣ୍ଡପ୍ରାସନାନି ତୁଷ୍ଣୀଂ କୁର୍ଯ୍ୟାତ୍ ।

ବ୍ୟାଖ୍ୟା- ଏହି ଉପରୋକ୍ତ ମନ୍ତ୍ର ପଢ଼ି କେଶସହିତ ତରୁଣକୁଶକୁ କ୍ଷୁରରେ ଛେଦନ କରିବ । ତତ୍ପରେ ସେହି କୁଶସହିତ ଛିନ୍ନକେଶକୁ ଉତ୍ତର ଦିଗରେ ସ୍ଥାପିତ ଗୋମୟ ପିଣ୍ଡରେ ରଖିବ । ସେହିପରି ଅନ୍ୟ ଦୁଇଭାଗ କେଶକୁ କୁଶସହିତ ବିନାମନ୍ତ୍ରରେ ପୂର୍ବବତ୍ ଉନ୍ଦନାଦିକର୍ମ କରି ଅର୍ଥାତ୍ ପୂର୍ବପରି କେଶକୁ ଓଦା କରିବ, ଝିଙ୍କ କାଠିରେ ତିନିଭାଗ କରିବ, ତହିଁରେ କୁଶବିଷ୍ଟର ବାନ୍ଧିବ ଓ କ୍ଷୁର ଲଗାଇବ । ବିଷ୍ଟର ସହିତ କେଶକୁ କ୍ଷୁରରେ ଛେଦନ କରି ସେହି ଉତ୍ତରଭାଗ ଗୋମୟ ପିଣ୍ଡରେ ସ୍ଥାପନ କରିବ ।

ତତଃ ପଶ୍ଚିମଗୋଦାନେ ପୂର୍ବବନ୍ମନ୍ତ୍ରେଣ ଉନ୍ଦନାଦି କୃତ୍ୱା କେଶଚ୍ଛେଦନ ମନ୍ତ୍ରବିଶେଷଃ । ସକୃତ୍ ସମନ୍ତ୍ରକଂ ଦ୍ୱିସ୍ତୁଷ୍ଣୀଂ ।

ବ୍ୟାଖ୍ୟା-ପଶ୍ଚିମ ଗୋଦାନରେ ପୂର୍ବବତ୍ ଦକ୍ଷିଣଗୋଦାନର ମନ୍ତ୍ରରେ ସମସ୍ତ ଉନ୍ଦନାଦି କାର୍ଯ୍ୟ କରି ତଳଲିଖିତ ଛେଦନ ମନ୍ତ୍ରରେ କେଶଛେଦନ କରି ସେହି ଉତ୍ତରଭାଗ ଗୋମୟ ପିଣ୍ଡରେ ରଖିବ । ପ୍ରଥମଭାଗକୁ ମନ୍ତ୍ରସହିତ କରିବ ଓ ଅନ୍ୟ ଦୁଇଭାଗକୁ ବିନାମନ୍ତ୍ରରେ କରିବ । ମନ୍ତ୍ରୋଯଥା- ଓଁ କଶ୍ୟପସ୍ୟ ତ୍ର୍ୟାୟୁଷଂ ଜମଦଗ୍ନେସ୍ତ୍ର୍ୟାୟୁଷଂ ଯଦ୍ଦେବାନାଂ ତ୍ର୍ୟାୟୁଷଂ ତନ୍ନେ ଅସ୍ତୁ ତ୍ର୍ୟାୟୁଷଂ । ଇତି ମନ୍ତ୍ରେଣ କେଶଚ୍ଛେଦନଂ ।

---

* ଅନେନ ଗ୍ରନ୍ଥିନାସାର୍ଦ୍ଧଂ କେଶାନ୍ ଛିତ୍ତ୍ୱା ତତଃ ପିତା ।
କ୍ଷିପେଦ୍ ଗୋମୟପିଣ୍ଡେ ଚ କୁମାରସ୍ୟୋତ୍ତରେ ସ୍ଥିତେ ।
(ଦିବ୍ୟସିଂହବାଜପେୟିପଦ୍ଧତୌ)

ଉତ୍ତରଗୋଦାନେ ପୂର୍ବବନ୍ମନ୍ତ୍ରେଣ ଉନ୍ଦନାଦି କୃତ୍ୱା କେଶଚ୍ଛେଦନେ ମନ୍ତ୍ରବିଶେଷଃ । ସକୃତ୍ ସମନ୍ତକଂ ଦ୍ୱିସ୍ତୁଷ୍ଣୀଂ ।

ବ୍ୟାଖ୍ୟା-ଉତ୍ତରଗୋଦାନରେ ପୂର୍ବବତ୍ ଦକ୍ଷିଣଗୋଦାନ ମନ୍ତ୍ରରେ ଉନ୍ଦନାଦି କର୍ମ କରି ତଳଲିଖିତ କେଶଚ୍ଛେଦନ ମନ୍ତ୍ର ପଢ଼ି କେଶଚ୍ଛେଦନ କରି ତାହାକୁ ଉତ୍ତରସ୍ଥ ଗୋମୟ ପିଣ୍ଡରେ ରଖିବ । ପ୍ରଥମଭାଗକୁ ମନ୍ତ୍ର ସହିତ କରିବ ଓ ଅପର ଦୁଇଭାଗକୁ ବିନାମନ୍ତ୍ରରେ କରିବ ।

ମନ୍ତ୍ରୋଯଥା-ଯେନ ଭୂରିଶ୍ଚରାଦିବଂ ଜ୍ୟୋକ୍ ଚ ପଶ୍ଚାଦ୍ଧି ସୂର୍ଯ୍ୟଂ । ତେନ ତେ ବପାମି ବ୍ରହ୍ମଣା ଜୀବାତବେ ଜୀବନାୟ ସୁଶ୍ଳୋକ୍ୟାୟ ସ୍ୱସ୍ତୟେ । ଇତି କେଶଚ୍ଛେଦନଂ । ଅନ୍ୟତ୍ସର୍ବଂ ଉନ୍ଦନାଦି ଗୋମୟପିଣ୍ଡ ପ୍ରାସନାନ୍ତଂ ସମାନଂ । ଓଁ ଯତ୍କ୍ଷୁରେଣ ମଜ୍ଜୟତା ସୁପେଶସା ବପ୍ତ୍ୱା ବାବପତି । କେଶାଂଛିନ୍ଧିଶିରୋମାସ୍ୟାୟୁଃ ପ୍ରମୋଷୀଃ । ଇତ୍ୟନେନ ମନ୍ତ୍ରେଣ ଶିରସଃ ସମନ୍ତାତ୍ ପ୍ରଦକ୍ଷିଣଂ କ୍ଷୁରଂ ଭ୍ରାମୟତି ସକୃନ୍ମନ୍ତ୍ରେଣ । ଦ୍ୱିସ୍ତୁଷ୍ଣୀଂ । (ଏହି ଉପରୋକ୍ତ ମନ୍ତ୍ର ପଢ଼ି ପୁତ୍ରର ମସ୍ତକ ଚାରିଆଡ଼ରେ କ୍ଷୁର ଥରେ ବୁଲାଇ ଆଣିବ ଆଉ ଦୁଇଥର ସେହି କ୍ଷୁରକୁ ବିନା ମନ୍ତ୍ରରେ ବୁଲାଇ ଆଣିବ) ତତସ୍ତାଭିରଭିଃ ଶିରସ ଉନ୍ଦନଂ । ଅକ୍ଷଣ୍ୱନ୍ ପରିବପ ଇତ୍ୟନେନ ମନ୍ତ୍ରେଣ ନାପିତାୟ କ୍ଷୁରଂ ସମର୍ପୟତି । ନାପିତୋବଦତି ବପାମି, ସ ଚ ନାପିତଃ * କେଶବପନଂ କୁର୍ଯ୍ୟାତ୍ କୁଳବ୍ୟବସ୍ଥାୟା ଶିଖାସ୍ଥାପନଂ ।

---

* ୩୦୫ ମୁଣ୍ଡନ ବିଧି । କେଶାନ୍ତକର୍ମାନନ୍ତରଂ ଯାବଜ୍ଜୀବନମବପନଂ ଚେତି ହରିହରଃ ।

ପ୍ରୟାଗେ ତୀର୍ଥଯାତ୍ରାୟାଂ ପିତୃମାତୃବିଯୋଗତଃ ।
କଚାନାଂ ବପନଂ କୁର୍ଯ୍ୟାଦ୍ ବୃଥା ନ ବିକଚୋ ଭବେତ୍ ।
ମୁଣ୍ଡନସ୍ୟ ନିଷେଧେଽପି କର୍ତ୍ତନଂ ତୁ ବିଧୀୟେ (ବୃହସ୍ପତି)
ପ୍ରାଙ୍ମୁଖଃ ଶ୍ମଶ୍ରୁକର୍ମାଣି କାରୟୀତ ସମାହିତଃ ।
ଉଦୟମୁଖେ ବାଥ ଭୂତ୍ୱା ତଥାୟୁର୍ବିନ୍ଦତେ ମହତ୍ । (ମହାଭାରତେ)
ଦକ୍ଷିଣଂ କର୍ଣ୍ଣମାରଭ୍ୟ ଧର୍ମାର୍ଥଂ ପାପସଂକ୍ଷୟେ ।
ହନ୍ୱାଦ୍ୟନ୍ତଂ ଚସଂସ୍କାରେ ଶିଖାଦ୍ୟନ୍ତଂ ଶିରୋଭବେତ୍ (ଅପରାର୍କେ)

ବ୍ୟାଖ୍ୟା-କେଶାନ୍ତ କର୍ମ ଉତ୍ତାରୁ ପ୍ରୟାଗରେ ତୀର୍ଥଯାତ୍ରାରେ ପିତୃମାତୃ କ୍ରିୟାରେ ଶିଖା ଛାଡ଼ି ସମସ୍ତ ମୁଣ୍ଡନ ହେବ । ଆଉ ବୃଥାରେ ମୁଣ୍ଡନ ହେବ ନାହିଁ । ଯଦିଚ ମୁଣ୍ଡନରନିଷେଧ ଅଛି କିନ୍ତୁ କେଶକର୍ତ୍ତନର ନିଷେଧ ନାହିଁ । ପୂର୍ବବା ଉତ୍ତରକୁ ମୁଖ କରି କ୍ଷୌର ହେଲେ ଆୟୁବୃଦ୍ଧି ହୁଏ, ମୁଣ୍ଡନ ସମୟରେ ଦକ୍ଷିଣକର୍ଣ୍ଣମୂଳରୁ କ୍ଷୌର ଆରମ୍ଭ କରି ଶିଖା ପର୍ଯ୍ୟନ୍ତ ସମସ୍ତ କେଶ ମୁଣ୍ଡନ କରିବ । ଏପରି କଲେ ଧର୍ମର ଲାଭ ଓ ପାପର କ୍ଷୟ ହୁଏ ।



ବ୍ୟାଖ୍ୟା-ଉପରୋକ୍ତ ମିଶ୍ରିତ ଶୀତ ଉଷ୍ଣଜଳାଦିରେ ମୁଣ୍ଡକୁ ଓଦା କରିଦେବ । ତତ୍ପରେ "ଅକ୍ଷଣ୍ୱନ୍ ପରିବପ" ଏହା କହି ନାପିତକୁ କ୍ଷୁରସମର୍ପଣ କରିବ । ନାପିତ "ବପାମି" କହି କ୍ଷୌର କରି କୁଳବ୍ୟବସ୍ଥା ଅନୁସାରେ ଶିଖା ରଖିବ ।

ତତଃ ସକେଶଂ ଗୋମୟପିଣ୍ଡଂ ବସ୍ତ୍ରବେଷ୍ଟନେନାନୁଗୁପ୍ତଂ କୃତ୍ୱା ଗୋଷ୍ଠେପଲ୍ୱଲେ ଉଦକସମୀପେ ବା ସ୍ଥାପୟେତ୍ ।

(କେଶ ସହିତ ଗୋମୟ ପିଣ୍ଡକୁ ଖଣ୍ଡେ ନୂତନ ବସ୍ତ୍ରଦ୍ୱାରା ଘୋଡ଼ାଇ ଗୋଗୋଷ୍ଠରେ ପଲ୍ୱଳରେ ଅଥବା ଜଳସମୀପରେ ଗୋପନରେ ରଖିବ) ।

ତତଃ କୁମାରସ୍ୟ ସର୍ବାଙ୍ଗସ୍ନାନଂ ନବବସ୍ତ୍ର ପରିଧାନଂ ସିନ୍ଦୁରକଜ୍ଜଳମାଳା ବିଭୂଷଣଂ ଚ କୁର୍ଯ୍ୟାତ୍ ।

ତତ୍ପରେ କୁମାରକୁ ସର୍ବାଙ୍ଗ ସ୍ନାନ କରାଇ ଓ ନୂତନ ବସ୍ତ୍ର ପିନ୍ଧାଇ ସିନ୍ଦୁର କଜ୍ଜଳ ଓ ପୁଷ୍ପମାଳାରେ ଶୋଭିତ କରିବ ।

ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା ଭଦ୍ରଂ ପଶ୍ୟୋମାକ୍ଷିଭିର୍ଯଦତ୍ରାଃ । ସ୍ଥିରୈରଙ୍ଗୈ ସ୍ତୁଷ୍ଟୁବାଙ୍ଗଂ ସ୍ୟସ୍ତନୁଭିର୍ବ୍ୟସେମ ଦେବହିତଂ ଯଦାୟୁଃ । ଇତି କର୍ଣ୍ଣବେଧଃ ।

(ଏହି ଉପରୋକ୍ତ ମନ୍ତ୍ର ପଢ଼ି କୁଶଦ୍ୱାରା କୁମାରର କର୍ଣ୍ଣବେଧ କରିବ ।)

ତତ୍ଶ୍ଚୂଡ଼ାକର୍ତ୍ତା ସ୍ୱାଚାର୍ଯ୍ୟାୟ ବରଂ ଦଦାତି । କର୍ମ୍ମାଙ୍ଗ ଦଶବ୍ରାହ୍ମଣୋତ୍ସର୍ଗଂ କୁର୍ଯ୍ୟାତ୍ ପବିତ୍ରପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବିସର୍ଜନଂ । ଶାନ୍ତିକରଣଂ । ଅଛିଦ୍ରାବଧାରଣଂ ପୁଣ୍ୟାହବାଚନଂ । ଚୂଡ଼ାକରଣକର୍ମ ଯଚ୍ଚୃତଂତତ୍ସୁକୃତମସ୍ତୁ । ଆଶୀର୍ବାଦାର୍ଥଂ ପୁଣ୍ୟାହବାଚନଂ ଚୂଡ଼ାକରଣକର୍ମ୍ମ ନିମିତ୍ତଂ ବ୍ରାହ୍ମଣୈରାଶୀର୍ବାଦାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

ଇତି ଚୂଡ଼ାକରଣ କର୍ମ ସମାପ୍ତ

(୧) ପ୍ରସବାନନ୍ତରମଷ୍ଟୌ ବର୍ଷାଣ୍ୟତୀତାନି ଯସ୍ୟ ବାଳକସ୍ୟଅସୌ ଅଷ୍ଟବର୍ଷଃ ତଂ ବ୍ରାହ୍ମଣଂ ଉପନୟେତ୍ ଉପନୟନସଂସ୍କାରେଣ ସଂସ୍କୁର୍ଯ୍ୟାତ୍ । ଅଥବ୍ରାହ୍ମଣଂ ଗର୍ଭସହିତାଷ୍ଟବାର୍ଷିକଂ ଉପନୟେତ୍ । ତତଶ୍ଚ ଜନ୍ମତୋ ନବମେ ଅଷ୍ଟମେ ବା ବର୍ଷେ ବ୍ରାହ୍ମଣମୁପନୟେଦିତ୍ୟର୍ଥଃ । (୨) ଜନ୍ମତୋ ଦ୍ୱାଦଶବର୍ଷ କ୍ଷତ୍ରିୟ ମୁପନୟେତ୍ । (୩) ଜନ୍ମତସ୍ତ୍ରୟୋଦଶବର୍ଷେ ବୈଶ୍ୟମୁପନୟେତ୍ । (୪) ଅଥବା ବ୍ରାହ୍ମଣକ୍ଷତ୍ରିୟବିଶାଂ ଯଥାମଙ୍ଗଳଂ-ଯଥାକୁଳଧର୍ମଂ ବା ଶାସ୍ତ୍ରାନ୍ତରବିହିତକାଳାନ୍ତରେ ଉପନୟନଂ ଭବତୀତି ।

(ହରିହରଗଦାଧରୌ)

## ୩୦୬-ଉପନୟନ କର୍ମ ବିଚାର

(୧) ଅଷ୍ଟବର୍ଷ ବ୍ରାହ୍ମଣମୁପନୟେତ୍ ଗର୍ଭାଷ୍ଟମେ ବା । (୨) ଏକାଦଶବର୍ଷଂ ରାଜନ୍ୟଂ । (୩) ଦ୍ୱାଦଶବର୍ଷଂ ବୈଶ୍ୟଂ । (୪) ଯଥାମଙ୍ଗଳଂ ବା ସର୍ବେଷାଂ । (ପାରସ୍କରଃ)

ଗର୍ଭାଷ୍ଟମେଽଷ୍ଟମେ ବାବ୍ଦେ ପଞ୍ଚମେ ସପ୍ତମେଽପିବା
ଦ୍ୱିଜତ୍ୱଂ ପ୍ରାପ୍ନୁ ୟାଦ୍‌ବିପ୍ରୋ ବର୍ଷେତ୍ୱେକାଦଶେ ନୃପଃ । (ଆଶ୍ୱଳାୟନଃ)
ବ୍ରହ୍ମବର୍ଚ୍ଚ ସକାମସ୍ୟ କାର୍ଯ୍ୟଂ ବିପ୍ରସ୍ୟ ପଞ୍ଚମେ ।
ରାଜ୍ଞୋବଳାର୍ଥିନାଃ ଷଷ୍ଠେ ବୈଶ୍ୟସ୍ୟାର୍ଥାର୍ଥିନୋଃଽଷ୍ଟମେ । (ମନୁ)
ଷଷ୍ଠେ ତୁ ଧନକାମସ୍ୟ ବିଦ୍ୟାକାମସ୍ୟ ସପ୍ତମେ ।
ଅଷ୍ଟମେ ସର୍ବକାମସ୍ୟ ନବମେ କାନ୍ତିମିଚ୍ଛତଃ । (ବିଷ୍ଣୁ)

ବ୍ୟାଖ୍ୟା-ପାରସ୍କରାଚାର୍ଯ୍ୟଙ୍କ ମତରେ ଜନ୍ମଠାରୁ ନବମ ବା ଅଷ୍ଟମ ବର୍ଷରେ ବ୍ରାହ୍ମଣର, ଦ୍ୱାଦଶ ବର୍ଷରେ କ୍ଷତ୍ରିୟର ଓ ତ୍ରୟୋଦଶ ବର୍ଷରେ ବୈଶ୍ୟର ଉପନୟନ କରିବ; କିମ୍ବା ସମସ୍ତଙ୍କର କୁଳଧର୍ମ ଅନୁସାରେ ଅଥବା ଶାସ୍ତ୍ରାନ୍ତର ବିହିତ (ଅନ୍ୟ ଶାସ୍ତ୍ରର ନିର୍ଦ୍ଦିଷ୍ଟ) କାଳରେ ଉପନୟନ କରିବ । ଯଥା-ଆଶ୍ୱଳାୟନ କହନ୍ତି ଗର୍ଭର ଅଷ୍ଟମ କିମ୍ବା ଜନ୍ମଠାରୁ ଅଷ୍ଟମ, ପଞ୍ଚମ ବା ସପ୍ତମ ବିପ୍ରର ଉପନୟନ, ଏକାଦଶ ବର୍ଷରେ କ୍ଷତ୍ରିୟର ଉପନୟନ କରିବ । ମନୁ କହନ୍ତି ବ୍ରହ୍ମତେଜକାମନାକାରୀ ବିପ୍ରର ପାଞ୍ଚବର୍ଷରେ, ବଳକାମନାକାରୀ କ୍ଷତ୍ରିୟର ଛ'ବର୍ଷରେ, ଧନକାମନାକାରୀ ବୈଶ୍ୟର ଆଠବର୍ଷରେ ଉପନୟନ କରିବ । ବିଷ୍ଣୁ କହିଅଛନ୍ତି ଧନକାମୀର ଛ' ବର୍ଷରେ, ବିଦ୍ୟାକାମୀର ସାତବର୍ଷରେ, ସର୍ବକାମୀର ଆଠବର୍ଷରେ, କାନ୍ତି (ଶୋଭା) କାମୀର ନଅବର୍ଷରେ ଉପନୟନ କରିବ ।

## ୩୦୭-ଉପନୟନ କର୍ମ କର୍ତ୍ତୃନିର୍ଣ୍ଣୟ

ପିତା ପିତାମହୋଭ୍ରାତା ଜ୍ଞାତୟୋଗୋତ୍ରଜାଗ୍ରଜାଃ ।
*ଉପାୟନେଽଧିକାରୀ ସ୍ୟାତ୍ ପୂର୍ବାଭାବେ ପରଃ ପରଃ ।
ପିତୈବୋପୟେତ୍ପୁତ୍ରଂ ତଦଭାବେ ପିତୁଃ ପିତା ।
ତଦଭାବେ ପିତୁଭ୍ରାତା ତଦଭାବେ ତୁ ସୋଦରଃ ।

(ଗଦାଧରଭାଷ୍ୟେ)

ପିତେତି ବିପ୍ରପରଂ ନ କ୍ଷତ୍ରିୟବୈଶ୍ୟୟୋଃ । ଇୟୋସ୍ତୁ ପୁରୋହିତ ଏବ ଉପନୟନସ୍ୟ ଦୃଷ୍ଟାର୍ଥତ୍ୱାତ୍ । ତୟୋସ୍ତ୍ୱଧ୍ୟାପନେଽନଧିକାରାତ୍ । (ବୃଦ୍ଧଗାର୍ଗ୍ୟଃ)



ବ୍ୟାଖ୍ୟା-ପିତା, ପିତାମହ, ଭାଇ, ଜ୍ଞାତି (ଯାହାର ସହିତ ଅଶୌଚ, ପିଣ୍ଡ ଓ ଧନାଧିକାରର ସମ୍ବନ୍ଧ ଅଛି) ଗୋତ୍ରଜ (ସେହି ଗୋତ୍ରରେ ଜନ୍ମ ଅଶୌଚରେ କେବଳ ସ୍ନାନ ମାତ୍ରରେ ଶୁଦ୍ଧ ହୁଅନ୍ତି) ଏମାନେ ବୟୋଜ୍ୟେଷ୍ଠ ହେଲେ ଉପନୟନର କର୍ତ୍ତା ହୋଇପାରିବେ । ପୂର୍ବର ଅଭାବରେ କ୍ରମେ ପରବର୍ତ୍ତୀ ବ୍ୟକ୍ତି ହୋଇପାରିବେ । ଯଥା-ପିତାର ଅଭାବରେ ପିତାମହ, ତାହାର ଅଭାବରେ ପିତାର ଭ୍ରାତା, ତାହାର ଅଭାବରେ ବଡ଼ଭାଇ, ତାହାର ଅଭାବରେ ଜ୍ଞାତି ତଦଭାବେ ଗୋତ୍ରଜ ହୋଇପାରିବେ । ବ୍ରାହ୍ମଣର ଉପନୟନରେ ପିତା କର୍ତ୍ତା ହେବେ ଏବଂ କ୍ଷତ୍ରିୟ ବୈଶ୍ୟଙ୍କର ଉପନୟନରେ ପୁରୋହିତ କର୍ତ୍ତା ହେବେ; କାରଣ କ୍ଷତ୍ରିୟ ଓ ବୈଶ୍ୟଙ୍କର ଭେଦ ପଢ଼ାଇବାର ଅଧିକାର ନାହିଁ ।

## ୩୦୮-ଉପନୟନରେ ଗୌଣକାଳ ନିର୍ଣ୍ଣୟ

ଆଷୋଡ଼ଶାଦ୍‌ବ୍ରାହ୍ମଣସ୍ୟ ସାବିତ୍ରୀ ନାତିବର୍ତ୍ତତେ ।
ଆଦ୍ୱାବିଂଶାତ୍ କ୍ଷତ୍ରବନ୍ଧୋରାଚତୁର୍ବିଂଶତେର୍ବିଂଶଃ ।
ଅତଊର୍ଦ୍ଧ୍ୱଂତ୍ରୟୋଽପ୍ୟେତେ ଯଥାକାଳମସଂସ୍କୃତାଃ ।
ସାବିତ୍ରୀ ପତିତାବ୍ରାତ୍ୟା ଭବନ୍ୟାର୍ଯ୍ୟବିଗର୍ହିତାଃ । (ମନୁଃ)

ବ୍ୟାଖ୍ୟା-ବ୍ରାହ୍ମଣର ଗର୍ଭଠାରୁ ଷୋଳବର୍ଷ ପର୍ଯ୍ୟନ୍ତ, କ୍ଷତ୍ରିୟର ଗର୍ଭଠାରୁ ବାଇଶି ବର୍ଷ ପର୍ଯ୍ୟନ୍ତ ଏବଂ ବୈଶ୍ୟର ଗର୍ଭଠାରୁ ଚଉବିଂଶ ବର୍ଷ ପର୍ଯ୍ୟନ୍ତ ଉପନୟନକାଳ ଅତୀତ ହୁଏ ନାହିଁ । ଏଥିରୁ ଊର୍ଦ୍ଧ୍ୱ ହେଲେ ସେମାନଙ୍କର ସାବିତ୍ରୀ ପତିତ ହୁଏ ଓ ସେମାନଙ୍କୁ ବ୍ରାତ୍ୟ ବୋଲାଯାଏ । ଆଉ ସେମାନେ ଆର୍ଯ୍ୟ (ଶ୍ରେଷ୍ଠ) ମାନଙ୍କ କର୍ତ୍ତୃକ ନିନ୍ଦିତ ହୁଅନ୍ତି ।

## ୩୦୯-ଉପନୟନର ଶୁଭଦିନ ନିର୍ଣ୍ଣୟ

ଜୀବର୍କେନ୍ଦୁଶୁଦ୍ଧୌ ହରିଶୟନବିହିର୍ଭାସ୍କରେ ଚୋତ୍ତରସ୍ଥେ,
ସ୍ୱାଧ୍ୟାୟେ ବେଦବର୍ଣ୍ଣାଧିପ ଇହ ଶୁଭଦେ କ୍ଷୌରଭେ ନାଦିତୌ ଚ ।
ଶୁକ୍ରାର୍କେଜ୍ୟର୍କ୍ଷଲଗ୍ନେ ରବିମଦନତିଥିଂ ପ୍ରୋଜ୍‌ଝ୍ୟ ଷଷ୍ଠାଷ୍ଟ ମେନ୍ଦୁଂ,
ନୋଜୀବାସ୍ତାତିଚାରେଽର୍କଶିତଗୁରୁଦିନେ କାଳଶୁଦ୍ଧୌ ବ୍ରତଂ ସ୍ୟାତ୍ ।
(ଶ୍ରୀନିବାସଦୀପିକାୟାଂ)

---

* ଉପାୟନଂ-ବ୍ରତପ୍ରତିଷ୍ଠା ଇତି ଶବ୍ଦକଳ୍ପଦ୍ରୁମଃ ।
ଉପାନାୟେ ଇତି ନିର୍ଣ୍ଣୟସିନ୍ଧୁଃ ।

ବ୍ୟାଖ୍ୟା-ଗୁରୁ, ରବି, ଚନ୍ଦ୍ର ଓ ତାର ଶୁଦ୍ଧିରେ, ହରିଶୟନ ଭିନ୍ନ ସୂର୍ଯ୍ୟର ଉତ୍ତରାୟଣରେ ସ୍ୱାଧ୍ୟାୟ ତିଥିରେ ଅର୍ଥାତ୍ ଗଳଗ୍ରହ ତିଥି, ଅନଧ୍ୟୟନ ତିଥି, ଦ୍ୱାଦଶୀ ଓ ସପ୍ତମୀ ତିଥିକି ଛାଡ଼ି, ଦ୍ୱିତୀୟା, ପଞ୍ଚମୀ, ଷଷ୍ଠୀ, ଦଶମୀ, ଏକାଦଶୀ, ଏ ତିଥିମାନଙ୍କରେ ଆଉ ବେଦାଧିପ (ବୃହସ୍ପତି, ଶୁକ୍ର, ମଙ୍ଗଳ ଓ ବୁଧ) ବର୍ଣ୍ଣାଧିପ୍ (ଗୁରୁ, ଶୁକ୍ର, ରବି, ଚନ୍ଦ୍ର, ମଙ୍ଗଳ ଓ ବୁଧ) ଏହି ଗ୍ରହମାନେ ଶୁଭ ହୋଇଥିବେ ଏବଂ ପୁନର୍ବସୁ ଭିନ୍ନ କ୍ଷୌର ନକ୍ଷତ୍ରରେ । (ଅର୍ଥାତ୍ ପୁଷ୍ୟା, ରେବତୀ, ଅଶ୍ୱିନୀ, ମୃଗଶିରା, ଜ୍ୟେଷ୍ଠା, ହସ୍ତା, ଚିତ୍ରା, ସ୍ୱାତୀ, ଶ୍ରବଣା, ଧନିଷ୍ଠା ଓ ଶତଭିଷା ଏହି ନକ୍ଷତ୍ରମାନଙ୍କରେ) ବୃଷ, ତୁଳା, ସିଂହ, ଧନୁ ଓ ମୀନ ଲଗ୍ନରେ, ଷଷ୍ଠ ଓ ଅଷ୍ଟମ ଭିନ୍ନ ଚନ୍ଦ୍ରରେ, ବୃହସ୍ପତି ଅସ୍ତ ଏବଂ ଅତିଚାର ନୋହିଥିବା କାଳରେ ରବି, ଶୁକ୍ର, ଗୁରୁବାରରେ ଓ ଶୁଦ୍ଧକାଳରେ ଉପନୟନ କର୍ମ କରିବ ।

## ୩୧୦-ଉପନୟନ କର୍ମ କାରିକା

ଅଥୋପନାୟଂ ଚ ଶୁଭେ ମୁହୂର୍ତ୍ତେ କୁର୍ଯ୍ୟାତ୍ତ କୁମ୍ଭେ ବରୁଣାର୍ଚ୍ଚନଂ ଚ ।
କର୍ମାଙ୍ଗସଂକଳ୍ପମଥୋଽଭିବୃଦ୍ଧିଶ୍ରାଦ୍ଧଂଚ ସୁନୋର୍ବପନଂ ପ୍ରକୁର୍ଯ୍ୟାତ୍ ।
ସ୍ନାତ୍ୱା ସୁତୋଽଶ୍ନୀତ ନିରାମିଷାନ୍ନଂ ସ୍ରକ୍‌ଚନ୍ଦନାଢ୍ୟଃ ସହିତସ୍ତ୍ରିବିପ୍ରୈଃ ।
ଆଚମ୍ୟ ଚାଚାର୍ଯ୍ୟ ସୀମପମେତ୍ୟ ତଦ୍ଦକ୍ଷିଣେ ଚୋପବିଶେତ୍ତୁ ବେଦ୍ୟାଂ ।
ସଂସ୍ଥାପ୍ୟ ବହ୍ନିଂ ଭୁବି ସଂସ୍କୃତେ ଚ ତତଶ୍ଚ ରେତ୍ତତ୍ର ଚ ବ୍ରହ୍ମଚର୍ଯ୍ୟଂ ।
ଶାଣଂ ବାସୋ ମେଖଳା ଯଜ୍ଞସୂତ୍ରମୈଣଂ ଚର୍ମାଘାତକଂ ଦ୍ୱୌ ବଟୁ ଚ ।
ଏତାନ୍ୟାସାଦ୍ୟୈବଂ ଯତ୍ନାକ୍ରମେଣ ସ୍ୱୈଃ ସ୍ୱୈ ର୍ମନ୍ତ୍ରୈର୍ବ୍ରହ୍ମଚାରୀ ପ୍ରଗୃହ୍ୟାତ୍ ।
ଦତ୍ତ୍ୱାପୋହୀତ୍ୟାଦିନା ଋକ୍‌ତ୍ରୟେଣ ପ୍ରତ୍ୟେକଂ ତ୍ରିଃ ସ୍ୱଚ୍ଛତୋୟାଞ୍ଜଳିଂ ବା ।
ଆଚାର୍ଯ୍ୟେଣ ପ୍ରେଷିତୋ ବ୍ରହ୍ମଚାରୀ ମନ୍ତ୍ରେଣୈବାଦିତ୍ୟମୀକ୍ଷେତ ଭକ୍ତ୍ୟା ।
ମମ ବ୍ରତେତେ ହୃଦୟଂ ପଠିତ୍ୱାଚାର୍ଯ୍ୟୋ ବଟୋରାଲଭତେ ଚ ବକ୍ଷଃ ।
ଉକ୍ତଂ ଚ ପ୍ରତ୍ୟୁକ୍ତିମୁଦୀରୟେଚ୍ଚ କୋନାମ ବାକ୍ୟୈରଥ ଭୂର୍ଚ୍ଛଦାନଂ ।
ପ୍ରଦକ୍ଷିଣୀକୃତ୍ୟ ବଟୁସ୍ତତୋଽଗ୍ନି ମାଚର୍ଯ୍ୟକସ୍ୟୋପବିଶେଦୁଦୀଚ୍ୟାଂ ।
ବ୍ରହ୍ମାସନଂ ଦକ୍ଷିଣତୋନିଧାୟ କୁର୍ଯ୍ୟାତ୍ କୁଶାଣ୍ଡିଂ ଚରୁବର୍ଜିତଂ ଚ ।
ଆଘାରକାଦୀନ୍ ଜୁହୁୟାଦ୍‌ବିଧୋନୈଃ ପୂର୍ଣ୍ଣାହବାଚଂ ସମୁଦୀର୍ଯ୍ୟ ଚାଦୌ ।
ଭୂରାଦିକାନ୍ ସ୍ୱିଷ୍ଟକୃତଂ ଚ ବହ୍ନୌ ହୁତ୍ୱାଥ ସଂପ୍ରାଶନମାର୍ଜନେ ଚ ।
ଶକ୍ତ୍ୟା ଦତ୍ତ୍ୱା ବ୍ରହ୍ମଣେ ଦକ୍ଷିଣାଂ ଚ ବ୍ରୁତଃ ପ୍ରୀତର୍ଯ୍ୟା ଚୂକ୍ତିପ୍ରତ୍ୟୁକ୍ତିବାଚଂ ।
ଲଗ୍ନାଦୀନାଂ ଶୁଦ୍ଧୟେ କାଞ୍ଚନଂ ଚ ଦତ୍ତ୍ୱା ଶକ୍ତ୍ୟା ଶ୍ରୋତ୍ରିୟାୟ ଦ୍ୱିଜାୟ ।
ପୁଣ୍ୟାହୋକ୍ତିଂ ବାଚୟିତ୍ୱା ମନୋଜ୍ଞ ଦାନାରମ୍ଭେ ତ୍ରୈପ୍ୟସ୍ୟାଥ ପୂର୍ବଂ ।



ଅଗ୍ନେରୁଦୀଚ୍ୟାଂ ଦିଶି ବ୍ରହ୍ମଚାରୀ ପ୍ରତ୍ୟଙ୍ମୁ ଖଷ୍ଟୋପବିଶେତ୍‌ପ୍ରୟତ୍ନାତ୍ ।
ଉକ୍ତ୍ୟୋପସଂଗୃହ୍ୟ ଗୁରୋସ୍ତୁ ପାଦୌ ସମୀକ୍ଷମାଣସ୍ତୁ ଗୁରୁଂ ସୁନିଷ୍ଟଂ ।
ତଥେକ୍ଷିତଃ ସଦ୍‌ଗୁଣା ମନୀଷୀ ସହାନୁଜକ୍ଷେତ୍ତ୍ରିପଦାଂ ଚ ସାଙ୍ଗାଂ ।
ଆଦ୍ୟାବସାନେ ଚ ଗୁରୁଂ ପ୍ରଣମ୍ୟ ଗ୍ରାୟତ୍ତ୍ରିକାୟାଃ ଖଳୁ ସପ୍ରଦାନେ ।
ତତ୍କର୍ମଣୋଽଚ୍ଛିଦ୍ରମଥୋବିଧାୟ ପ୍ରଦକ୍ଷିଣୀକୃତ୍ୟ ଚ ବୀତିହୋତ୍ରଂ ।
ଅଗ୍ନେଃ ପ୍ରତୀଚ୍ୟାମୁପବିଶ୍ୟ ଚାଦୌ ବିଧାନମଗ୍ନୌ ସମିଧାଂ ଚ କୁର୍ଯ୍ୟାତ୍ ।
ଆସାଦୟେତ୍ତତ୍ ଖଳୁ କାଷ୍ଟପଞ୍ଚକଂ ସମିତ୍ତ୍ରୟଂ କାଷ୍ଟପଞ୍ଚକଂ ପୁନଃ ।
ଉଷ୍ଣୋଦକଂଭସ୍ମ ଚ ସାଦୟେତ୍ତତଃପ୍ରତ୍ୟେକମଗ୍ନୌ ଜୁହୁୟାତ୍ ସମନ୍ତକଂ ।
ଭିକ୍ଷାଂ ଯାଚେନ୍ମାତରଂ ବ୍ରହ୍ମଚାରୀ ପୃଷ୍ଟେ କୃତ୍ୱା ମାତୁଳଂ କାଂସ୍ୟପାତ୍ରେ ।
ଦତ୍ତ୍ୱା ମାତା ଭୈକ୍ଷମନ୍ନଂ ଚ ତସ୍ମୈ ଶକ୍ତ୍ୟା ଦଦ୍ୟାତ୍ କୁଣ୍ଡଳଂ କଙ୍କଣାଦୀନ୍ ।
ଏବଂ ପ୍ରୀତ୍ୟା ପିତୃତୋ ବନ୍ଧୁବର୍ଗାଦାଚାରଦ୍‌ବୈ ଭୈକ୍ଷମନ୍ନଂ ଗୃହୀତ୍ୱା ।
ଆଚାର୍ଯ୍ୟାଗ୍ରେ ଭୈକ୍ଷପାତ୍ରଂ ନିଧାୟ ପୃଷ୍ଟ୍ୱାଭୈକ୍ଷଂ ଭକ୍ତିତସ୍ତନ୍ନିବେଦ୍ୟ ।
ତଚ୍ଛୁ ତ୍ୱାହ ପ୍ରୀତିଯୁକ୍ତଃ ପିତା ତଂ କାଳେ ଭୁଂକ୍ଷ୍ୱେତ୍ୟର୍ପୟେନ୍ମାତୃହସ୍ତେ ।
ଭିକ୍ଷାପାତ୍ରଂ ବାସସାଚ୍ଛାଦ୍ୟ ମାତା ଦେବାଗାରେ ସ୍ଥାପୟେଦ୍ ଭୋଜନାର୍ଥଂ ।
ଶିକ୍ଷାବାଚଂ ଗୁରୁତୋ ବ୍ରହ୍ମଚାରୀ ଶ୍ରୁତ୍ୱା ଶକ୍ତ୍ୟା ତୋସ୍ତୁ ଜେଦ୍‌ବିପ୍ରଭୋଜ୍ୟଂ ।
ତତଃ ପବିତ୍ରପ୍ରତ୍ତିପତ୍ତିକାଦି କୁର୍ଯ୍ୟାଦାଶ୍ରୀର୍ଗ୍ରହଣାନ୍ତମେବଂ ।
ସଂଭୋଜୟେଦ୍ ବନ୍ଧୁଗଣାଂସ୍ତତୋଽନ୍ୟାନ୍ ସମାପୟେ ଦିଦ୍ଧ୍ୟୁପନାୟକର୍ମ ।
(ଲୋକନାଥଦାସେନ କୃତ୍ୱା)

ବ୍ୟାଖ୍ୟା-ଶୁଭ ମୁହୂର୍ତ୍ତରେ ଉପନୟନ କର୍ମ କରିବ । ପ୍ରଥମେ କର୍ତ୍ତା ଘଟରେ ବରୁଣପୂଜା, କର୍ମାଙ୍ଗସଂକଳ୍ପ ଓ ଆଭ୍ୟୁଦୟିକ ଶ୍ରାଦ୍ଧ କରି ପୁତ୍ରର କ୍ଷୌର କର୍ମ କରାଇବ । ତତ୍ପରେ ପୁତ୍ରକୁ ସ୍ନାନ କରାଇ ବସ୍ତ୍ର ଗନ୍ଧ ମାଲ୍ୟାଦିଦ୍ୱାରା ଶୋଭିତ କରି ତିନିଜଣ ବ୍ରାହ୍ମଣଙ୍କ ସହିତ ନିରାମିଷ ଭୋଜନ କରାଇବ । ତତ୍ପରେ ପୁତ୍ର ଆଚମନ କରି ଆଚାର୍ଯ୍ୟ ସମୀପକୁ ଆସି ତାହାଙ୍କର ଦକ୍ଷିଣ ଭାଗରେ ବେଦୀ ଉପରେ ବସିବ ଓ ଆଚାର୍ଯ୍ୟ ଶୁଦ୍ଧ ଭୂମିରେ ଅଗ୍ନିସ୍ଥାପନ କରି ପୁତ୍ରକୁ ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରାଇବ ଏବଂ ବାଳକ ଛଣପଟ କରିଆ, ମେଖଳା, ଯଜ୍ଞସୂତ୍ର, କୃଷ୍ଣାଜିନ, ଦଣ୍ଡ, ଦୁଇଗୋଟି କୁଶବଟୁ ଏ ସମସ୍ତଙ୍କୁ ସ୍ୱସ୍ୱ ମନ୍ତ୍ରରେ ଗ୍ରହଣ କରିବ । ଆଚାର୍ଯ୍ୟ "ଆପୋହିଷ୍ଠା" ଏହି ତିନି କାଣ୍ଡି ମନ୍ତ୍ର ପଢ଼ି ପ୍ରତ୍ୟେକ କାଣ୍ଡିରେ ଆଞ୍ଜୁଳିଏ ଲେଖାଏଁ ଜଳ ବ୍ରହ୍ମଚାରୀ ଆଞ୍ଜୁଳିରେ ଦେବ । ତତ୍ପରେ ସେହି ଜଳକୁ ଧରି ବ୍ରହ୍ମାଚାରି ଆଚାର୍ଯ୍ୟଦ୍ୱାରା ପ୍ରେରିତ ହୋଇ ଭକ୍ତିପୂର୍ବକ ମନ୍ତ୍ର ପଢ଼ି ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଇ ଦର୍ଶନ

କରିବ ଏବଂ "ମମବ୍ରତେତେ" ଏହି ମନ୍ତ୍ର ପଢ଼ି ଆଚାର୍ଯ୍ୟ ବ୍ରହ୍ମଚାରୀର ହୃଦୟସ୍ପର୍ଶ କରିବ । ତତ୍ପରେ ଆଚାର୍ଯ୍ୟ ଓ ବ୍ରହ୍ମଚାରୀ ଏ ଉଭୟ ଉତ୍ତର ପ୍ରତ୍ୟୁତ୍ତର କରି ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ସାବିତ୍ରୀ ମନ୍ତ୍ର ପ୍ରଦାନ କରିବ । ଏହା ଉତ୍ତାରୁ ବ୍ରହ୍ମଚାରୀ ଅଗ୍ନି ପ୍ରଦକ୍ଷିଣ କରି ଆଚାର୍ଯ୍ୟର ଉତ୍ତର ଦିଗରେ ବସିବ । ଆଚାର୍ଯ୍ୟ ଅଗ୍ନିର ଦକ୍ଷିଣ ଦିଗରେ ବ୍ରହ୍ମାଙ୍କର ଆସନ ସ୍ଥାପନ କରି ଚରୁଛଡ଼ା କୁଶାଣ୍ଡି କର୍ମ କରିବ । ଏହା ଉତ୍ତାରୁ ଯଥାକ୍ରମରେ ଆଧାର ଓ ଆଜ୍ୟଭାଗ ହୋମ କରି ପୁଣ୍ୟାହବାଚନ କରିବ । ତତ୍ପରେ ଭୂରାଦି ସ୍ୱିଷ୍ଟକୃତ୍ ପର୍ଯ୍ୟନ୍ତ ମନ୍ତ୍ର ପଢ଼ି ପ୍ରତ୍ୟେକରେ ଏକ ଏକ ଆହୁତି ଅଗ୍ନିରେ ଦେବ । ଏହାଉତ୍ତାରୁ ପ୍ରାଶନ, ମାର୍ଜନ କରି ବ୍ରହ୍ମାଙ୍କୁ ଯଥାଶକ୍ତି ଦକ୍ଷିଣା ଦେଇ ପୁନର୍ବାର ଆଚାର୍ଯ୍ୟ ଓ ବ୍ରହ୍ମଚାରୀ ଉଭୟ ଉତ୍ତର ପ୍ରତ୍ୟୁତ୍ତର କରି ଶ୍ରୋତିୟ ବ୍ରାହ୍ମଣଙ୍କୁ ଲଗ୍ନର ବିଶୁଦ୍ଧି ନିମିତ୍ତ ବ୍ରହ୍ମଚାରୀ କାଞ୍ଚନ ଦାନ କରିବ । ତତ୍ପରେ ଅଗ୍ନିର ଉତ୍ତର ଦିଗରେ ଆଚାର୍ଯ୍ୟ ପୂର୍ବମୁଖ, ବ୍ରହ୍ମଚାରୀ ପଶ୍ଚିମମୁଖ ହୋଇ ବସି ଆଚାର୍ଯ୍ୟମାନଙ୍କୁ ନମସ୍କାର କରି ଓ ତାହାଙ୍କ ପାଦ ଧରି ମୁଖକୁ ନିରୀକ୍ଷଣ କରିବ ଓ ଆଚାର୍ଯ୍ୟ ମଧ୍ୟ ବ୍ରହ୍ମଚାରୀଙ୍କୁ ନିରୀକ୍ଷଣ କରି ପୁଣ୍ୟାହବାଚନପୂର୍ବକ ତ୍ରିପଦା ଗାୟତ୍ରୀ ଅଙ୍ଗସହିତ ପ୍ରଦାନ କରିବ ଏବଂ ମନ୍ତ୍ର ଗ୍ରହଣ କଲା ପରେ ବ୍ରହ୍ମଚାରୀ ଆଚାର୍ଯ୍ୟଙ୍କୁ ନମସ୍କାର କରି ଓ ବାକ୍ୟ ପଢ଼ି କର୍ମର ଅଚ୍ଛିଦ୍ରାବଧାରଣ କରିବ । ଏହା ଉତ୍ତାରୁ ବ୍ରହ୍ମଚାରୀ ଅଗ୍ନି ପ୍ରଦକ୍ଷିଣ କରି ସେହି ଅଗ୍ନିର ପଶ୍ଚିମ ଦିଗରେ ବସି କାଷ୍ଠ ପଞ୍ଚକ, ତିନିଖଣ୍ଡ ସମିଧ, ପୁନର୍ବାର କାଷ୍ଠପଞ୍ଚକ, ଉଷ୍ଣୋଦକ ଓ ଭସ୍ମ ଏ ସମସ୍ତ ସଂଗ୍ରହ କରି କାଷ୍ଠ ଓ ସମିଧକୁ ମନ୍ତ୍ରସହିତ ହୋମ କରିବ ଓ ଉଷ୍ଣଜଳ ଅଗ୍ନିର ଚାରିଦିଗରେ ବୁଲାଇ ନିଜେ ଭସ୍ମ ଗ୍ରହଣ କରିବ । ତଦନନ୍ତରେ ସେହି ବ୍ରହ୍ମଚାରୀ ମାମୁଙ୍କୁ ପଛରେ ରଖି ତାହାଙ୍କ ସାହାଯ୍ୟରେ ଦୁଇ ହାତରେ କାଂସ୍ୟ ପାତ୍ର ଧରି ପ୍ରଥମେ ମାତାଙ୍କୁ ଭିକ୍ଷାନ୍ନ ପ୍ରାର୍ଥନା କରିବ । ମାତା ତାହାକୁ ଭୈକ୍ଷ ଅନ୍ନ ଓ ଯଥାଶକ୍ତି କୁଣ୍ଡଳ କଙ୍କଣାଦି ପ୍ରଦାନ କରିବେ । ଏହିପରି ପିତାଙ୍କଠାରୁ ଓ ବନ୍ଧୁବର୍ଗଠାରୁ ଭିକ୍ଷାଗ୍ରହଣ କରି ଆଚାର୍ଯ୍ୟଙ୍କ ସମୀପରେ ଭିକ୍ଷାପାତ୍ର ରଖିବ ଓ ଭକ୍ତି ସହିତ ତାହାଙ୍କୁ ନିବେଦନ କରି କହିବ କି ଆପଣ ଏହା ଭକ୍ଷଣ କରନ୍ତୁ । ଆଚାର୍ଯ୍ୟ ଏହା ଶୁଣି ସନ୍ତୁଷ୍ଟ ହୋଇ କହିବେ ତୁମ୍ଭେ ଯଥାସମୟରେ ଭୋଜନ କରିବ; ଏହା କହି ସେହି ଭିକ୍ଷାନ୍ନ ବ୍ରହ୍ମଚାରୀର ମାତା ହସ୍ତରେ ସମର୍ପଣ କରିବେ । ମାତା ସେହିପାତ୍ରରେ ବସ୍ତ୍ରଘୋଡ଼ାଇ ଦେବାଳୟରେ ଭୋଜନ ନିମିତ୍ତ ରଖିଦେବେ । ତତ୍ପରେ ବ୍ରହ୍ମଚାରୀ ଉପଦେଶବାକ୍ୟ ଆଚାର୍ଯ୍ୟଙ୍କଠାରୁ ଶୁଣିସାରି ବ୍ରାହ୍ମଣଭୋଜନୋତ୍ସର୍ଗ କରିବ । ତଦନନ୍ତର ଆଚାର୍ଯ୍ୟ ପବିତ୍ରପ୍ରତିପ୍ରତ୍ତଠାରୁ ଆଶୀର୍ଗ୍ରହଣ ପର୍ଯ୍ୟନ୍ତ ସମସ୍ତ କର୍ମ ଶେଷ କରି ଓ ପୁତ୍ରର ଉପନୟକର୍ମ ସମାପ୍ତ କରି ବନ୍ଧୁଗଣଙ୍କ ସହିତ ଭୋଜନ କରିବେ ।



## ୩୧୧-ଉପନୟନ ପୂର୍ବଦିନର ଅଧିବାସବିଧି

ତତ୍ପୂର୍ବଦିନେ ସାୟଂ ବେଦ୍ୟାଂ ବରୁଣପୂଜାଂ କୃତ୍ୱା ବନ୍ଧାଦ୍ୟୈରଧିବାସନଂ କୁର୍ଯ୍ୟାତ୍ । ପୁଣ୍ୟାହବାଚନେ ଅୟଂ ବିଶେଷଃ । ଅମୁକନାମ୍ନୋ ମମ କୁମାରସ୍ୟ ସ୍ୱ ଉପନୟନେ କର୍ତ୍ତବ୍ୟେ । ତଦଙ୍ଗୀଭୂତଗନ୍ଧାଧିବାସବହିଃଶାଳାରୋପଣ-ହରିଦ୍ରାଧିବାସାରମ୍ଭଃ କ୍ରିୟତେ । ଯଦ୍ୟେତ୍ୟାଦି । (ପୁଣ୍ୟାହବାଚନ ୧୫୬ ନମ୍ବରେ ଦେଖ) । ଅଧିବାସ ବିଧି ୨୩୪-୨୩୯ ପର୍ଯ୍ୟନ୍ତ ନମ୍ବରମାନ ଦେଖ) ।

## ୩୧୨-ଉପନୟନକର୍ମର ଆରମ୍ଭ

ତତଃ ପରେଽହନି କର୍ତ୍ତା ନିତ୍ୟଂ କର୍ମ ସମାପ୍ୟ ବେଦିକୋପରି କଳସେ ବରୁଣପୂଜାଂ କୁର୍ଯ୍ୟାତ୍ । (ଏହାର ବିଧି ୨୨୦ ନମ୍ବର ଦେଖ) ।

## ୩୧୩-ଉପନୟନକର୍ମ କାଳାତୀତରେ ଅନାଦେଶପ୍ରାୟଶ୍ଚିତ୍ତ ବିଧି

କାଳାତିକ୍ରମେ ସଂକଳ୍ପପୂର୍ବକମନାଦୋପ୍ରାୟଶ୍ଚିତ୍ତଂ କୁର୍ଯ୍ୟାତ୍ । ସଂକଳ୍ପବାକ୍ୟେ ଅୟଂ ବିଶେଷଃ । ତଦ୍ୟଥା- * ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକ ନାମ୍ନୋ ମମ କୁମାରସ୍ୟ ଉପନୟକାଳାତିକ୍ରମଦୋଷବ୍ୟପୋହନାର୍ଥମନା-ଦେଶପ୍ରାୟଶ୍ଚିତ୍ତହୋମକର୍ମାହଂ କରିଷ୍ୟେ । (ଏହାର ସମୁଦାୟ ବିଧି ୨୧୩ ନମ୍ବର ଦେଖ) ।

## ୩୧୪-ଉପନୟନକର୍ମର ଆଭ୍ୟୁଦୟିକ ଶ୍ରାଦ୍ଧ ବିଧି

ତତଃ କର୍ମାଙ୍ଗସଂକଳ୍ପଂ କୃତ୍ୱା ସଂକଳ୍ପ ପୂର୍ବକମାତୃପୂଜାବସୋର୍ଦ୍ଧାରା-ଭ୍ୟୁଦୟିକଶ୍ରାଦ୍ଧଂ ଚ କୁର୍ଯ୍ୟାତ୍ ।

**କର୍ମାଙ୍ଗସଂକଳ୍ପବାକ୍ୟେ ଅୟଂ ବିଶେଷଃ**-ଅମୁକସଗୋତ୍ର-ଶ୍ରୀମାନ୍ ଅମୁକ ଶର୍ମା ଅମୁକ ନାମ୍ନୋ ମମ କୁମାରସ୍ୟ ଉପନୟନକର୍ମାହଂ କରିଷ୍ୟେ (୧୨୫-୧୨୯

---

*ପିତା ଉପସ୍ଥିତ ଥିଲେ ଏହିପରି ସଂକଳ୍ପ କରିବ । ଯଦି ପିତାର ଅଭାବରେ ଅନ୍ୟ ଯେ କେହି କର୍ତ୍ତା ହେବେ ସେ ନିଜର ସମ୍ବନ୍ଧ ଅନୁସାରେ ବାକ୍ୟ କରିବେ । ଯଥା- ପିତାମହ କର୍ତ୍ତା ହେଲେ "ମମ ପୌତ୍ରସ୍ୟ ଅମୁକନାମ୍ନଃ" । ପିତୃବ୍ୟ (ଖୁଡୁତା) କର୍ତ୍ତା ହେଲେ "ମମ ଜ୍ୟେଷ୍ଠଭ୍ରାତୃପୁତ୍ରସ୍ୟ ଅମୁକନାମ୍ନଃ" । ଜ୍ୟେଷ୍ଠତାତ (ଦେଢୁତା) କର୍ତ୍ତା ହେଲେ "ମମକନିଷ୍ଠଭ୍ରାତୃ ପୁତ୍ରସ୍ୟଅମୁକନାମ୍ନଃ" । ଗୋତ୍ରଜ ବା ଜ୍ଞାତି କର୍ତ୍ତା ହେଲେ ଅମୁକଗୋତ୍ରସ୍ୟ ଅମୁକନାମ୍ନଃ କୁମାରସ୍ୟ ଇତ୍ୟାଦି ।

ପର୍ଯ୍ୟନ୍ତ ନମ୍ବରମାନ ଦେଖ) ତତଃ ପୀଠେ ଗଣପତିପୁରଃସରଗୌର୍ଯ୍ୟାଦ୍ୟଷ୍ଟା-ଦଶମାତୃଗଣାନ୍ ପୂଜୟେତ୍ । (୧୩୧ ନମ୍ବର ଦେଖ) ।

ତତଃ କୁଡ୍ୟଲଗ୍ନା ବସୋର୍ଦ୍ଧାରାଃ ପଞ୍ଚ ବା ସପ୍ତ ଦଦ୍ୟାତ୍ । (୧୩୨, ୧୩୩ ଓ ୧୩୪ ନମ୍ବରମାନ ଦେଖ) ।

ଭୋଜ୍ୟସ୍ୱର୍ଗବାକ୍ୟେ ଅୟଂ ବିଶେଷ-ଅମୁକସଗୋତ୍ରଂ ଶ୍ରୀମାନ ଅମୁକଶର୍ମ୍ମା ଅମୁକନାମ୍ନୋ ମମ କୁମାରସ୍ୟ ଉପନୟନକର୍ମଣୋଽଙ୍ଗତୟା- (୧୩୫ ନମ୍ବରଠାରୁ ୧୩୮ ନମ୍ବର ପର୍ଯ୍ୟନ୍ତ ଦେଖ) ।

## ୩୧୫-କୁମାରର କ୍ଷୌର, ସ୍ନାନ ଓ ନିରାମିଷଭୋଜନକର୍ମ

ତତଃ କୁମାରସ୍ୟ ବପନଂ ସ୍ନାନଂ ଚ ବ୍ରାହ୍ମଣତ୍ରୟେଣ ସହ ନିରାମିଷଭୋଜନଂ । *

ବ୍ୟାଖ୍ୟା-ତତ୍ପରେ କୁମାରକୁ କ୍ଷୌର ଓ ସ୍ନାନ କରାଇ ଏବଂ "ବସ୍ତ୍ର, କୁଣ୍ଡଳ, ଚନ୍ଦନ ମାଲ୍ୟାଦିଦ୍ୱାରା ସୁଶୋଭିତ କରି" * ଶ୍ରାଦ୍ଧବ୍ରାହ୍ମଣଭିନ୍ନ ଅନ୍ୟ ତିନିଜଣ ବ୍ରାହ୍ମଣଙ୍କ ସହିତ ନିରାମିଷ ଭୋଜନ କରାଇବ ।

## ୩୧୬-ଉପନୟନର ଅଗ୍ନିସ୍ଥାପନ ବିଧି

ତତୋବହିଃଶାଲାୟାଂ ପଞ୍ଚଭୂସଂସ୍କାରାନ୍ କୃତ୍ୱା ଲୌକିକାଗ୍ନେଃ ସ୍ଥାପନଂ । ସମୁଦ୍ଭବନାମାଗ୍ନୟେ ନମଃ ସମୁଦ୍ଭବନାମାଗ୍ନି ମାବାହୟାମି ସମୁଦ୍ଭବନାମାଗ୍ନେଽତ୍ରାଗଚ୍ଛ ଇତ୍ୟାବାହ୍ୟ ଆସନାଦିତାମ୍ବୁଳାନ୍ତଂ ପୂଜୟେତ୍ ଘୃତେନ ବା ।

---

*୩୧୫-(୧ଟି) ଉପନୟନରେ ହବିଷ୍ୟାନ୍ନଭୋଜନ ନିୟମ ଯଥା-

ପଞ୍ଚପ୍ରାଣାଦିମରୁତାମମବୋଧାଦ୍ବ୍ରତେ ଶିଶୁଃ ।
ହବିଷ୍ୟଂ ବ୍ରାହ୍ମଣୈର୍ଭୁଞ୍ଜନ୍ ବ୍ରହ୍ମଚର୍ଯ୍ୟମଥାଚରେତ ।

ବ୍ୟାଖ୍ୟା-ପଞ୍ଚପ୍ରାଣବାୟୁର ଅବରୋଧ (ଜାଗରଣ ଜ୍ଞାନ) ନିମିତ୍ତ ବାଳକ ଉପନୟନରେ ତିନିଜଣ ବ୍ରାହ୍ମଣ ସହିତ ହବିଷ୍ୟାନ୍ନରେ ପଞ୍ଚଗ୍ରାସ ତତ୍ପରେ ବ୍ରହ୍ମଚର୍ଯ୍ୟବ୍ରତ ଅବଲମ୍ବନ କରିବ ।

*୩୧୫-(୨ଟି) ଶ୍ରାଦ୍ଧବ୍ୟତିରିକ୍ତାନ୍ ତ୍ରିପ୍ରଭୃତୀନ୍ (ବ୍ରାହ୍ମଣାନ୍ ଭୋଜୟେଦିତି କର୍କଜୟରାମୌ ।

ଭୋଜନବିଶେଷମାହ-ପ୍ରୟୋଯବାଗ୍ୱାମିକ୍ଷାହାରାଦ୍ୱିଜାତୟଃ । ବ୍ରାହ୍ମଣସ୍ୟ ଦୁଗ୍ଧଂ । କ୍ଷତ୍ରିୟସ୍ୟ ଯବାଗୁଃ (ଜାଉ) । ବୈଶ୍ୟସ୍ୟ ଆମିକ୍ଷା (ଛେନା) ଚେତି ।

ଅଷ୍ଟୌ ତାନ୍ୟବ୍ରତଘ୍ନାନି ଆପୋମୂଳଂ ଫଳଂ ପୟଃ ।
ହବିର୍ବ୍ରାହ୍ମଣକାମ୍ୟା ଚ ଗୁରୋର୍ବଚନମୌଷଧମିତି ।

ବ୍ୟାଖ୍ୟା-ଜଳ, ମୂଳ (କନ୍ଦମୂଳ ପ୍ରଭୃତି) ଫଳ, ଦୁଗ୍ଧ, ଘୃତ, ଔଷଧ ବ୍ରାହ୍ମଣକାମନା ଓ ଗୁରୁବାକ୍ୟ ଏହି ଆଠଗୋଟିରେ ବ୍ରତ ନଷ୍ଟ ହୁଏ ନାହିଁ ।



ବ୍ୟାଖ୍ୟା-ତତ୍ପରେ ବହିଃଶାଳା (ବେଦୀ)ରେ ପଞ୍ଚଭୂସଂସ୍କାର ଓ ଲୌକିକାଗ୍ନି ସ୍ଥାପନ କରି (୧୪୬-୧୪୭ ନମ୍ବରେ ଦେଖ) । ତହିଁରେ ସମୁଦ୍ଭବ ନାମାଗ୍ନିଙ୍କୁ ଆବାହନାଦି ତାମ୍ବୁଳ ପର୍ଯ୍ୟନ୍ତ ଉପଚାର ଦେଇ ପୂଜା କରିବ । ଅଭାବପକ୍ଷରେ କେବଳ ଘୃତଦ୍ୱାରା ପୂଜା କରିବ ।

ତତଃ * ପର୍ଯ୍ୟୁପ୍ତଶିରସୋଽଲଂକୃତସ୍ୟ କୁମାରସ୍ୟ ଆଚାର୍ଯ୍ୟପୁରୁଷୈରାଚାର୍ଯ୍ୟ-ସମୀପାନୟନଂ । ଆଗତସ୍ୟ କୁମାରସ୍ୟ ପଶ୍ଚାଦଗ୍ନେଃ ପିତୁର୍ଦକ୍ଷିଣତଃ ପୀଠେ ଅବସ୍ଥାନଂ ।

ବ୍ୟାଖ୍ୟା-ଆଚାର୍ଯ୍ୟପୁରୁଷମାନେ (ପୁରୋହିତାଦି) ସେହି ମୁଣ୍ଡିତ ଓ କୁଣ୍ଡଳାଦିଦ୍ୱାରା ଅଳଂକୃତ ବାଳକକୁ ଆଚାର୍ଯ୍ୟ (କର୍ତ୍ତା)ଙ୍କ ନିକଟକୁ ଆଣି ଅଗ୍ନିର ପଶ୍ଚିମରେ ପିତାଙ୍କର ଦକ୍ଷିଣଭାଗରେ (ଆସନ ୯୧-୯୪ ନମ୍ବର ଦେଖ) ଉପରେ ବସାଇବେ । ତତ୍ପରେ କର୍ତ୍ତା ପୁଣ୍ୟାହବାଚନ କରିବେ । ପୁଣ୍ୟାହବାଚନଂ, ଯଥା-

ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଅମୁକନାମ୍ନୋ ମମ କୁମାରସ୍ୟ ଉପନୟକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । (ଏହାର ବିଶେଷ ବିଧି ୧୫୬ ଦେଖ) ।

## ୩୧୭-ମେଖଳାପ୍ରଭୃତିର ଆସାଦନ ବିଧି

ତତ ଆସଦନଂ *-ବାସଶ୍ଚ ମେଖଳାରଜ୍ଜୁରୁପବୀତମତଃପରଂ ।
ଐଣାଜିନଂ ଚୋତ୍ତରୀୟଂ ଦଣ୍ଡଂ କୁଶବଟୁଦ୍ୱୟଂ ।
ଏତାନ୍ୟଗ୍ରେ ସଂମାସାଦ୍ୟ ଗୃହ୍ଣୀୟାତ୍ତଦନନ୍ତରଂ ।

ବ୍ୟାଖ୍ୟା-ବାସ (ଛଣପଟ-କରିଆ), ମେଖଳାରଜ୍ଜୁ (ଶରଗଛପତ୍ରର ରଜ୍ଜୁ), ଉପବୀତ, କୃଷ୍ଣାଜିନ (କୃଷ୍ଣ ମୃଗଚର୍ମ)ର ଉତ୍ତରୀୟ, ଦଣ୍ଡ (ପଲାଶକାଠଦଣ୍ଡ) ଏବଂ ଦୁଇଗୋଟି କୁଶବଟୁ ଏମାନଙ୍କୁ କର୍ମପାଇଁ ଆସାଦନ କରିବ ।

---

*-ପରି ସର୍ବତଃ ଉପ୍ତଂ ମୁଣ୍ଡିତଂ ଶିରୋଯସ୍ୟସପୁର୍ଯ୍ୟୁପ୍ତଶିରାଃତଂ ପର୍ଯ୍ୟୁପ୍ତ ଶିରସଂ-ଅଳଂକୃତଂ ସ୍ରଗ୍ମାଳାଦିଭୂଷିତଂ । ଆନୟନ୍ତି ଯେ ପୂର୍ବଂ ତେନ ଆଚାର୍ଯ୍ୟେଣ ଉପନୀତା ସ୍ତେ ଏନମାଚାର୍ଯ୍ୟସମୀପାନୟନ୍ତି । (ଆଚାର୍ଯ୍ୟ ଲକ୍ଷଣ ୧ ନମ୍ବର ଦେଖ) ।

*-୩୧୭ ଉପନୟନ କାଳରେ ବ୍ରହ୍ମଚାରୀର ବସ୍ତ୍ର ନିୟମ ଯଥା-

ବ୍ରାହ୍ମଣସ୍ୟ ଶାଣଂ (ଶଣମୟଂ), କ୍ଷତ୍ରିୟସ୍ୟ କ୍ଷୌମଂ (ପଟ୍ଟବସ୍ତ୍ରଂ) ବୈଶ୍ୟ ଆବିକଂ (ମେଷଲୋମନିର୍ମିତ ବସ୍ତ୍ରଂ । (ଗଦାଧରଭାଷ୍ୟେ ।

## ୩୧୮-ବ୍ରହ୍ମଚାରୀ * ମେଖଳାପ୍ରଭୃତି ପରିଧାପନବିଧି

ଆଦିତ୍ୟୋପସ୍ଥାନ ପର୍ଯ୍ୟନ୍ତଂ ବ୍ରହ୍ମଚାରୀଣମୁତ୍‌ଥାପ୍ୟ କର୍ମ କୁର୍ଯ୍ୟାଦିତି । ତତଃ ଆଚାର୍ଯ୍ୟାମାଣବିକଂ ବାଚୟତି । (୧) "ବ୍ରହ୍ମଚର୍ଯ୍ୟମାଗାଂ" ବ୍ରହ୍ମଚର୍ଯ୍ୟମାଗାଂ ଇତି କୁମାରେ ବ୍ରୂୟାତ୍ । "ବ୍ରହ୍ମଚାସ୍ୟସାନି" ଇତ୍ୟାଚାର୍ଯ୍ୟେ ବାଚୟତି । (୨) "ବ୍ରହ୍ମଚାର୍ଯ୍ୟସାତି" ଇତି କୁମାରୋ ବ୍ରୂୟାତ୍ ।

---

*୩୧୮ (୧ଟି) ମେଖଳା ଓ ଐଣାଜିନ ଉତ୍ତରୀୟ ପ୍ରମାଣ-

ମେଖଳା ସପ୍ତହସ୍ତା ସ୍ୟାଦଜିନଂ ତୁ ଦ୍ୱିହସ୍ତକଂ ।
ବହିର୍ଲୋମ ତ୍ର୍ୟଙ୍ଗୁଳଂ ଚ ଖଣ୍ଡୈକଂ ବା ତ୍ରିକଣ୍ଡକଂ ।
ତ୍ରିବୃତା ମେଖଳା କାର୍ଯ୍ୟ ତ୍ରିବାରଂ ସ୍ୟାତ୍‌ସମାବୃତା ।
ତଦ୍‌ଗ୍ରନ୍ଥୟସ୍ତ୍ରୟଃ କାର୍ଯ୍ୟଃ ପଞ୍ଚ ବା ସପ୍ତ ବା ପୁନଃ ।
ମୌଞ୍ଜୀତ୍ରିବୃତ୍ ସମାଶ୍ଳକ୍ଷ୍ଣା କାର୍ଯ୍ୟା ବିପ୍ରସ୍ୟ ମେଖଳା
କ୍ଷତ୍ରିୟସ୍ୟ ଚ ମୌର୍ବୀ ହା ବୈଶ୍ୟସ୍ୟ ଶଣତାନ୍ତବୀ ।
ମୁଞ୍ଜାଭାବେ ତୁ କର୍ତ୍ତବ୍ୟା କୁଶାଶ୍ମନ୍ତକବଲ୍ୱଜୈଃ ।
ତ୍ରିବୃତା ଗ୍ରନ୍ଥିନୈକେନ ତ୍ରିଭିଃ ପଞ୍ଚଭିରେବ ବା । (ମନୁ)
ଅତ୍ର ପ୍ରବରସଂଖ୍ୟାନିୟମ ଇତି ବୃଦ୍ଧାଃ ।

ବ୍ୟାଖ୍ୟା-ମେଖଳାର ଲମ୍ବ ସାତହାତ ହେବ । ଅଜିନ ଅର୍ଥାତ୍ କୃଷ୍ଣାଜିନ ଉତ୍ତରୀୟର ଲମ୍ବ ଦୁଇହାତ ଏବଂ ତାହାର ପ୍ରସାର ତିନି ଅଙ୍ଗୁଳି ଓ ତାହା ଉପରିଭାଗ ଲୋମଯୁକ୍ତ ହୋଇଥିବ । ଏପରି ଉତ୍ତରୀୟ ଖଣ୍ଡେ ଚର୍ମରେ କିମ୍ବା ତିନିଖଣ୍ଡ ଚର୍ମରେ ହେଉ କିନ୍ତୁ ତାହାର ଲମ୍ବ ଦୁଇହାତ ହେବ । ମୌଞ୍ଜୀ ଅର୍ଥାତ୍ ଶରଗଛର ପତ୍ରକୁ ତିନିଗୁଣ କରି ବ୍ରାହ୍ମଣ ପାଇଁ ସାତହାତ ଲମ୍ବ ମେଖଳା ଦଉଡ଼ି କରିବ । ସେ ଯେପରି ସମାନ ଆଉ ଚିକ୍କଣ ହେବ । ମନ୍ତ୍ର ପଢ଼ି ଅଣ୍ଟାରେ ତିନିଥର ବୁଲାଇ ଏକ ବା ତିନି, ପାଞ୍ଚ ବା ସାତଗୋଟି ଗଣ୍ଠି ଦେବ । ଗୋତ୍ରର ପ୍ରବର ଋଷି ସଂଖ୍ୟା ଅନୁସାରେ ମେଖଳାର ଗ୍ରନ୍ଥ ସଂଖ୍ୟା ହୁଏ । ଏହା ବୃଦ୍ଧମାନଙ୍କର ମତ । କ୍ଷତ୍ରିୟର ମେଖଳାରଜ୍ଜୁ ମୁର୍ବାସୂତ୍ରରେ କରିବ ଓ ବୈଶ୍ୟର ମେଖଳା ରଜ୍ଜୁ ଛଣପଟ ସୂତାରେ କରିବ । ମୁଞ୍ଜ ଅଭ୍ୟବରେ ବ୍ରାହ୍ମଣ କୁଶରେ ମେଖଳା କରିବ । ମୂର୍ବାଅଭାବରେ କ୍ଷତ୍ରିୟ ଅଶ୍ମନ୍ତକ ତୃଣରେ ମେଖଳା କରିବ । ଶଣତନ୍ତୁ ଅଭାବରେ ବୈଶ୍ୟ ବଲ୍ୱଜ ତୃଣରେ ମେଖଳା କରିବ ।

୩୧୮-(୨) ବ୍ରହ୍ମଚାରୀର ଦଣ୍ଡପ୍ରଣାମ, ଯଥା-ପାଲାଶ୍ୟୋ ବ୍ରାହ୍ମଣସ୍ୟ ଦଣ୍ଡଃ, ବୈଲ୍ୱୋ ରାଜନ୍ୟସ୍ୟ, ଔଦୁମ୍ବଶ୍ରେ, ବୈଶ୍ୟସ୍ୟ, ସର୍ବେ ବା ସର୍ବେଷାଂ (ପାରସ୍କରଃ)
(୧) ବ୍ରହ୍ମଚର୍ଯ୍ୟଂପ୍ରତି ଅହଂ ଆଗାଂଆଗତୋଽସ୍ମି । ବ୍ରହ୍ମ-ବେଦଶ୍ଚରଣଂ ।

---

(୨) ବ୍ରହ୍ମକର୍ମ ଚରତି ଏବଂ ଶୀଳୋବ୍ରହ୍ମଚାରୀ ଅହଂଅସାନି-ଭବାମି (ଗଦାଧରଃ)



ବ୍ୟାଖ୍ୟା-ଆଦିତ୍ୟ ଉପସ୍ଥାନ ପର୍ଯ୍ୟନ୍ତ ବ୍ରହ୍ମଚାରୀକୁ ଠିଆ କରାଇ ତାହାର ମେଖଳା ପ୍ରଭୃତି ଧାରଣକର୍ମ କରିବ । ଆଚାର୍ଯ୍ୟ କୁମାରକୁ ଶିକ୍ଷା ଦେବେ କି ତୁମ୍ଭେ "ବ୍ରହ୍ମଚର୍ଯ୍ୟମାଗାଂ" ଏହା କହ । କୁମାର କହିବ "ବ୍ରହ୍ମଚାର୍ଯ୍ୟମାଗାଂ" ଅର୍ଥାତ୍ ମୁଁ ବ୍ରହ୍ମଚର୍ଯ୍ୟ ହେବାପାଇଁ ଉପସ୍ଥିତ ହେଲି । ପୁଣି ଆଚାର୍ଯ୍ୟ କହିବେ "ବ୍ରହ୍ମଚାର୍ଯ୍ୟସାନି" ଏହା କହ । କୁମାର କରିବ "ବ୍ରହ୍ମଚାର୍ଯ୍ୟସାନି" ଅର୍ଥାତ୍ ମୁଁ ବ୍ରହ୍ମଚାରୀ ହେବି ।

ଅଥୈନଂ ମାଣବକଂ ଆଚାର୍ଯ୍ୟା ବାସଃ ଶାଣଂପରିଧାପୟତି ମନ୍ତ୍ରେଣ । ତଦ୍ୟଥା-ଓଁ ଯେନେନ୍ଦ୍ରାୟ ବୃହସ୍ପତିର୍ବାସଃ ପର୍ଯ୍ୟଦଧାଦମୃତଂ । ତେନ ତ୍ୱା ପରିଦଧାମ୍ୟାୟୁଷେ ଦୀର୍ଘାୟୁତ୍ୱାୟ ବଳାୟ ବର୍ଚ୍ଚସେ । ଇତ୍ୟା * ଚାର୍ଯ୍ୟସ୍ୟ ମନ୍ତ୍ରପାଠ । ଆଚମନଂ ।

ବ୍ୟାଖ୍ୟା-ଏହି ଉପରୋକ୍ତ ମନ୍ତ୍ର ପଢ଼ି ଆଚାର୍ଯ୍ୟ କୁମାରକୁ ଛଣପଟ କରିଆ ପିନ୍ଧାଇବେ । ତତ୍ପରେ ମାଣବକ ଆଚମନ କରିବ ।

---

*ବ୍ରଧ୍ନୀୟାତ୍ତ୍ରିଗୁଣଂ ଶ୍ଳକ୍ଷ୍ଣାମିୟଂଦ୍ଭୁରୁକ୍ତମୁଚ୍ଚରନ୍ ।
ଆଚାର୍ଯ୍ୟସ୍ୟୈବ ମନ୍ତ୍ରୋଽୟଂ ନ ବଟୋରାମ୍ନେପଦାତ୍ ।
(ଗୃହସୂତ୍ରକାରିକାୟଂ)
ବଧ୍ନୀତେ ଇତ୍ୟାମ୍ନେପଦ ପ୍ରୟୋଗାଦିତି (ଗଦାଧରଃ)
କେଶାନ୍ତଗୋବ୍ରାହ୍ମଣସ୍ୟ ଦଣ୍ଡଃ କାର୍ଯ୍ୟଃ ପ୍ରମାଣତଃ ।
ଲଲାଟସମ୍ମିତୋରାଜ୍ଞ ସ୍ୟାତ୍ତ ନାସାନ୍ତଗୋ ବିଶଃ ।
ଋଜବସ୍ତେ ତୁ ସର୍ବେ ସ୍ୟୁରବ୍ରଣାଃ ସୌମ୍ୟଦର୍ଶନାଃ ।
ଅନୁଦ୍ବେଗକରାନ୍ନୃଣାଂ ସଦ୍ବଚୋ ନାଗ୍ନିଦୂଷିତାଃ ।
ଦକ୍ଷାଂସେ ଦଣ୍ଡମାଧାୟ ବାମାଂସେ ଧାରୟେଦ୍ବଟୁଃ ।
(ବାଜପେୟି ପଦ୍ଧତୌ ସ୍ମୃତିଃ)

ବ୍ୟାଖ୍ୟା-ବ୍ରାହ୍ମଣଙ୍କର ପଲାଶଦଣ୍ଡ, କ୍ଷତ୍ରିଙ୍କର ବିଲ୍ୱଦଣ୍ଡ ଓ ବୈଶ୍ୟଙ୍କର ଔଦୁମ୍ବର ଦଣ୍ଡ ମୁଖ୍ୟ ହୁଏ । ଅଭାବପକ୍ଷରେ ସମସ୍ତଙ୍କର ସବୁ ପ୍ରକାର ଦଣ୍ଡ ହୋଇପାରେ । ବ୍ରାହ୍ମଣଙ୍କର ଦଣ୍ଡ ପରିମାଣ ପାଦଠାରୁ କେଶ ପର୍ଯ୍ୟନ୍ତ ଲମ୍ବ, କ୍ଷତ୍ରିୟଙ୍କର ପାଦଠାରୁ ଲଲାଟ ପର୍ଯ୍ୟନ୍ତ ଲମ୍ବ ଓ ବୈଶ୍ୟଙ୍କର ପାଦଠାରୁ ନାସା ପର୍ଯ୍ୟନ୍ତ ଲମ୍ବ ହୁଏ । ସେ ସମସ୍ତ ଦଣ୍ଡ ସଳଖ, ବକଳଯୁକ୍ତ, ଅବ୍ରଣ (ଯାଦୁ ଯାଦୁଆ ରହିତ) ଓ ଦେଖିବାକୁ ସୁନ୍ଦର ହୋଇଥିବ; କିନ୍ତୁ ସେ ମନୁଷ୍ୟମାନଙ୍କର ଭୟଜନକ ଓ ଅଗ୍ନିଦଗ୍ଧ ହୋଇ ନ ଥିବ । ଏରୂପ ଦଣ୍ଡକୁ ବ୍ରହ୍ମଚାରୀ ପ୍ରଥମେ ଦକ୍ଷିଣସ୍କନ୍ଧରେ ରଖି ତତ୍ପରେ ବାମସ୍କନ୍ଧରେ ଧାରଣ କରିବ ।

ତତ ଆଚର୍ଯ୍ୟୋମାଣବକସ୍ୟ କଟିଦେଶେ ମେଖଳାଂ ବଧ୍ନୀତେ ମନ୍ତ୍ରେଣ । ତଦଯଥା-ଓଁ ଇୟଂ ଦୁରୁକ୍ତଂ ପରିବାଧମାନା ବର୍ଣ୍ଣଂ ପବିତ୍ରଂ ପୁନତୀମ ଆଗାତ୍ । ପାଣାପାନାଭ୍ୟାଂ ବଳମାଦଧାନା ସ୍ୱସା ଦେବୀ ସୁଭଗା ମେଖଳେୟଂ । ମେଖଳା ବନ୍ଧନେ ଆଚାର୍ଯ୍ୟସ୍ୟ ମନ୍ତ୍ରପାଠଃ । ମାଣବକସ୍ୟ ମନ୍ତ୍ରପାଠ ଇତି ଅନ୍ୟୈରୁକ୍ତଂ । ଆଚମନଂ ।

### ୩୧୮- (୩) ଯଜ୍ଞୋପବୀତ ଲକ୍ଷଣ-

କାର୍ପାସମୁପବୀତଂ ସ୍ୟାଦ୍‌ବିପ୍ରସ୍ୟୋର୍ଦ୍ଧ୍ୱଂ ବୃତଂ ତ୍ରୀବୃତ୍ ।
ତନ୍ତୁତ୍ରୟମଧୋବୃତ୍ତ ଯଜ୍ଞସୂତ୍ରଂ ବିଦୁର୍ବୁଧାଃ । (କଳ୍କିପୁରାଣ)
କାର୍ପାସକ୍ଷୌମଗୋବାଳଶାଣବଲ୍‌କତୃଣାଦିକଂ । ଯଥାସମ୍ଭବତୋଧାର୍ଯ୍ୟମୁପବୀତଂ ଦ୍ୱିଜାତିଭିଃ ॥
ଶୁଚୌଦେଶେ ଶୁଚିଃ ସୂତ୍ରଂ ସଂହତାଙ୍ଗୁଳିମୂଳକେ । ଆବେଷ୍ଟ୍ୟଷର୍ଣ୍ଣବତ୍ୟାତତ୍ତ୍ରିଗୁଣୀକୃତଯତ୍ନତଃ ॥
ଅବ୍‌ଲିଙ୍ଗକୈସ୍ତ୍ରିଭିଃ ସମ୍ୟକ୍ ପ୍ରକ୍ଷାଲ୍ୟୋର୍ଦ୍ଧ୍ୱବୃତଂ ତୁ ତତ୍ ।
ଅପ୍ରଦକ୍ଷିଣମାବୃତ୍ତଂ ସାବିତ୍ର୍ୟା ତ୍ରିଗୁଣୀକୃତଂ ॥
ଅଧଃପ୍ରଦକ୍ଷିଣଂ ବୃତ୍ତସମଂ ସ୍ୟାନ୍ନବସୂତ୍ରକଂ । ତ୍ରିରୋବେଷ୍ଟ୍ୟ ଦୃଢ଼ଂ ବଦ୍ଧ୍ୱା ହରିବ୍ରହ୍ମେଶ୍ୱରାନ୍ନମେତ୍ ॥
ଯଜ୍ଞୋପବୀତଂ ପରମମିତି ମନ୍ତ୍ରେଣ ଧାରୟେତ୍ ॥
ସୂତ୍ରଂ ସଲୋମକଂ ଚେତ୍‌ସ୍ୟାତ୍ତତଃ କୃତ୍ୱା ବିଲୋମକଂ ॥
ସାବିତ୍ର୍ୟା ଦଶକୃତ୍ୱୋଽଭିମନ୍ତ୍ରିତାଭିସ୍ତଦୂକ୍ଷୟେତ୍ । ବିଚ୍ଛିନ୍ନଂ ବାପ୍ୟଧୋଯାତଂ ଭୁକ୍ତ୍ୱାନିର୍ମିତମୁତ୍ସୃଜେତ୍॥
ପୃଷ୍ଠଦେଶେ ଚ ନାଭ୍ୟାଂ ଚ ଧୃତଂଯଦ୍‌ବିନ୍ଦତେ କଟିଂ । ତଦ୍ଧାର୍ଯ୍ୟମୁପବୀତଂ ସ୍ୟାନ୍ନତିଲମ୍ବଂ ନଚୋଚ୍ଛ୍ରିତଂ ॥
ସ୍ତନାଦୂର୍ଦ୍ଧ୍ୱ ମଧୋନାଭେର୍ନ ଧାର୍ଯ୍ୟଂ ତତ୍କଥଂଚନ । ବ୍ରହ୍ମଚାରିଣ ଏକଂ ସ୍ୟାସ୍ନାତସ୍ୟା ଦ୍ୱେ ବହୂନି ବା ॥
ତୃତୀୟମୁତ୍ତରୀୟଂ ବା ବସ୍ତ୍ରାଭାବେତଦିଷ୍ୟତେ । ବ୍ରହ୍ମସୂତ୍ରେତ୍ରୁସବ୍ୟେଽଂସେସ୍ଥିତେଯଜ୍ଞୋପବୀତ୍ରିତା ॥
ପ୍ରାଚୀନାବୀତିତାଽସବ୍ୟେ କଣ୍ଠସ୍ଥେ ହି ନିବୀତିତା । (ସ୍ମୃତ୍ୟର୍ଥସାରେ)
ଓଁକାରଃ ପ୍ରଥମୋପାଦେ ଦ୍ୱିତୀୟେଽଗ୍ନିଃ ପ୍ରକର୍ତ୍ତିତଃ ।
ତୃତୀୟେ ଚକ୍ଷକଶ୍ଚୈବ ଚତୁର୍ଥେ ସୋମ ଏବ ତ ।
ପଞ୍ଚମେ ପିତୃଦେବସ୍ତୁ ଷଷ୍ଠେ ଚୈବ ପ୍ରଜାପତିଃ । ସପ୍ତମେ ବାସୁଦେବଃ ସ୍ୟାଦଷ୍ଟମେ ରବିରେବ ଚ ॥
ନବମେ ସର୍ବଦେବସ୍ତୁ ଇତ୍ୟେବଂ ନବସୂତ୍ରକଂ । ବ୍ରହ୍ମଣୋତ୍ପାଦିତଂ ସୂତ୍ରଂ ବିଷ୍ଣୁନା ତ୍ରିଗୁଣୀକୃତଂ ॥
ତଦ୍‌ଗ୍ରନ୍ଥିତଂ ତ୍ରିନେତ୍ରେଣ ଗାୟତ୍ର୍ୟା ଚାଭିମନ୍ତ୍ରିତଂ । ନିଷ୍ଫଳଂ ବହତୋ ଭାରଂ ଯୋ ନ ଜାନାତିଲକ୍ଷଣଂ ॥
କର୍ମବାହୋ ଦ୍ୱିଜୋ ନୂନମପୂଜ୍ୟୋ ଲୋକନିନ୍ଦିତଃ ॥ (ଗୃହ୍ୟସୂତ୍ରକାରିକାୟାଂ)



**ବ୍ୟାଖ୍ୟା-** ଆଚାର୍ଯ୍ୟ ଏହି ଉପରୋକ୍ତ ପଢ଼ି ମାଣବକର କଟିଦେଶରେ ମେଖଳା ବାନ୍ଧିବେ ଅଥବା ମାଣବିକ ମେଖଳା ବାନ୍ଧିଲାବେଳେ ନିଜେ ମନ୍ତ୍ର ପଢୁଥିବେ । ତତ୍ପରେ ମାଣବକ ଆଚମନ କରିବ ।

ଓଁ ଯୁବାସୁବାସାଃ ପରିବୀତ ଆଚାତ୍ ସଉଶ୍ରେୟାନ୍‌ଭବତିଜାୟମାନଃ । ତଂ ଧୀରାସଃ କବୟ ଉନ୍ନୟନ୍ତି ସ୍ୱାଧ୍ୟେମନସା ଦେବୟନ୍ତଃ ଇତି ମନ୍ତ୍ରେଣ ମେଖଳାଂ ବଧ୍ନୀତେ । କେଚିତ୍ତୂଷ୍ଣୀଂ ବା ।

**ବ୍ୟାଖ୍ୟା-**କାର୍ପାସସୂତ୍ର ବ୍ରାହ୍ମଣର, ଶଣସୂତ୍ର କ୍ଷତ୍ରିୟର, ମେଷ ଲୋମଜନିତ ସୂତ୍ର ବୈଶ୍ୟର ହୁଏ । ଅଥବା କପାସୂତା, କ୍ଷୁମାସମ୍ବନ୍ଧୀୟ ସୂତା, ଗୋରୁବାଳ, ଛଣ ପଟସୂତା, ଗଛଛାଲ ସୂତା କିମ୍ବା ତୃଣ (କୁଶ) ରଜ୍ଜୁ ଏମାନଙ୍କ ମଧ୍ୟରୁ ଯେଉଁଠାରେ ଯେ ମିଳିବ ଦ୍ୱିଜାତିମାନେ ସେଥିରେ ଉପବୀତ ନିର୍ମାଣ କରି ଧାରଣ କରିବେ ।

**୩୧୮ (୪) ଯଜ୍ଞୋପବୀତ ନିର୍ମାଣବିଧି । ଯଥା-**

ସଧବା ସ୍ତ୍ରୀ ସୂତାକାଟିବ, ସେହି ସୂତାକୁ ଆଣି ବ୍ରାହ୍ମଣ ଶୁଦ୍ଧିହୋଇ ଶୁଦ୍ଧ ଭୂମିରେ ହସ୍ତର ଆଙ୍ଗୁଳିମାନଙ୍କୁ ମିଶାଇ ଓ ସେମାନଙ୍କ ମୂଳ ପ୍ରଦେଶରେ ଛୟାନବେ ଥର ଗୁଡ଼ାଇବ । ତତ୍ପରେ ସେ ସୁତାକୁ ତିନିଖିଅ କରି ଜଳ ମନ୍ତ୍ର ପଢ଼ି ଜଳରେ ତିନିଥର ଧୋଇ ପଇତା ଚକିରେ ବାମ ବର୍ତ୍ତରେ ବଳିବ । ସେହି ବଳିବା ସୂତାକୁ ସାବିତ୍ରୀ ମନ୍ତ୍ର ପଢ଼ି ପୁଣି ତିନିଗୁଣ କରି ସେହି ପଇତା ଚକିରେ ଦକ୍ଷିଣାବର୍ତ୍ତରେ ବଳିବ । (ପଇତାଚକି କାଠିକି ଜଙ୍ଘ ଉପରଭାଗକୁ ବଳିଲେ ଚକି ବା ବାମାବର୍ତ୍ତରେ ବୁଲେ । ତଳଆଡ଼କୁ ବଳିରେ ସେହ ଚକି ଦକ୍ଷିଣାବର୍ତ୍ତରେ ବୁଲେ) । ଏପରି କଲେ ସମାନ ନଅଗୁଣ ହୁଏ । ସେହି ସୁତାକୁ ଆଣ୍ଠୁରେ ତିନିଥର ଗୁଡ଼ାଇ ବ୍ରହ୍ମା ବିଷ୍ଣୁ ଓ ଶିବଙ୍କୁ ନମସ୍କାର କରି (ତ୍ରିଗୁଣଂ ତଦ୍ଗ୍ରନ୍ଥିଯୁକ୍ତଂ ବେଦପ୍ରବର ସମ୍ମିତମିତି କଲ୍‌କିପୁରାଣାତ୍) ବେଦ ଓ ପ୍ରବର ଅନୁସାରେ ଗଣ୍ଠି କରିବ ଏବଂ "ଯଜ୍ଞୋପବୀତଂ ପରମଂ ପବିତ୍ରଂ" ଏହି ମନ୍ତ୍ରରେ ପଇତା ଧାରଣ କରିବ । ସୂତ୍ରଲୋମଯୁକ୍ତ ହୋଇଥିଲେ (ସାନ ସାନ ସୂତା ବାହାରିଥିଲେ) ତାକୁ ଲୋମଶୂନ୍ୟ କରିବ (ମିଶାଇଦେବ) । ଦଶଥର କିମ୍ବା ବାରଥର ସାବିତ୍ରୀ ମନ୍ତ୍ରରେ ଜଳକୁ ଅଭିମନ୍ତ୍ରଣ କରି ସେହି ଜଳକୁ ଯଜ୍ଞୋପବୀତ ଉପରେ ସିଞ୍ଚି ଶୁଦ୍ଧ କରିବ । ଛିଣ୍ଡିଗଲେ କିମ୍ବା ନାଭିତଳକୁ ଖସିପଡ଼ିଲେ ଅଥବା ଖାଇଲାପରେ ଯଜ୍ଞୋପବୀତ ନିର୍ମାଣ ହୋଇଥିଲେ । ଏରୂପ ଯଜ୍ଞୋପବୀତକୁ ତ୍ୟାଗ କରିବ । ପିଠ ଓ ନାଭି ଏହା ମଧ୍ୟରେ ପଇତା ଧାରଣ କରିବ । ସେ ଯେପରି କଟି ପର୍ଯ୍ୟନ୍ତ ଲମ୍ବ ହେବ, ତହିଁରୁ ଅଧିକ ବା ନ୍ୟୁନ ହେବ ନାହିଁ । ନାଭିତଳଭାଗରେ କିମ୍ବା ସ୍ତନର ଉପରିଭାଗରେ ପଇତା ଧାରଣ କରିବା ନିଷେଧ । ବ୍ରହ୍ମଚାରୀ ପଟେ ପଇତା ପିନ୍ଧିବ । ଗୃହୀ ଦୁଇପଟ ବା ତହିଁରୁ ଅଧିକପଟ ପଇତା ପିନ୍ଧିବ । ଉତ୍ତରୀୟ ବସ୍ତ୍ର ଅଭାବରେ ଆଉ ପଟେ ପଇତା ପିନ୍ଧାଯାଏ । ପଇତା ବାମସ୍କନ୍ଧରେ ରହିଲେ ତାହାକୁ "ଯଜ୍ଞୋପବୀତିତା" ଦକ୍ଷିଣସ୍କନ୍ଦରେ ରହିଲେ, ପ୍ରାଚୀନାବୀତିତା" ଏବଂ କଣ୍ଠରେ ମାଳାପରି ଧାରଣ କଲେ ତାହାକୁ "ନୀବିତିତା" କହନ୍ତି । ଏହି ଯଜ୍ଞୋପବୀତର ପ୍ରଥମସୂତ୍ର ଓଁ କାର, ଦ୍ୱିତୀୟ ଅଗ୍ନି, ତୃତୀୟ ତକ୍ଷକ, ଚତୁର୍ଥ ସୋମ, ପିତୃ ଦେବିତା, ଷଷ୍ଠ

ବ୍ୟାଖ୍ୟା-ମତାନ୍ତରେ ଆଚାର୍ଯ୍ୟ ଉପରୋକ୍ତ ମନ୍ତ୍ର ପଢ଼ି କୁମାରର କଟିପ୍ରଦେଶରେ ମେଖଳା ବାନ୍ଧିବେ ଅଥବା ମନ୍ତ୍ର ନ ପଢ଼ି ବାନ୍ଧିବେ ।

ତତୋ * ଯଜ୍ଞୋପବୀତଂ ପରିଧାପୟତି ମନ୍ତ୍ରେଣ ମାଣବକଂ ଆଚାର୍ଯ୍ୟଃ । ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ପ୍ରଜାପତେଯସ୍ସହଜଂ ପୁରସ୍ତାତ୍ । ଆୟୁଷ୍ୟମଗ୍ରଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ । ଇତି ମନ୍ତ୍ରଂ ପଠିତବତୋ ମାଣବକସ୍ୟ ଦକ୍ଷିଣବାହୁମୁଦ୍ଧୃତ୍ୟ ବାମକନ୍ଧେ ଯଜ୍ଞୋପବୀତଂ ନିବେଶୟତି । ଦ୍ୱିରାଚମନଂ * ।

---

ପ୍ରଜାପତି, ସପ୍ତମ ବାସୁଦେବ, ଅଷ୍ଟମ ରବି ଓ ନବମ ସମସ୍ତ ଦେବତା ଏହିପରି ନବସୂତ୍ରରେ ନବଦେବତା ପ୍ରତିଷ୍ଠିତ । ଏହି ଯଜ୍ଞସୂତ୍ରକୁ ବ୍ରହ୍ମା ଜାତ କରିଅଛନ୍ତି, ବିଷ୍ଣୁ ତିନିଗୁଣ କରିଅଛନ୍ତି, ଶିବ ଗ୍ରନ୍ଥି କରିଅଛନ୍ତି ଓ ଗାୟତ୍ରୀ ଅଭିମନ୍ତ୍ରିତ କରି ଅଛନ୍ତି । ଏ ରୂପ ଯଜ୍ଞସୂତ୍ରର ଲକ୍ଷଣକୁ ଯେ ନ ଜାଣେ ତାହାର ପଇତା ଧାରଣ କରିବା କେବଳ ବୋଝ ବୋହିବା ମାତ୍ର । ସେହି ବିପ୍ରର ବାହ୍ୟ କର୍ମସମୁ ବୃଥା ଓ ସେ ଲୋକମାନଙ୍କରେ ଅପୂଜ୍ୟ ଆଉ ନିନ୍ଦନୀୟ ହୁଏ ।

୩୧୮-(୫ଟି) ଯଜ୍ଞୋପବୀତଂସ୍କାର ବିଧି-

ପ୍ରଥମତଃ ସୂତ୍ରକରଣଂ । ଓଁ ବ୍ରହ୍ମଯଜ୍ଞାନମିତ୍ୟସ୍ୟ ଗୌତମୋ ବାମଦେବ ଋଷିଃ । ତ୍ରିଷ୍ଟୁପ୍‌ଛନ୍ଦଃ । ବ୍ରହ୍ମାଦେବତା । ସୂତ୍ରକରଣେବିନିଯୋଗଃ । ଓ ବ୍ରହ୍ମଯଜ୍ଞାନଂ ପ୍ରଥମଂ ପୁରସ୍ତାଦ୍ୱିସୀମତ ସୁରୁଚୋବେନ ଆବଃ । ସବୁଧ୍ନିୟା ଉପମା ଅସ୍ୟବିଷ୍ଠାଃ ସତଶ୍ଚ ଯୋନିମସତଶ୍ଚ ବିବଃ ସ୍ୱାହା । ଓଁ ଇଦଂ ବିଷ୍ଣୁରିତ୍ୟସ୍ୟ । ମେଧାତିଥିଋଷିଃ ଗାୟତ୍ରୀଛନ୍ଦଃ । ବିଷ୍ଣୁର୍ଦେବତା । ସୂତ୍ରକରଣଣେବିନିଯୋଗଃ । ଓଁ ଇଦଂ ବିଷ୍ଣୁର୍ବିଚକ୍ରମେ

*-ଯଜ୍ଞେନ ପ୍ରଜାପତିନା ଯଜ୍ଞାୟ ବେଦୋକ୍ତ କର୍ମାଧିକାରାୟ ବା ଉପବୀତଂ ଉପରି ସ୍କନ୍ଧଦେଶେ ବୀତଂ ପରିହିତଂ ଯଜ୍ଞୋପବୀତମିତି ଗଦାଧରଃ । (ଯଥା ବିହିତ ଯଜ୍ଞ କରି କାନ୍ଧଉପରେ ଧାରଣ କରାଯାଏ । ଏହି ନିମିତ୍ତ ଏହାର ନାମ ଯଜ୍ଞୋପବୀତ ।)

*୩୧୮ (୬ଟି) ଦ୍ୱିରାଚମନଲକ୍ଷଣ ।

ଦନ୍ତୌଷ୍ଠଶୁଦ୍ଧିଃ ପ୍ରଥମେ ଜିହ୍ୱାତାଲ୍ୱୋର୍ଦ୍ୱିତୀୟକେ ।<br>
ତୃତୀୟେ କଣ୍ଠଦେଶସ୍ୟ ନାଭିଶୁଦ୍ଧିଶ୍ଚତୁର୍ଥକେ ।<br>
ପଞ୍ଚମେ ପାଦମୂଳସ୍ୟ ଷଷ୍ଠେ ସର୍ବାଣି ଶୋଧୟେତ୍ ।<br>
ଷଡ଼ାଚମନମିତ୍ୟୁକ୍ତଂ ତଦ୍ଦ୍ୱିରାଚମନଂ ବିଦୁଃ । (ଯାଜ୍ଞବଲ୍‌କ୍ୟଃ)

ବ୍ୟାଖ୍ୟା-ପ୍ରଥମ ଆଚମନରେ ଦନ୍ତ ଓ ଓଷ୍ଠ, ଦ୍ୱିତୀୟ ଆଚମନରେ ଜିହ୍ୱା ଓ ତାଳୁ, ତୃତୀୟ ଆଚମନରେ କଣ୍ଠଦେଶ, ଚତୁର୍ଥ ଆଚମନରେ ନାଭି, ପଞ୍ଚମ ଆଚମନରେ ପାଦମୂଳ, ଷଷ୍ଠ ଆଚମନରେ ସର୍ବଶରୀର ଶୁଦ୍ଧ ହୁଏ । ଏହି ଷଡ଼ାଚମନକୁ ପଣ୍ଡିତମାନେ ଦ୍ୱିରାଚମନ କହନ୍ତି ।



ବ୍ୟାଖ୍ୟା-ମାଣବକ ଅର୍ଥାତ୍ ଉପନୟନ ନିମିତ୍ତ ଉପସ୍ଥାପିତ ବାଳକ ଉପରୋକ୍ତ ମନ୍ତ୍ର ପଢୁଥିବା ସମୟରେ ଆଚାର୍ଯ୍ୟ ବା 'ବୟୋବୃଦ୍ଧ' ବ୍ୟକ୍ତି ତାହାର ଦକ୍ଷିଣ ବାହୁତଳ ଦେଇ ବାମସ୍କନ୍ଧରେ ଯଜ୍ଞୋପବୀତ ସ୍ଥାପନ କରିବେ । ତପ୍ରରେ ମାଣବକ ଦ୍ୱିରାଚମନ କରିବ ।

---

ତ୍ରେଧା ନିଧଦେ । ପଦଂ । ସମୂଢ଼ମସ୍ୟପାଂଶୁରେ ସ୍ୱାହା । ଓଁ ତ୍ର୍ୟମ୍ବକମନ୍ତ୍ରସ୍ୟ । ବଶିଷ୍ଠଋଷି । ଅନୁଷ୍ଟୁପ୍ଛନ୍ଦଃ । ରୁଦ୍ରୋଦେବତା । ସୂତ୍ରକରଣେ ବିନିଯୋଗଃ । ଓ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ । ତତୋଽଭିମନ୍ତ୍ରଣଂ । ଓଁ ଗାୟତ୍ର୍ୟାଃ । ବିଶ୍ୱାମିତ୍ରଋଷିଃ । ଗାୟତ୍ରୀଛନ୍ଦଃ । ସବିତା ଦେବତା । ଯଜ୍ଞୋପବୀତାଭିମନ୍ତ୍ରଣେ ବିନିଯୋଗଃ । ଓଁ ତତ୍ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋୟୋନଃ ପ୍ରଚୋଦୟାତ୍ । ଓଁ ଆପୋହିଷ୍ଠେତି ଋକତ୍ରୟସ୍ୟ । ସିନ୍ଧୁଦ୍ୱୀପଋଷିଃ । ଗାୟତ୍ରୀଛନ୍ଦଃ । ଆପୋଦେବତାଃ । ଯଜ୍ଞୋପବୀତାଭିମନ୍ତ୍ରେଣ ବିନିଯୋଗଃ । ଓଁ ଆପୋହିଷ୍ଠାମୟୋ ଭୁବସ୍ତାନ ଉର୍ଜେ ଦଧାତନ । ମହେରଣାୟ ଚକ୍ଷସେ ।୧ । ଓଁ ଯୋବଃ ଶିବତମୋରସସ୍ତସ୍ୟ ଭାଜୟତେ ହନଃ ଉଶତୀରିବମାତରଃ ।୨ । ଓଁ ତସ୍ମାଅରଙ୍ଗମାମବୋୟସ୍ୟ କ୍ଷୟାୟ ଜିନ୍ୱଥ । ଅପୋଜନୟାତାବନଃ ।୩ । ଓଁ ହିରଣ୍ୟବର୍ଣ୍ଣାଃ ଶୁଚୟଃ ପାବକାୟାଃ ସୁଜାତଃ କାଶ୍ୟପୋଯସ୍ତିନ୍ଦ୍ରଃ । ଅଗ୍ନିଯାନଗର୍ଭଂ ଦଧିରେବ ରୂପାସ୍ତାନ ଆପଃ ଶଙ୍ଗ ସ୍ୟୋନା ଭବନ୍ତୁ ।୧ । ଯା ସରାଜା ବରୁଣୋ ଯାତି ମେଧ୍ୟ ସତ୍ୟାନୃତେ ଅବଶ୍ୟଂ ଜନାନାଂ । ମଧୁଶ୍ଚ୍ୟୁତଃ ଶୁଚୟୋୟଃ ପାବକାସ୍ତାନଆପଃ ଶଙ୍ଗ ସ୍ୟୋନା ଭବନ୍ତୁ ।୨ । ଯାସାଂ ଦେବାଦିବ କୃଣ୍ୱନ୍ତି ଭକ୍ଷ୍ୟଂ ଯା ଅନ୍ତରିକ୍ଷେ ବହୁଧା ଭବନ୍ତି । ଯାଃ ପୃଥିବୀଂ ପୟସୋଦକ୍ତି ଶୁକ୍ରାସ୍ତାନ ଆପଃ ଶଙ୍ଗସ୍ୟୋନା ଭବନ୍ତୁ ।୩ । ଶିବେନ ମାଚକ୍ଷୁଷା ପଶ୍ୟତାପଃ ଶିବୟା ତନ୍ୱୋପସ୍ପୃଶତତ୍ତ୍ୱଚଂ ମେ । ସବା ଅଗ୍ନିଙ୍ଗରସ୍ସୁ ସଦୋହୃବେ ବୋମୟିବଚୋବନ୍ ମୋଜୋନିଧାତ୍ ।୧ । ଓଁ ପବମାନଃ ସୁଜନଃ ପବିତ୍ରେଣ ବିଚର୍ଷଣିଃ । ଯଃ ପୋତାସ ପୁନା ତୁ ମା । ପୁନନ୍ତୁ ମା ଦେବଜନାଃ ପୁନନ୍ତୁ ମନବୋଧିୟା । ପୁନନ୍ତୁ ବିଶ୍ୱଆୟବ ଜାତବଦଃ ପବିତ୍ରବତ୍ । ପବିତ୍ରେଣ ପୁନୀହି ମା ଶୁକ୍ରେଣ ଦେବନୀଦ୍ୟାତ୍ । ଅଗ୍ନେତତ୍ର କ୍ରତୁଙ୍ଗରନୁ ।୧ । ଯତ୍ତେପବିତ୍ରମର୍ଚ୍ଚିଷ୍ୟଗ୍ନେ ବିତତମନ୍ତରା । ବ୍ରହ୍ମ ତେନ ପୁନାତୁ ମା । ଉଭାଭ୍ୟାଂ ଦେବ ସବିତଃ ପବିତ୍ରେଣ ସବେନ ଚ । ମାଂ ପୁନୀହି ବିଶ୍ୱତଃ । ବୈଶ୍ୱଦେବୀ ପୁନତୀ ଦେବ୍ୟା ଗାଦ୍ୟସ୍ୟାମି ମାବହ୍ୱ୍ୟସ୍ତନ୍ୱୋର୍ବତପୃଷ୍ଠାଃ । ତୟାମଦନ୍ତଃ ସଧମାଦେଷୁ ବୟଙ୍ଗ ସ୍ୟାମପତୟୋ ରୟୀଣାଂ ।୨ । ତେ ବୈଶ୍ୱାନରୋ ରଶ୍ମିଭିର୍ମାପୁନାତୁ ଜାତଃ ପ୍ରାରେନାକ୍ଷିରୋ ମୟୋଭୁଃ । ଦ୍ୟବା ପୃଥିବୀ ପୟସା ପୟୋଭିରତାବରୀ ଯଜ୍ଞିୟେ ମା ପୁନୀତାଂ । ବୃହଭିଃ ସର୍ବତସ୍ତୃଭିର୍ବଶିଷ୍ଟୈର୍ଦେବମନ୍ମଭିଃ । ଅଗ୍ନେର୍ଦକ୍ଷୋ ପୁନୀହି ମା । ଯେନ ଦେବା ଅପୂଜତ । ଯେନାପୋଦିବ୍ୟଂ କଶଃ । ତେନ ଦିବ୍ୟେନ ବ୍ରହ୍ମଣା ।୩ । ଇଦଂ ବ୍ରହ୍ମ ପୁନୀମହେ ଯଃ ପାବମାନୀରଧ୍ୟେତି । ଋଷିଭିଃ ସମ୍ଭୃତଙ୍ଗରସଂ ସର୍ବଙ୍ଗସ ପୂତମଶ୍ନାତିସ୍ୱଦିତଂ ମାତରିଶ୍ୱନୀ । ପାବମାନୀଯୋଽଧ୍ୟେତି । ଋଷିଭିଃ ସଂଭୃତଙ୍ଗରସଂ । ତସ୍ମୈ ସରସ୍ୱତୀ ଦୁହେଁ କ୍ଷୀରଙ୍ଗ ସର୍ପିମଧୂଦକଂ । ପାବମାନୀଃ ସ୍ୱସ୍ତ୍ୟାୟନୀଃ ।୪ । ସୁଦୁଘାହି ପୟସ୍ୱତୀ

ତତ ଐଣାଜିନୋତ୍ତରୀୟଗ୍ରହଣଂ ମନ୍ତ୍ରେଣ-ଓଁ ମିତ୍ରସ୍ୟ ଚକ୍ଷୁର୍ଦ୍ଧରୁଣଂ ବଲୀୟସ୍ତେଜୋ । ଯଶସ୍ୱୀ ସ୍ଥବିରଂ ସମିଦ୍ଧଂ । ଅନାହନସ୍ୟ ବସନଂ ଜରିଷ୍ଣୁଃପରୀଦଂ ବାଜ୍ୟଜିନଂ ଦଧେଽହଂ । ଇତି ଐଣାଜିନୋତ୍ତରୀୟ-ଗ୍ରହଣଂ । ତୁଷ୍ଣୀଂବା କେଚିତ୍ । ଦ୍ୱିରାଚମନଂ ।

(ତତ୍ପରେ ମାଣବକ ଉପରୋକ୍ତ ମନ୍ତ୍ର ପଢ଼ି ଐଣାଜିନୋତ୍ତରୀୟ ଗ୍ରହଣ କରିବ । ମତାନ୍ତରେ ମନ୍ତ୍ର ନ ପଢ଼ି ମଧ୍ୟ ଗ୍ରହଣ କରିବ । ତଦୁତ୍ତାରୁ ଦ୍ୱିରାଚମନ କରିବ ।)

ତତ ଆଚାର୍ଯ୍ୟୋମାଣବକାୟ ପାଲାଶଦଣ୍ଡ ପ୍ରୟଚ୍ଛତି । ମାଣବକଶ୍ଚ ମନ୍ତ୍ରେଣ ପ୍ରତିଗୃହ୍ଣାତି । ମନ୍ତ୍ରୋଯଥା-ଯୋମେ ଦଣ୍ଡ ପରାପତ ଦ୍ୱୈହାୟସୋଽଧିଭୂମ୍ୟାଂ । ତମହଂ ପୁନରାଦଦ ଆୟୁଷେ ବ୍ରହ୍ମଣେ ବ୍ରହ୍ମବର୍ଚ୍ଚ ସାୟ । ଦକ୍ଷିଣସ୍କନ୍ଧେ ଗୃହୀତ୍ୱା ବାମସ୍କନ୍ଧେ ସ୍ଥାପନୀୟୋଦଣ୍ଡଃ । ଦ୍ୱିରାଚମନଂ ।

---

ଋଷିଭିଃ ସଂଭୃତୋରସଃ । ବ୍ରହ୍ମଣେଷ୍ୱମୃତଙ୍ଗ ହିତଂ ପାବନୀର୍ଦ୍ଦିଶନ୍ତୁ ନଃ । ଇମଂ ଲ୍ଲୋକମଥୋ ଅମୁଂ । କାମାନ୍ ସଂବର୍ଦ୍ଧୟନ୍ତୁ ନଃ । ଦେବୈର୍ଦ୍ଦେବୈଃ ସମାହିତଃ । ପାବମାନୀଃ ସ୍ୱସ୍ତ୍ୟୟନୀଽସୁଦୁଘା ହି ଘୃତଶ୍ଚ୍ୟୁତଃ ଋଷିଭିଃ । ସଂବୃତୋରସଃ । ବ୍ରାହ୍ମଣେଷ୍ୱମୃତଙ୍ଗଂହିତଂଯେନଦେବାଃ ପବିତ୍ରେଣଂ । ଆତ୍ମାନଂ ପୁନତେ ସଦା । ତେନ ସହସ୍ରଧାରେଣ ପାବମାନ୍ୟଃ ପୁନନ୍ତୁ ମା ପ୍ରାଜାପତ୍ୟଂ ପବିତ୍ରଂ ସତୋ । ଦ୍ୟାମଙ୍ଗଂହିରଣ୍ମୟଂ । ତେନ ବ୍ରହ୍ମବିଦୋବୟଂ । ପୂତଂ ବ୍ରହ୍ମପୁନୀମହେ । ଇନ୍ଦ୍ର ସୁନୀତି ସହମା ପୁନାତୁ ।୬ । ସୋମସ୍ୱସ୍ତ୍ୟାବରୁଣଃ ସମୀଚ୍ୟା । ଯମୋରାଜା ପ୍ରମୃଣାଭିଃ ପୁନାତୁ ମା । ଜାତବେଦା ମୋର୍ଜୟନ୍ତ୍ୟା ପୁନାତୁ ।୭ । ଅନୁରୟୀଣାଂ ବ୍ରହ୍ମଣା ସ୍ୱସ୍ତ୍ୟୟନୀଃ ସୁଦୂଘା ହି ଘୃତଶ୍ଚ୍ୟୁତଃ । ଋଷିଭିଃ ସମ୍ଭୃତେ ରସଃ । ପୁନାତୁ ତ୍ରୀଣି ଚ ।୧ । ଭୂର୍ଭୂ ରଗ୍ନିଂ ପୃଥିବୀଂ ଚ ମାଂ ଚ ତ୍ରୀଂଶ୍ଚ ଲୋକାନ୍ ସମ୍ୱସ୍ୱରଂ ଚ । ପ୍ରଜାପତିସ୍ତ୍ୱାସାଦୟତୁ ତୟା । ଦେବତୟାଙ୍ଗିରସ୍ୱଦ୍ଧ୍ରୁବାସୀଦ ।୧ । ଭୁବୋବାୟଂ ଚାନ୍ତରୀକ୍ଷଂ ଚ ମାଂଚ ତ୍ରୀଣ୍ଟ ଲୋକାନ୍ ସମ୍ୱସ୍ୱରଂ ଚ । ପ୍ରଜାପତିସ୍ତ୍ୱାଦାଦୟତୁ ତୟା । ଦେବତାୟଙ୍ଗିର ସ୍ୱଦ୍ଧ୍ରୁବାସୀଦ ।୨ । ସ୍ୱରାଦିତ୍ୟଂ ଚ ଦିବଂ ଚ ମାଂ ଚ ତ୍ରୀଂଶଲୋକାନ୍ ସମ୍ୱସ୍ୱରଂ ଚ । ପ୍ରଜାପତିସ୍ତ୍ୱାସାଦୟତୁ ତୟା । ଦେବତୟାଙ୍ଗିରସ୍ୱଦ୍ଧ୍ରୁବାସୀଦ ।୩ । ଭୁର୍ଭୁବଃ ସ୍ୱଶ୍ଚନ୍ଦ୍ରମସଂ ଚ ଦିଶଶ୍ଚ ମାଂ ଚ ତ୍ରୀଂଶ୍ଚ ଲୋକାନ୍ ସମ୍ୱସ୍ୱରଂ ଚ । ପ୍ରଜାପତସ୍ତ୍ୱା ସାଦୟତୁ ତୟା । ଦେବତାୟାଙ୍ଗିରସ୍ୱଦ୍ଧ୍ରୁବାସୀଦ ।୪ । ତତୋ ନ୍ୟାସଃ । ଓଁ କାର ପ୍ରଥମତନ୍ତୁଂ ନ୍ୟାସାମି । ଅଗ୍ନିଂ ଦ୍ୱିତୀୟତନ୍ତୁଂ ନ୍ୟାସ୍ୟାମି । ନାଗାଂ ସ୍ତୃତୀୟତନ୍ତୁଂ ନ୍ୟାସାମି । ସୋମଂ ଚତୁର୍ଥତନ୍ତୁଂ ନ୍ୟାସାମି । ପିତୃନ୍ ପଞ୍ଚମତନ୍ତୁଂ ନ୍ୟାସାମି । ପ୍ରଜାପତି । ଷଷ୍ଠତନ୍ତୁଂ ନ୍ୟାସାମି । ବାୟୁଂ ସପ୍ତତନ୍ତୁଂ ନ୍ୟାସାମି । ସୂର୍ଯ୍ୟାନ୍ ଅଷ୍ଟମତନ୍ତୁଂ ନ୍ୟାସାମି । ବିଶ୍ୱେଦେବାନ୍ନବମନନ୍ତୁଂ ନ୍ୟାସାମି । ଋକ ବେଦଂ ପ୍ରଥମ ଡୋରକମ୍ ନାସ୍ୟାମି । ଯଜୁର୍ବେଦଂ ଦ୍ୱିତୀୟ ଡୋରକଂ ନାସ୍ୟାମି । ସାମବେଦଂ ତୃତୀୟଡୋରକଂ ନ୍ୟାସାମି । ତତ ଆଦିତ୍ୟଂ ଦଶୟେତ୍ । ଓଁ ଉଦ୍‌ବୟଂ ତମସସ୍ପରିସ୍ୱଃ ପଶ୍ୟନ୍ତି ଉତ୍ତରଂ ଦେବଂ ଦେବତ୍ରା ସୂର୍ଯ୍ୟ ମଗମଜ୍ଯୋତିରୁତ୍ତମାଂ ।

(ଆଚାର୍ଯ୍ୟ ମାଣବକଙ୍କୁ ପାଲାଶଦଣ୍ଡ ପ୍ରଦାନ କରିବେ । ମାଣବକ ସେହି ଦଣ୍ଡ ହସ୍ତରେ ଧରି ଉପରୋକ୍ତ ମନ୍ତ୍ର ପଢ଼ି ପ୍ରଥମେ ଦକ୍ଷିଣସ୍କନ୍ଧ ସ୍ପର୍ଶ କରି ବାମସ୍କନ୍ଧରେ ଧାରଣ କରିବ । ତତ୍ପରେ ଦ୍ୱିରାଚମନ କରିବ ।)

**ତତଃ କୁଶବଟୁଦ୍ୱୟଂ ତୁଷ୍ଣୀଂ ଗୃହ୍ଣାତି ମାଣବକଃ ।**

(ତତ୍ପରେ ମାଣବକ ମୌନଭାବରେ ଦୁଇହସ୍ତରେ ଅନାମିକାରେ କୁଶବଟୁ ଧାରଣ କରିବ ।) କୁଶବଟୁ ଧାରଣ ବିଧି ୨୦-୨୬ ନମ୍ବର ପର୍ଯ୍ୟନ୍ତ ଦେଖ ।

## ୩୧୯-ମାଣବକର ସୂର୍ଯ୍ୟଦର୍ଶନ ବିଧି

ତତଃ ଆଚାର୍ଯ୍ୟ ସ୍ୱକୀୟମଞ୍ଜଳିଂ ଜଳେନ ପୂରୟିତ୍ୱା ତେନାଞ୍ଜଳିସ୍ଥେନ ଜଳେନ ମାଣବକସ୍ୟାଞ୍ଜଳି ପୂରୟେତ୍ ଆପୋହିଷ୍ଠେତି ତିସୃଭିରଗ୍ଭିଃ । ତତ ଆଚାର୍ଯ୍ୟ ମାଣବକଂ ପ୍ରେଷୟତି ସୂର୍ଯ୍ୟମୁଦୀକ୍ଷସ୍ୱେତି । ପ୍ରେକ୍ଷଣାନନ୍ତରଂ ମାଣବକଃ ଓଁ ସୂର୍ଯ୍ୟାୟ ନମଃ" ଇତି ଇଦକଂ ପ୍ରକ୍ଷିପେତ୍ । ସୂର୍ଯ୍ୟସମ୍ମୁଖମବସ୍ଥାୟ ଆଚାର୍ଯ୍ୟସ୍ତଂ ସୂର୍ଯ୍ୟ ମୁଦୀକ୍ଷୟତି (ଅବଲୋକନଂ କାରୟତି) ପେଷିତୋ ମାଣବକସ୍ତଚ୍ଚକ୍ଷୁରିତି ମନ୍ତ୍ରେଣ ସୂର୍ଯ୍ୟମୁଦୀକ୍ଷତେ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ଅଞ୍ଜୁଳିଏ ଜଳ ଧରି ନିମ୍ନଲିଖିତ ଆପୋହିଷ୍ଠା ମନ୍ତ୍ର ତିନିକାଣ୍ଡି ପଢ଼ି ମାଣବକର ଅଞ୍ଜଳିରେ ସେହି ଜଳ ଦେଇ କହିବେ "ସୂର୍ଯ୍ୟମୁଦୀକ୍ଷସ୍ୱ" ଅର୍ଥାତ୍ ସୂର୍ଯ୍ୟ ଦର୍ଶନ କର । ଏହିପରି କହିଲା ଉତ୍ତାରୁ ମାଣବକ "ଓଁ ସୂର୍ଯ୍ୟାୟ ନମଃ" ଏହି ମନ୍ତ୍ର ପଢ଼ି "ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ସେହି ଅଞ୍ଜଳି ଜଳକୁ ତଳେ ପକାଇଦେବ । ଆଚାର୍ଯ୍ୟ ତାହାକୁ ସୂର୍ଯ୍ୟ ସମ୍ମୁଖରେ ଅବସ୍ଥାନ କରାଇ ସୂର୍ଯ୍ୟଙ୍କୁ ଦେଖାଇବେ । ମାଣବକ ନିମ୍ନଲିଖିତ "ତଚ୍ଚକ୍ଷୁ" ମନ୍ତ୍ର ପଢ଼ି ସୂର୍ଯ୍ୟଦର୍ଶନ କରିବ ।

---

ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାତ୍ ଶୁକ୍ରମୁଚ୍ଚରତ୍ । ପଶ୍ୟେମଶରଦଃଶତଂ ଜୀବମେଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ । ତତୋଭୂମିଂ ସ୍ପର୍ଶୟେତ୍ । ଓଁ ସ୍ୟୋନା ପୃଥିବୀନୋ ଭବାନୃକ୍ଷରାନିବେଶନି । ଯଚ୍ଛାନଃଶର୍ମସପ୍ରଥାଃ । ଓଁ ଦେବସ୍ୟ ତ୍ୱା ସବିତୁଃପ୍ରସବେ ଶ୍ୱିନୋ ବାହୁଭ୍ୟାଂ ପୃଷ୍ଣୋହସ୍ତାଭ୍ୟାଂ । ଇତି ହସ୍ତେ ଗୃହୀତ୍ୱା ଓଁ ପିତୃଭ୍ୟୋନମ ଇତି ତ୍ରିସ୍ତାଡ଼ୟେତ୍ । ତତ ଓଁ ଯଜ୍ଞୋପବୀତମିତ୍ୟସ୍ୟ । ପରଂ ବ୍ରହ୍ମଋଷିଃ । ତ୍ରିଷ୍ଟୁପ୍‌ଛନ୍ଦଃ । ପରମାତ୍ମା ଦେବତା । ଶ୍ରୌତସ୍ମାର୍ତ୍ତକ୍ରିୟାସିଦ୍ଧ୍ୟର୍ଥଂ ଯଜ୍ଞୋପବୀତଗ୍ରହଣେ ବିନିଯୋଗଃ । ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ବୃହସ୍ପତେଯତ୍ସହଜଂ ପୁରସ୍ତାତ୍ ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ । ଇତି ମନ୍ତ୍ରେଣ ଦକ୍ଷିଣବାହୁ ମୁତ୍ତାର୍ଯ୍ୟ ଯଜ୍ଞୋପବୀତଂ ଧୃତ୍ୱାଚାମେତ୍ । ଇତି ଗୃହ୍ୟୋକ୍ତ ଯଜ୍ଞୋପବୀତସଂସ୍କାରବିଧି ।୦ ।

ଆହୋହିଷ୍ଠାମନ୍ତ୍ରୋ ଯଥା-ଓଁ ଆପୋହିଷ୍ଠା ମୟୋ ଭୁବସ୍ତାନ ଉର୍ଜେ ଦଧାତନ । ମହେରଣାୟ ଚକ୍ଷସେ ।୧ । ଓଁ ଯାବଃ ଶିବତମୋରସସ୍ତସ୍ୟ ଭାଜୟତେ ହନ୍ଃ । ଉଷତୀରିବ ମାତରଃ ।୨ । ଓଁ ତସ୍ମାଅରଙ୍ଗମାମବୋୟସ୍ୟ କ୍ଷୟାୟ ଜିନ୍ୱଥ । ଆପୋଜନୟଥାଚନଂ ।୩ ।

ତଚ୍ଚକ୍ଷୁର୍ମନ୍ତ୍ରୋ ଯଥା-ଓଁ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ର ମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ ।

## ୩୨୦-ଆଚାର୍ଯ୍ୟକର୍ତ୍ତୃକ ମାଣବକର ହୃଦୟାଲମ୍ଭନ

ତତ ଆଚାର୍ଯ୍ୟୋମାଣବକସ୍ୟ ଦକ୍ଷିଣାଂସୋପରି ହସ୍ତଂ ଦତ୍ତ୍ୱା ହୃଦୟମାଲ ଭତେ (ସ୍ପୃଶତି) ମନ୍ତ୍ରେଣ । ତଦ୍‌ଯଥା- ଓଁ ମମ ବ୍ରତେ ତେ ହୃଦୟଂ ଦଧାମି ମମ ଚିତ୍ତ ମନୁଚିତ୍ତଂ ତେ ଅସ୍ତୁ । ମମ ବାଚ ମେକମନା ଜୁଷସ୍ୱ ବୃହସ୍ପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟଂ । ଇତି ଆଚାର୍ଯ୍ୟସ୍ୟ ମନ୍ତ୍ରପାଠଃ ।

(ତତ୍ପରେ ଆଚାର୍ଯ୍ୟ ଆପଣାର ଦକ୍ଷିଣ ହସ୍ତକୁ ମାଣବକର ଦକ୍ଷିଣସ୍କନ୍ଧବାଟେ ନେଇ ଉପରୋକ୍ତ ମନ୍ତ୍ର ପଢ଼ି ମାଣବକର ହୃଦୟକୁ ସ୍ପର୍ଶ କରିବେ ।)

## ୩୨୧-ଆଚାର୍ଯ୍ୟ ଓ ମାଣବକଙ୍କର ପ୍ରଶ୍ନୋତ୍ତର

ଆଚାର୍ଯ୍ୟୋମାଣବକସ୍ୟ *ଦକ୍ଷିଣହସ୍ତସ୍ୟାଙ୍ଗୁଷ୍ଠଂ ସ୍ୱଦକ୍ଷିଣହସ୍ତେନ ଗୃହୀତ୍ୱା "କୋନାମାସୀ" ତ୍ୟାହ ଏବଂ ପୃଷ୍ଟଃ ସନ୍ କୁମାରଃ ପ୍ରତ୍ୟାହ "ଅମୁକନାମାହଂ ଭୋଃ" ଇତି । ପୁନରାଚାର୍ଯ୍ୟଃ କୁମାରଂପୃଚ୍ଛତି "କସ୍ୟବ୍ରହ୍ମଚାର୍ଯ୍ୟସୀ"ତି । ଭବତ ଇତି କୁମାରୋ ବ୍ରୁୟାତ୍ । ତତ ଅଚାର୍ଯ୍ୟଃ "ଇନ୍ଦ୍ରସ୍ୟ ବ୍ରହ୍ମଚାର୍ଯ୍ୟସୀ" ତି । ଭବତ ଇତି କୁମାରେ ବ୍ରୁୟାତ୍ । ତତ ଆଚାର୍ଯ୍ୟ "ଇନ୍ଦ୍ରସ୍ୟ ବ୍ରହ୍ମଚାର୍ଯ୍ୟସ୍ୟାଗ୍ନିରାର୍ଯ୍ୟ ସ୍ତବାହମାଚାର୍ଯ୍ୟ ସ୍ତବ" । ଇତି ମନ୍ତ୍ରଂ ପଠେତ୍ । ଅମୁକଶର୍ମନ ଭୋ ଇତି ପିତା କୁମାରସ୍ୟ ନାମ ଗୃହଣୀୟାତ୍ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ଦକ୍ଷିଣହସ୍ତରେ ମାଣବକର ଦକ୍ଷିଣହସ୍ତ ବୁଢ଼ାଆଙ୍ଗୁଠିକି ଧରି ପଚାରିବେ "କୋନାମାସି" ଅର୍ଥାତ୍ ତୁମ୍ଭର ନାମ କ'ଣ ! ମାଣବକ କହିବେ "ଅମୁକନାମାହଂ ଭୋଃ" ଅର୍ଥାତ୍ ମୋ ନାମ ଅମୁକ । ପୁଣି ଆଚାର୍ଯ୍ୟ କୁମାରକୁ ପଚାରିବେ "କସ୍ୟ ବ୍ରହ୍ମଚାର୍ଯ୍ୟସି" ଅର୍ଥାତ୍ କାହାର ବ୍ରହ୍ମଚାରୀ । ମାଣବକ କହିବେ "ଭବତଃ" ଅର୍ଥାତ୍ ଆପଣଙ୍କର । ତତ୍ପରେ ଆଚାର୍ଯ୍ୟ "ଇନ୍ଦ୍ରସ୍ୟ" ଏହି ଉପରୋକ୍ତ ମନ୍ତ୍ରଟି ପଢ଼ିବେ । ତଦନନ୍ତର ଆଚାର୍ଯ୍ୟ ମାଣବକକୁ " ଅମୁକଶର୍ମନ୍

---

* ଦକ୍ଷିଣହସ୍ତଂ ଗୃହୀତ୍ୱା ଇତି ପାରସ୍କରଃ । ଦକ୍ଷିଣହସ୍ତଗ୍ରହଣେନ ଅଭିମୁଖୀକରଣଂ ଇତିଭାଷ୍ୟକାରୋଜୟରାମଃ ।



ଭୋଃ” ବୋଲି ସମ୍ବୋଧନ କରିବେ । ତତଃ ପିତା କୁମାରସ୍ୟ ଅଗ୍ରେ ଇମଂ ମନ୍ତ୍ରଂ ପଠତି । ତଦ୍ୟଥା-

ଅଥୈନଂ ଭୂତେଭ୍ୟଃ ପରିଦଦାତି । ପ୍ରଜାପତୟେ ତ୍ୱା ପରି ଦଦାମି ଦେବାୟ ତ୍ୱା ସବିତ୍ରେ ପରିଦଦାମ୍ୟଭ୍ୟସ୍ତ୍ୱୌଷଧୀଭ୍ୟଃ ପରିଦଦାମି ଦ୍ୟାବା ପୃଥିବୀଭ୍ୟାଃ ତ୍ୱା ପରିଦଦାମି ବିଶ୍ୱେଭ୍ୟସ୍ତ୍ୱା ଦେବେଭ୍ୟଃ ପରିଦଦାମି ସର୍ବେଭ୍ୟସ୍ତ୍ୱା ଭୂତେଭ୍ୟଃ ପରିଦଦାମ୍ୟରିଷ୍ଟ୍ୟୈ ।୦ ।

(ତତ୍ପରେ ଆଚାର୍ଯ୍ୟ କୁମାରର ଅଗ୍ରରେ ରକ୍ଷାନିମିତ୍ତ ଏହି ମନ୍ତ୍ର ପଢ଼ିବେ ।)

ତତଃ କୁମାରୋଽଗ୍ନିଂ ପ୍ରଦକ୍ଷିଣୀକୃତ୍ୟ ଅଗ୍ନେଃ ପଶ୍ଚାତ୍ ଆଚାର୍ଯ୍ୟସ୍ୟୋତ୍ତରତ ଉପବିଶତି ।

(ତତ୍ପରେ ମାଣବକ ଅଗ୍ନି ପ୍ରଦକ୍ଷିଣ କରି ଅଗ୍ନିର ପଶ୍ଚିମଦିଗରେ ଓ ଆଚାର୍ଯ୍ୟର ଉତ୍ତର ଦିଗରେ ବସିବ ।)

## ୩୨୨- ଉପନୟନର କୁଶାଣ୍ଡି

ତତଃ ଆଚାର୍ଯ୍ୟୋ ବ୍ରହ୍ମାଣଂ ବୃତ୍ୱା ଦକ୍ଷିଣତୋ ବ୍ରହ୍ମାସନମିତ୍ୟାରଭ୍ୟରୁଚବର୍ଜ୍ଜଂ ପ୍ରଣୀତାୟାଂ ପବିତ୍ରସ୍ଥାପନାନ୍ତଂକୃତ୍ୱା ଆଘାରାବାଜ୍ୟଭାଗୌ ହୁତ୍ୱା ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମ୍ମଣା ମୟା ଅମୁକଦେବଶର୍ମ୍ମଣୋ ବଟୋରୂପନୟନାଙ୍ଗହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

(ତତ୍ପରେ ଆଚାର୍ଯ୍ୟ ବ୍ରହ୍ମାଙ୍କବରଣ ଓ ଚରୁବର୍ଜିତ କୁଶାଣ୍ଡି କରି ପୁଣ୍ୟାହବାଚନ କରିବେ । ଏହାର ସମୁଦାୟ ବିଧି ୧୫୫ ନମ୍ବର ଦେଖ ।)

ତତୋଭୂରାଦିସ୍ୱି ଷ୍ଟକୃଦନ୍ତାଦଶାହୁତୀର୍ଜୁହୋତି ସ୍ରୁବେଣ । ୧ ଓଁ ଭୂଃ, ୨ ଓଁ ଭୁବଃ, ୩ ଓଁ ସ୍ୱଃ, ୪ ଓଁ ତ୍ୱନ୍ନୋଅଗ୍ନେ, ୫ ଓଁ ସତ୍ୱନ୍ନୋଅଗ୍ନେ, ୬ ଓଁ ଅୟାଶ୍ଚାଗ୍ନେ, ୭ଓଁ ଯେତେଶତଂ, ୮ଓଁ ଉଦୁତ୍ତମଂ; ୯ ଓଁ ପ୍ରଜାପତୟେ, ୧୦ ଓଁ ଅଗ୍ନୟେସ୍ୱିଷ୍ଟକୃତେ । ପ୍ରାଶନଂ । ମାର୍ଜନଂ । ବ୍ରହ୍ମଣେ ଦକ୍ଷିଣଦାନଂ । ୦ । (ସମୁଦାୟ ମନ୍ତ୍ର ୨୨୩ ନମ୍ବରରେ ଦେଖ ।)

## ୩୨୩-ମାଣବକପ୍ରତି ଆଚାର୍ଯ୍ୟଙ୍କର ଉପଦେଶ

ତତଃ ଆଚାର୍ଯ୍ୟୋ ମାଣବକଂ ଶିକ୍ଷୟତି- “ବ୍ରହ୍ମଚାର୍ଯ୍ୟସି” ଇତ୍ୟାଚାର୍ଯ୍ୟଆହ । “ଅସାନି” ଇତି ବ୍ରହ୍ମଚାରୀ ବଦତି । “ଅପଃଅଶାନ” ଇତି ଆଚାର୍ଯ୍ୟଃ । “ଅଶାନି”

ଇତି ବ୍ରହ୍ମଚାରୀ । "କର୍ମକୁରୁ" ଇତି ଆଚାର୍ଯ୍ୟ । "କରବାଣୀ" ତି ବ୍ରହ୍ମଚାରୀ । "ମାଦିବା ସୁଷୁପ୍ଥାଃ" ଇତି ଆଚାର୍ଯ୍ୟଃ । 'ନ ସ୍ୱପାନି' ଇତି ବ୍ରହ୍ମଚାରୀ । "ବାଚଂ ଯଚ୍ଛ" ଇତି ଆଚାର୍ଯ୍ୟଃ । 'ଯଚ୍ଛାନି' ଇତି ବ୍ରହ୍ମାଚାରୀ । "ସମିଧମାଧେହି" ଇତି ଆଚାର୍ଯ୍ୟ । "ଆଦଧାନି" ଇତି ବ୍ରହ୍ମଚାରୀ । ପୁନଃ "ଅପଃ ଅଶାନି" ଇତି ଆଚାର୍ଯ୍ୟଃ । "ଅଶାନି" ଇତି ବ୍ରହ୍ମଚାରୀ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ମାଣବକଙ୍କୁ ଶିକ୍ଷା ଦେବେ-ଆଚାର୍ଯ୍ୟ କହିବେ "ବ୍ରହ୍ମଚାର୍ଯ୍ୟସି" (ଅର୍ଥାତ୍ ତୁମ୍ଭେ ବ୍ରହ୍ମଚାରୀ ହୁଅ) ମାଣବକ କହିବ "ଅସାନି" (ଅର୍ଥାତ୍ ମୁଁ ହେଉଅଛି) ଆଚାର୍ଯ୍ୟ କହିବେ "ଅପଃ ଅଶାନି" (ଅର୍ଥାତ୍ ତୁମ୍ଭେ ଜଳପାନ କର) ମାଣବକ କହିବ "ଅଶାନି" (ଅର୍ଥାତ୍ ପାନ କରୁଅଛି) ଆଚାର୍ଯ୍ୟ କହିବେ "କର୍ମକୁରୁ" (ଅର୍ଥାତ୍ ତୁମ୍ଭେ ସ୍ନାନାଦି କର୍ମ କର) ମାଣବକ କହିବ "କରବାଣି" (ଅର୍ଥାତ୍ ମୁଁ କରୁଅଛି) ଆଚାର୍ଯ୍ୟ କହିବେ "ମାଦିବା ସୁଷୁପ୍ଥାଃ" (ଅର୍ଥାତ୍ ତୁମ୍ଭେ ଦିବସରେ ଶୁଅନା) ମାଣବକ କହିବ "ନ ସ୍ୱପାନି" (ଅର୍ଥାତ୍ ମୁଁ ଦିବସରେ ଶୋଇବି ନାହିଁ) ଆଚାର୍ଯ୍ୟ କହିବେ "ବାଚଂ ଯଚ୍ଛ" (ଅର୍ଥାତ୍ ବୃଥା କଥା କହିବ ନାହିଁ) ମାଣବକ କହିବ "ଯଚ୍ଛାନି" (ଅର୍ଥାତ୍ କହିବି ନାହିଁ) ଆଚାର୍ଯ୍ୟ କହିବେ "ସମିଧ ମାଧେହି" (ଅର୍ଥାତ୍ ଅଗ୍ନିରେ ସମିଧ ପକାଅ ଯେପରି ମୁଁ କହୁଅଛି) ମାଣବକ କହିବ "ଆଦଧାନି" (ଅର୍ଥାତ୍ ମୁଁ ସମିଧ ପକାଉଅଛି) ପୁଣି ଆଚାର୍ଯ୍ୟ କହିବେ ଅପଃ ଅଶାନି' (ଅର୍ଥାତ୍ ଜଳପାନ କର) ମାଣବକ କହିବ "ଅଶାନି" (ଅର୍ଥାତ୍ ପାନ କରୁଅଛି) ।

## ୩୨୪-ସାବିତ୍ରୀ ପ୍ରଦାନର୍ମାରମ୍ଭ

ଅଥାସ୍ମୈ ବ୍ରହ୍ମଚାରିଣେ ସାବିତ୍ରୀ ମନ୍ୱାହ (ଉପଦିଶତି) ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି, ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବ ଶର୍ମ୍ମଣା ମୟା ଅଦ୍ୟାସ୍ୟ ବ୍ରହ୍ମଚାରିଣଃ ସାବିତ୍ରୀପ୍ରଦାନାରମ୍ଭଃ କ୍ରିୟତେ ଯଦେତ୍ୟାଦି । (ପୁଣ୍ୟାହବାଚନବିଧି ୧୫୬ ନମ୍ବର ଦେଖ ।)

ତତୋଲଗ୍ନବିଶୁଦ୍ଧ୍ୟର୍ଥଂ ତିଳକାଞ୍ଚନଦାନଂ । ତଦ୍ୟଥା-ବ୍ରାହ୍ମଣାୟ ଆସନାଦିକଂ ଦତ୍ତ୍ୱା କୁଶଜଳାଦିକଂ ଗୃହୀତ୍ୱା ଓ ବିଷ୍ଣୁର୍ନମ । ଅଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରାୟ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନେ ଅମୁକଦେବଶର୍ମ୍ମଣେ ବ୍ରାହ୍ମଣାୟାର୍ଚ୍ଚିତାୟ-ଅମୁକସଗୋତ୍ରଂ ଶ୍ରୀମାନ ଅମୁକଦେବଶର୍ମ୍ମା ଅମୁକସଗୋତ୍ରସ୍ୟ ଅମୁକଦେବଶର୍ମଣୋ ବଟୋଃ ସାବିତ୍ରୀପ୍ରଦାନସମୟେଲଗ୍ନାଦି ଦୋଷସୂଚିତାପକ୍ଷସଂଦ୍ଧେତୁଭୁତଦୂରିତକ୍ଷୟାର୍ଥଂ



ଜ୍ୟୋତିଃଶାସ୍ତ୍ରୋକ୍ତମିଦଂ ତିଳକାଞ୍ଚନଂ ଗନ୍ଧାଦ୍ୟର୍ଚ୍ଚିତଂ ଅଗ୍ନିଦୈବତକଂ ତୁଭ୍ୟମହଂ ସଂପ୍ରଦଦେ । ଏତତ୍ତିଳକାଞ୍ଚନଦାନକର୍ମଣଃ ସୁପ୍ରତିଷ୍ଠାର୍ଥଂ ଯଥାଶକ୍ତି ଦକ୍ଷିଣାଂ ତୁଭ୍ୟମହଂ ସଂପ୍ରଦଦେ । ତତଃ ପ୍ରାର୍ଥନା-

**ହିରଣ୍ୟଗର୍ଭ ଗର୍ଭସ୍ଥଂ ହେମବୀଜଂ ବିଭାବସୋଃ ।**
**ଅନନ୍ତପୁଣ୍ୟଫଳଦମତଃ ଶାନ୍ତିଂ ପ୍ରୟଚ୍ଛ ମେ ॥**

(ପ୍ରଥମରେ ଆଚାର୍ଯ୍ୟ ପୁଣ୍ୟାହବାଚନ କରି ଓ ଲଗ୍ନାଦି ଦୋଷଶାନ୍ତି ନିମିତ୍ତ ମାଣବକକୁ ତିଳକାଞ୍ଚନ ଦାନ କରାଇବେ । ଏହାର ବିଧି ୧୯୭, ୧୯୮ ନମ୍ବର ଦେଖ ।

ଅଗ୍ନେରୁତ୍ତରତ ଆନୀତାୟ ପ୍ରତ୍ୟଙ୍ମୁଖାୟୋପବିଷ୍ଟାୟ * ପାଦୋପସଂଗ୍ରହଣ ପୂର୍ବକମୁପସନ୍ନାୟ ଆଚାର୍ଯ୍ୟଂ ସମୀକ୍ଷମାଣାୟ ସ୍ୱୟମପି ଆଚାର୍ଯ୍ୟେଣ ସମୀକ୍ଷିତାୟ ବ୍ରହ୍ମଚାରିଣେ ଆଚାର୍ଯ୍ୟଃ ପ୍ରାଙ୍ମୁଖୋଭୂତ୍ୱା * ପଚ୍ଛୋର୍ଦ୍ଧର୍ଚ୍ଚଶଃ ସର୍ବାଂ ଚ ତୃତୀୟେନ ସହନୁବର୍ତ୍ତୟନ୍ ପ୍ରଣବ୍ୟାହୃତିପୂର୍ବକଂ ଗାୟତ୍ର୍ୟାଃ ପ୍ରଥମପାଦଂ ଘୋଷୟତି ।

ବ୍ୟାଖ୍ୟା-ଆଚାର୍ଯ୍ୟ ବ୍ରହ୍ମଚାରୀକୁ ଅଗ୍ନିର ଉତ୍ତରଭାଗକୁ ଆଣି ପଶ୍ଚିମକୁ ମୁଖ କରାଇ ବସାଇବେ । ନିଜେ ମଧ୍ୟ ପୂର୍ବକୁ ମୁଖ କରିବ ବସିବେ । ଏହି ଅବସ୍ଥାରେ ବ୍ରହ୍ମଚାରୀ ଆଚାର୍ଯ୍ୟଙ୍କ ପାଦଦ୍ୱୟ ଧରି ଭକ୍ତିଭାବରେ ଆଚାର୍ଯ୍ୟଙ୍କ ମୁଖକୁ ଚାହିଁବେ ଓ ଆଚାର୍ଯ୍ୟ ମଧ୍ୟ ତାହାଙ୍କ ମୁଖକୁ ଚାହିଁ ପ୍ରଣବ ବ୍ୟାହୃତି ପୂର୍ବକ ଗାୟତ୍ରୀ ପ୍ରଥମପାଦ

---

*୩୨୪-ଅଭିବାଦନ ନିୟମ-

**ପଦ୍ମାକାରୌ କରୌ କୃତ୍ୱା ପାଦୋପଗ୍ରହଣଂ ଗୁରୋଃ ।**
**ଉତ୍ତାନାଭ୍ୟଂ ତୁ ପାଣିଭ୍ୟାମିତି ପୈଠୀନସେର୍ବଚଃ ।**

ବ୍ୟାଖ୍ୟା-ଦୁଇହାତକୁ ପଦ୍ମାକାର କରି ଉତ୍ତାନପାଣି ଅର୍ଥାତ୍ ଅଙ୍ଗୁଳିମାନଙ୍କୁ ଊର୍ଦ୍ଧ୍ୱମୁଖ କରି ଆଚାର୍ଯ୍ୟଙ୍କ ପାଦସ୍ପର୍ଶ କରିବ । ଏହା ପୈଠୀନସିଙ୍କ ମତ ।

**ବ୍ୟତ୍ୟସ୍ତପାଣିନାକାର୍ଯ୍ୟମୁପସଂଗ୍ରହଣଂ ଗୁରୋଃ ।**
**ସବ୍ୟେନ ସବ୍ୟଃ ସ୍ପ୍ରଷ୍ଟବ୍ୟେ । ଦକ୍ଷିଣେନ ତୁ ଦକ୍ଷିଣଃ । (ହରିହରଃ)**

ବ୍ୟାଖ୍ୟା-ଗୁରୁଙ୍କର ଉପସଂଗ୍ରହ (ପାଦସ୍ପର୍ଶ ପୂର୍ବକ ପ୍ରଣାମ) ବ୍ୟତ୍ୟସ୍ତ ପାଣିରେ କରିବ, ଅର୍ଥାତ୍ ବାମହସ୍ତଦ୍ୱାରା ଗୁରୁଙ୍କର ବାମପାଦ ଓ ଦକ୍ଷିଣହସ୍ତଦ୍ୱାରା ଗୁରୁଙ୍କର ଦକ୍ଷିଣପାଦ ଧରି ପ୍ରମାଣ କରିବ ।

*-ପ୍ରଥମଂ ତାବତ୍ପଚ୍ଛ-ପାଦଂ ପାଦଂ । ତତୋଽର୍ଦ୍ଧର୍ଚ୍ଚଶଃ-ଅର୍ଦ୍ଧର୍ଚ୍ଚଂ ଅର୍ଦ୍ଧର୍ଚ୍ଚଂ ତତ ସ୍ତୃତୀୟେନ ଚରଣେ ସହ ବଟୂନା ସର୍ବାଂ ଚ ସାବିତ୍ରୀଂ ଅନୁବର୍ତ୍ତୟନ-ଆବର୍ତ୍ତୟନ-ପଠେଦିତି । (ଗଦାଧରଃ)

ଶିକ୍ଷା ଦେବେ । ତତ୍ପରେ କ୍ରମେ ପ୍ରଣବ ବ୍ୟାହୃତି ପୂର୍ବକ ଦ୍ୱିତୀୟ ଓ ତୃତୀୟପାଦ ଶିକ୍ଷାଦେଇ ପୁନରପି ସେହି ଗାୟତ୍ରୀମନ୍ତ୍ରକୁ ଅର୍ଦ୍ଧେକ ଅର୍ଦ୍ଧେକ କରି ଶିକ୍ଷା ଦେବେ । ତଦୁତ୍ତାରୁ ତୃତୀୟଥର ପ୍ରଣବ ବ୍ୟାହୃତି ପୂର୍ବକ ସମସ୍ତ ଗାୟତ୍ରୀ ମନ୍ତ୍ରକୁ ବ୍ରହ୍ମଚାରୀ ସହିତ ଆଚାର୍ଯ୍ୟ ପାଠ କରିବେ ।

## ଦୀକ୍ଷାୟାଂ ଗଣେଶପୂଜା-

(ସାବିତ୍ରୀମନ୍ତ୍ର ଗ୍ରହଣ ସମୟରେ ବ୍ରହ୍ମଚାରୀ ବିଘ୍ନ ବିନାଶ ନିମିତ୍ତ ଗଣେଶଙ୍କୁ ପୂଜା କରି ନଡ଼ିଆ ଭାଙ୍ଗିବ ।) ତଦ୍ୟଥା-

"ଓଁ ଗଣେଶାୟ ନମଃ" ଇତି ମନ୍ତ୍ରେଣ ଗନ୍ଧଂ, ପୁଷ୍ପଂ, ଧୂପଂ, ଦୀପଂ, ନୈବେଦ୍ୟଂ ଦତ୍ତ୍ୱା ।

**ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୋ ।**
**ମମ ବିଘ୍ନଂ ନିହତ୍ୟାଶୁ ସର୍ବସିଦ୍ଧି ପ୍ରଦୋଭବ ।**

ଇତି ପଠିତ୍ୱା ନାରିକେଳଂ ଭଙ୍କ୍ତ୍ୱା "ଓଁ ବକ୍ରତୁଣ୍ଡାୟ ଇମଂ ନାରିକେଳବଳିଂ "ହୁଁ ଫଟ୍ ସ୍ୱାହା" ଇତି ମନ୍ତ୍ରେଣ ଗଣେଶାୟ ବଳି ଦଦ୍ୟାତ୍ ।

## ୩୨୫-ବ୍ରହ୍ମଚାରୀର ନମସ୍କାର ବିଧି

ତତୋ ବ୍ରହ୍ମଚାରୀ ଗୁରବେ ନମସ୍କୁର୍ଯ୍ୟାତ୍ । (ବ୍ରହ୍ମଚାରୀ କହିବେ) "ଅମୁକଶର୍ମା ଅହଂ ଭୋ ଅଭିବାଦୟାମି" (ଅର୍ଥାତ୍ ଅମୁକଶର୍ମା ଯେ ମୁଁ ଆପଣଙ୍କୁ ନମସ୍କାର କରୁଅଛି) (ଆଚାର୍ଯ୍ୟ କହିବେ) "ଅମୁକଶର୍ମନ୍ନାୟୁଷ୍ମାନ୍‌ଭବ ସୌମ୍ୟ" (ଅର୍ଥାତ୍ ଅମୁକଶର୍ମା ହେ ସୌମ୍ୟ ତୁମ୍ଭେ ଆୟୁଷ୍ୟବାନ୍ ହୁଅ ।) ତତଃ ଋଷ୍ୟାଦିକଂ ସ୍ମରେତ୍ । (ତତ୍ପରେ ବ୍ରହ୍ମଚାରୀ ଋଷ୍ୟାଦି ସ୍ମରଣ କରିବେ) ।

ତଦ୍ୟଥା-ଓଁ କାରସ୍ୟ, ବ୍ରହ୍ମାଋଷିଃ, ଗାୟତ୍ରୀଛନ୍ଦଃ, ଅଗ୍ନିର୍ଦ୍ଦେବତା ଉପନୟନେ ବିନିଯୋଗଃ । ଓଁ ସପ୍ତବ୍ୟାହୃତୀନାଂ, ପ୍ରଜାପତିଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍‌ବୃହତୀ ପଙ୍‌କ୍ତିତ୍ରିଷ୍ଟୁବ୍ ଜଗତ୍ୟଶ୍ଛନ୍ଦାଂସି । ଅଗ୍ନିବାୟୁ ସୂର୍ଯ୍ୟବୃହସ୍ପତି-ବରୁଣେନ୍ଦ୍ରବିଶ୍ୱେଦେବାଦେବତାଃ, ଉପନୟନେ ବିନିଯୋଗଃ । ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀଛନ୍ଦଃ, ସବିତା ଦେବତା, ଉପନୟନେ ବିନିଯୋଗଃ । ଓଁ ଶିରସଃ, ପ୍ରଜାପତିଋଷି, ଯଜୁଃ, ବ୍ରହ୍ମାଗ୍ନିବାୟୁସୂର୍ଯ୍ୟଦେବତାଃ ଉପନୟନେ ବିନିଯୋଗଃ ।

(ଋଷିଛନ୍ଦର ନିୟମ ୨୩ ନମ୍ବର ଦେଖ)



## *୩୨୬- ସାବିତ୍ରୀ ପ୍ରଦାନ ନିୟମ

ତତୋବସ୍ତ୍ରାବରଣଂ କୃତ୍ୱା ବଟୋର୍ଦକ୍ଷିଣକର୍ଣ୍ଣସମୀପେ ବ୍ରହ୍ମଚାରିଣା ସହ ଆଚାର୍ଯ୍ୟଃ ପ୍ରଥମେ ପାଦଂ ପାଦଂ । ଦ୍ୱିତୀୟେ ଅର୍ଦ୍ଧଂ ଅର୍ଦ୍ଧଂ । ତୃତୀୟେ ସର୍ବାଂ ଚ ପ୍ରଣବବ୍ୟାହୃତିପୂର୍ବିକାଂ ସାବିତ୍ରୀଂ ପଠେତ୍ ।

(ତତ୍ପରେ ଆଚାର୍ଯ୍ୟ ଓ ବ୍ରହ୍ମଚାରୀ ଉଭୟେ ବସ୍ତ୍ରଦ୍ୱାରା ଆବୃତହୋଇ ଗୋପନରେ ବ୍ରହ୍ମଚାରୀର ଦକ୍ଷିଣକର୍ଣ୍ଣରେ ଆଚାର୍ଯ୍ୟ ପ୍ରଣବ ବ୍ୟାହୃତିପୂର୍ବକ ପ୍ରଥମରେ ପାଦେ ପାଦେ ସାବିତ୍ରୀମନ୍ତ୍ର ଶିକ୍ଷା ଦେବେ । ଦ୍ୱିତୀୟରେ ପ୍ରଣବ ବ୍ୟାହୃତିପୂର୍ବକ ମନ୍ତ୍ରକୁ ଅଧେ ଅଧେ କରି ଶିକ୍ଷା ଦେବେ । ତୃତୀୟରେ ପ୍ରଣବ ବ୍ୟାହୃତି ସହିତ ସମସ୍ତ ସାବିତ୍ରୀମନ୍ତ୍ର ଶିକ୍ଷା ଦେବେ ।)

ପ୍ରଥମେ- ସାବିତ୍ର୍ୟାଃ ପ୍ରଣବବ୍ୟାହୃତିପୂର୍ବକପ୍ରଥମପାଦୋଯଥା-

ଓଁ ଭୂସ୍ତତ୍ସବିତୁର୍ବରେଣୀୟଂ । ଇତି ପ୍ରଥମପାଦଃ ।

ଦ୍ୱିତୀୟେ-ସାବିତ୍ର୍ୟାଃ ପ୍ରଣବବ୍ୟାହୃତିପୂର୍ବକଦ୍ୱିତୀୟପାଦୋ ଯଥା-

ଓଁ ଭୂବଃ ଭର୍ଗୋଦେବସ୍ୟ ଧୀମହି । ଇତି ଦ୍ୱିତୀୟପାଦଃ ।

ତୃତୀୟେ-ସାବିତ୍ର୍ୟାଃ ପ୍ରଣବବ୍ୟାହୃତିପୂର୍ବକ ତୃତୀୟୋପାଦୋ ଯଥା-

ଓଁ ସ୍ୱଃ ଧିୟୋୟୋନଃ ପ୍ରଚୋଦୟାତ୍ । ଇତି ତୃତୀୟପାଦଃ ।

---

*-ପଦଶୋଽର୍ଦ୍ଧର୍ଚ୍ଚ ଶଃ ସର୍ବାଂ ତୃତୀୟେନାନୁବର୍ତ୍ତୟନ୍ । ଇତି ନାରଦଃ ।

ପଚ୍ଛସ୍ତ୍ୱୈକୈକୟା ଦ୍ୱାଭ୍ୟାଂ ଦ୍ୱାଭ୍ୟାଂ ଚୈବ ତୃତୀୟୟା ।

ଅର୍ଦ୍ଧର୍ଚ୍ଚଶସ୍ତଥା ସର୍ବାଂ ସର୍ବାଭିର୍ବ୍ୟାହୃତିକ୍ରମ ଇତି । (ଯାଜ୍ଞବଲ୍କ୍ୟଃ)

ଅପିଚାର୍ଦ୍ଧପଦାଂ ପଚ୍ଛୋଽର୍ଦ୍ଧର୍ଚ୍ଚଶଃ । ତତଃ ସମସ୍ତାଂ ତ୍ରିରନ୍ତର୍ଜଲେ ପଠନ୍ ସର୍ବସ୍ମାତ୍ ପାପାତ୍ ପ୍ରମୁଚ୍ୟତେ ଇତି ବୌଧାୟନଃ ।

ବ୍ୟାଖ୍ୟା-ପଚ୍ଛ ଇତି ପଦଶଃ ପାଦେନ ପାଦେନ ଇତ୍ୟର୍ଥଃ ଏକୈକପାଦେନ ଗାୟତ୍ର୍ୟାଃ (ପାଦତ୍ରୟଂ ପଠେଦିତ୍ୟଭିପ୍ରାୟଃ) ତତ୍ସବିତୁର୍ବରେଣ୍ୟମିତ୍ୟେକଂ ପଦଂ । ଭର୍ଗୋ ଦେବସ୍ୟ ଧୀମହି ଇତି ଦ୍ୱିତୀୟଂ ପଦଂ । ଧିୟୋୟୋନଃ ପ୍ରଚୋଦୟାତ୍ । ଇତି ତୃତୀୟଂ ପଦଂ । ଇତି ତ୍ରିପଦେତି ପ୍ରସିଦ୍ଧୋ ଅର୍ଦ୍ଧର୍ଚ୍ଚଶ ଇତି ଅର୍ଦ୍ଧାର୍ଦ୍ଧକ୍ରମେଣ ପୂର୍ବାର୍ଦ୍ଧଭାଗଂ ପଠିତ୍ୱା ଉତ୍ତରାର୍ଦ୍ଧଂ ପଠେଦିତ୍ୟର୍ଥଃ । ତତ୍ର ଓଁ ତତ୍ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି । ଇତ୍ୟର୍ଦ୍ଧଂ ପ୍ରସିଦ୍ଧଂ । ଧିୟୋୟୋନଃ ପ୍ରଚୋଦୟାଦିତ୍ୟପରମର୍ଦ୍ଧର୍ଚ୍ଚଂ । ସମସ୍ତାଂ ସକଳାଂ ଚତୁର୍ବିଂଶତ୍ୟକ୍ଷରାତ୍ମିକାଂ ଗାୟତ୍ରୀମେକବାରେଣତ୍ରିଃପଠେଦିତ୍ୟର୍ଥଃ । ଅନେନକ୍ରମେଣ ଗାୟତ୍ରୀପାଠଃ ବାରତ୍ରୟଂ ପର୍ଯ୍ୟବସ୍ୟତି । (ବ୍ରାହ୍ମଣସର୍ବସ୍ୱେ)

ଚତୁର୍ଥେ-ସାବିତ୍ର୍ୟାଃ ପ୍ରଣବବ୍ୟାହୃତିପୂର୍ବକ ପ୍ରଥମଦ୍ୱିତୀୟପାଦୌ ଯଥା-

ଓଁ ଭୂର୍ଭୂବଃସ୍ତସ୍ୱବିତୁର୍ବରେଣୀୟ ଭର୍ଗୋଦେବସ୍ୟ ଧୀମହି ।

ଇତି ଚତୁର୍ଥପାଦଃ ।

ପଞ୍ଚମେ-ସାବିତ୍ର୍ୟା ପ୍ରଣବବ୍ୟାହୃତିପୂର୍ବକତୃତୀୟପାଦୋ ଯଥା-

ଓଁ ସ୍ୱଃ ଧିୟୋୟୋନଃ ପ୍ରଚୋଦୟାତ୍ । ଇତି ପଞ୍ଚମଃ ।

ଷଷ୍ଠେ- ପ୍ରଣବବ୍ୟାହୃତିପୂର୍ବିକାଂସର୍ବାଂ ଚ ସାବିତ୍ରୀଂ ଯଥା-

ଓଁ ଭୂର୍ଭୂବଃ ସ୍ୱସ୍ତବିତୁର୍ବରେଣୀୟଂ ଭର୍ଗୋ ଦେବସ୍ୟ ଧୀମହି

ଧିୟୋୟୋନଃ ପ୍ରଚୋଦୟାତ୍ । ଇତି ଷଷ୍ଠଃ ।

ତତୋବ୍ରହ୍ମଚାରୀ ପୂର୍ବବଦ୍‌ଗୁରବେ ନମସ୍କୁର୍ଯ୍ୟାତ୍ । ଅମୁକଦେବଶର୍ମା ଅହଂ ଭୋ ଅଭିବାଦୟାମି । (ଏହା କହି ବ୍ରହ୍ମଚାରୀ ପୂର୍ବପରି ଆଚାର୍ଯ୍ୟଙ୍କୁ ନମସ୍କାର କରିବେ) ଅମୁକଦେବଶର୍ମନ୍ନାୟୁଷ୍ମାନ ଭବ ସୌମ୍ୟ । (ଏହା କହି ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ଆଶୀର୍ବାଦ କରିବେ ।)

ତତଃ ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି-ମମ ପୁତ୍ରସ୍ୟାମୁକଦେବଶର୍ମଣୋବଟୋଃ ସାବିତ୍ରୀପ୍ରଦାନକର୍ମ ଯତ୍କୃତଂ ତସ୍ତୁକୃତମସ୍ତୁ । ଯନ୍ନ୍ୟୁନମିତ୍ୟାଦି । (ଏହାର ବିଶେଷ ବିଧି ୧୫୬ ନମ୍ବରରେ ଦେଖ ।)

## ୩୨୭-କାଷ୍ଠପଞ୍ଚକର ଆସାଦନ

ତତଃ ଅଗ୍ନିଂ ପ୍ରଦକ୍ଷିଣୀକୃତ୍ୟ ବ୍ରହ୍ମଚାରୀ ପଶ୍ଚାଦଗ୍ନେଃ ପ୍ରାଙ୍‌ମୁଖ ଉପବିଶ୍ୟ ସମିଦାଧାନମଗ୍ନୌ ।

(ତତ୍ପରେ ବ୍ରହ୍ମଚାରୀ ଅଗ୍ନିଙ୍କୁ ପ୍ରଦକ୍ଷିଣ କରି ସେ ଅଗ୍ନିର ପଶ୍ଚାତ୍‌ଭାଗରେ ପୂର୍ବାଭିମୁଖ ହୋଇ ବସି ଆସାଦନ କରିବ ।) ତଦ୍ୟଥା-

କାଷ୍ଠପଞ୍ଚକଂ, ସମିତ୍ତ୍ରୟଂ, ପୁନଃ କାଷ୍ଠପଞ୍ଚକଂ, ଉଦକଂ, ଭସ୍ମ ଚ ଇତ୍ୟାସାଦ୍ୟ । ଉଦକେନାଗ୍ନିଂ ପର୍ଯ୍ୟୁକ୍ଷ୍ୟ ପ୍ରଥମକାଷ୍ଠପଞ୍ଚକଂ ମନ୍ତ୍ରେଣ ଜୁହୁୟାତ୍ ।

ବ୍ୟାଖ୍ୟା-ପ୍ରଥମରେ ପାଞ୍ଚଖଣ୍ଡି କାଠ, ତତ୍ପରେ ତିନିଖଣ୍ଡ ସମିଧ, ପୁଣି ପାଞ୍ଚଖଣ୍ଡି କାଠ, ଜଳ ଓ ଭସ୍ମ ଏମାନଙ୍କୁ ଆସାଦନ କରି ରଖିବ । ତତ୍ପରେ ସେହି ଆସାଦିତ ଜଳ ନେଇ ଅଗ୍ନିର ଚତୁର୍ଦ୍ଦିଗରେ ବୁଲାଇ ଦେଇ ପ୍ରଥମ କାଷ୍ଠପଞ୍ଚକକୁ ଉଲ୍ଲିଖିତ ମନ୍ତ୍ର ପଢ଼ି ହୋମ କରିବ ।



## ୩୨୮-କାଷ୍ଠପଞ୍ଚକ ହୋମ

ମନ୍ତ୍ରୋଯଥା-ଓଁ ଅଗ୍ନେ ସୁଶ୍ରବଃ ସୁଶ୍ରବସମ୍ମା କୁରୁ । ଇତି ପ୍ରଥମଂ ।

(ବ୍ରହ୍ମଚାରୀ ଏହି ମନ୍ତ୍ର ପଢ଼ି ଆସାଦିତ ପ୍ରଥମ କାଷ୍ଠପଞ୍ଚକ ମଧ୍ୟରୁ ଅଗ୍ନିରେ ଖଣ୍ଡିଏ କାଠ ଦେବ) ।

ଓଁ ଯଥାତ୍ୱମଗ୍ନେ ସୁଶ୍ରବଃ ସୁଶ୍ରବା ଅସି । ଇତି ଦ୍ୱିତୀୟଂ (ଏହି ମନ୍ତ୍ର ପଢ଼ି ସେହି ପ୍ରଥମ କାଷ୍ଠପଞ୍ଚମ ମଧ୍ୟରୁ ଆଉ ଖଣ୍ଡେ କାଠ ଅଗ୍ନିରେ ଦେବ ।)

ଓଁ ଏବମାଙ୍ଗ ସୁଶ୍ରବଃ ସୌଶ୍ରବସଂ କୁରୁ । ଇତି ତୃତୀୟଂ । (ଏହି ମନ୍ତ୍ର ପଢ଼ି ସେହି ପ୍ରଥମ କାଷ୍ଠପଞ୍ଚକ ମଧ୍ୟରୁ ଆଉ ଖଣ୍ଡେ କାଠ ଅଗ୍ନିରେ ଦେବ ।)

ଓଁ ଯଥାତ୍ୱମଗ୍ନେ ଦେବାନାଂ ଯଜ୍ଞସ୍ୟ ନିଧିପୋ ତୃୟାସଂ । ଇତି ପଞ୍ଚମଂ । (ଏହି ମନ୍ତ୍ର ପଢ଼ି ସେହି ପ୍ରଥମ କାଷ୍ଠପଞ୍ଚକ ମଧ୍ୟରୁ ଆଉ ଖଣ୍ଡେ କାଠ ଅଗ୍ନିରେ ଦେବ ।)

ଓଁ ଅବମହଂ ମନୁଷ୍ୟା ଣାଂ ଦେବସ୍ୟ ନିଧିପୋ ଭୂୟାଂସ । ଇତି ପଞ୍ଚମଂ । (ଏହି ମନ୍ତ୍ର ପଢ଼ି ସେହି କାଷ୍ଠପଞ୍ଚକର ଅବଶିଷ୍ଟ କାଠ ଖଣ୍ଡିକ ଅଗ୍ନିରେ ଦେବ ।)

ତତୋ ଦକ୍ଷିଣହସ୍ତଗୃହୀତେନ ଉଦକେନ ପ୍ରଦକ୍ଷିଣମଗ୍ନିଂ ପର୍ଯ୍ୟୁକ୍ଷ୍ୟ ଉତ୍ତିଷ୍ଠନ୍ ସମିଧମାଦଧାତି ମନ୍ତ୍ରେଣ । (ତତ୍ପରେ ବ୍ରହ୍ମଚାରୀ ଆସାଦିତ ଜଳକୁ ଦକ୍ଷିଣହସ୍ତରେ ଧରି ଦକ୍ଷିଣାବର୍ତ୍ତରେ ଅଗ୍ନିର୍ ଚାରିପାଖରେ ସେଚନ କରି ଠିଆ ହୋଇ ନିମ୍ନଲିଖିତ ମନ୍ତ୍ର ପଢ଼ି ଅଗ୍ନିରେ ସମିଧ ପକାଇବ) ।

ମନ୍ତ୍ରୋଯଥା-ଅଗ୍ନୟେ ସମିଧ ମାହାର୍ଷଂ ବୃହତେ ଜାତବେଦସେ । ଯଥାତ୍ୱ ମଗ୍ନେସମିଧା ସମିଧ୍ୟସ ଏବମହାମାୟୁଷା ମେଧୟା ବର୍ଚ୍ଚସା ପ୍ରଜୟା ପଶୁଭିର୍ବ୍ରହ୍ମବର୍ଚ୍ଚସେନ ସମିଦ୍ଧେ । ଜୀବପୁତ୍ରୋ ମମାଚାର୍ଯ୍ୟୋ ମେଧାବ୍ୟହମସାନ୍ୟନିରାକରିଷ୍ଣୁର୍ଯ୍ୟଶସ୍ୱୀ ବ୍ରହ୍ମବର୍ଚ୍ଚସ୍ୟନ୍ନାଦୋ ଭୁୟାସଙ୍ଗ ସ୍ୱାହା । ଇଦମଗ୍ନୟେ । ଇତ୍ୟେକାଂ । ପୁନସ୍ତେନୈବ ଦ୍ୱିତୀୟାଂ ତୃତୀୟାଂ ଚ ।

ବ୍ୟାଖ୍ୟା-ଏହି ମନ୍ତ୍ର ପଢ଼ି ବ୍ରହ୍ମଚାରୀ ଆସାଦିତ ତିନିଖଣ୍ଡ ସମିଧ ମଧ୍ୟରୁ ଖଣ୍ଡିଏ ସମିଧ ଠିଆହୋଇ ଅଗ୍ନିରେ ଦେବ, ପୁନର୍ବାର ଉକ୍ତ ମନ୍ତ୍ର ପଢ଼ି ସେହିପରି ଦ୍ୱିତୀୟ ଓ ତୃତୀୟ ଖଣ୍ଡ ସମିଧ ପକାଇବ ।

ସୂତ୍ରକାରମତେ-ଓଁ ଏଷା ତେ ଅଗ୍ନେ ସମିଦ୍ଧୟା ବର୍ଦ୍ଧସସ୍ୱଚାପ୍ୟାୟସ୍ୱ । ବର୍ଦ୍ଧିଷୀମହି ଚ ବୟମାପ୍ୟାସିଷୀମହି । ଇତି ବା । ସମୁଚ୍ଚୟେ ବା । (କିମ୍ବା ଏହି

ଉପରୋକ୍ତ ମନ୍ତ୍ର ପଢି ଖଣ୍ଡିଏ ଖଣ୍ଡିଏ ସମିଧ ଅଗ୍ନିରେ ପକାଇବ । ଅଥବା ତିନିଖଣ୍ଡି ଯାକ ମନ୍ତ୍ର ପଢ଼ି ଏକାଠି ପକାଇବ ।)

ପୂର୍ବବତ* ପରିସମୂହନପର୍ଯ୍ୟୁକ୍ଷଣ । ତତ ଉପବିଶ୍ୟ ଅଗ୍ନିଂପର୍ଯ୍ୟୁକ୍ଷ୍ୟ ପୂର୍ବବତ୍ କାଷ୍ଠପଞ୍ଚକମଗ୍ନୌ ପ୍ରକ୍ଷିପେତ୍ । (ତତ୍ପରେ ବ୍ରହ୍ମଚାରୀ ବସିକରି ପୂର୍ବପରି ଅଗ୍ନିପର୍ଯ୍ୟୁକ୍ଷଣ ଓ ଦ୍ୱିତୀୟକାଷ୍ଠପଞ୍ଚକ ହୋମ କରିବ ।)

ତତୋଽଗ୍ନୌ ତୁଷ୍ଣୀଂ ପାଣୀ ପ୍ରତପ୍ୟ ବକ୍ଷ୍ୟମାଣୈଃ ସପ୍ତଭିମନ୍ତ୍ରୈଃ ପ୍ରତିମନ୍ତ୍ରଂ ମୁଖବିମାର୍ଜନଂ ।

ବ୍ୟାଖ୍ୟା-ତତ୍ପରେ ବ୍ରହ୍ମଚାରୀ ମୌନ ହୋଇ ଅଗ୍ନିରେ ଦୁଇହାତକୁ ତପ୍ତ କରି ନିମ୍ନଲିଖିତ ସାତଗୋଟି ମନ୍ତ୍ର ପଢ଼ି କ୍ରମେ ପ୍ରତ୍ୟେକ ମନ୍ତ୍ରରେ ମୁଖମାର୍ଜନ କରିବ (ହାତ ତପ୍ତ କରି ମୁଖରେ ବୁଲାଇବ) ।

ମନ୍ତ୍ରୋଯଥା-ଓଁ ତନୂପା ଅଗ୍ନେଽସି ତନ୍ୱଂମେ ପାହି । ୧ । ଓଁ ଆୟୁର୍ଦା ଅଗ୍ନେଽସ୍ୟାୟୁର୍ମେ ଦେହି ।୨ । ଓଁ ବର୍ଚ୍ଚୋଦା ଅଗ୍ନେଽସି ବର୍ଚ୍ଚୋମେ ଦେହି ।୩ । ଓଁ ଅଗ୍ନେଯନ୍ମେ ତନ୍ୱା ଉନନ୍ତନ୍ନ ଆପୃଣ ।୪ । ଓଁ ମେଧାଂ ମେ ଦେବଃ ସବିତା ଆଦଧାତୁ ।୫ । ମେଧାଂ ମେ ଦେବୀଂ ସରସ୍ୱତୀ ଆଦଧାତୁ ।୬ । ଓଁ ମେଧାମଶ୍ୱିନୌ ଦେବା ବାଧତ୍ତାଂ ପୁଷ୍କରସ୍ରଜୌ ।୭ ।

ତତୋମାଣବକୋବାମେ ପାଣାବୁଦକମାଦାୟ ତେନୋଦଦେନ ଦକ୍ଷିଣ ପାଣିନା "ଓଁ ଅଙ୍ଗାନି ଚମ ଆପ୍ୟାୟନ୍ତାଂ" ଇତି ଶିରଃପ୍ରଭୃତିପାଦାଙ୍ଗୁଷ୍ଠାନ୍ତଂ ସର୍ବାଙ୍ଗାଲମ୍ଭନଂ ।

(ତତ୍ପରେ ବ୍ରହ୍ମଚାରୀ ସେହି ଆସାଦିତ ଜଳକୁ ବାମହସ୍ତରେ ଧରି "ଓଁ ଅଙ୍ଗାନି ଚମ ଆପ୍ୟାୟନ୍ତଂ" ଏହି ମନ୍ତ୍ର ପଢ଼ି ଦକ୍ଷିଣହସ୍ତ ଅଙ୍ଗୁଳିରେ ସେହି ଜଳ ନେଇ ମସ୍ତକଠାରୁ ପାଦାଙ୍ଗୁଳି ପର୍ଯ୍ୟନ୍ତ ସମସ୍ତ ଅଙ୍ଗସ୍ପର୍ଶ କରିବ) । ଓଁ ବାକ୍‌ଚମ ଆପ୍ୟାୟତା" ଇତି ମୁଖେ (ଏହି ମନ୍ତ୍ର ପଢ଼ି ବାମହସ୍ତସ୍ଥିତ ଜଳ ଦକ୍ଷିଣହସ୍ତ ଅଙ୍ଗୁଳିରେ ନେଇ ମୁଖ ସ୍ପର୍ଶ କରିବ) । "ଓଁ ପ୍ରାଣଶ୍ଚମ ଆପ୍ୟାୟତାଂ" ଇତି ନାସିକୟୋଃ । (ଏହି ମନ୍ତ୍ର ପଢ଼ି ବାମହସ୍ତସ୍ଥିତ ଜଳକୁ ଦକ୍ଷିଣହସ୍ତ ଅଙ୍ଗୁଳିରେ ନେଇ ନାସିକାଦ୍ୱୟ ସ୍ପର୍ଶ କରିବ) । ଓଁ ଚକ୍ଷୁଶ୍ଚମ ଆପ୍ୟାୟତାଂ" ଇତି ଚକ୍ଷୁଷୋଃ । (ଏହି ମନ୍ତ୍ର ପଢ଼ି ବାମହସ୍ତସ୍ଥିତ ଜଳକୁ ଦକ୍ଷିଣହସ୍ତ ଅଙ୍ଗୁଳିରେ ନେଇ ଚକ୍ଷୁଦ୍ୱୟ ସ୍ପର୍ଶ କରିବ) । ଓଁ ଶ୍ରୋତ୍ରଂ ଚମ ଆପ୍ୟାୟତାଂ" ଇତି ଶ୍ରୋତୟୋଃ । (ଏହି ମନ୍ତ୍ର ପଢ଼ି ବାମହସ୍ତସ୍ଥିତ ଜଳକୁ ଦକ୍ଷିଣହସ୍ତ ଅଙ୍ଗୁଳିରେ ନେଇ କର୍ଣ୍ଣଦ୍ୱୟ ସ୍ପର୍ଶ କରିବ) । ଓଁ ଯଶୋବଳଂ

---

*-ପରିସମୂହନଂ-ଅଗ୍ନେ ସୁସ୍ରବ ଇତ୍ୟାଦିନା ସନ୍ଧୁକ୍ଷଣଂ (ସନ୍ଦୀପନଂ)



ଚମ ଆପ୍ୟାୟତାଂ” ଇତି ହସ୍ତୌ ସମ୍ପୁଟୀକୃତ୍ୟ ପଠତି । (ଦୁଇହାତ ଯୋଡ଼ି ଏହି ମନ୍ତ୍ର ପଢ଼ିବ) ।

## ୩୨୯-ଭସ୍ମ ଗ୍ରହଣ ବିଧି

*ତତସ୍ତ୍ର୍ୟାୟୁଷକରଣଂ । ତତୋବାମହସ୍ତେ ଭସ୍ମ ଆଦାୟ ଦକ୍ଷିଣହସ୍ତେନ ଲଲାଟେ ଗ୍ରୀବାୟଂ ଦକ୍ଷିଣାଂଶେ ହୃଦି ବାମବାହୁମୂଳେ ଚ ନ୍ୟସେତ୍ ।

ବ୍ୟାଖ୍ୟା-ତତ୍ପରେ ବ୍ରହ୍ମଚାରୀ ବାମହସ୍ତରେ ଭସ୍ମ ଧରି ଦକ୍ଷିଣହସ୍ତଦ୍ୱାରା ଭସ୍ମ ନେଇ ନିମ୍ନଲିଖିତ ମନ୍ତ୍ର ପଢ଼ି ଲଲାଟ, ଗ୍ରୀବା, ଦକ୍ଷିଣବାହୁମୂଳ, ହୃଦୟ ଓ ବାମବାହୁମୂଳରେ ତିଳକ କରିବ ।

ମନ୍ତ୍ରୋଯଥା- “ଓଁ କଶ୍ୟପଶ୍ୟ ତ୍ର୍ୟଶୟୁଷଂ” ଇତି ଲଲାଟେ । “ଓଁ ଯମଦଗ୍ନେସ୍ତ୍ର୍ୟାୟୁଷଂ” ଇତି କଣ୍ଠେ । “ଓଁ ଯଦ୍ଦେବାନାଂ ତ୍ର୍ୟାୟୁଷଂ” ଇତି ବାହ୍ୱୋଃ “ଓଁ ଇତି “ଓଁ ତନ୍ନେ ଅସ୍ତୁ ତ୍ର୍ୟାୟୁଷଂ ଇତି ହୃଦୟେ ।

## *୩୩୦-ଭିକ୍ଷାକରଣ

ବ୍ୟବହାରାତ୍ ପୃଷ୍ଠକୃତମାତୁଲୋବ୍ରହ୍ମଚାରୀ ନୂତନକାଂସ୍ୟପାତ୍ରୋପରି କଦଳୀପତ୍ରଖଣ୍ଡଂ ଦତ୍ତ୍ୱା ତଭିକ୍ଷାପାତ୍ରଂବାମହସ୍ତେ ଧୃତ୍ୱା ଉତ୍ତିଷ୍ଠନ ଗୋକର୍ଣ୍ଣାକୃତିବଦ୍ଧଦକ୍ଷହସ୍ତଃସନ୍ ପ୍ରଥମଂ ମାତରଂ ଭିକ୍ଷାଂଯାଚତେ “ଭବତି ଭିକ୍ଷାଂ ଦେହି” ତି ।

*୩୨୯-ଭସ୍ମଗ୍ରହଣ ବିଚାର

---

ତତ ଆୟୁଷ୍ୟମନ୍ତ୍ରେଣ ଭସ୍ମନା ତିଳକଂ ନ୍ୟସେତ୍ ।
ଲଲାଟେ ଚ ଗଳେ ବାହ୍ୱୋର୍ହୃଦୟେ ଚ କ୍ରମାଦ୍‌ବୁଧଃ ।
ତ୍ର୍ୟାୟୁଷଂ ଚାତ୍ର ଗୃହ୍ଣୀୟାନ୍ନାନ୍ୟତ୍ର ଗ୍ରହଣଂସ୍ମୃତିଃ ॥ (ପଦ୍ଧତିକାରଃ)

ଭସ୍ମନା ଲଲାଟେ ଗ୍ରୀବାୟାଂ ଦକ୍ଷିଣେଂସେ ହୃଦି ଚ ଆୟୁଷ୍ୟମିତି ପ୍ରତିମନ୍ତ୍ରଂ ତିଳକାନି କରୋତି । (ପାରସ୍କରଃ)

ଭସ୍ମନା ଅନାମିକାଗୃହୀତେନେତି ହରିହରଃ । ମଧ୍ୟମାଙ୍ଗୁଳିୟେଣେତି ଅନ୍ୟେ ।

ବ୍ୟାଖ୍ୟା-ପଦ୍ଧତିକାରଙ୍କ ମତରେ ଲଲାଟ, ଗଳଦେଶ, ଦକ୍ଷିଣବାହୁମୂଳ ଏବଂ ବାମବାହୁମୂଳ ଓ ହୃଦୟ ଏହି ୨ ସ୍ଥାନର ତିଳକ କରିବ । ଗୃହସୂତ୍ର ମତରେ ଲଲାଟ, ଗ୍ରୀବା ଦକ୍ଷିଣବାହୁମୂଳ ଓ ହୃଦୟରେ ତିଳକ କରିବ, ହରିହରଙ୍କ ମତରେ ଆସାଦିତ ଭସ୍ମକୁ ଦକ୍ଷିଣହସ୍ତ ଅନାମିକା ଅଙ୍ଗୁଳିଦ୍ୱାରା ଲଲାଟ, ଗ୍ରୀବା, ଦକ୍ଷିଣବାହୁମୂଳ ଓ ହୃଦୟରେ ତିଳକ କରିବ । ମତାନ୍ତରେ ମଧ୍ୟାମାଙ୍ଗୁଳିତ୍ରୟ (ତର୍ଜନା, ମଧ୍ୟମା ଓ ଅନାମିକା) ଦ୍ୱାରା ତିଳକ କରିବ ।

*-ଶୁକ୍ଳଯଜୁର୍ବେଦୀୟ ମାଧ୍ୟନ୍ଦିନୀ ଶାଖା ଓ ଗୃହସୂତ୍ରଭାଷ୍ୟ ପ୍ରଭୃତିରେ ଏହି ଭସ୍ମ ଗ୍ରହଣ ମନ୍ତ୍ର ଭିନ୍ନ ପ୍ରକାର ଅଛି । ଯଥା-ଓଁ ତ୍ର୍ୟାୟୁଷଞ୍ଜମଦଗ୍ନେଃ କଶ୍ୟପସ୍ୟତ୍ର୍ୟାୟୁଷଂ ଯଦ୍ଦେବେଷୁତ୍ର୍ୟାୟୁଷଂ ତନ୍ନୋ ଅସ୍ତୁ ତ୍ର୍ୟାୟୁଷଂ ।୦ ।

* ତ୍ରିସ୍ରୋଭିକ୍ଷାଦେୟାଃ । ଷଡ଼୍ଦ୍ୱାଦଶାପରିମିତାବା । ତତଃ ପିତରଂ ଯାଚତେ "ଭବନ୍ ଭିକ୍ଷାଂ ଦେହୀ" ତି ଯଥା-ସମ୍ଭବକୁଣ୍ଡଳମୁଦ୍ରିକାଦୀନ୍ ଦଦ୍ୟାତ୍ ପିତା । ତତୋଭିକ୍ଷାବସରେ ଅନ୍ୟେ ବାନ୍ଧବା । ଅନ୍ନମୁଦ୍ରିକାଦୀନ୍ ଯଥାସମ୍ଭବଂ ଦଦ୍ୟୁଃ । ତତ୍ତୋଭିକ୍ଷାପାତ୍ରଂ ଆଚାର୍ଯ୍ୟସ୍ୟାଗ୍ରତୋନିଧାୟ "ଆଚାର୍ଯ୍ୟ ଭୈକ୍ଷମିଦଂ" ଇତି ନିବେଦୟେତ୍ । "ଯଥାକାଳଂ ଭୁଙ୍କ୍ଷ୍ୱ" ଇତ୍ୟାଚାର୍ଯ୍ୟୋବଦତି । ତତସ୍ତଦ୍ଭୈକ୍ଷଂ ମାତା ବସ୍ତ୍ରେଣାଚ୍ଛାଦ୍ୟ ଦେବାଗାରେ ସ୍ଥାପୟେତ୍ ।

**ବ୍ୟାଖ୍ୟା**-ବ୍ରହ୍ମଚାରୀ ନୂତନ କାଂସ୍ୟପାତ୍ରରେ ଖଣ୍ଡିଏ କଦଳୀପତ୍ର ବିଛାଇ ସେହି ଭିକ୍ଷା ପାତ୍ରକୁ ବାମହସ୍ତରେ ଧରି ଠିଆହୋଇ ଦକ୍ଷିଣହସ୍ତକୁ ଗୋକର୍ଣ୍ଣକୃତି କରିବ ଏବଂ ବ୍ରହ୍ମଚାରୀ ସେହି ଭିକ୍ଷାପାତ୍ର ଧରିବା ସମୟରେ ତାହାର ମାମୁଁ ପଛଆଡ଼େ ଥାଇ ସେହି ଭିକ୍ଷାପାତ୍ରକୁ ଧରିଥିବେ । ଏପରି ପରମ୍ପରା ବ୍ୟବହାର ଅଛି । (ଏଥିରେ ବୋଧହୁଏ ଛୋଟ ପିଲା ବାମହସ୍ତରେ ଭିକ୍ଷାଥାଳୀର ବୋଝ ଧରି ନ ପାରିବ ଏଥିସକାଶେ ମାମୁଁର ସାହାଯ୍ୟ ଦରକାର ହୁଏ ।) +ପ୍ରଥମ "ଭବତି ଭିକ୍ଷାଂ ଦେହି" ଏହା କହି ମାତାଙ୍କୁ ଭିକ୍ଷା ମାଗିବ, ତତ୍ପରେ ନିଜ ଭଗିନୀ ନିଜ ମାଉସୀ ଏ ରୂପ ତିନିଜଣଙ୍କୁ ଭିକ୍ଷା ମାଗି ତତ୍ପରେ ଛ'ଜଣ ବା ବାରଜଣ ବା ତତୋଽଧିକ ସ୍ତ୍ରୀଙ୍କୁ ଭିକ୍ଷା ମାଗିବ । ସେମାନେ ଖାଦ୍ୟାଦି ଭିକ୍ଷା ଦେବେ । ତଦନନ୍ତର "ଭବନ୍ ଭିକ୍ଷାଂ ଦେହି" ଏହା କହି ପିତାଙ୍କୁ ଭିକ୍ଷା ମାଗିବ । ପିତା ଖାଦ୍ୟ ଓ କୁଣ୍ଡଳ ମୁଦ୍ରିକାଦି ଦେବେ ।

---

*-ତିସ୍ରଃ ସ୍ତ୍ରିୟୋ ଭିକ୍ଷାଂ ଭିକ୍ଷେତ । ତାଭିର୍ଭିକ୍ଷା ଦେୟାଃ । ଷଟ୍ ବା ସ୍ତ୍ରିୟୋ ଦ୍ୱାଦଶ ବା ପରିମିତା ବା ଅସଂଖ୍ୟାତା ବା ଭିକ୍ଷେତେତି ସର୍ବତ୍ରାନୁସଙ୍ଗଃ । (ଇତି ହରିହରଃ)

* ୩୩୦-ଜାତିଭେଦରେ ଭିକ୍ଷାଚରଣର ନିୟମ ଓ ତାହାର ଫଳ-

ଭବତ୍ପୂର୍ବଂ ଚରେଦ୍ଭୈକ୍ଷ ମୁପବୀତୀ ଦ୍ୱିଜୋତ୍ତମଃ ।
ଭବନ୍ମଧ୍ୟଂ ତୁ ରାଜନ୍ୟେ ବୈଶ୍ୟାସ୍ତୁ ଭବଦୁତ୍ତରଂ ।
ଯତିହସ୍ତେ ଜଳଂ ଦଦ୍ୟା ଭୈକ୍ଷଂ ଦଦ୍ୟାତ୍ପୁନର୍ଜଳଂ ।
ତଦନ୍ନଂ ମେରୁଣା ତୁଲ୍ୟଂ ତଜ୍ଜଳଂ ସାଗରୋପମଂ ।
ମାତରଂ ବା ସ୍ୱସାରଂ ବା ମାତୁର୍ବା ଭଗିନୀଂ ନିଜାଂ ।
ଭିକ୍ଷେତ ଭିକ୍ଷାଂ ପ୍ରଥମାଂ ଯାଂ ଚୈନାଂ ନାବମାନୟେତ୍ ।
ଅଭିର୍ଭିକ୍ଷା ଚ ଦାତବ୍ୟା କ୍ରମାତ୍ ଷଡ଼୍ଦ୍ୱାଦଶୋଦିତା ।
ସମାହୃତ୍ୟା ତୁ ତଦ୍ଭୈକ୍ଷଂ ଯାବଦନ୍ନ ମମାୟୟା ।
ନିବେଦ୍ୟଗୁରବେଽଶ୍ନୀୟାଦ୍ୟଥାକାଳଂ ତଦାଜ୍ଞୟା ।
(ସ୍ମୃତିରିୟଂ ପଦ୍ଧତୌ ଦୃଷ୍ଟ୍ୱା)

(୩୩୦ ନମ୍ବର ବ୍ୟାଖ୍ୟାରେ ଏହାର ଅର୍ଥ ଥିବାରୁ ବ୍ୟାଖ୍ୟା ଦେଲୁ ନାହିଁ)



ତତ୍ପରେ ଅପର ବାନ୍ଧବମାନେ ଖାଦ୍ୟ ଓ ମୁଦ୍ରିକାଦି ଦେବେ; କିନ୍ତୁ ଦେବାସମୟରେ ପ୍ରଥମେ ବ୍ରହ୍ମଚାରୀ ହସ୍ତରେ ଜଳ ଦେବ, ତତ୍ପରେ ଅନ୍ନ ଦେବ, ଶେଷରେ ପୁର୍ନବାର ଜଳ ଦେବ, ଏରୂପ ଯେ ଅନ୍ନ ଦିଆଯାଏ ସେ ମେରୁତୁଲ୍ୟ ଓ ଜଳ ସମୁଦ୍ରତୁଲ୍ୟ ହୁଏ । ତନନ୍ତର ବ୍ରହ୍ମଚାରୀ ସେହି ଭିକ୍ଷାପାତ୍ରକୁ ଆଚାର୍ଯ୍ୟଙ୍କ ଅଗ୍ରରେ ରଖି କହିବ କି ଆପଣ ଏହି ଭିକ୍ଷାନ୍ନ ଗ୍ରହଣ କରନ୍ତୁ । ଆଚାର୍ଯ୍ୟ କହିବେ ଏହା ଯଥା ସମୟରେ ତୁମ୍ଭେ ଭକ୍ଷଣ କରିବ । ତତ୍ପରେ ସେହି ଭିକ୍ଷାନ୍ନକୁ ମାତା ଲୁଗାରେ ଘୋଡ଼ାଇ ଦେବତା ମନ୍ଦିରରେ ନେଇ ରଖିବେ । କିନ୍ତୁ ବ୍ରାହ୍ମଣ "ଭବନ୍ ଭିକ୍ଷାଂ ଦେହି" କହି ଭିକ୍ଷା ମାଗିବେ । କ୍ଷତ୍ରିୟ "ଭିକ୍ଷାଂ ଭବନ୍ ଦେହି" କହି ଭିକ୍ଷା ମାଗିବେ । ବୈଶ୍ୟ "ଭିକ୍ଷାଂ ଦେହି ଭବନ୍" କହି ଭିକ୍ଷା ମାଗିବେ ।

## ୩୩୧-ବ୍ରହ୍ମଚାରୀକୁ ଗୁରୁଙ୍କର ଶିକ୍ଷାଦାନ

ତତୋ ବ୍ରହ୍ମଚାରିଣେ ଗୁରୁଃ ଶିକ୍ଷାଂ ଦଦାତି । ତଦ୍‌ଯଥା-( ୧ ) ଗୁରୁଶୁଶ୍ରୂଷା କର୍ତ୍ତବ୍ୟ । (୨) ଅରଣ୍ୟାତ୍ ସମିଧମାଧେହି । (୩) ସାୟଂ ପ୍ରାତର୍ଭୋଜନାର୍ଥଂ ଭୋଜନକାଳେ ଯଥୋକ୍ତଭିକ୍ଷାଚରଣଂ କର୍ତ୍ତବ୍ୟଂ । (୪) ମଧୁମାଂସାଶନଂ ନ କର୍ତ୍ତବ୍ୟଂ । * (୫) ଉଦ୍ଧୃତୋଦକେନ ସ୍ନାୟାତ୍ । (୬) ଆସନୋପରି ଆସନଂ କୃତ୍ୱା ନୋପବିଶେତ୍ । (୭) ସ୍ତ୍ରୀଣାଂ ମଧ୍ୟେ ଅବସ୍ଥାନଂ ନ କର୍ତ୍ତବ୍ୟଂ । (୮) ଅନୃତଂ ନ ବଦେତ୍ । (୯) ଅଦତ୍ତଂ ନ ଗୃହ୍‌ଣୀୟାତ୍ । ( ୧ ୦ ) ସ୍ମୃତ୍ୟନ୍ତରୋକ୍ତଯମ ନିୟମା ଅନୁଷ୍ଠେୟାଃ ।*

---

*(୫)-ମଧୁମାଂସମଜ୍ଜନୋପର୍ଯ୍ୟାସନସ୍ତ୍ରୀଗମନାନୃତାଦତ୍ତାଦାନାନିବର୍ଜୟେଦିତି ସୂତ୍ରକାରଃ ।

ମଜ୍ଜନଂ ଗଙ୍ଗାଦୌ ସ୍ନାନଂ ପ୍ରତିଷିଦ୍ଧ୍ୟତେ । ଉଦ୍ଧୃତୋଦକେନ ତୁ କାର୍ଯ୍ୟମେବ ଇତି ଭାଷ୍ୟକାରାଃ ।

*୩୩୧-ବ୍ରହ୍ମଚାରୀର ଧର୍ମ-କାର୍ଯ୍ୟାଭିକ୍ଷା ସଦା ଧାର୍ଯ୍ୟଂ କୌପୀନଂ କଟିସୂତ୍ରକଂ
ଯଜ୍ଞୋପବୀତ ମଜିନଂ ମୌଞ୍ଜିଂ ଦଣ୍ଡଂ ଚ ଧାରୟେତ୍ ॥
ନଷ୍ଟେ ଭ୍ରଷ୍ଟେ ନବଂ ମନ୍ତ୍ରାଦ୍ଧୃତ୍ୱା ଭ୍ରଷ୍ଟଂ ଜଳେକ୍ଷିପେତ୍ । ହରିହରଭାଷ୍ୟେ)

ବ୍ୟାଖ୍ୟା-ବ୍ରହ୍ମଚାରୀ ସର୍ବଦା ଭିକ୍ଷା ଆଚାରଣ କରିବ ଏବଂ କଟିସୂତ୍ର ଓ ଦଶିଥିବ କୌପୀନବସ୍ତ୍ର ପିନ୍ଧିବ । ଯଜ୍ଞୋପବୀତ, କୃଷ୍ଣଜିନୋତ୍ତରୀୟ, ମେଖଳା ଓ ଦଣ୍ଡ କିମ୍ବା ଉତ୍ତରୀୟବସ୍ତ୍ର ଧାରଣ କରିବ । ଏମାନେ ନଷ୍ଟ କିମ୍ବା ଭ୍ରଷ୍ଟ ହେଲେ ନୂଆ ତିଆରି କରି ମନ୍ତ୍ର ପଢ଼ି ଧାରଣ କରିବ ଓ ଭ୍ରଷ୍ଟକୁ ଜଳରେ ପକାଇ ଦେବ ।୦ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ତଳଲିଖିତ ମତେ ଶିକ୍ଷା ଦେବେ । ଯଥା-(୧) ପ୍ରତିଦିନ ଗୁରୁଙ୍କର ସେବା କରିବ । (୨) ଅରଣ୍ୟରୁ ସମିଧ ସଂଗ୍ରହ କରିବ । (୩) ସକାଳେ ଓ ସନ୍ଧ୍ୟାବେଳେ ଯଥା ସମୟରେ ଭୋଜନ ନିମିତ୍ତ ଭିକ୍ଷା କରିବ । (୪) ମଦ୍ୟ ଓ ମାସଂ ଭକ୍ଷଣ କରିବ ନାହିଁ । (୫) ଜଳ କାଢ଼ି ଗାଧୋଇବ ଓ ନଦୀରେ ବୁଡ଼ି ସ୍ନାନ କରିବ ନାହିଁ । (୬) ଆସନ୍ନ ଉପରେ ଆସନ ବିଛାଇ ବସିବ ନାହିଁ । (୭) ସ୍ତ୍ରୀମାନଙ୍କ ମଧ୍ୟରେ ବସିବ ନାହିଁ । (୮) ମିଥ୍ୟାକଥା କହିବ ନାହିଁ । (୯) କୌଣସି ପଦାର୍ଥ କେହି ନ ଦେଲେ ଗ୍ରହଣ କରିବ ନାହିଁ ।୧୦ । ସ୍ମୃତିଲିଖିତ ଯମ ନିୟମ ଆଚରଣ କରିବ । ୧୧ ।

କର୍ମାଙ୍ଗଦଶବ୍ରାହ୍ମଣଭୋଜନଂ । ପବିତ୍ର ପ୍ରତିପତ୍ତିଃ । (ଜଳରେ ପବିତ୍ରତ୍ୟାଗ କରିବ) ପ୍ରଣୀତା ବିମୋକଃ । (ପ୍ରଣୀତାକୁ ବିସର୍ଜନ କରିବ ।) ବ୍ରହ୍ମାଗ୍ନି ବିସର୍ଜନଂ । (୨୦୯ ନମ୍ବର ଦେଖ) । ଶାନ୍ତିକରଣଂ । (୨୦୭ ନମ୍ବର ଦେଖ) ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ମମ ପୁତ୍ରସ୍ୟାମୁକଶର୍ମ୍ମଣୋବଟୋରୁପନୟନକର୍ମ ଯକ୍ ୃତଂ ତସ୍ ୂକୃତମସ୍ତୁ । ଯନ୍ନ୍ୟୂନମିତ୍ୟାଦି । ଆଶୀର୍ବାଦାର୍ଥଂପୁଣ୍ୟାହବାଚନଂ ଯଥା-ପୁଣ୍ୟାହମିତ୍ୟାଦି-ଉପନୟନକର୍ମନିମିତ୍ତଂ ବ୍ରାହ୍ମଣୈରାଶୀର୍ବାଦାରମ୍ଭଃ କ୍ରିୟତେ ଯଦେତ୍ୟାଦି । ୧୫୬ । ନମ୍ବର ଦେଖ) ।

ଆଶୀର୍ବାଦମନ୍ତ୍ରୋଯଥା-ଓଁ ବ୍ରତେନ ଦୀକ୍ଷାମାପ୍ନୋତି ଦୀକ୍ଷୟାପ୍ନୋତି ଦକ୍ଷିଣାଂ । ଦକ୍ଷିଣା ଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟମାପ୍ୟତେ । ଇତ୍ୟାଶୀର୍ଗ୍ରହଣ୍ୟ ।

ଇତ୍ୟୁପନୟନକର୍ମ୍ମ ସମାପ୍ତଂ ।

-୦-

## ୩୩୨-ବେଦାରମ୍ଭ ବିଚାର

**ଉପନୀୟ ଗୁରୁଃ ଶିଷ୍ୟଂ ମହାବ୍ୟାହୃତିପୂର୍ବକଂ ।**
**ବେଦମଧ୍ୟାପୟେଦେନଂ ଶୌଚାଚାରାଂଶ୍ଚ ଶିକ୍ଷୟେତ୍ । (ଗଦାଧରଭାଷ୍ୟେ)**

ବ୍ୟାଖ୍ୟା-ଉପନୟନ ସଂସ୍କାର ଶେଷ ହେଲାପରେ ଗୁରୁ ଶିଷ୍ୟଙ୍କୁ ମହାବ୍ୟାହୃତି ପୂର୍ବକ ବେଦପାଠ ଆରମ୍ଭ କରାଇବେ, ଶୌଚ ଓ ଆଚାରମାନଙ୍କୁ ମଧ୍ୟ ଶିଖାଇବେ ।

---

ପର୍ଯ୍ୟୁଷିତତାମ୍ବୁଳଦନ୍ତଧାବନାବସକ୍ଥିକାଦିବାସ୍ୱାପଛତ୍ରପାଦୁକାଗନ୍ଧମାଲ୍ୟୋଦ୍ ବର୍ତ୍ତନାନୁଲେପନଜଳକ୍ରୀଡ଼ାଦ୍ୟୂତ୍ୟନୃତ୍ୟଗୀତବାଦ୍ୟାଳାପାଦୀନ୍ୟନ୍ୟାନ୍ୟପି ବର୍ଜନୀୟା ନୀତି ହରିହରଃ ।

ବ୍ୟାଖ୍ୟା-ବାସିଦ୍ରବ୍ୟ, ତାମ୍ବୁଳ, ଦନ୍ତଧାବନ, ବସ୍ତ୍ରାଦିଦ୍ୱାରା ଜାନୁ ଏବଂ ଜଂଘା ଦୃଢ଼ବନ୍ଧନ ପୂର୍ବକ ଉପବେଶନ; ଦିବ୍ୟନିଦ୍ରା, ଛତ୍ର, ଉପାନହ, ଗନ୍ଧ, ମାଲ୍ୟ ଉତ୍ପତନ (କୁଦିବା) ଲେପନ, ଜଳକ୍ରୀଡ଼ା, ପଶାଖେଳ, ନୃତ୍ୟ, ଗୀତ, ବାଦ୍ୟାଳାପ ପ୍ରଭୃତି କାର୍ଯ୍ୟ ବ୍ରହ୍ମଚାରୀ କରିବ ନାହିଁ ।



## ୩୩୩-ବେଦାରମ୍ଭର ଶୁଭଦିନ ନିର୍ଣ୍ଣୟ

ଅପ୍ରସୁପ୍ତେ ହରୌ ସସ୍ୟାନ୍ନାନଧ୍ୟାୟେ ଶୁଭେଽହନି ।
ନାସ୍ତଂ ଗତେ ଗୁରୌ ଶୁକ୍ରେ ବାଳେ ବୃଦ୍ଧେ ମଳିମ୍ଳୁଚେ ॥
ଷଷ୍ଠୀଂ ରିକ୍ତାଂ ଶନିଂ ସୋମଂ ଭୌମଂ ହିତ୍ୱୋତ୍ତରୋଡୁଷୁ ।
ମୃଗାଦିପଞ୍ଚଧିଷ୍ଣ୍ୟେଷୁ ମୂଳାଶ୍ୱିନ୍ୟୋଃ କରତ୍ରୟେ ॥
ପୂର୍ବାସୁତିସୃଷୁପେନ୍ଦ୍ରଭତ୍ରୟେ କେନ୍ଦ୍ରଗୈଃଶୁଭୈଃ । (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ହରିଶୟନ ଭିନ୍ନମାସରେ ଅଧ୍ୟୟନକାଳରେ, ଶୁଭଦିନରେ, ଗୁରୁ ଶୁକ୍ର ଏ ଦୁହେଁ ଅସ୍ତହୋଇ ନ ଥିବା ସମୟରେ, ଆଉ ମଧ୍ୟ ସେ ଦୁହିଁଙ୍କର ବାଲ୍ୟ ଓ ବୃଦ୍ଧାବସ୍ଥା ଭିନ୍ନ ଅନ୍ୟ ଅବସ୍ଥାରେ, ମଳ ମାସ ଭିନ୍ନ ଅନ୍ୟ ମାସରେ, ଷଷ୍ଠୀ, ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ ଭିନ୍ନ ଅନ୍ୟ ତିଥିରେ, ଶନି, ଚନ୍ଦ୍ର, ମଙ୍ଗଳଭିନ୍ନ ଅନ୍ୟ ବାରରେ, ଉତ୍ତରାଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ, ମୃଗଶିରା, ଆରର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମୂଳା, ଅଶ୍ୱିନୀ, ହସ୍ତା, ଚିତ୍ରା, ସ୍ୱାତୀ, ପୂର୍ବାଫାଲ୍‌ଗୁନୀ, ପୂର୍ବାଷାଢ଼ା, ପୂର୍ବଭାଦ୍ରପଦ, ଶ୍ରବଣା, ଧନିଷ୍ଠା, ଶତିଭିଷା ଏହି ନକ୍ଷତ୍ରମାନଙ୍କରେ ଏବଂ ଶୁଭଗ୍ରହ କେନ୍ଦ୍ରବର୍ତ୍ତୀ ହୋଇଥିଲେ ବେଦାରମ୍ଭ କରାଇବ ।

## ୩୩୪-ବେଦାରମ୍ଭ କର୍ମକାରିକା

ବେଦାରମ୍ଭେ ବରୁଣାଦୀନ୍ ସମର୍ଚ୍ଚ୍ୟ କର୍ମାଙ୍ଗଂ ସଂକଳ୍ପୟେଦ୍ ବେଦିକାୟାଂ ।
ନାନ୍ଦୀଶ୍ରାଦ୍ଧଂ ସ୍ଥାପନଂ ସଂସ୍କୃତାଗ୍ନେଃ କୁର୍ଯ୍ୟାଦ୍ ବ୍ରହ୍ମବରଣଂ ସଂବିଦଧ୍ୟାତ୍ ।
କୃତ୍ୱା ସର୍ବଂ ଚରୁବର୍ଜ୍ଜଂ କୁଶାଣ୍ଡିଂ ଦତ୍ତ୍ୱାଘାରାବାଗ୍ୟଭାଗୌତଥୈବ ।
ଉକ୍ତ୍ୱା ବ୍ରହ୍ମଚାରୀ ପୁଣ୍ୟାହବାଚଂ ଧୃତ୍ୱା ହସ୍ତେ ଯତ୍ନପୂର୍ବଂ ସ୍ରୁବଂ ଚ ॥
କୃତ୍ୱା ବେଦାହୁତିହୋମଂ ଘୃତେନ ହୁତ୍ୱା ବୈଭୂରାଦିକାଂ ସ୍ତାନ୍ ଦଶୈବ
ଭକ୍ତ୍ୟା କୃତ୍ୱା ପ୍ରାଶନଂ ମାର୍ଜନଂ ଚ ଶକ୍ତ୍ୟା ଦଦ୍ୟାଦ୍ ବ୍ରହ୍ମଣେ ଦକ୍ଷିଣାଂଚ
ତତଃ ପିତା ମାଣବକଂ ଚ ବେଦମଧ୍ୟାପୟେଦେବ ଯଥାବିଧାନଂ ।
ପ୍ରତୀକମିତ୍ୟାଦି ମନ୍ତ୍ରଂ ଚ ଜପ୍ତ୍ୱା ଗୁରୋଃ ପ୍ରଣାମଂ ଚ ବଟୁଷ୍ଟ କୁର୍ଯ୍ୟାତ୍ ।
ଭୋଜ୍ୟଂ ଚ ଦଦ୍ୟାଦ୍ଦଶବ୍ରାହ୍ମଣେଭ୍ୟଃ କୁର୍ଯ୍ୟାତ୍ ପବିତ୍ରପ୍ରତିପତ୍ତିକାଦୀନ୍ ।
ଭକ୍ତ୍ୟା ତଦାଶ୍ରୀର୍ଗ୍ରହଣଂ ବିଦଧ୍ୟାତ୍ କୁର୍ଯ୍ୟାତ୍ତତଃ କର୍ମ ସମାପ୍ତ ମେବଂ ॥
(ଲୋକନାଥଦାସେନ୍ କୃତା)

ବ୍ୟାଖ୍ୟା-ବେଦାରମ୍ଭ କର୍ମରେ ବ୍ରହ୍ମଚାରୀ ପ୍ରଥମେ ବେଦୀ ଉପରେ ବରୁଣପୂଜା ଓ କର୍ମାଙ୍ଗ ସଂକଳ୍ପ କରି ଆଭ୍ୟୁଦୟିକ ଶ୍ରାଦ୍ଧ କରିବ । ତତ୍ପରେ ଅଗ୍ନିସ୍ଥାପନ କରି ବସ୍ତ୍ରାଦି ଦେଇ ବ୍ରହ୍ମାଙ୍କୁ ବରଣ କରିବ ଓ ଚରୁବର୍ଜିତ କୁଶାଣ୍ଡି କରି ଆଘାରାଦି ହୋମ କରିବ । ତଦୂତ୍ତାରୁ ପୁଣ୍ୟାହବାଚନ କରି ସ୍ରୁବ ଧରି ଘୃତରେ ବେଦାହୁତି ହୋମ କରିବ ଓ ଭୂରାଦି ସ୍ୱିଷ୍ଟକୃତ୍ ପର୍ଯ୍ୟନ୍ତ ଦଶାହୁତି ଦେଇ ପ୍ରାଶନ ମାର୍ଜନ କରି ଯଥାଶକ୍ତି ଦକ୍ଷିଣା ବ୍ରହ୍ମାଙ୍କୁ ଦେବ । ତତ୍ପରେ ଆଚାର୍ଯ୍ୟ ମାଣବକକୁ ଯଥାବିଧିରେ ବେଦଶିକ୍ଷା ଆରମ୍ଭ କରାଇବେ । ତଦନନ୍ତର ବ୍ରହ୍ମଚାରୀ "ପ୍ରତୀକ" ଆଦି ମନ୍ତ୍ର ଜପ ଓ ଗୁରୁଙ୍କ ପ୍ରଣାମ କରି ଦଶଜଣ ବ୍ରାହ୍ମଣ ଭୋଜନ କରାଇ ଓ ଭକ୍ତି ସହିତ ଆଶୀର୍ବାଦ ଗ୍ରହଣ କରି ବେଦାରମ୍ଭ କର୍ମ ସମାପ୍ତ କରିବ ।

## ୩୩୫-ବେଦାରମ୍ଭ କର୍ମ

ଆଦୌବରୁଣ ପୂଜା । (୨୨୦ ନମ୍ବର ଦେଖ) । କର୍ମାଙ୍ଗସଂକଳ୍ପଃ । ତଦ୍ୟଥା- ଦେଶକାଲବାକ୍ୟାନନ୍ତରଂ ମମ ପୁତ୍ରସ୍ୟାମୁକଦେବଶର୍ମଣୋବଟୋର୍ଯଜୁ-ର୍ବେଦାରମ୍ଭକର୍ମାହଂ କରିଷ୍ୟେ । (ସଂକଳ୍ପର ବିଧି ୧୨୫-୧୨୯ ନମ୍ବର ପର୍ଯ୍ୟନ୍ତ ଦେଖ) ।

ତତୋମାତୃପୂଜାପୂର୍ବକମାଭ୍ୟୁଦୟିକଶ୍ରାଦ୍ଧଂ । ତଦ୍ୟଥା-ଦେଶକାଲୌ ସ୍ମୃତ୍ୱା ମମ ପୁତ୍ରସ୍ୟାମୁକଶର୍ମଣେବଟୋର୍ବେଦାରମ୍ଭକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍ କରଣାଶକ୍ତୌ * ତତ୍ପ୍ରତ୍ୟାମ୍ନାୟତ୍ୱେନତ୍ୟାଦି । (ଆଭ୍ୟୁଦୟିକ ଶ୍ରାଦ୍ଧ ସଂକଳ୍ପ ବିଧି (୧୩୦ ନମ୍ବର ଦେଖ) ।

ତତଃଗଣପତିପୂର୍ବକଂ ଗୌର୍ଯ୍ୟାଦିପୂଜନଂ (୧୩୧ନମ୍ବର ଦେଖ) । ବସୋର୍ଦ୍ଧାରାଂ ଦଦ୍ୟାତ୍ (୧୩୨, ୧୩୩, ୧୩୪ ନମ୍ବର ଦେଖ) ତତୋଭୋଜ୍ୟୋତ୍ସର୍ଗଃ । (୧୩୫-୧୩୮ ନମ୍ବର ପର୍ଯ୍ୟନ୍ତ ଦେଖ) ।

ତତଃ ପଞ୍ଚଭୂସଂସ୍କାରପୂର୍ବକଂ ଲୌକିକାଗ୍ନିସ୍ଥାପନଂ । * ସୂର୍ଯ୍ୟାନାମାଗ୍ନିପୂଜନଂ । (ଅଗ୍ନିସ୍ଥାପନବିଧି ୧୪୬ ନମ୍ବର ଦେଖ) ।

ତତୋବ୍ରହ୍ମା ବରଣଂ-ମମ ପୁତ୍ରସ୍ୟାମୁକଦେବଶର୍ମଣୋବଟୋର୍ବେଦାର-ମ୍ଭାଙ୍ଗହୋମକର୍ମଣି କୃତାକୃତ ବେକ୍ଷକତ୍ୱେନ ବ୍ରାହ୍ମଣ ତ୍ୱାମହଂବୃଣେ । ବୃତୋଽସ୍ମୀତ୍ୟାଦି । (ବ୍ରହ୍ମାବରଣ ବିଧି ୧୪୯ ନମ୍ବର ଦେଖ)

---

*-ଅମ୍ନାତତ୍ୱେନ ଇତି କେଚିତ୍

* ବେଦେ ଚ ସୂର୍ଯ୍ୟନାମାଗ୍ନିଃ ସମବର୍ତ୍ତେ ତଥୈବ ଚ ।



ଦକ୍ଷିଣତୋବ୍ରହ୍ମାସନମିତ୍ୟାରଭ୍ୟ ଚତୁର୍ବର୍ଜଂ ପ୍ରଣୀତାୟାଂ ପବିତ୍ରସ୍ଥାପନାନ୍ତଂକୃତ୍ୱା ଆଘାରାବାଜ୍ୟଭାଗୌ ହୁତ୍ୱା । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ମମ ପୁତ୍ରସ୍ୟାମୁକଦେବଶର୍ମଣୋବଟୋର୍ଯଜୁ ର୍ବେଦାରମ୍ଭଃ କ୍ରିୟତେ ଯଦେତ୍ୟାଦି । (କୁଶାଣ୍ଡିର ସମୁଦାୟ ବିଧି ୧୫୫ ନମ୍ବର ଦେଖ) ।

## ୩୩୬-ବେଦାହୁତି ହୋମ

ତତଃ ସ୍ଥାଲ୍ୟାଜ୍ୟେନ ଜୁହୋତି । ଯଜୁର୍ବେଦମନ୍ତ୍ରୋଯଥା-* (୧) ଓଁ ଅନ୍ତରିକ୍ଷାୟ ସ୍ୱାହା । ଇଦମନ୍ତରିକ୍ଷାୟ । (୨) ଓଁ ବାୟବେ ସ୍ୱାହା । ଇଦଂ ବାୟବେ । (୩) ଓଁ ବ୍ରହ୍ମଣେ ସ୍ୱାହା । ଇଦଂ ବ୍ରହ୍ମଣେ । (୪) ଓଁ ଛନ୍ଦୋଭ୍ୟଃ ସ୍ୱାହା । ଇଦଂ ଛନ୍ଦୋଭ୍ୟଃ । (୫) ଓଁ ପ୍ରଜାପ୍ରତେୟ ସ୍ୱାହା । ଇଦଂ ପ୍ରଜାପତୟେ । (୬) ଓଁ ଦେବେଭ୍ୟଃ ସ୍ୱାହା । ଇଦଂଦେବେଭ୍ୟଃ । (୭) ଓଁ ଋଷିଭ୍ୟଃସ୍ୱାହା । ଇଦଂଋଷିଭ୍ୟଃ । (୮) ଓଁ ଶ୍ରଦ୍ଧାୟୈ ସ୍ୱାହା । ଇଦଂ ଶ୍ରଦ୍ଧାୟୈ । (୯) ଓଁ ମେଧାୟୈ ସ୍ୱାହା । ଇଦଂ ମେଧାୟୈ ।୧୦। ଓଁ ସଦସସ୍ପତୟେ ସ୍ୱାହା । ଇଦଂ ସଦସସ୍ପତୟେ ।୧୧। ଓଁ ଅନୁମତୟେ ସ୍ୱାହା । ଇଦଂମନୁମତୟେ ।

ବ୍ୟାଖ୍ୟା-ଆଜ୍ୟସ୍ଥାଲୀର ସ୍ରୁବରେ ଘୃତ ଆଣି ବ୍ରହ୍ମଚାରୀ ଉପରୋକ୍ତ ଯଜୁର୍ବେଦୀୟ ଏଗାର ଗୋଟି ମନ୍ତ୍ର ପଢ଼ି ପ୍ରତ୍ୟେକରେ ଏକ ଏକ ଆହୁତି ଅଗ୍ନିରେ ଦେବ ।

ଯଦି ଋଗ୍‌ବେଦାରମ୍ଭସ୍ତଦା-(୧) ଓଁ ପୃଥିବ୍ୟୈ ସ୍ୱାହା । ଇଦଂ ପୃଥିବ୍ୟୈ । (୨) ଓଁ ଅଗ୍ନୟେ ସ୍ୱାହା । ଇଦଂମଗ୍ନେୟେ । ଇତ୍ୟାହୁତିଦ୍ୱୟଂ ହୁତ୍ୱା ବ୍ରହ୍ମାଦିନ ବାହୁତୟଃ ।

ବ୍ୟାଖ୍ୟା-ଋଗ୍‌ଦେବ ହୋମ ଆରମ୍ଭ କଲେ ଉପରୋକ୍ତ ଋଗ୍‌ବେଦକୁ ଦୁଇଗୋଟି ମନ୍ତ୍ର ପଢ଼ି ଦୁଇ ଆହୁତି ଦେଇ ତତ୍ପରେ ବ୍ରହ୍ମାଦି ନବାହୁତି ଦେବ । ଅର୍ଥାତ୍ ଯଜୁର୍ବେଦ ହୋମର ପ୍ରଥମ ଓ ଦ୍ୱିତୀୟ ଆହୁତିକୁ ଛାଡ଼ି "ବ୍ରହ୍ମଣେ ସ୍ୱାହା" ଏହିଠାରୁ ଆରମ୍ଭି ନଅ ଆହୁତି ଦେବ ।

---

*** ୩୩୬ (ଟି)-ବେଦାହୁତି ହୋମକାରିକା ଯଥା-**

ଅନ୍ତରିକ୍ଷଂ ଚ ବାୟୁଶ୍ଚ ଛନ୍ଦଃ ପ୍ରଜାପତିଃ
ଦେବାଶ୍ଚ ଋଷୟଃ ଶ୍ରଦ୍ଧା ମେଧା ଚ ସଦସସ୍ପତିଃ ।
ତତଶ୍ଚାନୁମତିରେତା ହୋତବ୍ୟାଶ୍ଚ ଯଜୁଃଶ୍ରୁତୌ ।

ଯଦି ସାମବେଦାରସମ୍ଭସ୍ତଦା-( ୧ ) ଓଁ ଦିବେ ସ୍ୱାହା । ଇଦଂ ଦିବେ ( ୨ ) ଓଁ ସୂର୍ଯ୍ୟାୟ ସ୍ୱାହା । ଇଦଂ ସୂର୍ଯ୍ୟାୟ । ଇତ୍ୟାହୁତିଦ୍ୱୟଂ ହୁତ୍ୱା ବ୍ରହ୍ମାଦିନବାହୁତୟଃ ।

ବ୍ୟାଖ୍ୟା-ସାମବେଦହୋମ ଆରମ୍ଭ କଲେ ଉପରୋକ୍ତ ଦୁଇଗୋଟି ସାମବେଦ ମନ୍ତ୍ର ପଢ଼ି ଦୁଇ ଆହୁତି ଦେଇ ତପ୍ରରେ ଯଜୁର୍ବେଦ ହୋମର ପ୍ରଥମ ଦ୍ୱିତୀୟ ଆହୁତିକି ଛାଡ଼ି "ଓଁ ବ୍ରହ୍ମଣେ ସ୍ୱାହା" । ଏହିଠାରୁ ଆରମ୍ଭି ନଅ ଆହୁତି ଦେବ ।

ଯଦ୍ୟାଥର୍ବବେଦାରମ୍ଭସ୍ତଦା-( ୧ ) ଓଁ ଦିଗ୍‌ଭ୍ୟଃ ସ୍ୱାହା । ଇଦଂ ଦିଗ୍‌ଭ୍ୟଃ । ( ୨ ) ଓଁ ଚନ୍ଦ୍ରମସେ ସ୍ୱାହା । ଇଦଂ ଚନ୍ଦ୍ରମସେ । ଇତ୍ୟାହୁତିଦ୍ୱୟଂ ହୁତ୍ୱା ବ୍ରହ୍ମାଦିନବାହୁତୟଃ ।

ବ୍ୟାଖ୍ୟା-ଅଥର୍ବବେଦ ହୋମ ଆରମ୍ଭ କଲେ ଉପରୋକ୍ତ ଦୁଇଗୋଟି ମନ୍ତ୍ର ପଢ଼ି ଦୁଇ ଆହୁତି ଦେଇ ତପ୍ରରେ ଯଜୁର୍ବେଦ ହୋମରେ ଥିବା "ଓଁ ବ୍ରହ୍ମଣେ ସ୍ୱାହା" ଏହିଠାରୁ ଆରମ୍ଭି ନଅଗୋଟି ଆହୁତି ଦେବ ।

ଯଦ୍ୟେକଦା ସର୍ବବେଦାରମ୍ଭସ୍ତଦା-ଆଜ୍ୟଭାଗାନନ୍ତରଂ ପ୍ରତିବେଦଂ ସ୍ୱ ସ୍ୱ ବେଦାହୁତିଦ୍ୱୟଂ ହୁତ୍ୱା "ବ୍ରହ୍ମଣେ" "ଛନ୍ଦୋଭ୍ୟଃ" ଇତ୍ୟାହୁତିଦ୍ୱୟଂ ପ୍ରତିବେଦଂ ହୁତ୍ୱା ତଦନ୍ତେ ପ୍ରଜାପତ୍ୟାଦ୍ୟାଃ ସପ୍ତାହୁତୟଃ ।

ବ୍ୟାଖ୍ୟା-ଯେବେ ଏକ ସମୟରେ ସମସ୍ତ ବେଦାହୁତିହୋମ ଆରମ୍ଭ କରିବ ତେବେ ପ୍ରତ୍ୟେକ ବେଦର ଦୁଇ ଦୁଇ ଆହୁତି ଓ ତାହା ସଙ୍ଗେ ସଙ୍ଗେ "ବ୍ରହ୍ମଣେ" "ଛନ୍ଦୋଭ୍ୟଃ" ଏ ଦୁଇ ଆହୁତି ଦେଇ ତଦନ୍ତେ ପ୍ରଜାପତ୍ୟାଦି ସପ୍ତ ଆହୁତି ଦେବ ।

ଯଥା-ଓଁ ଅନ୍ତରିକ୍ଷାୟ ସ୍ୱାହା । ଇଦମନ୍ତରିକ୍ଷାୟ । ଓଁ ବାୟବେ ସ୍ୱାହା । ଇଦଂ ବାୟବେ । ଓଁ ବ୍ରହ୍ମଣେ ସ୍ୱାହା । ଇଦଂ ବ୍ରହ୍ମଣେ । ଓଁ ଛନ୍ଦୋଭ୍ୟଃ ସ୍ୱାହା । ଇଦଂ ଛନ୍ଦୋଭ୍ୟଃ । ଓଁ ପୃଥିବ୍ୟୈ ସ୍ୱାହା । ଇଦଂ ପୃଥିବ୍ୟୈ । ଓଁ ଅଗ୍ନୟେ ସ୍ୱାହା । ଇଦଂଅଗ୍ନୟେ । ଓଁ ବ୍ରହ୍ମଣେ ସ୍ୱାହା । ଇଦଂ ବ୍ରହ୍ମଣେ । ଓଁ ଛନ୍ଦୋଭ୍ୟଃ ସ୍ୱାହା । ଇଦଂ ଛନ୍ଦୋଭ୍ୟଃ । ଓଁ ଦିବୋ ସ୍ୱାହା । ଇଦଂ ଦିବେ । ଓଁ ସୂର୍ଯ୍ୟାୟ ସ୍ୱାହା । ଇଦଂ ସୂର୍ଯ୍ୟାୟ । ଓଁ ବ୍ରହ୍ମଣେ ସ୍ୱାହା । ଇଦଂ ବ୍ରହ୍ମଣେ । ଓଁ ଛନ୍ଦୋଭ୍ୟଃ ସ୍ୱାହା । ଇଦଂ ଛନ୍ଦୋଭ୍ୟଃ । ଓଁ ଦିଗ୍‌ଭ୍ୟଃ ସ୍ୱାହା । ଇଦଂ ଦିଗ୍‌ଭ୍ୟଃ । ଓଁ ଚନ୍ଦ୍ରମସେ ସ୍ୱାହା । ଇଦଂ ଚନ୍ଦ୍ରମସେ । ଓଁ ବ୍ରହ୍ମଣେ ସ୍ୱାହା । ଇଦଂ ବ୍ରହ୍ମଣେ । ଓ ଛନ୍ଦୋଭ୍ୟଃ ସ୍ୱାହା । ଇଦଂ ଛନ୍ଦୋଭ୍ୟଃ । ଓଁ



ପ୍ରଜାପତୟେ ସ୍ୱାହା । ଇଦଂ ପ୍ରଜାପତୟେ । ଓଁ ଦେବେଭ୍ୟଃ ସ୍ୱାହା । ଇଦଂ ଦେବେଭ୍ୟଃ । ଓଁ ଋଷିଭ୍ୟଃ ସ୍ୱାହା । ଇଦଂ ଋଷିଭ୍ୟଃ । ଓଁ ଶ୍ରଦ୍ଧାୟୈ ସ୍ୱାହା । ଇଦଂ ଶ୍ରଦ୍ଧାୟୈ । ଓଁ ମେଧାୟୈ ସ୍ୱାହା । ଇଦଂ ମେଧାୟୈ । ଓ ସଦସସ୍ପତୟେ ସ୍ୱାହା । ଇଦଂ ସଦସସ୍ପତୟେ । ଓ ଅନୁମତୟେ ସ୍ୱାହା ଇଦଂମନୁମତୟେ ।

ତତୋଭୂରାଦିସ୍ୱି ଷ୍ଟକୃଦନ୍ତାଦଶାହୁତୟଃ । ତତ୍ପରେ ଭୂଃ ସ୍ୱାହା ଏହିଠାରୁ ଆରମ୍ଭି ଅଗ୍ନୟେ ସ୍ୱିଷ୍ଟି କୃତେ ସ୍ୱାହା ଏହି ପର୍ଯ୍ୟନ୍ତ ଦଶଗୋଟି ଆହୁତି ଦେବ । ତଦ୍ୟଥା- (୧) ଓଁ ଭୂଃ, (୨) ଓଁ ଭୁବଃ, (୩) ଓଁ ସ୍ୱଃ, (୪) ଓଁ ତ୍ୱନ୍ନୋ ଅଗ୍ନେ, (୫) ଓଁ ସତ୍ୱନ୍ନୋ ଅଗ୍ନେ, (୬) ଓଁ ଅୟାଶ୍ଚାଗ୍ନେ, (୭) ଓଁ ଯେତେଶତଂ, (୮) ଓଁ ଉଦୁତ୍ତମଂ, (୯) ଓଁ ପ୍ରଜାପତୟେ, (୧୦) ଓଁ ଅଗ୍ନୟେ ସ୍ୱିଷ୍ଟି କୃତେ ସ୍ୱାହା । ଇଦମଗ୍ନୟେ ସ୍ୱିଷ୍ଟକୃତେ । (ଭୂରାଦିହୋମ ୧୯୫ ନମ୍ବରରେ ଦେଖ) ପ୍ରାଶନଂ । ମାର୍ଜନଂ । ବ୍ରହ୍ମଣେ ଦକ୍ଷିଣାଦାନଂ ।

## ୩୩୭-ବେଦାରମ୍ଭ

ତତଃ ପିତା ବ୍ରହ୍ମଚାରିଣଂ*ବେଦମଧ୍ୟାପୟତି ।

ଅଭିପ୍ରେତାର୍ଥସିଦ୍ଧ୍ୟର୍ଥମିତ୍ୟାଦି ପଠିତ୍ୱା ନାରିକେଳଫଳଂ ଭୁଙ୍କ୍ତ୍ୱା ତେନୋଦକେନ ଶିରସ୍ୟଭିଷିଞ୍ଚତି ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ବେଦଶିକ୍ଷା ଆରମ୍ଭ କରାଇବା ସମୟରେ ବିନାୟକ, ଇଷ୍ଟଦେବ, ସରସ୍ୱତୀ ଓ ଯାଜ୍ଞବଲ୍କ୍ୟମୁନି ଏମାନଙ୍କୁ ନମସ୍କାର କରି "ଅଭିପ୍ରେତାର୍ଥସିଦ୍ଧ୍ୟର୍ଥଂ" ଇତ୍ୟାଦି ମନ୍ତ୍ର ପଢ଼ି ନଡ଼ିଆ ଭାଙ୍ଗି ସେହି ଜଳ ବ୍ରହ୍ମଚାରୀ ମସ୍ତକରେ ସେଚନ କରିବେ ।

## ୩୩୮-ବ୍ରହ୍ମଚାରୀର ଅଭିବାଦନ ବିଧି

ତତଃ ସାବିତ୍ରୀ ପ୍ରଦାନବଦ୍ ବ୍ରହ୍ମଚାରୀ ଉପବିଶତି । *ବ୍ୟତ୍ୟସ୍ତପାଣିନା ଗୁରୋଃପାଦୋପସଂଗ୍ରହଣଂ କୃତ୍ୱା 'ଅମୁକଶର୍ମ୍ମା ଅହଂ ଭୋ ଅଭିବାଦୟାମି" । ଇତି ।

---

* ତଥାଚ ସ୍ମୃତିଃ- ବିନାୟକଂ ସମଭ୍ୟର୍ଚ୍ଚ୍ୟ ସ୍ୱେଷ୍ଟଦେବଂ ସରସ୍ୱତୀ ।
ଯାଜ୍ଞବଲ୍କ୍ୟମୁନିଂ ନତ୍ୱା ବେଦମଧ୍ୟାପୟେଚ୍ଛିଶୁଂ ॥

**୩୩୮-ବ୍ରହ୍ମଚାରୀର ବେଦ ପଠନ ନିୟମ-**

ହସ୍ତୌ ତୁ ସଂବୃତୌ (ଆଚ୍ଛାଦିତୌ) ଧାର୍ଯ୍ୟୌ ଜାନୁଭ୍ୟାମୁପରି ସ୍ଥିତୌ । ଗୁରୋରନୁମତିଂ ନୀତ୍ୱା ପାଠଂ ପାଠମତିଃପଠେତ୍ ।

ବଟୁଃ "ଅମୁକଶର୍ମନ୍ନାୟୁଷ୍ମାନ୍‌ଭବ ସୌମ୍ୟ" ଇତ୍ୟାଚାର୍ଯ୍ୟ । "ଅଧୀକ୍ଷ୍ୟେ ଭଗବନ୍ନହଂ "ଇତି ବଟୁଃ" । "ଅଧୀଷ୍ୱ ଭୋଃ" ଇତି ଗୁରୁବଚନଂ । ତତଃ ଆଚାର୍ଯ୍ୟାବେଦମଧ୍ୟାପୟତି । ପଦାଧିରିକଣ୍ଡିକାକ୍ରମେଣ ଇଷେତ୍ୱାଦି ଋକ୍‌ତ୍ରୟଂ ପଞ୍ଚ ବା ସପ୍ତ ବା ଅଧୀତେ ବ୍ରହ୍ମାଞ୍ଜଳିର୍ଭୁତ୍ୱା ବ୍ରହ୍ମଚାରୀ । ତତଃ ପ୍ରଣବବ୍ୟାହୃତିପୂର୍ବିକାଂ ଗାୟତ୍ରୀମୁଚ୍ଚାର୍ଯ୍ୟ ସ୍ୱାଧ୍ୟାୟମଧୀତେ । ଇଷେତ୍ୱା ଇତ୍ୟାଦି ଅନ୍ତେ ପ୍ଲୁତପ୍ରଣବୋଚ୍ଚାରଣଂ ।

ବ୍ୟାଖ୍ୟା-ସାବିତ୍ରୀ ପ୍ରଦାନକାଳରେ ବ୍ରହ୍ମଚାରୀ ଯେପରି ବସିଥିଲା ବେଦାରମ୍ଭ କାଳରେ ସେହିପରି ବସି ଦୁଇହସ୍ତକୁ ଛନ୍ଦି ଦକ୍ଷିଣହସ୍ତଦ୍ୱାରା ଗୁରୁଙ୍କର ଦକ୍ଷିଣପାଦ ଓ ବାମହସ୍ତଦ୍ୱାରା ଗୁରୁଙ୍କର ବାମପାଦ ଧରି କହିବ ଯେ ଗୁରୋ ! ଅମୁକ ଦେବଶର୍ମା ଯେ ମୁଁ ଆପଣଙ୍କୁ ଅଭିବାଦନ କରୁଅଛି । ଆଚାର୍ଯ୍ୟ ଆଶୀର୍ବାଦ କରିବେ । ହେ ସୌମ୍ୟ ଅମୁକ ଦେବଶର୍ମା ଯେ ତୁମ୍ଭେ ଆୟୁଷବାନ୍ ହୁଅ । ତତ୍ପରେ ବ୍ରହ୍ମଚାରୀ

---

ବ୍ୟାଖ୍ୟା-ବେଦ ପଢ଼ିବା ସମୟରେ ବ୍ରହ୍ମଚାରୀ ଉଭୟ ହସ୍ତରେ ନିଜ ଜାନୁଦ୍ୱୟ ଆଚ୍ଛାଦନ କରି ଗୁରୁଙ୍କର ଅନୁମତି ନେଇ ବେଦ ପାଠ କରିବ ।

ଦ୍ୱିତୀୟେ ତୁ ତଥା ଭାଗେ ବେଦାଭ୍ୟାସୋ ବିଧୀୟତେ ।
ବେଦସ୍ୱୀକରଣଂ ପୂର୍ବ ବିଚାରୋଽଭ୍ୟସନଂ ଜପଃ ॥
ତଦ୍ଦାନଂ ଚୈବ ଶିଷ୍ୟେଭ୍ୟୋବେଦାଭ୍ୟାସୋ ହି ପଞ୍ଚଧା । (ଦକ୍ଷଃ)
ହସ୍ତହୀନଂ ତୁ ଯୋଽଧୀତେ ସ୍ୱରବର୍ଣ୍ଣବିବର୍ଜିତଂ ।
ଋଗ୍‌ଯଜୁଃ ସାମଭିର୍ଦଗ୍‌ଧୋ ବିୟୋନିମଧିଗଚ୍ଛତି । (ଯାଜ୍ଞବଲ୍‌କ୍ୟ)
ଜ୍ଞାତବ୍ୟଃ ସର୍ବବେଦାର୍ଥୋ ବେଦାନଂ କର୍ମସିଦ୍ଧୟେ ।
ପାଠମାତ୍ର ମଧୀତେ ଚ ପଙ୍କେ ଗୌରିବ ସୀଦତି ॥ (ପରାଶରଃ)
ବେଦସ୍ୟାଧ୍ୟୟନଂ ପୂର୍ବଂ ଧର୍ମଶାସ୍ତ୍ରସ୍ୟ ଚୈବ ହି ।
ଅଜାନତୋଽର୍ଥଂ ତଦ୍‌ବ୍ୟର୍ଥଂ ତୁଷାଣାଂ କଣ୍ଡନ ଯଥା ॥ (ବ୍ୟାସଃ)
ଯୋଽନଧୀତ୍ୟ ଦ୍ୱିଜୋବେଦାନନ୍ୟତ୍ର କୁରୁତେ ଶ୍ରମଂ ।
ସ ଜୀବନ୍ନେନ ଶୁଦ୍ରତ୍ୱ ମାଶୁ ଗଚ୍ଛତି ସାନ୍ୱୟଃ ॥ (ମନୁଃ)
ପାରମ୍ପର୍ଯ୍ୟାଗତୋ ଯେଷାଂ ବେଦଃ ସଂପରିବୃହଂଣଃ ।
ତଚ୍ଛାଖଂ କର୍ମ କୁର୍ବୀତ ତଚ୍ଛା ଖାଧ୍ୟାୟିନଂ ତଥା ।
ଅଧୀତ ଶାଖାମାତ୍ମୀୟା ମନ୍ୟଶାଖାଂ ତତଃ ପଠେତ୍ ।
ଶାଖାଂ ସ୍ୱାଂ ୟଃ ପରିତ୍ୟଜ୍ୟ ଅନ୍ୟ ଶାଖାମୁପାସତେ ।
ଶାଖାରଣ୍ଡଃ ସ ବିଜ୍ଞେୟଃ ସର୍ବକର୍ମ ବହିଷ୍କୃତଃ । (ବଶିଷ୍ଠଃ)



କହିବ ହେ ଭଗବାନ୍! ମୁଁ ଆପଣଙ୍କଠାରୁ ବେଦ ଅଧ୍ୟୟନ କରିବି । ଗୁରୁ କହିବେ ଅଧ୍ୟୟନ କର । ତପ୍ରେ ପଦ, ଅଧିରି, କଣ୍ଡିକାକ୍ରମରେ ଆଚାର୍ଯ୍ୟ ବେଦ ପଢ଼ାଇବେ । ବ୍ରହ୍ମଚାରୀ 'ଇଷେତ୍ୱାଦି' ଏହି ତିନିକାଣ୍ଡ ମନ୍ତ୍ରକୁ ପାଞ୍ଚଥର ବା ସାତଥର ପଢ଼ିବ । କିନ୍ତୁ *୧ ବ୍ରହ୍ମାଞ୍ଜଳି ହୋଇ *୨ ବେଦ ପଢ଼ିବା ପୂର୍ବରୁ ପ୍ରଣବ ଓ ବ୍ୟାହୃତିପୂର୍ବକ ଗାୟତ୍ରୀ ଉଚ୍ଚାରଣ କରିବ ଆଉ ମନ୍ତ୍ର ଶେଷରେ ଓଁକାରକୁ ପ୍ଳୁତ ସ୍ୱରରେ ÷ ଉଚ୍ଚାରଣ କରିବ ।

## ୩୩୯-ଇଷେତ୍ୱାଦିମନ୍ତ୍ରର ଋଷିଚ୍ଛନ୍ଦ

ଓଁ ଇଷେତ୍ୱାଦି ମନ୍ତ୍ରାଣାଂ । ପ୍ରାଜାପତ୍ୟାଦ୍ୟାଋଷୟଃ । ଅନୁଷ୍ଟୁବାଦୀନି ଛନ୍ଦାଂସି । ଶାଖାଦୟୋ ଦେବତାଃ । ବେଦାରମ୍ଭେ ବିନିଯୋଗଃ । ଅଥବା ଶାଖାଚ୍ଛେଦନାଦୌ ବିନିଯୋଗଃ । (ଋଷିଛନ୍ଦ ବିଧି ୨୩ ନମ୍ବରରେ ଦେଖ) ।

## ୩୪୦-ଇଷେତ୍ୱାଦି ମନ୍ତ୍ର

ଓଁ ଇଷେତ୍ୱା-ଉର୍ଜେ-ତ୍ୱା-ବାୟବଃ-ସ୍ଥ-ଦେବଃ-ବଃ-ସବିତା-ପ୍ରାର୍ପୟତ୍ତୁ-ଶ୍ରେଷ୍ଠତମାୟକର୍ମଣେ ଆପ୍ୟାୟଧ୍ୱଂ-ଅଘ୍ନ୍ୟାଃ-ଇନ୍ଦ୍ରାୟଭାଗଂ-ପ୍ରଜାପତୀଃ-ଅନମୀବାଃ-ଅୟକ୍ଷ୍ମଃ-ମା-ବଃ-ତେ-ନଃ-ଈଶତମା-ଅଘଶଂସଃ-ଧ୍ରୁବାଃ-ଅସ୍ମିନ୍-ଗୋପତୌ-ସ୍ୟାତ-ବହ୍ୱୀଃ-ଯଜମାନସ୍ୟ-ପଶୂନ୍-ପାହି-ବସୋଃ-ତାମାଚ୍ଛିନତ୍ତୀତ୍ୟାଦି ବ୍ରାହ୍ମଣଂ ।

## ୩୪୧-ନିରାକରଣ ଜପ ମନ୍ତ୍ର

ତତୋଽଧୀତ୍ୟ ନିରାକରଣ ମନ୍ତ୍ର ଜପଃ । (ବେଦ ଅଧ୍ୟୟନ କରିସାରି ନିରାକରଣ ମନ୍ତ୍ର ଜପ କରିବ) ।

ମନ୍ତ୍ରୋଯଥା-ଓଁ ପ୍ରତୀକଂ ମେ ବିଚର୍ଷଣ ଜିହ୍ୱା ମେ ମଧୁମଦ୍ବଚଃ । କର୍ଣ୍ଣାଭ୍ୟାଂ ଭୂରିଶୁଶ୍ରୁବୋ ମହାହ୍ୟର୍ଷୀଃ ଶ୍ରୁତଂ ମୟି । ବ୍ରହ୍ମଣଃ ପ୍ରବଚନମସି ବ୍ରହ୍ମଣଃ କୋଶୋଽସି

---

* ୩୩୮-ବ୍ରହ୍ମାଞ୍ଜଳିନିୟମ-ସଂହତ୍ୟ ହସ୍ତାବଧ୍ୟେୟଃ ସହି ବ୍ରହ୍ମାଞ୍ଜଳିଃ ସ୍ମୃତାଃ ।

(ହାତଦୁହିଙ୍କି ଯୋଡ଼ିଲେ ବ୍ରହ୍ମାଞ୍ଜଳି ହୁଏ, କେହି କେହି ଏହାକୁ ବଦ୍ଧାଞ୍ଜଳି କହନ୍ତି ।)

*୨-ପ୍ରଣବଂ ପ୍ରାକ୍ ପ୍ରଯୁଞ୍ଜୀତ ବ୍ୟାହୃତି ସ୍ତଦନନ୍ତରଂ ।
ସାବିତ୍ରୀଂ ଚାନୁ ପୂର୍ବ୍ୟେଣ ତତୋ ବେଦାଦିମାରଭେତ୍ । (ପଦ୍ଧତୌ)

÷୩-ଏକ ହ୍ରସ୍ୱ ସ୍ୱର ଉଚ୍ଚାରଣ କରିବାକୁ ଯେତେ ସମୟ ଲାଗେ ପ୍ଳୁତସ୍ୱର ଉଚ୍ଚାରଣରେ ତାହାର ତିନି ଗୁଣ ଲାଗେ । ତେତିକି ସମୟ ଯାଏ ଓଁକାର ଉଚ୍ଚାରଣ କରିବ ।

ଶନି ରସି ଶାନ୍ତିରସ୍ୟ ନିରାକରଣମସି ବ୍ରହ୍ମଣଃ କୋଶଂ ମେ ବିଶ୍ୱଗ୍ୱାପି ଦଧାମି ତିଷ୍ଠ ପ୍ରତିତିଷ୍ଠ ସ୍ୱକରଣକର୍ଣ୍ଣୟୋରସଦନ୍ତ୍ୟୋଷ୍ଠଗ୍ରହଣଧାରଣୋଚ୍ଚାରଣଶକ୍ତିର୍ଭବତି । ଆପ୍ୟାୟନ୍ତୁ ମେଽଙ୍ଗାନି ମନୋବାକ୍ ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରଂ ଯଶୋବଳଂ ଯନ୍ମେଶ୍ରୁତଂ ଯଦଧୀତଂ ତନ୍ମେ ମନସି ତିଷ୍ଠତୁ ।

ତତୋ ବ୍ରହ୍ମଚାରୀ ପୂର୍ବବଦ୍‌ଗୁରବେ * ନମସ୍କୁର୍ଯ୍ୟାତ୍ । (ବ୍ରହ୍ମଚାରୀର ଅଭିବାଦନ ବିଧି ୩୩୮ ନମ୍ବରରେ ଦେଖ) ।

କର୍ମାଙ୍ଗଦଶବ୍ରାହ୍ମଣଭୋଜନଂ । ପବିତ୍ର ପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବିସର୍ଜନଂ । ଶାନ୍ତିକରଣଂ । ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମ୍ମଣା ମୟା ଅମୁକସଗୋତ୍ରସ୍ୟାମୁକଦେବଶର୍ମ୍ମଣୋ ବଟୋର୍ବେଦାରମ୍ଭକର୍ମ ଯତ୍କୃତଂ ତତ୍ସୁକୃତମସ୍ତିତ୍ୟାଦି । ଆଶୀର୍ଗ୍ରହଣଂ-ବ୍ରତେନ ଦୀକ୍ଷା ମାପ୍ନୋତି ଦୀକ୍ଷୟାପ୍ନୋତି ଦକ୍ଷିଣାଂ । ଦକ୍ଷିଣାଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟ ମାପ୍ୟତେ । ଇତି ମନ୍ତ୍ରେଣ । ବେଦୋଽସୀତି ମନ୍ତ୍ରେଣବା । ଅପରଦିନେ ପ୍ରତ୍ୟାରମ୍ଭଃ ।୦ ।

ବ୍ୟାଖ୍ୟା-ତତ୍ପରେ ବ୍ରହ୍ମଚାରୀ ପୂର୍ବପରି ଗୁରୁଙ୍କୁ ନମସ୍କାର କରିବେ ଓ ଆଚାର୍ଯ୍ୟ କର୍ମାଙ୍ଗ ଦଶବ୍ରାହ୍ମଣଭୋଜନୋତ୍ସର୍ଗ, ପବିତ୍ର ପ୍ରତିପତ୍ତି (ବିସର୍ଜନ), ପ୍ରଣୀତାର ବିମୋକ (ତ୍ୟାଗ), ବ୍ରହ୍ମା ଓ ଅଗ୍ନିଙ୍କର ବିସର୍ଜନଃ ଅଗ୍ନିର ଶାନ୍ତିକରଣ, ଅଚ୍ଛିଦ୍ରାବଧାରଣ, ପୁଣ୍ୟାହବାଚନ, "ବ୍ରତେନ ଦୀକ୍ଷା ବା ବେଦୋଽସି" ଏହି ମନ୍ତ୍ରରେ ଆଶୀର୍ବାଦ ଗ୍ରହଣ କରି ବେଦାରମ୍ଭ କର୍ମ ସମାପ୍ତ କରିବେ । ତାହା ପରଦିନ ବ୍ରହ୍ମଚାରୀ ପ୍ରତ୍ୟାରମ୍ଭ ପୁନର୍ବାର ବେଦାଧ୍ୟୟନ କରିବ ।

ଇତି ବେଦାଧ୍ୟୟନକର୍ମ ସମାପ୍ତଂ

## ୩୪୨-ସମାବର୍ତ୍ତନକର୍ମବିଚାର

ବେଦଂ ସମାପ୍ୟ ସ୍ନାୟାତ୍ । (ପାରସ୍କରଃ) ବ୍ରହ୍ମଚାରୀବ୍ରତଲୋପେ * କୃଚ୍ଛ୍ରତ୍ରୟରୂପଂ ପ୍ରାୟଶ୍ଚିତ୍ତଂ କାର୍ଯ୍ୟମିତି ବୌଧାୟନଃ ।

---

*-ବେଦାରମ୍ଭେଽବସାନେ ଚ ପାଦୌ ଗ୍ରାହ୍ୟୌ ଗୁରୋଃ ସଦା ।
(ବେଦଆରମ୍ଭରେ ଓ ସମାପ୍ତିରେ ଗୁରୁଙ୍କର ପାଦଦ୍ୱୟ ଧରିବ ।)

### *୩୪୨-ପ୍ରାଜାପତ୍ୟ ବ୍ରତ ନିୟମ-

ତ୍ର୍ୟହଂ ପ୍ରାତସ୍ତ୍ର୍ୟହଂ ସାୟଂ-ତ୍ର୍ୟହମଦ୍ୟା ଦୟାଚିତଂ ।

 

ବ୍ୟାଖ୍ୟା-ବେଦପାଠ କରିସାରି ଗୁରୁଙ୍କର ଆଜ୍ଞା ନେଇ ସମାବର୍ତ୍ତନ ବିଧି ଅନୁସାରେ ସ୍ନାନ କରିବ । ଯଦି ବ୍ରହ୍ମଚର୍ଯ୍ୟବ୍ରତ ଖଣ୍ଡନ ହୁଏ ତାହାହେଲେ କୃଚ୍ଛ୍ରତ୍ରୟ (ପ୍ରାଜ୍ୟପତ୍ୟତ୍ରୟ) ରୂପ ପ୍ରାୟଶ୍ଚିତ୍ତ କରି ସ୍ନାନାଦି କାର୍ଯ୍ୟ କରିବ ।୦ ।

## ୩୪୩-ସମାବର୍ତ୍ତନକର୍ମର ଶୁଭଦିନ ନିର୍ଣ୍ଣୟ

ଭୌମଭାନୁଜୟୋର୍ବାରେ ନକ୍ଷତ୍ରେ ଚ ବ୍ରତୋଦିତେ ।
ତାରାଚନ୍ଦ୍ରବିଶୁଦ୍ଧୌ ଚ ସ୍ୟାତ୍‌ସମାବର୍ତ୍ତନକ୍ରିୟା ।। (ସୁରେଶ୍ୱରଃ)

ବ୍ୟାଖ୍ୟା-ମଙ୍ଗଳ ଓ ଶନିବାରରେ ଉପନୟନୋକ୍ତ ନକ୍ଷତ୍ରମାନଙ୍କରେ (୩୦୯ ନମ୍ବର ଦେଖ) ତାରାଚନ୍ଦ୍ର ଶୁଦ୍ଧିରେ ସମାବର୍ତ୍ତନ କର୍ମ କରିବ ।

## ୩୪୪-ସମାବର୍ତ୍ତନ କର୍ମକାରିକା

ଅର୍ଭ୍ୟର୍ଚ୍ଚ୍ୟ କୁମ୍ଭେ ବରୁଣାହିଦେବାନ୍ ବେଦ୍ୟାଂ ସମାବର୍ତ୍ତନକେ ମନୀଷୀ ।
କର୍ମାଙ୍ଗସଂକଳ୍ପମଥାଭିବୃଦ୍ଧି ଶ୍ରାଦ୍ଧଂ ବିଦଧ୍ୟା ଭୁବି ସଂସ୍କୃତେଽଗ୍ନିଂ ।।
ବସ୍ତ୍ରେଣ ବ୍ରହ୍ମାବରଣଂ ବିଧାୟ କୁର୍ଯ୍ୟାତ୍ କୁଶାଣ୍ଡିଂ ଚରୁବର୍ଜିତଂ ଚ ।
ଆଘାରକାଦୀନ୍ ଜୁହୁୟାଦ୍‌ବିଧାନୈଃ ପୁଣ୍ୟାହବାଚଂ ସମୁଦୀର୍ଯ୍ୟ ଚାଦୌ ।।
ଆଜ୍ୟେନ ବେଦାହୁତିହୋମକଂ ଚ ଭୂରାଦିକାନ୍ ସ୍ୱିଷ୍ଟକୃତଂ ତ ହୁତ୍ୱା ।
ସଂପ୍ରାଶ୍ୟ ସମ୍ମାର୍ଜ୍ୟ ଚ ଦକ୍ଷିଣାଂ ଚ ଦତ୍ତ୍ୱା ତତଃ କାଷ୍ଠକପଞ୍ଚକାଦୀନ୍ ।।

---

ତ୍ର୍ୟହଂ ପରଂ ତୁ ନାଶ୍ନୀୟାତ୍ ପ୍ରାଜାପତ୍ୟଂ ଚରନ୍ ଦ୍ୱିଜଃ ।।
ପ୍ରାଜାପତ୍ୟବ୍ରତାଶକ୍ତୌ ଧେନୁଂ ଦଦ୍ୟାତ୍ ପୟସ୍ୱିନୀଂ ।
ଧେନୋରଭାବେ ଦାତବ୍ୟଂ ତୁଲ୍ୟଂ ମୂଲ୍ୟଂ କଥଞ୍ଚନ ।।
ଧେନୁଃ ପଞ୍ଚଭିରାଢ୍ୟାନାଂମଧ୍ୟାନାଂ ତ୍ରିପୁରାଣିକୀ ।
କାର୍ଷାପଣୋହି ମୂଲ୍ୟଂ ଚ ଦରିଦ୍ରାଣାଂ ପ୍ରକୀର୍ତ୍ତିତଂ ।।

ବ୍ୟାଖ୍ୟା-ତିନିଦିନ ସକାଳବେଳରେ ଭୋଜନ କରିବ । ଅନ୍ୟ ସମୟରେ କରିବ ନାହିଁ । ଏହିପରି ତନିଦିନ ସନ୍ଧ୍ୟା ସମୟରେ ଭୋଜନ କରିବ, ଦିନବେଳେ କରିବ ନାହିଁ ଓ ତିନିଦିନ କେହି ଯାଚିଦେଲେ ଖାଇବ, ନିଜ ଇଚ୍ଛାରେ ଖାଇବ ନାହିଁ ଏବଂ ତିନିଦିନ ନିରାହାର ରହିବ, ଏହିପରି ବାରଦିନରେ ପ୍ରାଜ୍ୟପତ୍ୟ ନାମକ ବ୍ରତ ହୁଏ । ଏପରି ବ୍ରତ କରି ନ ପାରିଲେ ଗୋଟିଏ ଦୁହାଁଳଗାଇ ଦାନ କରିବ । ତାହାର ଅଭାବ ହେଲେ ଗାଇର ମୂଲ୍ୟ ଦେବ । ଯଥା-ଧନୀପକ୍ଷରେ ପାଞ୍ଚକାହାଣ, ମଧ୍ୟଭଳି ଲୋକଙ୍କ ପକ୍ଷରେ ତିନିକାହାଣ ଓ ଦରିଦ୍ର ପକ୍ଷରେ ଏକ କାହାଣ କଉଡ଼ି ଦାନ କରିବ ।

ହୁତ୍ୱାଥ ସଂଗୃହ୍ୟ ଯଥାପ୍ରଦେଶଂ ଭସ୍ମାଷ୍ଟକୁମ୍ଭୈଃ ସ୍ୱପନଂ ଚ କୁର୍ଯ୍ୟାତ୍ ।
ଦୁର୍ବାଗୁବାକାକ୍ଷତତୋୟଯୁକ୍ତୈ ର୍ଯାମ୍ୟୋତ୍ତରସ୍ଥୈଃ ଶୁଭତାମ୍ରକୁମ୍ଭୈଃ ॥
ଦ୍ୱିପଂକ୍ତିଭିରଷ୍ଟଭିରାମ୍ରଶୀର୍ଷଂ ମନ୍ତ୍ରେଣ ପ୍ରତ୍ୟେକମଥାଭିଷିଞ୍ଚେତ୍ ।
ଉଦୁତ୍ତମଂ ମନ୍ତ୍ରମୁଦୀର୍ଯ୍ୟ ମେଖଳାଂ ନିଃସାରୟେତ୍ତାଂ ଚ ବଟୁଃ ଶିରୋଽଧ୍ୱନା ॥
ଐଣୋତ୍ତରୀୟଂ ଭୁବି ମନ୍ତ୍ରବର୍ଜିତଂ ତତଶ୍ଚ ଦଣ୍ଡଂ ବିନିଧାୟ ଯତ୍ନତଃ ।
ଅନ୍ୟଦ୍‌ବାସଃ ପରିଧାୟାଚମେଦ୍ଧିଃ ସୂର୍ଯ୍ୟଂ ନତ୍ୱୋଦ୍ୟନ୍ନିତି ବ୍ରହ୍ମଚାରୀ ॥
ଜଟାଂ ଚ ସଂକ୍ଲେଦ୍ୟ ତିଳୈଶ୍ଚ ଦଧ୍ନା କୃନ୍ତେ ଜଟାଲୋମନଖାନି ଯତ୍ନାତ୍ ।
ସ୍ନାତ୍ୱାଥ କୁର୍ଯ୍ୟାତ୍ ଖଳୁ ଦନ୍ତଶୁଦ୍ଧିଂ ମନ୍ତ୍ରେଣ ଚୋଦୁମ୍ବର କାଷ୍ଠକେନ ॥
ଉଦ୍‌ବର୍ତ୍ତୀ ଯତ୍ନାତ୍ତୁ ସୁଗନ୍ଧିନାଙ୍ଗଂସ୍ନାୟାଦ ଥାନ୍ୟଦ୍ ବସନଂ ବିଭୃତ୍ୟ ।
ସୁଚନ୍ଦନାଦ୍ୟୈରନୁଲିପ୍ତଗାତ୍ରୋଽଥାଲମ୍ଭନଂ ଚାସ୍ୟନସୋଃ ପ୍ରକୁର୍ଯ୍ୟାତ୍ ॥
ଜପ୍ତ୍ୱା ବଟୁଃ ପିତୃମନ୍ତ୍ରଂ ସ୍ୱହସ୍ତୌ ପ୍ରକ୍ଷାଲ୍ୟ ଯତ୍ନାଦ୍ଦିଶି ଦକ୍ଷିଣସ୍ୟାଂ ।
ଗନ୍ଧଂ ବସ୍ତ୍ରଂ ଯଜ୍ଞସୂତ୍ରୋତ୍ତରୀୟେ ମାଲ୍ୟଂ ଭୂଷାଂ ସ୍ୱସ୍ୱମନ୍ତ୍ରୈର୍ଗୃହୀତ୍ୱା ॥
ବଦ୍ଧ୍ୱୋଷ୍ଣୀଷଂ ଧାରୟିତ୍ୱା କିରୀଟଂ ସିନ୍ଦୂରଂ ବୈ କଜ୍ଜଳଂ ସଂପ୍ରଗୃହ୍ୟ ।
ପଶ୍ୟେନ୍ମନ୍ତ୍ରୈରାନତଂ ଦର୍ପଣେନ ଛତ୍ରୋପାନଦମ୍ବୁକାନି ପ୍ରଗୃହ୍ୟାତ୍ ॥
ତତଃ ପବିତ୍ରପ୍ରତିପତ୍ତିକାଦି କୁର୍ଯ୍ୟାତ୍ତଦାଶୀର୍ଗ୍ରହଣାନ୍ତମେବ ।
ବସ୍ତ୍ରଂ ଫଳଂ ପୂପସୁତଣ୍ଡୁଳାନି କପର୍ଦ୍ଦି କାମୁଦ୍‌ଗସୁପୁସ୍ତକାନି ॥
ବଦ୍ଧ୍ୱା ଯଥାସମ୍ଭବସମ୍ବଳାନି ସଂଗୃହ୍ୟ ଯାୟାତ୍ତ୍ରିଦଶାଳୟଂ ଚ ।
ଦତ୍ତାତ୍ର ପାଦ୍ୟଂ ଖଳୁ ବିଷ୍ଟବେ ଚ ଗୁଷ୍ଟଃ କିୟଦ୍ଧୂ ରମଥୋ ବ୍ରଜେଚ୍ଚ ॥
ଆଗତ୍ୟ ତସ୍ମାତ୍ ସ୍ୱଜନୈଃ ସମେତୋ ଧୌତାଙ୍ଘ୍ରପାଣିସ୍ତତ ଆଚମେଦ୍ଧିଃ ।
ସଂପ୍ରାଶ୍ୟ ବେଦ୍ୟାଂ ମଧୁପର୍କମେବ ଦୂର୍ବାକ୍ଷତାନି ପ୍ରଦଦେତ୍ପିତା ଚ ॥
ନୀରାଜୟେଦ୍ଧର୍ଚ୍ଚିତଦେବପୁତ୍ରୌ ସମାପୟେତ୍ ସ୍ନାତକକର୍ମ ଯତ୍ନାତ୍ ।
(ଲୋକନାଥଦାସେନ କୃତ୍ୱା)

ବ୍ୟାଖ୍ୟା-ଆଚାର୍ଯ୍ୟ ପ୍ରଥମେ ବେଦୀ ଉପରେ କଳସରେ ବରୁଣପୂଜା କରି କର୍ମାଙ୍ଗସଂକଳ୍ପ ଓ ବୃଦ୍ଧିଶ୍ରାଦ୍ଧ କରିବେ ଏବଂ ପଞ୍ଚଭୂସଂସ୍କାର କରି ଅଗ୍ନିସ୍ଥାପନ କରିବେ । ତଦନନ୍ତରେ ବସ୍ତ୍ରାଦି ଦେଇ ବ୍ରହ୍ମାଙ୍କୁ ବରଣ କରି, ଚରୁଛଡ଼ା କୁଶାଣ୍ଡି କରି ଅଗ୍ନିରେ ଆଘାର ଓ ଆଜ୍ୟଭାଗ ଦେଇ ପୁଣ୍ୟାହବାଚନ କରିବେ । ତଦୁତ୍ତାରୁ କେବଳ ଘୃତରେ ବେଦାହୁତି ହୋମ ଓ ଭୂରାଦିସ୍ୱିଷ୍ଟକୃତ୍‌ପର୍ଯ୍ୟନ୍ତ ଦଶାହୁତି ହୋମ କରି ପ୍ରାଶନ, ମାର୍ଜନ ଓ ଦକ୍ଷିଣା ଦେଇ କାଷ୍ଠପଞ୍ଚକାଦି ହୋମ କରିବେ । ତତ୍ପରେ ବ୍ରହ୍ମଚାରୀ ଯଥାସ୍ଥାନରେ ଭସ୍ମଗ୍ରହଣ କରି ଦକ୍ଷିଣୋତ୍ତରକ୍ରମେ ଦୁଇ ପଂକ୍ତିରେ ଥିବା



ଦୂବ, ଅକ୍ଷତ, ଗୁଆ ଓ ଜଳପୂର୍ଣ୍ଣ ଆଠଗୋଟି କୁମ୍ଭ ମଧ୍ୟରୁ ପ୍ରତ୍ୟେକ କୁମ୍ଭ ହାତରେ ନେଇ ମନ୍ତ୍ର ପଢ଼ି ଜଳ ମସ୍ତକରେ ଢାଳି ପଛଆଡ଼କୁ ପକାଇଦେବ । ତଦନନ୍ତର "ଉଦୁତ୍ତମଂ" ଏହି ମନ୍ତ୍ର ପଢ଼ି ବ୍ରହ୍ମଚାରୀ ମେଖଳାକୁ ମୁଣ୍ଡବାଟେ ବାହାର କରି ଭୂମିରେ ରଖି ବିନା ମନ୍ତ୍ରରେ ଐଣାଜିନୋତ୍ତରୀୟ ଓ ଦଣ୍ଡକୁ ଭୂମିରେ ରଖିବ ଓ କୌପୀନ ଆଦି ତ୍ୟାଗ କରି ଅନ୍ୟ ବସ୍ତ୍ର ପିନ୍ଧିବ । ତଦୁତ୍ତାରୁ ବ୍ରହ୍ମଚାରୀ ଦ୍ୱିରାଚମନ କରି "ଉଦ୍ୟନ୍‌ଭ୍ରାଜ" ଏହି ମନ୍ତ୍ର ପଢ଼ି ସୂର୍ଯ୍ୟଙ୍କୁ ନମସ୍କାର କରିବ । ଏହା ଉତ୍ତାରୁ ନାପିତ ତିଳ ଓ ଦଧିଦ୍ୱାରା ବ୍ରହ୍ମଚାରୀର ଜଟାକୁ ଓଦା କରି ନଖ ଲୋମ ସହିତ ଜଟା ଛେଦନ କରିବ । ତଦନନ୍ତର ବ୍ରହ୍ମଚାରୀ ସ୍ନାନ କରି ବାରଆଙ୍ଗୁଳ ପରିମିତ ଔଦୁମ୍ବର କାଷ୍ଠରେ ମନ୍ତ୍ର ପଢ଼ି ଦନ୍ତଧାବନ କରିବ ଓ ସୁଗନ୍ଧ (ହଳଦୀଆଦି) ଦ୍ରବ୍ୟ ଅଙ୍ଗରେ ଲେପନ କରି ସ୍ନାନ କରିବ ଏବଂ ଅନ୍ୟ ବସ୍ତ୍ର ପିନ୍ଧି ଅଙ୍ଗରେ ସୁଗନ୍ଧ ଚନ୍ଦନାଦି ଲେପନ କରି ମନ୍ତ୍ର ପଢ଼ି ମୁଖନାସିକାଦିର ଆଲମ୍ଭନ (ସ୍ପର୍ଶ) କରି ଓ ପିତୃମନ୍ତ୍ର ପଢ଼ି ଦକ୍ଷିଣଦିଗରେ ହସ୍ତଦ୍ୱୟ ପ୍ରକ୍ଷାଳନ କରିବ । ତଦନନ୍ତର ଗନ୍ଧ, ବସ୍ତ୍ର (ପାଞ୍ଚି), ଯଜ୍ଞସୂତ୍ର (ପଇତା), ଉତ୍ତରୀୟ ବସ୍ତ୍ର, ମାଲ୍ୟପୁଷ୍ପ, ଅଳଂକାରାଦି ସ୍ୱ ସ୍ୱ ମନ୍ତ୍ରରେ ଗ୍ରହଣ କରି ମନ୍ତ୍ର ପଢ଼ି ଦର୍ପଣରେ ନିଜ ମୁଖ ଦେଖିବ ଏବଂ ମନ୍ତ୍ରଦ୍ୱାରା ଛତ୍ର, ଚର୍ମପାଦୁକା ଓ ଜଳପାତ୍ର ଧାରଣ କରି ପବିତ୍ର ପ୍ରତିପତ୍ତିଠାରୁ ଆଶୀର୍ବାଦ ପର୍ଯ୍ୟନ୍ତ ସମସ୍ତ କର୍ମ ଶେଷ କରିବ । ତଦନନ୍ତର ବସ୍ତ୍ର ଫଳପୁଷ୍ପ ତଣ୍ଡୁଳ କଉଡ଼ି ଓ ମୁଗ ପ୍ରଭୃତି ସମ୍ବଳ ନେଇ ଦେବାଳୟକୁ ଯିବ । ସେଠାରେ ବିଷ୍ଣୁଙ୍କୁ ତିନିଥର ପାଦାର୍ଘ୍ୟ ଦେଇ ସେହି ସମ୍ବଳ ଧରି କିଛି ଦୂର ଋଷି ଚାଲିଯିବ ଏବଂ ବନ୍ଧୁମାନେ ବୁଝାଇବାରୁ ତାଙ୍କ ସହିତ ଘରକୁ ଫେରି ଆସି ଗୋଡ଼ ହାତ ଧୋଇ ବେଦୀ ଉପରେ ବସି ଦ୍ୱିରାଚମନ କରି ମଧୁପର୍କ ପ୍ରାଶନ କରିବ । ତଦନନ୍ତର ଆଚାର୍ଯ୍ୟ ଦୂର୍ବାକ୍ଷତ ପକାଇ ବନ୍ଦାପନା କରି ସମାବର୍ତ୍ତନକର୍ମ ସମାପ୍ତ କରିବେ ।

## ୩୪୫-ସମାବର୍ତ୍ତନକର୍ମାରମ୍ଭ

ଆଦୌ୍ୟା ବରୁଣପୂଜା । (ଏହାର ବିଧି ୨୨୦ ନମ୍ବର ଦେଖ) । କର୍ମାଙ୍ଗସଂକଳ୍ପଃ-ତଦ୍ୟଥା-ଦେଶକାଳବାକ୍ୟାନନ୍ତରଂ-ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରସ୍ୟ ମମ ପୁତ୍ରସ୍ୟାମୁକଦେବଶର୍ମ୍ମଣୋବଟୋଃ ସମାବର୍ତ୍ତନକର୍ମାହଂ କୁର୍ବୀୟ । (ସଂକଳ୍ପର ବିଧି ୧୨୫-୧୨୯ ନମ୍ବର ଦେଖ) ।

ତତୋମାତୃପୂଜାପୂର୍ବକମାଭ୍ୟୁଦୟିକଶ୍ରାଦ୍ଧଂ କୁର୍ଯ୍ୟାତ୍ । (୧୩୦ ଠାରୁ ୧୩୪ ନମ୍ବର ପର୍ଯ୍ୟନ୍ତ ଦେଖ) । ତଦ୍ୟଥା-ବିଷ୍ଣୁର୍ନମ ଅଦ୍ୟୋହେତ୍ୟାଦି ପୂର୍ବୋକ୍ତ ଏବଂ - ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବ ଶର୍ମା ଅମୁକସଗୋତ୍ରସ୍ୟ ମମ ପୁତ୍ରସ୍ୟାମୁକଦେବକର୍ମଣୋବଟୋଃ ସମାବର୍ତ୍ତନକର୍ମଣେୀଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟତେ ନ * ବିଶ୍ୱେଷାଂ ଦେବାନଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ ମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀନାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂଅସ୍ମତ୍‌ପିତୃପିତା-ମହପ୍ରପିତାମହାନାଂଅମୁକଦେବ ୩ ଶର୍ମଣାଂନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ନାତାମହପ୍ରମାତମହବୃଦ୍ଧପ୍ରମାତାମହାନାଂ ଅମୁକଦେବ୩ଶର୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ * ଇମାନି ସମ୍ପୁୟାଷ୍ଟପରିମିତାନି ଭୋଜ୍ୟାନି ପ୍ରଜାପତିଦୈବତାନି ତେଭ୍ୟୋ ବ୍ରାହ୍ମଣେଭ୍ୟୋ ଦାତୁମହମୁସୃଜେ । ଅନ୍ନେ ପ୍ରତିଷ୍ଠିତା ଇତ୍ୟାଦି ।

## ୩୪୬-ସମାବର୍ତ୍ତନ କର୍ମ

ତତୋବ୍ରହ୍ମଚାରୀ ଗୁରୋଃ ପାଦୋପସଂଗ୍ରହଣଂ କୃତ୍ୱା ଆଚାର୍ଯ୍ୟ ସ୍ନାସ୍ୟାମି ଇତ୍ୟନୁଜ୍ଞାଂ ଯାଚତେ । ସ୍ନାହୀତି ଗୁରୁଃ । (ତତ୍ପରେ ବ୍ରହ୍ମଚାରୀ ଗୁରୁଙ୍କ ପାଦ ଧରି କହିବ ମୁଁ ସ୍ନାନ କରିବି ଆଜ୍ଞା କରନ୍ତୁ, ଗୁରୁ କହିବେ ସ୍ନାନ କର) ।

## ୩୪୭-ସମାବର୍ତ୍ତନକର୍ମର ଅଗ୍ନିସ୍ଥାପନ ଓ କୁଶଣ୍ଡି

ତତଃ ପଞ୍ଚଭୂସଂସ୍କାରାନ୍ କୃତ୍ୱା ଲୌକିକାଗ୍ନେଃ ସ୍ଥାପନ । ସୂର୍ଯ୍ୟନାମାଗ୍ନୟେ ନମଃ ଇତି ଆସନାଦି ନୈବେଦ୍ୟାନ୍ତଂ ପୂଜାୟେଦ୍ ଘୃତେ ନ ବା । (ତତ୍ପରେ ପଞ୍ଚଭୂସଂସ୍କାର ଓ ଅଗ୍ନିସ୍ଥାପନ କରି ସୂର୍ଯ୍ୟ ନାମାଗ୍ନିଙ୍କୁ ଆସନାଦି ନୈବେଦ୍ୟ ପର୍ଯ୍ୟନ୍ତ ଦେଇ ପୂଜା କରିବ ଅଥବା କେବଳ ଘୃତରେ ପୂଜା କରିବ । (ଏହାର ବିଧି ୧୪୬ ନମ୍ବର ଦେଖ ।)

ତତୋବ୍ରହ୍ମାବରଣଂ । ଆସନାଦି ଦତ୍ୱା ସମାବର୍ତ୍ତନହୋମକର୍ମଣି କୃତା କୃତା ବେକ୍ଷକତ୍ୱେନ ବ୍ରହ୍ମାଣଂ ବୃଣେ । ବୃତୋସ୍ମୀତ୍ୟାଦି । (ବ୍ରହ୍ମାବରଣର ବିଧି ୧୪୯ ନମ୍ବର ଦେଖ ।)

---

*-ଆମ୍ନ ତତ୍ୱେନ ଇତି ପାଠାନ୍ତରଂ

*-ଇଦଂ ସମ୍ପୁୟ ଏକ ପରିମିତଂ ପ୍ରଜାପତିଦୈବତମିତି ପାଠାନ୍ତରଂ ।



ଦକ୍ଷିଣତୋବ୍ରହ୍ମାସନମିତ୍ୟାରଭ୍ୟ ପ୍ରଣୀତାୟାଂ ପବିତ୍ରସ୍ଥାପନାନ୍ତଂ କୁର୍ଯ୍ୟାତ୍ ନାତ୍ର ଚରୁଃ । (ବ୍ରହ୍ମାସନଠାରୁ ଆରମ୍ଭି ପବିତ୍ରସ୍ଥାପନ ପର୍ଯ୍ୟନ୍ତ ଚରୁଛଡ଼ା ସମସ୍ତ ଦ୍ରବ୍ୟ ଆସାଦନ କରିବ । ଏହାର ବିଧି ୧୫୫ ନମ୍ବର ଦେଖ ।)

## ୩୪୮-ସମାବର୍ତ୍ତନକର୍ମର ଦ୍ରବ୍ୟ ଆସାଦନ

ଉପକଳ୍ପନୀୟେଷୁ ବିଶେଷଃ । କାଷ୍ଠପଞ୍ଚକଂ । ସମିତ୍ତ୍ରୟଂ ପର୍ଯ୍ୟୁକ୍ଷଣାର୍ଥମୁଦକଂ । ଭସ୍ମଚ । ହରିତ୍କୁଶଃ । ଅଷ୍ଟୌ ଉଦକୁମ୍ଭାଃ । ଔଦୁମ୍ବରଂ ଦ୍ୱାଦଶାଙ୍ଗୁଳଂ ଦନ୍ତକାଷ୍ଠଂବ୍ରାହ୍ମଣସ୍ୟ *ଦଧି । ନାପିତଃ । ସ୍ନାନାର୍ଥମୁଦକଂ । ଉଦ୍‌ବର୍ତ୍ତନଦ୍ରବ୍ୟଂ । ଚନ୍ଦନଂ । ଅହତେ ବାସସୀ । ଯଜ୍ଞୋପବୀତେ । ପୁଷ୍ପାଣି । ଉଷ୍ଣୀଷଂ । କିରୀଟଂ । କର୍ଣ୍ଣାଳଂ କାରୌ । ଅଞ୍ଜନଂ । ସିନ୍ଦୂରଂ । ଆଦର୍ଶଃ । ନୂତନଂ ଛତ୍ରଂ । ଉପାନହୌ ବୈଣବୋଦଣ୍ଡଃ ।

ବ୍ୟାଖ୍ୟା-ଆସାଦନରେ ଏତିକି ବିଶେଷ, ଯଥା-ପାଞ୍ଚଖଣ୍ଡି କାଠ, ତିନିଖଣ୍ଡ ପଲାଶସମିଧ, ପୁଣି ପାଞ୍ଚଖଣ୍ଡି କାଠ । ପର୍ଯ୍ୟୁକ୍ଷଣ ନିମିତ୍ତ ଉଦକ, ଭସ୍ମ, କେତେଗୋଟି ହରିଦ୍ ବର୍ଣ୍ଣ କୁଶ, ଆଠଗୋଟି ଉଦକକୁମ୍ଭ, ବାରଆଙ୍ଗୁଳି ପରିମିତ ଔଦୁମ୍ବର ଦାନ୍ତକାଠି (ଏହା ବ୍ରାହ୍ମଣ ପକ୍ଷରେ), ଦଧି, ନାପିତ, ସ୍ନାନାର୍ଥଜଳ, ଉଦ୍‌ବର୍ତ୍ତନ (ଲେପନ କରିବା ଦ୍ରବ୍ୟ) ଚନ୍ଦନ, ଦଶିଥିବା ଲୁଗା ଓ ଚାଦର, ଦୁଇପଟ ପଇତା, ପୁଷ୍ପମାଳା, ଉଷ୍ଣୀଷ (ପାଗ), ମୁକୁଟ, କର୍ଣ୍ଣଭୂଷଣ (କୁଣ୍ଡଳାଦି), କଜ୍ଜଳ, ସିନ୍ଦୁର, ଆର୍ଷି, ନୂଆଛତା, ଉପାନହ (ଯୋତା ହଲେ) ଓ ବାଉଁଶଦଣ୍ଡ ଏମାନଙ୍କୁ ଆସାଦନ କରିବ ।

## ୩୪୯-ସମାବର୍ତ୍ତନ ହୋମ

ତତଃ ପବିତ୍ରକରଣାଦ୍ୟାଘାରାବାଜ୍ୟଭାଗୌ ହୁତ୍ୱା ପୁଣ୍ୟାହବାଚନଂ ତଦ୍‌ଯଥା-ମମପୁତ୍ରସ୍ୟାମୁକଦେବଶର୍ମଣୋବଟୋଃ । ସମାବର୍ତ୍ତନାଙ୍ଗହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । ତତ ଆଜ୍ୟେନ ବେଦାହୁତିହୋମଃ । ତଦ୍‌ଯଥା-ଅନ୍ତରିକ୍ଷାୟ । ବାୟବେ । ବ୍ରହ୍ମଣେ । ଛନ୍ଦୋଭ୍ୟଃ । ପ୍ରଜାପତୟେ । ଦେବେଭ୍ୟଃ । ଋଷିଭ୍ୟଃ । ଶ୍ରଦ୍ଧାୟୈ । ମେଧାୟୈ । ସଦସସ୍ପତୟେ । ଅନୁମତୟେ । ଇତ୍ୟୋକାଦଶାହୁତୟଃ । ଯଦି ଋଗ୍‌ବେଦମଧୀତ୍ୟ ସ୍ନାତି ତଦା ପୃଥିବ୍ୟୈ । ଅଗ୍ନୟେ । ଇତ୍ୟାହୁତିଦ୍ୱୟଂ ହୁତ୍ୱା-ବ୍ରହ୍ମଣେ ଛନ୍ଦୋଭ୍ୟଃ । ଇତ୍ୟାରଭ୍ୟଅନୁମତ୍ୟନ୍ତାନବାହୁ ତୀର୍ଜୂହୋତି ଏବଂ

*-ଦଶାଙ୍ଗୁଳଂ ରାଜନ୍ୟସ୍ୟ । ଅଷ୍ଟାଙ୍ଗୁଳିଂ ବୈଶ୍ୟସ୍ୟ । (ଗଦାଧରଃ)

ସାମ୍‌ବେଦେ-ଦିବେ । ସୂର୍ଯ୍ୟାୟ । ଇତ୍ୟାହୁତିଦ୍ୱୟଂ ହୁତ୍ୱାବ୍ରହ୍ମଣେ ଛନ୍ଦୋଭ୍ୟଃ ଇତ୍ୟାଦ୍ୟାନବାହୁତୀର୍ଜୁହୋତି । ଏବମର୍ଥବେଦେଽପି । ଦିଗ୍‌ଭ୍ୟଃ । ଚନ୍ଦ୍ରମସୋ ଇତ୍ୟାହୁତିଦ୍ୱୟଂ ହୁତ୍ୱା-ବ୍ରହ୍ମଣେ । ଛନ୍ଦୋଭ୍ୟଃ ଇତ୍ୟାଦ୍ୟାନବାହୁତୀର୍ଜୁହୋତି । ଯଦି ବେଦଚତୁଷ୍ଟୟମଧୀତ୍ୟ ସ୍ନାନଂ କରୋତି ତଦା ଆଜ୍ୟଭ୍ୟଗାନନ୍ତରଂ ପ୍ରତିବେଦଂ ବେଦାହୁଦିଦ୍ୱୟଂ ହୁତ୍ୱା ବ୍ରାହ୍ମଣ । ଛନ୍ଦୋଭ୍ୟଃ । ଇତ୍ୟାଜ୍ୟାହୁତୀଃ ପୁନଃ ପୁନର୍ଜୁହୋତି । (ବେଦାହୁତି ହୋମ ୩୩୬ ନମ୍ବର ଦେଖ) । ତତୋଭୂରାଦିସ୍ୱିଷ୍ଟକୃଦନ୍ତା ଦଶାହୁତୟଃ । (ତତ୍ପରେ ଭୂଠାରୁ ସ୍ୱିଷ୍ଟକୃତ୍ ପର୍ଯ୍ୟନ୍ତ ଦଶଆହୁତି ଦେବ) ପ୍ରାଶନଂ । ମାର୍ଜନଂ । ବ୍ରହ୍ମଣେ ପୂର୍ଣ୍ଣପାତ୍ରଦକ୍ଷିଣାଦାନଂ । ପବିତ୍ରପ୍ରତିପତ୍ତିଃ (ବିସର୍ଜନଂ) । ପ୍ରଣୀତାବିମୋକଃ (ତ୍ୟାଗଃ) । ତତୋବ୍ରହ୍ମଚାରୀ ଉପସଂଗ୍ରହଣପୂର୍ବକଂ ଗୁରୁଂ ନମସ୍କୃତ୍ୟ ପରିସମୂହନାଦିତ୍ର୍ୟାୟୁଷକରଣାନ୍ତଂ ସମିଦାଧାନଂ ତସ୍ମିନ୍ନେବାଗ୍ନୌ କୁର୍ଯ୍ୟାତ୍ । (ତଦନନ୍ତର ବ୍ରହ୍ମଚାରୀ । ପାଦୋପସଂଗ୍ରହଣପୂର୍ବକ ଗୁରୁଙ୍କୁ ନମସ୍କାର କରି ପରିସମୁହାନାଦି (ମନ୍ତ୍ରଠାରୁ) ତ୍ର୍ୟାୟୁଷକରଣ ପର୍ଯ୍ୟନ୍ତ (ମନ୍ତ୍ରପଢ଼ି) ସେହି ଅଗ୍ନିରେ ସମିଧାଧାନ (କାଷ୍ଠପଞ୍ଚମ ହୋମ କରିବ) ତଦ୍‌ଯଥା-ଉଦକେନାଗ୍ନିଂ ପର୍ଯ୍ୟୁକ୍ଷ୍ୟ ପ୍ରଥମକାଷ୍ଠପଞ୍ଚକଂ ମନ୍ତ୍ରେଣ ପ୍ରତ୍ୟେକଂ ଜୁହୁୟାତ୍ । (ଆସାଦିତ ଜଳରେ ଅଗ୍ନି ପର୍ଯ୍ୟୁକ୍ଷଣ କରି ପ୍ରଥମ କାଷ୍ଠପଞ୍ଚକକୁ ନିମ୍ନଲିଖିତ ମନ୍ତ୍ର ପଢ଼ି ହୋମ କରିବ ।) ମନ୍ତ୍ରୋଯଥା-ଓଁ ଅଗ୍ନେ ସୁଶ୍ରବଃ ସୁଶ୍ରବସ ମ୍ମାକୁରୁ । ଇତି ପ୍ରଥମଂ । ଯଥା ତ୍ୱମଗ୍ନେ ସୁଶ୍ରବଃ ସୁଶ୍ରବା ଅସି । ଇତି ଦ୍ୱିତୀୟଂ । ଏବମଗ୍ନେ ସୁଶ୍ରବଃ ସୌଶ୍ରବସମ୍ମାକରୁ । ଇତି ତୃତୀୟଂ । ଓଁ ଯଥାତ୍ୱମଗ୍ନେଦେବାନାଂ ଯଜ୍ଞସ୍ୟ ନିଧିପାଅସି । ଇତି ଚତୁର୍ଥଂ । ଏବମହଂ ମନୁଷ୍ୟାଣାଂ ବେଦସ୍ୟ ନିଧିପୋ ଭୂୟାସଂ । ଇତିପଞ୍ଚମଂ । ତତଃପ୍ରଦକ୍ଷିଣମଗ୍ନିଂପର୍ଯ୍ୟୁକ୍ଷ୍ୟଉତ୍ତିଷ୍ଠନ୍ ସମିଧମାଦଧାତି (ତତ୍ପରେ ଜଳରେ ଅଗ୍ନି ପର୍ଯ୍ୟୁକ୍ଷଣ କରି ଠିଆହୋଇ ନିମ୍ନଲିଖିତ ମନ୍ତ୍ର ପଢ଼ି ଅଗ୍ନିରେ ଆସାଦିତ ସମିଧ ପକାଇ ।) ମନ୍ତ୍ରୋଯଥା-ଅଗ୍ନୟେ ସମିଧମାହାର୍ଷଂ ବୃହତେ ଜାତବେଦସେ । ଯଥାତ୍ୱମଗ୍ନେ ସମିଧା ସମିଧ୍ୟସେ ଏମମହମାୟୁଷା ମେଧୟା ବର୍ଚ୍ଚସା ପ୍ରଜୟା ପଶୁଭିର୍ବ୍ରହ୍ମବର୍ଚ୍ଚସେନ ସମିନ୍ଧେ । ଜୀବପୁତ୍ରୋ ମମାଚାର୍ଯ୍ୟୋ ମେଧାବ୍ୟହମସାନ୍ୟନିରାକରିଷ୍ଣୁ ର୍ଯଶସ୍ୱୀ ତେଜସ୍ୱୀ ବ୍ରହ୍ମବର୍ଚ୍ଚସ୍ୟନ୍ନାଦୋଭୂୟାସଙ୍ଂ ସ୍ୱାହା । ଇତ୍ୟେକାଂ । ପୁନସ୍ତେନୈବ ମନ୍ତ୍ରେଣ ଦ୍ୱିତୀୟାଂ ତୃତୀୟାଂ । "ଏଷାତେ" ଇତି ବା ସମୁଚ୍ଚୟୋ ବା ।) ଉପରୋକ୍ତ ମନ୍ତ୍ର ତିନିଥର ପଢ଼ି ପ୍ରତ୍ୟେକଥରରେ ଅଗ୍ନିରେ ଖଣ୍ଡିଏ ଖଣ୍ଡିଏ ସମିଧ ପକାଇବ ଅଥବା "ଏଷୋତେ" ଏହି ମନ୍ତ୍ର ପଢ଼ି ହୋମ କରିବ କିମ୍ବା ମନ୍ତ୍ର ପଢ଼ି ତିନିଖଣ୍ଡ ଯାକ ଏକତ୍ରରେ ହୋମ କରିବ) । ତତ ଉପବିଶ୍ୟ ଅଗ୍ନିଃ ପର୍ଯ୍ୟୁକ୍ଷ୍ୟ ପୁର୍ବବତ୍ କାଷ୍ଠପଞ୍ଚକମଗ୍ନୌ ପ୍ରକ୍ଷିପେତ୍ ।

(ତତ୍ପରେ ବସି ଜଳଚଳୁଏ ନେଇ ଅଗ୍ନିର ଚତୁର୍ଦ୍ଦିଗରେ ସେଚନ କରିବ ପୁର୍ବପରି କାଷ୍ଠପଞ୍ଚକ ହୋମ କରିବ ।) ପୂର୍ବବତ୍ ପରିସମୂହନପର୍ଯ୍ୟୁକ୍ଷଣ । ତତୋଽଗ୍ନୌ ତୁଷ୍ଣୀଂ ପାଣିଂ ପ୍ରତପ୍ୟ ବକ୍ଷ୍ୟମାଣୈଃ ସପ୍ତଭିର୍ମନ୍ତ୍ରୈଃ ପ୍ରତିମନ୍ତ୍ରଂ ମୁଖବିମାର୍ଜନଂ ।

**ବ୍ୟାଖ୍ୟା**-ପର୍ଯ୍ୟୁକ୍ଷଣ ଅର୍ଥାତ୍ ପୂର୍ବପରି ଜଳ ଚଳୁଏ ଧରି ଅଗ୍ନିର ଚତୁର୍ଦ୍ଦିଗରେ ସେଚନ କରି ଉଭୟ ହସ୍ତକୁ ସେହି ଅଗ୍ନିରେ ତପ୍ତ କରି ନିମ୍ନଲିଖିତ ସାତଗୋଟି ମନ୍ତ୍ର ପଢ଼ି ପ୍ରତିମନ୍ତ୍ରରେ ମୁଖ ବିମାର୍ଜନ କରିବ ।

**ମନ୍ତ୍ରୋଯଥା**-ଓଁ ତନୁପା ଅଗ୍ନେଽସି ତନ୍ୱଂ ମେ ପାହି ।୧ । ଓଁ ଆୟୁର୍ଦା ଅଗ୍ନେଽସି ଆୟୁର୍ମେ ଦେହୀ ।୨ । ଓଁ ବର୍ଚ୍ଚୋଦା ଅଗ୍ନେଽସି ବର୍ଚ୍ଚୋମେ ଦେହି ।୩ । ଓଁ ଅଗ୍ନେ ଯନ୍ମେତନ୍ୱଉନଂ ତନ୍ମ ଆପୃଣ ।୪ । ଓଁ ମେଧାଂ ଦେବଃ ସବିତା ଆଦଧାତୁ ।୫ । ଓଁ ମେଧା ଦେବୀ ସରସ୍ୱତୀ ଆଦଧାତୁ ।୬ । ଓଁ ମେଧାମଶ୍ୱିନୌ ଦେବାଧତ୍ତାଂ ପୁଷ୍କରସ୍ରଜୌ ।୭ ।

ତତୋବଟୁଃ ବାମେପାଣବୁଦକମାଦାୟ ତେନୋଦକେନ ଦକ୍ଷିଣପାଣିନା "ଓଁ ଅଙ୍ଗାନି ଚମ ଆପ୍ୟାୟନ୍ତାଂ ଇତି ଶିରଃପ୍ରଭୃତି ପାଦାଙ୍ଗୁଳିପର୍ଯ୍ୟନ୍ତଂ ସର୍ବାଙ୍ଗାଲମ୍ଭନଂ । "ଓଁ ବାକ୍‌ଚମ ଆପ୍ୟାୟତାଂ" ଇତି ମୁଖେ । ଓଁ ପ୍ରାଣଶ୍ଚମ ଆପ୍ୟାୟତାଂ ଇତି ନାସିକୟୋଃ । ଓଁ ଚକ୍ଷୁଶ୍ଚମ ଆପ୍ୟାୟତାଂ" ଇତି ଚକ୍ଷୁଷୋଃ "ଓଁ ଶ୍ରୋତ୍ରଂ ଚମ ଆପ୍ୟାୟତାଂ" ଇତି ଶ୍ରୋତ୍ରେୟୋଃ । "ଓଁ ଯଶୋବଲଂ ଚମ ଆପ୍ୟାୟତାଂ" ଇତି ହସ୍ତୌ ସଂପୁଟୀକୃତ୍ୟ ପଠତି ।

**ବ୍ୟାଖ୍ୟା**-ତତ୍ପରେ ବ୍ରହ୍ମଚାରୀ ବାମହସ୍ତରେ ଜଳଧରି ଦକ୍ଷିଣ ହସ୍ତଦ୍ୱାରା ସେହି ଜଳ ନେଇ "ଅଙ୍ଗାନି ଚମ ଆପ୍ୟୟନ୍ତଂ" ଏହି ମନ୍ତ୍ର ପଢ଼ି ମସ୍ତକଠାରୁ ପାଦାଙ୍ଗୁଳି ପର୍ଯ୍ୟନ୍ତ ସମସ୍ତ ଅଙ୍ଗ ସ୍ପର୍ଶ କରିବ । "ଓଁ ବାକ୍‌ଚମ ଆପ୍ୟାୟତାଂ" ଏହି ମନ୍ତ୍ର ପଢ଼ି ମୁଖ, "ଓଁ ପ୍ରାଣଶ୍ଚମ ଆପ୍ୟାୟତାଂ" ଏହି ମନ୍ତ୍ର ପଢ଼ି ନାସିକାଦ୍ୱୟ "ଓଁ ଚକ୍ଷୁଶ୍ଚମ ଆପ୍ୟାୟତାଂ" ଏହି ମନ୍ତ୍ର ପଢ଼ି ଚକ୍ଷୁଦ୍ୱୟଂ, "ଓଁ ଶ୍ରୋତ୍ରଂ ଚମ ଆପ୍ୟାୟତାଂ" ଏହି ମନ୍ତ୍ର ପଢ଼ି କର୍ଣ୍ଣଦ୍ୱୟ ସ୍ପର୍ଶ କରିବ । ତତ୍ପରେ "ଯଶୋବଲଂ ଚମ ଆପ୍ୟାୟତାଂ" ଏହି ମନ୍ତ୍ରକୁ ହାତଯୋଡ଼ି ପଢ଼ିବ ।

ତତୋବାମହସ୍ତେ ଭସ୍ମ ଆଦାୟ ଦକ୍ଷିଣହସ୍ତେନ ଲଲାଟେ, ଗ୍ରୀବାୟାଂ ଦକ୍ଷିଣାଂଶେ ହୃଦି ବାମବାହୁମୂଳେ ଚ ନ୍ୟସେତ୍ ॥

**ବ୍ୟାଖ୍ୟା**-ତତ୍ପରେ ବାମହସ୍ତରେ ଭସ୍ମ ଧରି ଦକ୍ଷିଣହସ୍ତ ଦ୍ୱାରା ଭସ୍ମ ନେଇ ନିମ୍ନଲିଖିତ ମନ୍ତ୍ର ପଢ଼ି ଲଲାଟ, ଗ୍ରୀବା, ଦକ୍ଷିଣବାହୁମୂଳ, ହୃଦୟ ଓ ବାମ ବାହୁମୂଳରେ ତିଳକ କରିବ । ମନ୍ତ୍ରୋଯଥା-ଓଁ କଶ୍ୟପସ୍ୟ ତ୍ର୍ୟାୟୁଷଂ ଇତି ଲଲାଟେ । ଓଁ ଯମଦଗ୍ନେ

ସ୍ତ୍ର୍ୟାୟୁଷଂ ଇତି କଣ୍ଠେ । ଓଁ ଯଦ୍ଦେବାନାଂ ତ୍ର୍ୟାୟୁଷଂ ଇତି ବାହ୍ୱୋଃ । ଓଁ ତନ୍ନୋ ଅସ୍ତୁ ତ୍ର୍ୟାୟୁଷଂ ଇତି ହୃଦୟେ । ଇତି ଭସ୍ମ ଗ୍ରହଣଂ ।

## ୩୫୦-ଅଷ୍ଟକୁମ୍ଭ ସ୍ନାନ

ତତଃ ପରିଶ୍ରିତସ୍ୟ (ବସ୍ତ୍ରାଚ୍ଛାଦିତସ୍ୟ) ସମାବର୍ତ୍ତନାଙ୍ଗହୋମ-ସାଧ୍ୟାଗ୍ନେରୁତ୍ତରପ୍ରଦେଶେ କୁଶାନାସ୍ତୀର୍ୟ୍ୟ ତଦୁପରି ପଙ୍‌କ୍ତିଦ୍ୱୟସ୍ଥାପିତାନାଂ ଦକ୍ଷିଣୋତ୍ତରାୟତାନାଂ ଦୂର୍ବାକ୍ଷତଯୁକ୍ତାନାମଷ୍ଟାନାମୁଦକୁମ୍ଭାନାଂ * ପ୍ରାଚ୍ୟାଂ ଦିଶି ପ୍ରାଗଗ୍ରେଷୁ ଆସ୍ତୀର୍ଣ୍ଣେଷୁ କୁଶେଷୁ ବ୍ରହ୍ମଚାରୀ ପ୍ରାଙ୍ମୁଖ ବା ଉଦଂ ମୁଖ ସ୍ତିଷ୍ଠନ୍ନେକସ୍ମାଦକକୁମ୍ଭାତ୍ "ଓଁ ଯେ ଅପ୍‌ସ୍ୱନ୍ତ" ଇତି ମନ୍ତ୍ରେଣ ଉଦକଂ ଗୃହୀତ୍ୱା ତେନୋଦକେନାତ୍ମାନଂ ମନ୍ତ୍ରେଣାଭିଷିଞ୍ଚେତ ।

ବ୍ୟାଖ୍ୟା-ତପ୍ରରେ ବ୍ରହ୍ମଚାରୀ ପୂର୍ବ ବା ଉତ୍ତର ମୁଖ ହୋଇ ବସ୍ତ୍ରଦ୍ୱାରା ବେଷ୍ଟିତ ହୋଥିବା ଯେଉଁ ସମାବର୍ତ୍ତନ ହୋମାଗ୍ନି ତାହାର ଉତ୍ତର ଭାଗରେ ପୂର୍ବକୁ ଆଗ କରି ବିଛା ହୋଇଥିବା କୁଶ ଉପରେ ଦକ୍ଷିଣ ଉତ୍ତର କ୍ରମେ ଦୁଇ ଧାଡ଼ିରେ ସ୍ଥାପିତ ହୋଇଥିବା ଯେଉଁ ଜଳ, ଦୂର୍ବା, ଅକ୍ଷତଯୁକ୍ତ ଆଠଗୋଟି କୁମ୍ଭ ତାହା ମଧ୍ୟରୁ ଉପର ପଂକ୍ତିରେ ଥିବା କୁମ୍ଭ ଚତୁଷ୍ଟୟର ପ୍ରଥମ କୁମ୍ଭରୁ "ଯେ ଅପ୍‌ସ୍ୱନ୍ତ" ଏହି ମନ୍ତ୍ର ପଢ଼ି ଜଳ ଆଣି ତଳଲିଖିତ ସ୍ନାନମନ୍ତ୍ର ପଢ଼ି ସେହି ଜଳକୁ ମସ୍ତକରେ ସେଚନ କରିବ ।୦ ।

କୁମ୍ଭଗ୍ରହଣମନ୍ତ୍ରୋଯଥା-ଓଁ ଯେ ଅପ୍‌ସ୍ୱନ୍ତରଗ୍ନୟଃ ପ୍ରବିଷ୍ଟା ଗୋହ୍ୟ ଉପଗୋହ୍ୟୋ ମୟୁଷୋ +ମନୋହାଃ । ଅସ୍‌ଖଲୋ ବିରୁଜ ସ୍ତନୁ ଦୂଷୁରିନ୍ଦ୍ରିୟହା ସ୍ତାନୁ ବିଜହାମି ଯୋରୋଚନ ସ୍ତମିହ ଗୃହ୍‌ଣାମି । ଇତି ଗୃହୀତ୍ୱା ।୦ ।

ପ୍ରଥମସେଚନମନ୍ତ୍ରୋଯଥା-ଓଁ ତେନ ମା ମଭିଷିଞ୍ଚାମି ଶ୍ରିୟୈ ଯଶସେ ବ୍ରହ୍ମଣେ ବ୍ରହ୍ମବର୍ଚ୍ଚସାୟ । ଇତ୍ୟଭିଷିଞ୍ଚେତ୍ । ପୁନର୍ଯେ ଅପ୍‌ସ୍ୱନ୍ତରିତି ମନ୍ତ୍ରେଣ କ୍ରମାଦ୍ୱିତୀୟାଦିଉଦକୁମ୍ଭାନ୍ ଗୃହୀଣୀୟାତ୍ । ଅଭିଷେକମନ୍ତ୍ରାଭିନ୍ନାଏବ ।

ବ୍ୟାଖ୍ୟା-ପୁନଶ୍ଚ "ଯେ ଅପ୍‌ସ୍ୱନ୍ତ" ଏହି ମନ୍ତ୍ର ପଢ଼ି ସମସ୍ତ କୁମ୍ଭକୁ କ୍ରମେ ଉଠାଉଥିବ; କିନ୍ତୁ ପ୍ରତ୍ୟେକଙ୍କର ଅଭିଷେକମନ୍ତ୍ର ଭିନ୍ନ ଭିନ୍ନ ଅଟେ ।

---

*-ଆମ୍ରାଦିଶୁଭପଲ୍ଲବ ମୁଖାନାମିତି ହରିହରଃ ।

*-ମୟୁଷୋ ଜନ୍ତୁହିଂସକଃ ।



**ଦ୍ୱିତୀୟସେଚନମନ୍ତ୍ରୋଯଥା**-ଓଁ ଯେନ ଶ୍ରିୟ ମକୃଣୁତାଂ ଯେନାବମୃଶତାଂ ସୁରାଂ । ଯେନାକ୍ଷ୍ୟାବଭ୍ୟଷିଞ୍ଚତାଂ ଯଦ୍‌ବା ତଦଗ୍ନିନା ଯଶଃ । ଇତି ଦ୍ୱିତୀୟକୁମ୍ଭାଭିଷେକଃ ।

**ତୃତୀୟସେଚନମନ୍ତ୍ରୋଯଥା**-ଓଁ ଆପୋହିଷ୍ଠା ମୟୋଭୁବ ସ୍ତାନ ଊର୍ଜେ ଦଧାତନ । ମହେରଣାୟ ଚକ୍ଷସେ । ଇତି ତୃତୀୟଃ ।

**ଚତୁର୍ଥସେଚନମନ୍ତ୍ରୋ ଯଥା**-ଓଁ ଯୋବଃ ଶିବତମୋରସ ସ୍ତସ୍ୟ ଭୁଜୟତେ ହନଃ । ଉଶତୀରିବ ମାତରଃ । ଇତି ଚତୁର୍ଥଃ ।

**ପଞ୍ଚମସେଚନମନ୍ତ୍ରୋ ଯଥା**-ଓଁ ତସ୍ମାଅରଙ୍ଗମାମ ବୋୟସ୍ୟ କ୍ଷୟାୟ ଜିନ୍ୱଥ । ଆପୋଜନୟଥାଚନଃ । ଇତି ପଞ୍ଚମଃ ।

**ଷଷ୍ଠସପ୍ତମାଷ୍ଟକୁମ୍ଭସ୍ଥଜଳାନି**- "ଯେ ଅପ୍‌ସ୍ୱନ୍ତ" ଇତି ମନ୍ତ୍ରେଣ ଗୃହୀତ୍ୱା ତୁଷ୍ଣୀ ତ୍ରିବାରମଭିଷିଞ୍ଚେତ୍ ।

**ବ୍ୟାଖ୍ୟା**-ଷଷ୍ଠ, ସପ୍ତମ, ଅଷ୍ଟମ କୁମ୍ଭରୁ "ଯେ ଅପ୍‌ସ୍ୱନ୍ତ" ଏହି ମନ୍ତ୍ର ପଢ଼ି ଜଳ ଗ୍ରହଣ କରିବ କିନ୍ତୁ ବିନା ମନ୍ତ୍ରରେ ସେଚନ କରିବ ।

## ୩୫୧-ମେଖଳାନିଃସାରଣ ମନ୍ତ୍ର

ଓଁ ଉଦୁତ୍ତମଂ ବରୁଣପାଶ ମସ୍ମାଦବାଧମଂ ବିମଧ୍ୟମଙ୍ଂଶ୍ରଥାୟ । ଅଥାବୟ ମାଦିତ୍ୟ ବ୍ରତେ ତବାନାଗସୋଽଦିତୟେ ସ୍ୟାମ । ଇତି ଶିରୋମାର୍ଗେଣ ମେଖଳାଂ ନିଃସାର୍ଯ୍ୟ ଭୂମୌ ପ୍ରକ୍ଷେପଃ । ଦଣ୍ଡମୁତ୍ତରୀୟଂ ଚ ତୁଷ୍ଣୀଂ ଭୂମୌ ନିଦଧ୍ୟାତ୍ ।

**ବ୍ୟଖା**-ଏହି ଉପରୋକ୍ତ ମନ୍ତ୍ର ପଢ଼ି ମସ୍ତକବାଟେ ମେଖଳାକୁ ବାହାର କରି ଆଉ ବିନା ମନ୍ତ୍ରରେ ଦଣ୍ଡ ଓ ଉତ୍ତରୀୟ ବାହାର କରି ଭୂମିରେ ରଖିବ ।

ତତୋଽନ୍ୟଦ୍‌ବାସଃ ପରିଧାୟାଚମ୍ୟ ଆଦିତ୍ୟମୁପତିଷ୍ଠତେ ବ୍ରହ୍ମଚାରୀ ମନ୍ତ୍ରେଣ ।

**ବ୍ୟାଖ୍ୟା**-ତପ୍ରେ ବ୍ରହ୍ମଚାରୀ ଅନ୍ୟ ବସ୍ତ୍ର ପିନ୍ଧି ଆଚମନ କରି ଓ ନିମ୍ନଲିଖିତ ମନ୍ତ୍ର ପଢ଼ି ସୁର୍ଯ୍ୟୋପସ୍ଥାନ (ସୂର୍ଯ୍ୟଙ୍କର ଆରାଧନା) କରିବ ।

## ୩୫୨-ଉପସ୍ଥାନ ମନ୍ତ୍ର

ଓଁ ଉଦ୍ୟେନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋମରୁଭିରସ୍ଥାତ୍ ପ୍ରାତର୍ଯାବଭିରସ୍ଥାଦ୍ଦଶସନିରସିଦଶସନିଂ ମାକୁର୍ବା ବିଦନ୍ନାଗମୟ । ଓଁ ଉଦ୍ୟାନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋ

ମରୁଭିରସ୍ମାଦ୍ଦିବା ଯାବଭିରସ୍ମାଛତସନିରସି ଶତସନିଂ ମାକୁର୍ବା ବିଦନ୍ନାଗମୟ । ଓଁ ଉଦ୍ୟନ୍ ଭ୍ରାଜଭୃଷ୍ଣୁରିନ୍ଦ୍ରୋମରୁଭିରସ୍ଥାତ୍ ସାୟଂ ଯାବଭିରସ୍ଥାତ୍ ସହସ୍ରସନିରସି ସହସ୍ରସନିଂ ମାକୁର୍ବା ବିଦନ୍ନାଗମୟ । ଇତ୍ୟୁପସ୍ଥାନମନ୍ତ୍ରାଃ ।

ତତୋଦଧିତିଲାନ୍ ବା ପ୍ରାଶ୍ୟ ଅବଶିଷ୍ଟଂ ନାପିତେନ ଜଟାସୁ ନିକ୍ଷିପ୍ୟ କ୍ଲେଦୟିତ୍ୱା ଜଟାଲୋମନଖାନାଂ ନିକୃନ୍ତନଂ । ସ୍ନାନଂ । ଔଦୁମ୍ବରକାଷ୍ଠେନ ଦନ୍ତଧାବନଂ ମନ୍ତ୍ରେଣ ।

ବ୍ୟାଖ୍ୟା-ତତ୍ପରେ ବ୍ରହ୍ମଚାରୀ ଦକ୍ଷିଣାହସ୍ତରେ ଦଧି ଓ ତିଳ ଧାରଣ କରି ଖାଇବ । ଅବଶିଷ୍ଟ ତିଳମିଶ୍ରିତ ଦଧିକୁ ନାପିତଦ୍ୱାରା ଜଟାଲୋମ ନଖରେ ଲଗାଇ ଓଦା କରି ଦେଇ ଛେଦନ କରାଇବ ଏବଂ ନିଜେ କାଣିଆଙ୍ଗୁଠି ମୋଟ ଓ ବାର ଆଙ୍ଗୁଳ ଲମ୍ବ ଉଦୁମ୍ବର କାଠରେ ତଳଲିଖିତ ମନ୍ତ୍ର ପଢ଼ି ଦାନ୍ତ ଘଷିବ ।

## ୩୫୩-ଦନ୍ତଧାବନ ମନ୍ତ୍ର *

ଓଁ ଅନ୍ନାଦ୍ୟାୟ ବ୍ୟୂହଧ୍ୱଂ ସୋମୋରାଜାୟମାଗମତ୍ । ସ ମେ ମୁଖଂ ପ୍ରମାର୍ଜ୍ୟତେ ଯଶସା ଚ ଭଗେନ ଚ । ଇତି ।

ତତଃ ସୁଗନ୍ଧିଦ୍ରବ୍ୟେଣୋଦ୍ୱର୍ତ୍ତନଂ ସ୍ନାନଂ ଚ । (ତତ୍ପରେ ସୁଗନ୍ଧିଦ୍ରବ୍ୟ ଦେହରେ ଲଗାଇ ସ୍ନାନ କରିବ ।)

ତତଃ ସାମାନ୍ୟବସ୍ତ୍ରଂ ପରିଧାୟ ଚନ୍ଦନାଦ୍ୟନୁଲେପନଂ ଗୃହୀତ୍ୱା ମୁଖନାସିକୟୋରାଲମ୍ଭନଂ କୁର୍ଯ୍ୟାନ୍ମନ୍ତ୍ରେଣ ।

(ତତ୍ପରେ ସାମାନ୍ୟବସ୍ତ୍ର (କାର୍ପାସାଦିବସ୍ତ୍ର) ପିନ୍ଧି ଚନ୍ଦନ ପ୍ରଭୃତି ସୁଗନ୍ଧ ଦ୍ରବ୍ୟ ଅଙ୍ଗରେ ଅନୁ ଲେପନ କରି ଓ ତଳଲିଖିତ ମନ୍ତ୍ର ପଢ଼ି ମୁଖ ନାସକାଦିର ଆଲମ୍ଭନ (ସ୍ପର୍ଶ) କରିବ ।)

## ୩୫୪-ଆଲମ୍ଭନ ମନ୍ତ୍ର

**ଓଁ ପ୍ରାଣପାନୌ ମେ ତର୍ପୟ, ଚକ୍ଷୁର୍ମେ ତର୍ପୟ, ଶ୍ରୋତ୍ରଂ ମେ ତର୍ପୟ ।ଇତି ।**

**ତତଃ ପାଣିଂ ପ୍ରକ୍ଷାଲ୍ୟ ତଦୂଦକମଞ୍ଜଳିନାଦାୟ ଅପସବ୍ୟୋଦକ୍ଷିଣାଭିମୁଖୋଭୂତ୍ୱା**

---

*୩୫୩-ଦନ୍ତକାଷ୍ଠ ପ୍ରମାଣ ଯଥା-

ଔଦୁମ୍ବରେଣ ଦ୍ୱାଦଶାଙ୍ଗୁଳ ସମ୍ମିତେନ କନିଷ୍ଠିକାଗ୍ରବତ୍ ସ୍ଥୂଳେନ୍ ବ୍ରାହ୍ମଣଃ । ଦଶାଙ୍ଗୁଳେ ରାଜନ୍ୟଃ । ଅଷ୍ଟାଙ୍ଗୁଳେନ ବୈଶ୍ୟଃ । (ହରିହରଃ)



ଦକ୍ଷିଣସ୍ୟାଂ ଦିଶି "ପିତରଃ ଶୁନ୍ଧଧ୍ୱଂ" ମିତ୍ୟନେନ ମନ୍ତ୍ରେଣ ଭୂମୌ ପିତୃତୀର୍ଥେନ ନିକ୍ଷିପେତ୍ ।

ବ୍ୟାଖ୍ୟା-ତନନନ୍ତର ହାତଧୋଇ ଜଳ ଆଙ୍ଗୁଳିଏ ଧରି ଅପସବ୍ୟ ଓ ଦକ୍ଷିଣାଭିମୁଖହୋଇ "ପିତ୍ତରଃ ଶୁନ୍ଧଧ୍ୱଂ" ଏହି ମନ୍ତ୍ର ପଢ଼ି ସେହି ଜଳକୁ* ପିତୃତୀର୍ଥ (ଅଙ୍ଗୁଷ୍ଠର ଓ ତର୍ଜନୀର ମଧ୍ୟସ୍ଥାନ) ବାଟେ ଦକ୍ଷିଣଦିଗରେ ତଳେ ପକାଇଦେବ ।

ତତଃ ସବ୍ୟୋଭୂତ୍ୱା ଉଦକସ୍ପର୍ଶନଂ । (ତଦନ୍ତର ସବ୍ୟହୋଇ ଜଳସ୍ପର୍ଶ କରିବ ।)

ତତୋ ମନ୍ତ୍ରେଣ ଚନ୍ଦନେନାମ୍ନାନମନୁଲିମ୍ପତି । (ପୁନର୍ବାର ଶରୀରରେ ତଳଲିଖିତ ମନ୍ତ୍ର ପଢ଼ି ଚନ୍ଦନ ଲଗାଇବ ।)

## ୩୫୫-ଚନ୍ଦାନାନୁଲେପନ ମନ୍ତ୍ର

**ଓଁ ସୁଚକ୍ଷାହ ମକ୍ଷିଭ୍ୟାଇ ସୁବର୍ଚ୍ଚା ମୁଖେନ । ସୁଶ୍ରୁକର୍ଣ୍ଣାଭ୍ୟାଂ ଭୂୟାସଂ ତତୋଽହତବାସଃପରିଧାନଂ । ଅରଜକ ଧୌତସ୍ୟ ବା ମନ୍ତ୍ରେଣ ।**

(ତତ୍ପରେ ଦଶିଥିବା ନୂତନଲୁଗା ବା ରଜକଛଡ଼ା ଅନ୍ୟଦ୍ୱାରା ଧୂଆ ହୋଇଥିବା ନୂଆଲୁଗା ତଳଲିଖିତ ମନ୍ତ୍ର ପଢ଼ି ପିନ୍ଧିବ ।)

## ୩୫୬-ବସ୍ତ୍ର ପରିଧାନ ମନ୍ତ୍ର

ଓଁ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟୁ ତ୍ୱା ଜରଦଷ୍ଟି ରସ୍ମି । ଶତଂ ଚ ଜୀବାମି ଶରଦଃ ସୁବର୍ଚ୍ଚା * ରାୟସ୍ପୋଷ ମଭିସଂବ୍ୟୟିଷ୍ୟେ । ତତୋ ଦ୍ୱିରାଚମନଂ ।

ଯଜ୍ଞୋପବୀତମନ୍ତ୍ରେଣ ଯଜ୍ଞୋପବୀତଗ୍ରହଣଂ । ଦ୍ୱିରାଚମନଂ । ଉତ୍ତରୀୟବସ୍ତ୍ରଗ୍ରହଣଂ ମନ୍ତ୍ରେଣ । (ତଦନନ୍ତର ଦ୍ୱିରାଚମନ କରି "ଯଜ୍ଞୋପବୀତଂ ପରମଂ ପବିତ୍ରଂ" ଏହି ମନ୍ତ୍ରଦ୍ୱାର ନୂତନ ଯଜ୍ଞୋପବୀତ ଧାରଣ କରିବ । ତତ୍ପରେ ଦ୍ୱିରାଚମନ କରି ତଳଲିଖିତ ମନ୍ତ୍ର ପଢ଼ି ଉତ୍ତରୀୟ ବସ୍ତ୍ର ଗ୍ରହଣ କରିବ ।)

## ୩୫୭-ଉତ୍ତରୀୟ ବସ୍ତ୍ର ଗ୍ରହଣ ମନ୍ତ୍ର

ଓଁ ଯଶସା ମା ଦ୍ୟାବାପୃଥିବୀ ଯଶସେନ୍ଦ୍ରା ବୃହସ୍ପତି । ଯଶୋଭଗଶ୍ଚ ମାବିନ୍ଦଦ୍‌ଯଶୋମାଂ ପ୍ରତିପଦ୍ୟତାଂ । ତତୋଦ୍ୱିରାଚମନଂ ।

---

* ୩୫୪-ପିତୃତୀର୍ଥଲକ୍ଷଣ-ଅନ୍ତରାଙ୍ଗୁଷ୍ଠଦେଶିନ୍ୟୋପିତୃଣାଂ ତୀର୍ଥମୁତ୍ତମଂ ।

* ୩୫୬ସୁବର୍ଚ୍ଚାଃ-ସୁତେଜାଃ । ପୁରୁଚୀରାୟସ୍ପୋଷ ଇତି ପାଠାନ୍ତରଂ । ପୁରୁଚାଃ-ପୁରୁଭିଃ ବଂହୁଭିଃ ପୁତ୍ରଧନାଦିଭିଃ ଉଚଃ ସଂଯୋଗୋଽସ୍ତି ଯସ୍ୟସଃ । (ଜୟରାମଭାଷ୍ୟେ)

କଣ୍ଠେ ପୁଷ୍ପମାଳାଗ୍ରହଣଂ ମନ୍ତ୍ରେଣ । (ତତ୍ପରେ ଦ୍ୱିରାଚମନ କରି ତଳଲିଖିତ ମନ୍ତ୍ର ପଢ଼ି କଣ୍ଠରେ ପୁଷ୍ପମାଳା ଗ୍ରହଣ କରିବ) ।

**ମାଲ୍ୟପୁଷ୍ପଗ୍ରହଣ ମନ୍ତ୍ର**-ଓଁ ଯା ଆହରଜ୍ଜମଦଗ୍ନିଃ ଶ୍ରଦ୍ଧାୟୈ ମେଧାୟୈ କାମାୟେନ୍ଦ୍ରିୟାୟ ତାଅହଂ ପ୍ରତିଗୃହ୍ଣାମି ଯଶସା ଚ * ଭଗେନ ଚ । ତତଃ ଶିରସି ପୁଷ୍ପମାଳାଗ୍ରହଣଂ ମନ୍ତ୍ରେଣ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ମସ୍ତକରେ ପୁଷ୍ପମାଳା ବାନ୍ଧିବ) ।

## ୩୫୮-ଶିରୋମାଲ୍ୟ ଗ୍ରହଣ ମନ୍ତ୍ର

ଓଁ ଯଦ୍ୟଶୋଽପ୍ ସରସା ମିନ୍ଦ୍ରଶ୍ଚକାର ବିପୁଳଂ ପୃଥୁ । ତେନ ସଂଗ୍ରଥିତାଃ ସୁମନସ ଆବଧ୍ନାମି ଯଶୋମୟି ।

ତତୋଧୌତେନ ବାସସା ଉଷ୍ଣୀଷେଣ ମୂର୍ଦ୍ଧାନଂ ବେଷ୍ଟୟତେ । ମନ୍ତ୍ରେଣ ମୁକୁଟ ବନ୍ଧନଂ ଚ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ଧୂଆଲୁଗାର ପାଗ ଓ ମୁକୁଟ ମସ୍ତକରେ ବାନ୍ଧିବ ।)

## ୩୫୯-ଉଷ୍ଣୀଷବନ୍ଧନ ମନ୍ତ୍ର

ଓଁ ଯୁବାସୁବାସାଂ ପରିବୀତ ଆଗାତ୍ ସଉଶ୍ରେୟାନ୍ ଭବତି ଜାୟମାନଃ । ତଂ ଧୀରାସଃ କବୟ ଉନ୍ନୟନ୍ତି ସ୍ୱାଧ୍ୟୋମନସା ଦେବୟନ୍ତଃ ।

ତତଃ କର୍ଣ୍ଣୟୋର୍ଦକ୍ଷିଣବାମକ୍ରମେଣ କୁଣ୍ଡଳଧାରଣଂ କଙ୍କଣମୁଦ୍ରିକାଧାରଣଂ ଚ ମନ୍ତ୍ରେଣ ! (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ଦକ୍ଷିଣ ବାମକ୍ରମରେ କର୍ଣ୍ଣରେ କୁଣ୍ଡଳ ହସ୍ତରେ କଙ୍କଣ ମୁଦ୍ରିକାଦି ଅଳଙ୍କାର ଧାରଣ କରିବ ।)

## ୩୬୦-ଅଳଙ୍କାର ଧାରଣ ମନ୍ତ୍ର

ଓଁ ଅଳଙ୍କରଣମସି ଭୂୟୋଽଳଙ୍କରଣଂ ମେ ଭୂୟାତ୍ । ତତୋଲଲାଟେ ସିନ୍ଦୁରଗ୍ରହଣ ମନ୍ତ୍ରେଣ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ଲଲାଟରେ ସିନ୍ଦୂର ଗ୍ରହଣ କରିବ) ।

## ୩୬୧-ସିନ୍ଦୂର ଗ୍ରହଣ ମନ୍ତ୍ର

ଓଁ ସିନ୍ଧୋରିବ ପ୍ରାଦ୍ଧ୍ୱନେଶୂଘନାସୋ ବାତପ୍ରମିୟଂ ପତୟନ୍ତିୟହ୍ୱାଃ । ଘୃତସ୍ୟଧାରା ଅରୁକ୍ଷୋ ନବାଜୀ କାଷ୍ଠାଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ । ତତଶ୍ଚକ୍ଷୁଷି ଅଞ୍ଜନ ଗ୍ରହଣଂ ମନ୍ତ୍ରେଣ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ପ୍ରଥମେ ବାମଚକ୍ଷୁରେ, ତଦନନ୍ତର ଦକ୍ଷିଣ ଚକ୍ଷୁରେ ପୁନର୍ବାର ସେହି ମନ୍ତ୍ର ପଢ଼ି ଅଞ୍ଜନ ଘେନିବ ।)

---

*-ବଳେନ ଚ ଇତି ପାଠାନ୍ତରଂ ।

 

## ୩୬୨-* ଅଞ୍ଜନ ଗ୍ରହଣ ମନ୍ତ୍ର

ଓଁ ମହୀନାଂ ପାୟାଽସି ବର୍ଚ୍ଚୋଦା ଅସି ବର୍ଚ୍ଚୋମେ ଦେହି ।
ବୃତ୍ରସ୍ୟ କନୀନକୋଽସି ଚକ୍ଷୁର୍ଦା ଆସି ଚକ୍ଷୁର୍ମେ ଦେହି ॥
ତତୋଦର୍ପଣେନ ଆତ୍ମାନଂ ପଶ୍ୟେତ୍ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ଦର୍ପଣରେ ନିଜର ପ୍ରତିବିମ୍ବ ଦେଖିବ ।)

## ୩୬୩-ଦର୍ପଣ ମନ୍ତ୍ର

ଓଁ ରୋଚିଷ୍ଣୁରସୀତ୍ୟନେନ ମନ୍ତ୍ରେଣ ଅଥବା ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ । ହିରଣ୍ୟୟେନ ସବିତା ରଥେନା ଦେବୋ ଯାତି ଭୁବନାନି ପଶ୍ୟନ୍ ।

ତତୋ ମନ୍ତ୍ରେଣ ଛତ୍ରଧାରଣଂ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ସ୍କନ୍ଧରେ ଛତ୍ର ଧାରଣ କରିବ ।)

## ୩୬୪-ଛତ୍ରଧାରଣ ମନ୍ତ୍ର ।

ଓଁ ବୃହସ୍ପତେଶ୍ଛଦିରସି ପାପ୍ମନୋ ମାମନ୍ତର୍ଦ୍ଧେହି । ତେଜସୋଯଶସୋମାଽନ୍ତର୍ଦ୍ଧେହି । ତତଉପାନଦ୍‌ଯୁଗଳେ ପାଦପ୍ରବେଶନଂ ମନ୍ତ୍ରେଣ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ଦୁଇଗୋଡ଼ରେ ଚର୍ମପାଦୁକା ପିନ୍ଧିବ ।)

## ୩୬୫- ଉପାନହ ପିନ୍ଧିବା ମନ୍ତ୍ର

ଓଁ ପ୍ରତିଷ୍ଠେସ୍ଥୋ ବିଶ୍ୱତୋମାପାତଂ । ତତୋ ବୈଣବଦଣ୍ଡଗ୍ରହଣଂ ମନ୍ତ୍ରେଣ । (ତତ୍ପରେ ତଳଲିଖିତ ମନ୍ତ୍ର ପଢ଼ି ବାଉଁଶଦଣ୍ଡ ଗ୍ରହଣ କରିବ ।)

## ୩୬୬- (କ) ବୈଣବଦଣ୍ଡ ଗ୍ରହଣ ମନ୍ତ୍ର

ଓଁ ବିଶ୍ୱେଭ୍ୟୋ ମାନାଷ୍ଟାଭ୍ର ପରିପାହି ସର୍ବତଃ । ତତଃ ପବିତ୍ର ପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବିସର୍ଜନଂ । କର୍ମାଙ୍ଗବ୍ରହ୍ମଣଭୋଜନଂ । ଶାନ୍ତିକରଣଂ । ଅଚ୍ଛିଦ୍ରାବଧାରଣଂ । ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି-ମମ ପୁତ୍ରସ୍ୟାମୁକଦେବ-ଶର୍ମଣୋବଟୋଃ ସମାବର୍ତ୍ତନକର୍ମ ଯକ୍ତଂ ତତ୍‌ସୁକୃତମସ୍ତୁ । ଯନ୍ନ୍ୟନମିତ୍ୟାଦି । ଆଶୀର୍ବାଦାର୍ଥଂ ପୁଣ୍ୟାହବଚାନଂ । (ତଦନନ୍ତର ପବିତ୍ର ବ୍ରହ୍ମା ଓ ଅଗ୍ନିଙ୍କୁ ବିସର୍ଜନ କରିବ ଏବଂ କର୍ମାଙ୍ଗ ବ୍ରାହ୍ମଣ ଭୋଜନ ଉତ୍ସର୍ଗ, ଶାନ୍ତିକରଣ ଓ ଅଚ୍ଛିଦ୍ରା ବରଣ କରି ସମାବର୍ତ୍ତନ କର୍ମ ଶେଷ କରିବ ।)

---

୩୬୨- (ଟି) ପ୍ରଥମେ ବାମ ଚକ୍ଷୁରେ କଜ୍ଜଳ ଘେନିବାର ପ୍ରମାଣ ବାକ୍ୟ-
ବୃତ୍ରସ୍ୟେତ୍ୟ କ୍ଷିଣୀ ଅଙ୍କ୍ତେଽଭ୍ୟଞ୍ଜନୋ ନାଭିନାସିକଂ ।
ସବ୍ୟଂ ପ୍ରଥମ ମିତ୍ୟେବ ଶ୍ରୂୟତେ ବହ୍ୱଚଶ୍ରୁତୌ ॥
ଅତ୍ର ଚ ସବ୍ୟନେତ୍ରଂ ଅଙ୍କ୍ତ୍ୱା ତତୋ ଦକ୍ଷିଣାଞ୍ଜନଂ ମନ୍ତ୍ରାବୃତ୍ତ୍ୟା ।

ବସ୍ତ୍ରାକ୍ଷତପୂପଫଳକପର୍ଦ୍ଦିକାପୁସ୍ତକସମ୍ବଳାନି ଚ ଯତ୍ନାତ୍ ସୁସମ୍ବଧ୍ୟସୁରାଳୟଂ ଚ ଗତ୍ୱା ବିଷବେ ଦତ୍ତ୍ୱା ଗୁଷ୍ଟଃ କିୟଦ୍ଦୂରଗତୋ ବ୍ରହ୍ମଚାରୀ ଟଂ ମାତୁଳାଦିଭିଃ ପ୍ରିୟଜନୈଃ ସାନ୍ତ୍ୱୟିତ୍ୱା ପ୍ରତ୍ୟାବର୍ତ୍ତୟେତ୍ ପିତା ।

ବ୍ୟାଖ୍ୟା-ବସ୍ତ୍ର, ତଣ୍ଡୁଳ, ପିଠା, ନାରିକେଳଫଳ, କଉଡ଼ି ଓ ପୁସ୍ତକ ଏମାନଙ୍କୁ ବ୍ରହ୍ମଚାରୀ ଯତ୍ନରେ ବାନ୍ଧି ଦେବାଳୟକୁ ଯାଇ ସେଠାରେ ଦେବତାଙ୍କୁ ଅର୍ଘ୍ୟଦେଇ ସେଠାରୁ ଗୁଷି କିଛିଦୂର ଚାଲିଯିବ । ତତ୍ପରେ ତାଙ୍କର ପିତା ବ୍ରହ୍ମଚାରୀ ମାମୁଁ ଓ ପ୍ରିୟଲୋକଙ୍କଦ୍ୱାରା ସାନ୍ତ୍ୱନା କରି ଫେରାଇ ଆଣିବେ ।

ତତୋ ବ୍ରହ୍ମଚାରୀ ପ୍ରତ୍ୟାଗତ୍ୟ ବେଦ୍ୟାଂ ମଧୁପର୍କଂ ପ୍ରାଶ୍ନୀୟାତ୍ । (ତଦନନ୍ତର ବ୍ରହ୍ମଚାରୀ ଫେରିଆସି ବେଦୀରେ ବସି ମଧୁପର୍କ ସେବନ କରିବ ।)

ତତୋ ବ୍ରାହ୍ମଣା ବେଦମନ୍ତ୍ରଂ ପଠିତ୍ୱା ଅକ୍ଷତାନ୍ ଅଭିମନ୍ତ୍ର୍ୟ ବଟୋସ୍ତତ୍ ପିତୁଶ୍ଚ ଶିରସି ତାନ୍ୟକ୍ଷତାନି ନିକ୍ଷିପେୟୁ ର୍ମନ୍ତ୍ରେଣ । (ତତ୍ପରେ ବ୍ରାହ୍ମଣମାନେ ବେଦମନ୍ତ୍ର ପଢ଼ି ଅକ୍ଷତ ଅଭିମନ୍ତ୍ରଣ କରି ବ୍ରହ୍ମଚାରୀ ଆଉ ତାଙ୍କ ପିତା ଏ ଉଭୟଙ୍କ ମସ୍ତକରେ ସେହି ମନ୍ତ୍ରିତ ଅକ୍ଷତକୁ ମନ୍ତ୍ର ପଢ଼ି ପକାଇବେ ।)

## ୩୬୬-(ଖ) ବ୍ରହ୍ମଚାରୀ ପ୍ରଭୃତିଙ୍କର ଅକ୍ଷତ ଅଭିମନ୍ତ୍ରଣ ମନ୍ତ୍ର

ବ୍ରହ୍ମଚାରୀର ଯଥା-ଓଁ ବ୍ରତେନ ଦୀକ୍ଷାମାପ୍ନୋତି ଦୀକ୍ଷୟାପ୍ନୋତି ଦକ୍ଷିଣାଂ । ଦକ୍ଷିଣା ଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟମାପ୍ୟତେ । ସ ୟେ ସ ସମ୍ବତ୍ସରାସ୍ତି ମହାବ୍ରତଂ ଚତୁର୍ବିଂଶୋ ମହାବ୍ରତଂ ମହାବ୍ରତ ଏବ ମହାବ୍ରତଇଂହସ୍ମୈତ୍ତଂ ପୂର୍ବଉପୟନ୍ତି ତ୍ରିମହାବ୍ରତଂ ତେ ତେ ତେଜସ୍ୱିନ୍ ଆଶୁଃ ସତ୍ୟବାଦିନଃ ସଂଶିତବ୍ରତା ଅଥ ଯଉହୈର୍ନମପ୍ୟେତର୍ହି ତଥୋପେୟୁର୍ଯଥାମପାତ୍ର ମୁଦକ ମାସିକ୍ତେ ବିମ୍ରିୟେ ଦେବଇଂ ହୈବତେ ବିମ୍ରିୟେୟୁରୁପର୍ଯ୍ୟୁପୟନ୍ତି ତଦୋଷାଇଂ ସତ୍ୟେନ ଶ୍ରମେଣ ତପସା ଶ୍ରଦ୍ଧୟା ଯଜ୍ଞେନାହୁତିଭିରର୍ବର୍ଦ୍ଧ୍ୟଭବତି । ଇତି ବ୍ରହ୍ମଚାର୍ଯ୍ୟକ୍ଷତାଭିମନ୍ତ୍ରଣମନ୍ତ୍ର ।

ବ୍ରହ୍ମଚାରୀ ପିତାର ଯଥା-ଓଁ ବୃହସ୍ପତେ ସବିତର୍ବୋଧୟୈନଂ ସଂଶିତଂ ଚିତ୍ ସନ୍ତରାଗୁଂ ସଂଶିଶାଧି । ବର୍ଦ୍ଧୟୈନଂ ମହତେ ସୌଭାଗାୟ ବିଶ୍ୱ ଏନ ମନୁମଦନ୍ତୁ ଦେବାଃ । ଇତି ବ୍ରହ୍ମଚାରୀପିତୁରକ୍ଷତାଭିମନ୍ତ୍ରଣ ମନ୍ତ୍ରଃ ।

ଇନ୍ଦ୍ରଙ୍କର ଯଥା-ଓଁ ଇନ୍ଦ୍ରଘୋଷସ୍ତ୍ୱାବସୁଭିଃ ପୁରସ୍ତାତ୍ ପାତୁ ପ୍ରଚେତାସ୍ତ୍ୱାରୁଦ୍ରୈଃ ପଶ୍ଚାତ୍ପାତୁ ମନୋଜବାସ୍ତ୍ୱା ପିତୃଭିର୍ଦକ୍ଷିଣତଃ ପାନ୍ତୁ ବିଶ୍ୱକର୍ମା ତ୍ୱାଦିତ୍ୟୈ ରୁତ୍ତରତଃ ପାତ୍ୱିଃଦମହନ୍ତପ୍ତଂ ବାଚହିର୍ଦ୍ଧାରଜ୍ଞାନ୍ନିଃସୃଜାମି । ଇତିଇନ୍ଦ୍ରସ୍ୟାକ୍ଷତାଭିମନ୍ତ୍ରଣମନ୍ତ୍ରଃ ।



ରାଜାଙ୍କର ଯଥା-ଓଁ ଆୟୁଷ୍ୟଂ ବର୍ଚ୍ଚସ୍ୟଂ ରାୟସ୍ପୋଷ ମୌଭିଦଂ । ଇଦଂ ହିରଣ୍ୟଂ ବର୍ଚ୍ଚସ୍ୱ ଜୈତ୍ରାୟାବିଶତାଦୁମାଂ । ନ ତଦ୍ରକ୍ଷାଂସି ନ ପିଶାଚାସ୍ତରନ୍ତି ଦେବାନାମୋଜଃ ପ୍ରଥମଜଙ୍ଗଂ ହ୍ୟେତତ୍ ଯୋ ବିଭର୍ତ୍ତି ଦାୟାୟଣଂ ହିରଣ୍ୟଂ ସଦେବେଷ୍ଣୁ କୃଣୁତେ ଦୀର୍ଘମାୟୁଃ ସ ମନୁଷ୍ୟେଷକୃଣୁତେ ଦୀର୍ଘମାୟୁଃ ॥ ଦୀର୍ଘାୟୁତ୍ୱାୟ ବଳାୟ ବର୍ଚ୍ଚସେ । ସୁପ୍ରକାସ୍ତ୍ୱାୟ ଚାସା ଅଥୋଜୀବ ଶରଦଃ ଶତଂ । ଅଥ ହରିଣ୍ୟ ମଭ୍ୟ ବରୋହୟାୟୁର୍ବା ମୃତଙ୍ଗଂ ହିରଣ୍ୟମାୟୁଙ୍ଗଂ ସୈ୍ୟବୈ ତଦମୃତେଽନ୍ତତଃ ପ୍ରତିତିଷ୍ଠତି ଦୀର୍ଘାୟୁବଃ ମାସାସ୍ତା ସଜୀବ ସ୍ୱଦ୍ତରୋତ୍ତରାଦେବ ଲଜ୍ୟା ତଦୁତ୍ତରଂ ପ୍ରତ୍ୟକ୍ଷଂ ଦୀର୍ଘାୟୁତ୍ୱଂ । ଇତି ରାଜାକ୍ଷତାଭିମନ୍ତ୍ରଣମନ୍ତ୍ର ।

ସ୍ତ୍ରୀମାନଙ୍କର ଯଥା-ଓଁ ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚପତ୍ନ୍ୟା ଅହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇଷ୍ଣନ୍ନିଷାଣା ମୂମ୍ମଇଷାଣ ସର୍ବଲୋକଂ ମଇଷାଣ । ଇତି ସ୍ତ୍ରୀଣାମକ୍ଷତାଭିମନ୍ତ୍ରଣମନ୍ତ୍ର ।

ଆର୍ଶୀର୍ବାଦମନ୍ତ୍ରୋ ଯଥା-ଓଁ ଦୀର୍ଘାୟୁରପ୍ରତିହତୋବଳବୀର୍ଯ୍ୟସମନ୍ୱିତଃ । ପୁତ୍ରପୌତ୍ରଧନୈଶ୍ୱର୍ଯ୍ୟଯୁକ୍ତୋବସ୍ୱ ନରୋତ୍ତମଃ । ଧନଂ ଧାନ୍ୟଂ ଧରା ଧର୍ମଂ କୀର୍ତ୍ତିମାୟୁର୍ଯ୍ୟଶଃ ଶ୍ରିୟଂ ତୁରଗାନ୍ ଦନ୍ତିନଃ ପ୍ରତ୍ରାନ୍ ମହାଲକ୍ଷ୍ମୀ ପ୍ରୟଚ୍ଛତୁ । ଅଷ୍ଟୋତ୍ତରଶତସମ୍ୱସ୍ରୋଽସ୍ତୁ ମାର୍କଣ୍ଡେୟଚିରଜୀବିତୋଽସ୍ତୁ । ଇତ୍ୟାଶୀର୍ବାଦମନ୍ତ୍ରଃ ପୁରୁଷାଣାଂ ।

ସୁଲକ୍ଷଣା ସୌଭାଗ୍ୟବତୀ ଭବ ଅଷ୍ଟପୁତ୍ରିକା ଭବ । ସ୍ୱାମୀପ୍ରିୟା ଭବ ଇତି ସ୍ତ୍ରୀଣାଂ ଆଶୀର୍ବାଦ ମନ୍ତ୍ରଃ ।

ତସ୍ୟୋପରି ଦୁର୍ବାକ୍ଷତଂ ପ୍ରକ୍ଷିପ୍ୟ ଜ୍ୱଳତ୍ପ୍ରଦୀପେନନୀରାଜନଂ କୃତ୍ୱା ବନ୍ଧୁବର୍ଗୈଃ ସହ ବ୍ରହ୍ମଚାରୀଣଂ ଭୋଜୟେତ୍ ସ୍ୱୟଂ ଭୁଞ୍ଜିତ ।

ବ୍ୟାଖ୍ୟା-ତଦନନ୍ତର ଆଚାର୍ଯ୍ୟ ବ୍ରହ୍ମଚାରୀ ଉପରେ ଦୁର୍ବାକ୍ଷତ ପକାଇ ପ୍ରଦୀପ୍ତ ଦୀପଦ୍ୱାରା ବନ୍ଦାପନା କରିବେ ଏବଂ ବନ୍ଧୁଗଣ ସହିତ ବ୍ରହ୍ମଚାରୀକୁ ଭୋଜନ କରାଇ ନିଜେ ଭୋଜନ କରିବେ ।

ଇତି ସମାବର୍ତ୍ତନକର୍ମ ସମାପ୍ତଂ ।

ଇତି ଦଶକର୍ମପଦ୍ଧତି ।

-୦-

# ଅଥ ବିବାହପଦ୍ଧତିଃ

## ୩୬୭-ବିବାହରେ କନ୍ୟାର ବୟସ ନିର୍ଣ୍ଣୟ

ଅଷ୍ଟ ବର୍ଷା ଭବେତ୍ ଗୌରୀ ନବବର୍ଷା ତୁ ରୋହିଣୀ ।
ଦଶବର୍ଷା ଭବେତ୍କନ୍ୟା ଅତଉର୍ଦ୍ଧ୍ୱଂ ରଜସ୍ୱଲା ।୧ । (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ଆଠବର୍ଷ କନ୍ୟାକୁ ଗୌରୀ, ନବବର୍ଷ କନ୍ୟାକୁ ରୋହିଣୀ ଓ ଦଶବର୍ଷ କନ୍ୟାକୁ କନ୍ୟା କୁହାଯାଏ । ଏଥିରୁ ଉର୍ଦ୍ଧ୍ୱ ହେଲେ ତାହାକୁ ରଜସ୍ୱଲା କହନ୍ତି ।୧ ।

ଦଶମେଽନଗ୍ନିକା ବା ସ୍ୟାଦ୍ୱାଦଶେ ବୃଷଲୀ ସ୍ମୃତା ।
ଅପରା ବୃଷଲୀ ଜ୍ଞେୟା କୁମାରୀ ଯା ରଜସ୍ୱଲା ।୨ । (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ପୂର୍ଣ୍ଣ ଦଶବର୍ଷିୟା କନ୍ୟାକୁ ଅନଗ୍ନିତା । (ପ୍ରାପ୍ତବୟସ୍କା) ବାରବର୍ଷର କନ୍ୟାକୁ ବୃଷଲୀ ଏବଂ ରାଜସ୍ୱଲା କନ୍ୟାକୁ ମଧ୍ୟ ବୃଷଲୀ କହନ୍ତି । ୨ ।

ବର୍ଷୈରେକଗୁଣାଂ ଭାର୍ଯ୍ୟାମୁଦ୍ ବହେତ୍ତ୍ରି ଗୁଣଃ ସ୍ୱୟଂ ।
ତସ୍ମାଦୁଦ୍ ବାହାୟେତ୍କନ୍ୟାଂ ଯାବନ୍ନର୍ତୁମତୀ ଭବେତ୍ । ୩ ।
ଜ୍ୟେଷ୍ଠୋ ଭ୍ରାତା ପିତା ମାତା ଦୃଷ୍ଟ୍ୱା କନ୍ୟାଂ ରଜସ୍ୱଲାଂ ।
ତ୍ରୟସ୍ତେ ନରକଂ ଯାନ୍ତି ସ୍ୱୟମିତ୍ୟବ୍ରବୀଦ୍ ଯମଃ ।୪ ।
ଯସ୍ତ୍ୱାଂ ବିବାହୟେତ୍କନ୍ୟାଂ ବ୍ରାହ୍ମଣୋ ମଦମୋହିତଃ ।
ଅସ୍ତଂ ଭାଷ୍ୟୋହ୍ୟପାଙ୍କ୍ତେୟଃ ସବିପ୍ରୋ ବୃଷଲୀପତି ।୫ ।
(ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ବରର ବୟସ କନ୍ୟାର ବୟସର ତିନିଗୁଣ (ଅର୍ଥାତ୍ ଦଶବର୍ଷର କନ୍ୟାକୁ ତିରିଶବର୍ଷର ବର ହେବ) ଯେ ପର୍ଯ୍ୟନ୍ତ କନ୍ୟା ରଜସ୍ୱଲା ନ ହୋଇଥାଏ ସେ ପର୍ଯ୍ୟନ୍ତ ବିବାହର ଯୋଗ୍ୟ; କିନ୍ତୁ ରଜସ୍ୱଲା ହେଲେ ସେ କନ୍ୟା ବୃଷଲୀ ବୋଲାଏ, ତାହାର ଜ୍ୟେଷ୍ଠ ଭ୍ରାତା, ପିତା ଓ ମାତା ଏମାନେ ତାହାକୁ ଦେଖିଲେ ନରକଗାମୀ ହୁଅନ୍ତି । ଯେଉଁ ବ୍ରାହ୍ମଣ ମଦମୋହିତ (କାମାନ୍ଧ) ହୋଇ ରଜସ୍ୱଲା କନ୍ୟାକୁ ବିବାହ କରେ ସେ ପତିତ ଓ ବୃଷଲୀପତି ବୋଲାଏ । (୩।୪।୫)

ତସ୍ମାତ୍ସମ୍ବତ୍ସରେ ପ୍ରାପ୍ତେ ଦଶମେ କନ୍ୟାକୋ ବୁଧୈଃ ।
ପ୍ରଦାତବ୍ୟା ପ୍ରଯତ୍ନେନ ନ ଦୋଷଃ କାଳଦୋଷଜଃ ।୬ ।
(ଗଦାଧର ଭାଷ୍ୟେ)

ବ୍ୟାଖ୍ୟା-ଅତଏବ ଦଶବର୍ଷ ପ୍ରବେଶମାତ୍ରେ କାଳଦୋଷ ବିଚାର ନ କରି ବିବାହ କରିଦେବ ।୬ ।



**ଅଯୁଗ୍ମେ ଦୁର୍ଭାଗା ନାରୀ ଯୁଗ୍ମେ ଚ ବିଧବା ଭବେତ୍ ।**
**ତସ୍ମାଦ୍ ଗର୍ଭାନ୍ୱିତେ ଯୁଗ୍ମେ ବିବାହେ ସା ପତିବ୍ରତା ।୭ । (ରାଜମାର୍ତ୍ତଣ୍ଡେ)**

ବ୍ୟାଖ୍ୟା-ଅଯୁଗ୍ମ (ଅର୍ଥାତ୍ ଜନ୍ମଠାରୁ ସାତ, ନଅବର୍ଷ ଆଦି) ବର୍ଷରେ ବିବାହ କଲେ କନ୍ୟା ଦୁର୍ଭଗା ହୁଏ । ଯୁଗ୍ମ (ଅର୍ଥାତ୍ ଜନ୍ମଠାରୁ ଆଠ, ଦଶବର୍ଷ ଆଦି) ବର୍ଷରେ ବିବାହ କଲେ କନ୍ୟା ବିଧବା ହୁଏ । କିନ୍ତୁ ଗର୍ଭ ସହିତ ଯୁଗ୍ମବର୍ଷରେ ବିବାହ କଲେ ନାରୀ ପତିବ୍ରତା ହୁଏ ।୭ ।

**ସପ୍ତସମ୍ୱତ୍ସରାଦୂର୍ଦ୍ଧ୍ୱଂ ବିବାହଃ ସାର୍ବବର୍ଣ୍ଣିକାଃ ।**
**କନ୍ୟାୟାଃ ଶସ୍ୟତେ ରାଜନ୍ ନାନ୍ୟଥା ଧର୍ମଗର୍ହିତଃ ।୮ । (ସ୍ମୃତିସାରେ)**

ବ୍ୟାଖ୍ୟା-ହେ ରାଜନ୍! ସବୁ ଜାତିରେ ସାତବର୍ଷରୁ ଊର୍ଦ୍ଧ୍ୱ କନ୍ୟା ବିବାହ ଦେବା ପ୍ରଶସ୍ତକାଳ, ଏଥିରୁ ଅନ୍ୟଥା ହେଲେ ଧର୍ମବିରୁଦ୍ଧ ହୁଏ ।୮ ।

## ୩୬୮-କନ୍ୟାଦୋଷ ବର୍ଣ୍ଣନ

**ମହାନ୍ତ୍ୟପି ସମୃଦ୍ଧାନି ଗୋଽଜାବିଧନଧାନ୍ୟତଃ ।**
**ସ୍ତ୍ରୀସମ୍ୱନ୍ଧେ ଦଶୈତାନି କୁଳାନି ପରିବର୍ଜୟେତ୍ ।୧ । (ମନୁଃ)**

ବ୍ୟାଖ୍ୟା-ତଳଲିଖିତ ଦଶଗୋଟି କୁଳ ଯଦିଚ ଗୋରୁ, ଛାଗ, ମେଷ, ଧନ, ଧାନ୍ୟାଦିଦ୍ୱାରା ଅତିଶୟ ସମ୍ପତ୍ତିଶାଳୀ ଓ ମହାବଂଶଜ ହୁଅନ୍ତି ତେବେ ସୁଦ୍ଧା ତାଙ୍କ ଘରୁ କନ୍ୟା ଗ୍ରହଣ କରିବ ନାହିଁ । ଦଶଗୋଟି କୁଳ ଯଥା-

**ହୀନକ୍ରିୟଂ ନିଷ୍ପୁରୁଷଂ ନିଶ୍ଛନ୍ଦୋରୋମଶାର୍ଶସଂ ।**
**କ୍ଷୟ୍ୟାମୟାବ୍ୟପସ୍ମାରୀ ଶ୍ୱିତ୍ରିକୁଷ୍ଠିକୁଳାନି ଚ ।୨ । (ମନୁଃ)**

ବ୍ୟାଖ୍ୟା-(୧) ହୀନକ୍ରିୟା (ଯେଉଁ କୁଳରେ ଗର୍ଭାଧାନାଦି ସଂସ୍କାର ହୁଏ ନାହିଁ), (୨) ନିଷ୍ପୁରୁଷ (ଯେଉଁ ବଂଶରେ ପୁତ୍ରଜାତ ନ ହୋଇ କେବଳ କନ୍ୟାଜାତ ହେଉଥାଏ), (୩) ନିଶ୍ଛନ୍ଦ (ଯେଉଁ ବଂଶ ବେଦବିଦ୍ୟାବିହୀନ), ୪ ରୋମଶ (ଯେଉଁ ବଂଶରେ ସମସ୍ତେ ବହୁ ଲୋମଯୁକ୍ତ), (୫) ଅର୍ଶୀ (ଯେଉଁବଂଶରେ ଅର୍ଶରୋଗ ଥାଏ), (୬) କ୍ଷୟୀ (ଯେଉଁ ବଂଶରେ ରାଜଯକ୍ଷ୍ମା ରୋଗ ଥାଏ), (୭) ଆମୟାବୀ (ଯେଉଁ ବଂଶରେ ଆମରୋଗ ଥାଏ), (୮) ଅପସ୍ମାରୀ (ଯେଉଁ ବଂଶରେ ଅପସ୍ମାର ରୋଗ ଥାଏ), (୯) ଶ୍ୱିତ୍ରୀ (ଯେଉଁ ବଂଶରେ ଧବଳ କୁଷ୍ଠରୋଗ ଥାଏ), (୧୦) କୁଷ୍ଠୀ (ଯେଉଁ ବଂଶରେ କୁଷ୍ଠରୋଗ ଥାଏ), ଏହି ଦଶପ୍ରକାର ବଂଶରୁ କନ୍ୟା ଆଣିବ ନାହିଁ ।୨ ।

---

*-ଜନ୍ମଠାରୁ ସାତବର୍ଷ, ତହିଁରେ ଗର୍ଭ ଦଶମାସ ମିଶାଇଲେ ଗର୍ଭାନ୍ୱିତ ଯୁଗ୍ମବର୍ଷ ହୁଏ ।

ନୋଦ୍‌ବହେତ୍‌କପିଳାଂ କନ୍ୟାଂ ନାଧିକାଙ୍ଗୀନଂ ନ ରୋଗିଣୀଂ ।
ନାଲୋମିକାଂ ନାତିଲୋମାଂ ନ ବାଚାଟାଂ ନ ପିଙ୍ଗଳାଂ ।୩ । (ମନୁ)

ବ୍ୟାଖ୍ୟା-ଯେ କନ୍ୟା ପିଙ୍ଗଳକେଶୀ, ଅଧିକାଙ୍ଗୀ (ଛଅଆଙ୍ଗୁଳି ପ୍ରଭୃତି), ଚିରରୋଗିଣୀ, ଲୋମରହିତା, ଅତି, ଲୋମଯୁକ୍ତା, କଟୂଭାଷିଣୀ ଓ ପିଙ୍ଗଳାକ୍ଷୀ ହୋଇଥିବ ଏପରି କୌଣସି ଏକଦୋଷଯୁକ୍ତା କନ୍ୟାକୁ ମଧ୍ୟ ବିବାହ କରିବ ନାହିଁ ।୩ ।

ନର୍କ୍ଷବୃକ୍ଷନଦୀନାମ୍ନୀଂ ନାନ୍ତ୍ୟପର୍ବତନାମିକାଂ ।
ନ ପକ୍ଷ୍ୟହିପ୍ରେଷ୍ୟନାମ୍ନୀ ନ ଚ ଭୀଷଣନାମିକାଂ ।୪ । (ମନୁଃ)

ବ୍ୟାଖ୍ୟା-ଯେଉଁ କନ୍ୟା ନାମ-ନକ୍ଷତ୍ର (ଚିତ୍ରାଆଦି), ବୃକ୍ଷ (ନିମ୍ବାଦି), ନଦୀ (ଗଣ୍ଡୁକୀଆଦି), ମ୍ଲେଛା (ବର୍ବରୀଆଦି), ପର୍ବତା (ବିନ୍ଧ୍ୟଆଦି), ପକ୍ଷୀ (ପେଚକୀ ଆଦି), ସର୍ପ (ଭୁଜଙ୍ଗୀଆଦି), ପ୍ରେକ୍ଷ୍ୟ (ଦୂତୀଚେଟୀଆଦି) ଏବଂ ଭୟଙ୍କର (ଡାକିନୀ ଭୈରବୀ ଓ ଚାମୁଣ୍ଡା ଆଦି) ହୋଇଥିବ ଏରୂପ କନ୍ୟା ବିବାହ କରିବ ନାହିଁ ।୪ ।

ନର୍ମଦା ଯମୁନା ଗଙ୍ଗା ଗୋମତୀ ଚ ସରସ୍ୱତୀ ।
ନଦୀଷ୍ୱାସାଂ ନାମବୃକ୍ଷେ ମାଳତୀ ତୁଳସୀ ଅପି ।
ରେବତୀ ଚାଶ୍ୱିନୀ ଭେଷୁ ରୋହିଣୀ ଶୁଭଦା ଭବେତ୍ ।୫ ।
(ମତ୍ସ୍ୟସୂକ୍ତେ)

ବ୍ୟାଖ୍ୟା-କିନ୍ତୁ ନଦୀମାନଙ୍କ ମଧ୍ୟରେ ନର୍ମଦା, ଗଙ୍ଗା, ଯମୁନା ଓ ସରସ୍ୱତୀ, ବୃକ୍ଷମାନଙ୍କ ମଧ୍ୟରେ ତୁଳସୀ, ମାଳତୀ ଓ ନକ୍ଷତ୍ରମାନଙ୍କ ମଧ୍ୟରେ ରେବତୀ, ଅଶ୍ୱିନୀ ଓ ରୋହିଣୀ ନାମ ଶୁଭଦାୟକ ଅଟେ, ଅତଏବ ଏ ରୂପ ନାମଯକ୍ତା କନ୍ୟା ବିବାହ କରିବ ।

ଯସ୍ୟାସ୍ତୁ ନ ଭବେଦ୍‌ଭ୍ରାତା ନ ବିଜ୍ଞାୟେତ୍ ବା ପିତା ।
ନୋପଯଚ୍ଛେତ ତାଂ ପ୍ରାଜ୍ଞ *ପୁତ୍ରିକାଧର୍ମଶଙ୍କୟା ।୬ । (ମନୁଃ)

ବ୍ୟାଖ୍ୟା-ଯେଉଁ କନ୍ୟାର ଭାଇ ନାହିଁ ତାହାକୁ ପୁତ୍ରିକା ଅର୍ଥାତ୍ ଏହି କନ୍ୟାର ପ୍ରଥମ ଗର୍ଭଜାତ ପୁତ୍ରଦ୍ୱାରା ମାତୃକୁଳର ସପିଣ୍ଡାଦି କର୍ମ ହେବ ଓ ପିତୃ କୁଳର

---

*-ଅଭ୍ରାତୃକାଂ ପ୍ରଦାସ୍ୟାମି ତୁଭ୍ୟଂ କନ୍ୟାମଳଂ କୃତାଂ ।
ତସ୍ୟାଂ ଯୋ ଜାୟତେ ପୁତ୍ରଃ ସ ମେ ପୁତ୍ରୋଭବିଷ୍ୟତି ॥

ବ୍ୟାଖ୍ୟା-ଅଭ୍ରାତୃକ କନ୍ୟାର ପିତା କନ୍ୟାକୁ ପ୍ରଦାନ କରିବା ସମୟରେ ବରକୁ କହିଥାଏ କି, ଏହାର ଗର୍ଭରେ ଯେଉଁ ପୁତ୍ର ଜନ୍ମିବ ସେ ମୋହର ପୁତ୍ର ହେବ ।



ହେବ ନାହିଁ । ଏହି ଆଶଙ୍କାରେ ବିବାହ କରିବ ନାହିଁ ଏବଂ ଯାହାର ପିତାର ବୃତ୍ତାନ୍ତ ଜଣାଯାଏ ନାହିଁ ଏରୂପ କନ୍ୟାକୁ ଅଧର୍ମ ଅର୍ଥାତ୍ ଜାରଜ ଆଶଙ୍କାରେ ବିବାହ କରିବ ନାହିଁ ।

**ଧୃଷ୍ଟା କୁଦନ୍ତା ଯଦି ପିଙ୍ଗଳାକ୍ଷୀ ଲୋମ୍ନା ସମାକୀର୍ଣ୍ଣସମାଙ୍ଗଯଷ୍ଟିଃ ।**
**ମଧ୍ୟେ ସୁପୁଷ୍ଟା ଯଦି ରାଜକନ୍ୟା କୁଳେନ ଯୋଗ୍ୟା ନ ବିବାହନୀୟା ।୭ ।**
**(ଜ୍ୟୋତିସ୍ତତ୍ତ୍ୱେ)**

ବ୍ୟାଖ୍ୟା-ଯେଉଁ କନ୍ୟାର ଲଜ୍ଜା ନାହିଁ ଏବଂ ସ୍ୱଭାବ ଅତି ଉଗ୍ର, ଦନ୍ତ ଅସୁନ୍ଦର, ଚକ୍ଷୁ ପିଙ୍ଗଳବର୍ଣ୍ଣ, ସର୍ବାଙ୍ଗ ଲୋମଯୁକ୍ତ ଓ କଟିଦେଶ ସ୍ଥୂଳ, ଏପରି କନ୍ୟା ରାଜାଘରେ କିମ୍ବା ଉଚ୍ଚ କୁଳରେ ଜନ୍ମ ହେଲେ ସୁଦ୍ଧା ବିବାହ କରିବ ନାହିଁ ।୭ ।

## ୩୬୯-କନ୍ୟାର ଗୁଣବର୍ଣ୍ଣନ

**ଗୁରୁଣାନୁମତଃ ସ୍ନାତ୍ୱା ସମାବୃତ୍ତୋ ଯଥାବିଧି ।**
**ଉଦ୍‌ବହେତ୍ ଦ୍ୱିଜୋଭାର୍ଯ୍ୟାଂ ସବର୍ଣ୍ଣାଂ ଲକ୍ଷଣାନ୍ୱିତାଂ ।୧ । (ମନୁଃ)**

ବ୍ୟାଖ୍ୟା-ସମାବର୍ତ୍ତନ ପରେ ଦ୍ୱିଜାତିମାନେ ଗୁରୁଙ୍କ ଅନୁମତି ନେଇ ବିଧି ଅନୁସାରେ ସ୍ନାନକର୍ମ ଶେଷ କରି ସ୍ୱଜାତୀୟ ସୁଲକ୍ଷଣା କନ୍ୟାକୁ ବିବାହ କରିବେ ।୧ ।

**ଶ୍ୟାମା ସୁକେଶୀ ତନୁଲୋମରାଜୀ ସୁଭ୍ରୂଃ ସୁଶୀଳା ସୁଗତିଃ ସୁଦନ୍ତା ।**
**ବେଦୀବିମଧ୍ୟା ଯଦି ପଙ୍କଜାକ୍ଷୀ କୁଳେନ ହୀନାପି ବିବାହନୀୟା ।୨ ।**
**(ଜ୍ୟୋତିସ୍ତତ୍ତ୍ୱେ)**

ବ୍ୟାଖ୍ୟା-ଯେଉଁ କନ୍ୟା * (୧) ଶ୍ୟାମା (ବର୍ଣ୍ଣ ସୁବର୍ଣ୍ଣ ପରି), ଯାହାର କେଶ ଅତି ଉତ୍ତମ , ଦେହ ଅଳ୍ପ ଲୋମଯୁକ୍ତ, ଭ୍ରୂଲତା ଅତି ସୁନ୍ଦର, ଚରିତ୍ର ଅତି ଉତ୍କୃଷ୍ଟ, ଗମନ ମନୋହର, ଦାନ୍ତ ସୁନ୍ଦର, କଟୀ ଡମ୍ବରୁ ତୁଲ୍ୟ ଓ ନୟନ ପଦ୍ମତୁଲ୍ୟ, ଏପରି ସୁଲକ୍ଷଣା କନ୍ୟା ହୀନକୁଳରେ ଜନ୍ମ ହେଲେ ସୁଦ୍ଧା ବିବାହ କରିବ ।୨ ।

**ଅନନ୍ୟପୂର୍ବିକାଂ କାନ୍ତାମସପିଣ୍ଡାଂ ଯବୀୟସୀଂ ।**
**ଅରୋଗିଣୀଂ ଭ୍ରାତୃମତୀସମାନାର୍ଷଗୋତ୍ରଜାଂ ।୩ । (ଯାଜ୍ଞବଲ୍କ୍ୟଃ)**

---

* (୧) ଶୀତକାଳେ ଭବେଦୁଷ୍ଣା ଉଷ୍ଣକାଳେ ଚ ଶୀତଳା ।
*ତପ୍ତକାଞ୍ଚନବର୍ଣ୍ଣାଭା ସା ଶ୍ୟାମା ପରିକୀର୍ତ୍ତିତା ।। (ପ୍ରକୃତିବାଦେ)

ବ୍ୟାଖ୍ୟା- * (୧) ଅନନ୍ୟପୁର୍ବିକା (ଯେ କି ପୁନର୍ଭୂ ଅର୍ଥାତ୍ ଯାହାର କି ପୁର୍ବରୁ କାହାର ସହିତ ସମ୍ବନ୍ଧ ହୋଇ ନ ଥିବ), ସୁନ୍ଦରୀ, (୨) ଅସପିଣ୍ଡା (ସପିଣ୍ଡା ହୋଇ ନଥିବ), ଯବୀୟସା (ବରଠାରୁ ବପୁରେ ଓ ବୟସରେ ଛୋଟ ହୋଇଥିବ), (୩) ଅରୋଗିଣୀ (ରୋଗଶୂନ୍ୟା), (୪) ଭ୍ରାତୃମତୀ (ଯେଉଁ କନ୍ୟାର ଭାଇ ଥିବ), (୫) ଅସମାନାର୍ଷ ଗୋତ୍ରଜା (ଋଷି ପ୍ରବର ଓ ଗୋତ୍ର ସମାନ ହୋଇ ନ ଥିବ), ଏପରି କନ୍ୟା ବିବାହଯୋଗ୍ୟ ଅଟେ ।୩ ।

## ୩୭୦-ସାପିଣ୍ଡ୍ୟରେ ବିବାହ ନିଷେଧ ବାକ୍ୟ

ଅସପିଣ୍ଡା ଚ ଯା ମାତୁରସଗୋତ୍ରା ଚ ଯା ପିତୁଃ ।
ସା ପ୍ରଶସ୍ତା ଦ୍ୱିଜାତୀନାଂ ଦାରକର୍ମଣି ମୈଥୁନେ ।୧ । (ମନୁଃ)

ବ୍ୟାଖ୍ୟା-ଯେଉଁ କନ୍ୟା ମାତାର * ଅସପିଣ୍ଡା ଏବଂ ପିତାର ସଗୋତ୍ରା ନୁହେ ସେପରି କନ୍ୟା ଦ୍ୱିଜାତିଙ୍କର ବିବାହଯୋଗ୍ୟ ହୁଏ ।

---

* ୩୬୯ (୧) ପୁନର୍ଭୂ ବର୍ଣ୍ଣନ-

ବାଗ୍‌ଦତ୍ତା ବା ମନୋଦତ୍ତା କୃତକୌତୁକମଙ୍ଗଳା ।
ଉଦକସ୍ପର୍ଶିତା ଯା ଚ ଯା ଚ ପାଣିଗ୍ରହୀତିକା ॥
ଅଗ୍ନିଂ ପରିଗତା ଯା ଚ ପୁନର୍ଭୂପ୍ରଭବା ଚ ଯା ।
ଇତ୍ୟେତାଃ କାଶ୍ୟପେନୋକ୍ତା ଦହନ୍ତି କୁଳମଗ୍ନିବତ୍ ॥
(ଉଦବାହତତ୍ତ୍ୱେ)

ବ୍ୟାଖ୍ୟା-(୧) ବାଗ୍‌ଦତ୍ତା (ବାକ୍ୟରେ ଦତ୍ତ ହୋଇଥିବା), (୨) ମନୋଦତ୍ତା (ମନରେ ଦତ୍ତ ହୋଇଥିବା), (୩) କୃତକୌତୁକମଙ୍ଗଳା (କୌତୁକସୂତ୍ର ବନ୍ଧା ହୋଇଥିବା), (୪) ଉଦକସ୍ପର୍ଶିତା (ଜଳଦ୍ୱାରା ଉତ୍ସର୍ଗ ହୋଇଥିବା), (୫) ପାଣିଗ୍ରହୀତିକା (ହାତଗଣ୍ଠି ପଡ଼ିଥିବା), (୬) ଅଗ୍ନିଂ ପରିଗତା (ସପ୍ତପଦୀ ହୋଇଥିବା), (୭) ପୁନର୍ଭୁପ୍ରଭାବା (ଉପରଲିଖିତ ୬ ଗୋଟି ପୁନର୍ଭୂଙ୍କଠାରୁ ଜାତ ହୋଇଥିବା କନ୍ୟା), କାଶ୍ୟପ କହିଅଛନ୍ତି ଏହିପରି ସାତପ୍ରକାର କନ୍ୟା କୁଳକୁ ଅଗ୍ନିତୁଲ୍ୟ ଦଗ୍ଧ କରନ୍ତି ।

* ୩୭୦ ସାପିଣ୍ଡ୍ୟ ବର୍ଣ୍ଣନ-

ଲେପଭାଜଶ୍ଚତୁର୍ଥାଦ୍ୟାଃ ପିତ୍ରାଦ୍ୟାଃ ପିଣ୍ଡଭାଗିନଃ ।
ପିଣ୍ଡଦଃ ସପ୍ତମସ୍ତେଷାଂ ସାପିଣ୍ଡ୍ୟଂ ସାପ୍ତପୌରୁଷଂ ॥ (ମତ୍ସ୍ୟପୁରାଣେ)
ସପ୍ତୋର୍ଦ୍ଧ୍ୱତ୍ରୟଃ ସୋଦକାଃ । ତଦୂର୍ଦ୍ଧ୍ୱଂ ଗୋତ୍ରଜାଃ ।
ପଞ୍ଚମାତ୍‌ସପ୍ତମାଦୂର୍ଦ୍ଧ୍ୱଂ ମାତୃତଃ ପିତୃତଃ କ୍ରମାତ୍ ।
ସପିଣ୍ଡତା ନିବର୍ତ୍ତେତ ସର୍ବବର୍ଣ୍ଣେଷ୍ୱୟଂ ବିଧିଃ ॥ (ନିର୍ଣ୍ଣୟସିନ୍ଧୌ)



## ୩୭୦-ଗୋତ୍ର ପ୍ରବର ନିର୍ଣ୍ଣୟ ।

ଗୋତ୍ର ପ୍ରବର

(୧) ଜମଦଗ୍ନି-ଔର୍ବ, ବଶିଷ୍ଠ ।
(୨) ବିଶ୍ୱାମିତ୍ର-ବିଶ୍ୱାମିତ୍ର, ମରୀଚି, କୌଶିକ ।
(୩) ଗୌତମ-ଗୌତମ, ବଶିଷ୍ଠ, ବୃହସ୍ପତି ।
(୪) କାଶ୍ୟପ-କାଶ୍ୟପ, ଅବସ୍ମାର ନୈଧ୍ରୁବ ।
(୫) ଅଗସ୍ତ୍ୟ-ଅଗସ୍ତି, ଦଧୀଚି, ଜୈମିନି ।
(୬) ବୃହସ୍ପତି-ବୃହସ୍ପତି, କପିଳ, ପାର୍ବତୀ ।
(୭) ଇନ୍ଦ୍ରକୌଶିକ-ବିଶ୍ୱାମିତ୍ର, ଇନ୍ଦ୍ରକୌଶିକ ।
(୮) କୃଷିକ-ଦେବରାତ, ବିଶ୍ୱାମିତ୍ର, ଔଦଳ ।
(୯) କୌଶିକ-କୌଶିକ, ଅତ୍ରି, ଯମଦଗ୍ନି, ବା କୌଶିକ, ଅଘମର୍ଷଣ, ବିଶ୍ୱାମିତ୍ର ।
(୧୦) ଘୃତକୌଶିକ-କୁଶିକ, କୌଶିକ ଘୃତକୌଶିକ ବା ବନ୍ଧୁକ ।
(୧୧) କାତ୍ୟାୟନ-ଅତ୍ରି, ଭୃଗୁ, ବଶିଷ୍ଠ ।
(୧୨) କୃଷ୍ଣାତ୍ରେୟ-କୃଷ୍ଣାତ୍ରେୟ, ଅତ୍ରେୟ ଆଙ୍ଗିରସ ।
(୧୩) ଆତ୍ରେୟ-ଆତ୍ରେୟ, ଶାତାତପ, ସାଂଖ୍ୟ ।
(୧୪) ଦତ୍ତାତ୍ରେୟ-ଆତ୍ରେୟ, ଆର୍ଚ୍ଚମାନଶ, ଶାବାଶ୍ୱ ।
(୧୫) ସାଙ୍କୃତି-ଅବ୍ୟାହାର, ଅତ୍ରି, ସାଙ୍କୃତି ।
(୧୬) ବତ୍ସସ-ଯମଦଗ୍ନି, ଔର୍ବ, ଆପ୍ନୁବାନ୍, ଚ୍ୟବନ, ଭୃଗୁ ।
(୧୭) ଭାର୍ଗବ-ଭାର୍ଗବ, ଅବଳ, ଆପ୍ନୁବାନ୍, ଯାମଦଗ୍ନ୍ୟ ।
(୧୮) ଅଙ୍ଗିରସ-ଅଙ୍ଗିରସ, ବଶିଷ୍ଠ, ବାର୍ହସ୍ପତ୍ୟ ।

---

ବ୍ୟାଖ୍ୟା-ଲେପଭାଗ (ପିଣ୍ଡ ପାଖରେ ଯେଉଁ ସାନ ସାନ ପିଣ୍ଡ ଦିଆଯାଏ ତାହାର ନାମ ଲେପ ବା ଲେପଭାଗ । ଏହାକୁ ଯେଉଁମାନେ ପାଆନ୍ତି ତାହାଙ୍କୁ ଲେପଭାଗ କହନ୍ତି) ତିନିପୁରୁଷ ଅର୍ଥାତ୍ ବୃଦ୍ଧ ପ୍ରପିତାମହ, ଅତିବୃଦ୍ଧ ପିତାମହ ଓ ଅତୀତିବୃଦ୍ଧ ପ୍ରତିତାମହ, ପିଣ୍ଡଭାଗୀ ତିନିପୁରୁଷ ଅର୍ଥାତ୍ ପିତା, ପିତାମହ ଓ ପ୍ରପିତାମହ, ଏପରି ଛଅ ପୁରୁଷ ଓ ପିଣ୍ଡଦାତାଙ୍କୁ ନେଇ ସାତପୁରୁଷ, ଏମାନଙ୍କୁ ସପିଣ୍ଡ କହନ୍ତି । ଏଥିରୁ ଉର୍ଦ୍ଧ୍ୱ ତିନିପୁରୁଷକୁ ସୋଦକ କହନ୍ତି ଏବଂ ତହିଁରୁ ଉର୍ଦ୍ଧ୍ୱ ପୁରୁଷଙ୍କୁ ଗୋତ୍ରଜ କହନ୍ତି । ପିତୃପକ୍ଷରେ ସାତପୁରୁଷ ଓ ମାତୃପକ୍ଷରେ ପାଞ୍ଚପୁରୁଷରୁ ଅଧିକ ହେଲେ ସାପିଣ୍ଡ୍ୟ ରହେ ନାହିଁ । ସବୁ ବର୍ଣ୍ଣରେ ଏହି ବିଧି ।

(୧୯) ଜୈମିନି-ଜୈମିନି, ଉତଥ୍ୟ, ସାଙ୍କୃତି ।
(୨୦) ବୈୟାଗ୍ରପଦ୍ୟ-ସାଙ୍କୃତି ।
(୨୧) ବାସୁକୀ-ଅକ୍ଷୋଭ୍ୟ, ଅନନ୍ତ, ବାସୁକି ।
(୨୨) ଗୌତମ-ଗୌତମ, ଅପ୍‌ସାର, ଆଙ୍ଗିରସ, ବାର୍ହସ୍ପତ୍ୟ, ନୈଧ୍ରୁବ ।
(୨୩) କୌଣ୍ଡିନ୍ୟ-ବାଶିଷ୍ଠ, କୌଣ୍ଡିନ୍ୟ, ମିତ୍ରାବରୁଣ ।
(୨୪) ହାରୀତସ-କୌସ୍ତ, ଯୁବନାଶ୍ୱ, ଅମ୍ବରୀଶ, ଆଙ୍ଗିରସ ।
(୨୫) କପିଞ୍ଜଳ-କପିଞ୍ଜଳ, ଔପମନ୍ୟ, ଇନ୍ଦ୍ରପ୍ରମଦ, ଭରଦ୍ୱାଜ, ବଶିଷ୍ଠ ।
(୨୬) ଶାଣ୍ଡିଲ୍ୟ-କାଶ୍ୟପ, ଅସିତ, ଦେବଳ ।
(୨୭) ଯାସ୍କ-ସବେଦ, ସବୀତ, ହବ୍ୟ, ଭୃଗୁ ।
(୨୮) ଉଦ୍ଦାଳକ-ପୂତ, ଗାବିଷ୍ଠ, କାନ୍ତି ।
(୨୯) ମଧୁଚ୍ଛନ୍ଦସ-ମଧୁଚ୍ଛନ୍ଦସ, ଇନ୍ଦ୍ରିୟ ।
(୩୦) ଔପବନ-ରାମରଥ୍ୟାପୁତ୍ର, ଗାବିଷ୍ଠିର, ଅତ୍ରି ।
(୩୧) ଶୀତଞ୍ଜଳ-ମହୀୟ, ବିଶ୍ୱ, ଆଙ୍ଗିରସ ।
(୩୨) ଧନଞ୍ଜୟ-ବିଶ୍ୱାମିତ୍ର, ମାଧୁଚ୍ଛନ୍ଦସ, ଧନଞ୍ଜୟ ।
(୩୩) ଯାଜ୍ଞବଲ୍କ୍ୟ-ଉଦନ୍ନ, ଦେବରାତ, ବିଶ୍ୱାମିତ୍ର ।
(୩୪) ଶାବର୍ଣ୍ଣ୍ୟ-ଔବ୍ୟ, ଚ୍ୟବନ, ଭାର୍ଗବ, ଯାମଦଗ୍ନ୍ୟ, ଆପ୍ଲୁବତ୍ ।
(୩୫) କାରାୟଣ-କାରାୟଣ, ଅଜମୀଢ଼, ଆଙ୍ଗିରସ ।
(୩୬) ନାଗସ-ନାଗ, ଅନନ୍ତ, ଆକ୍ଷୋଭ୍ୟ ।
(୩୭) ଭରଦ୍ୱାଜ-ଆଙ୍ଗିରସ, ବାର୍ହସ୍ପତ୍ୟ, ଭରଦ୍ୱାଜ ।
(୩୮) ପରାଶର-ବାଶିଷ୍ଠ, ଶାକ୍ତ୍ୟ, ପାରାଶର୍ଯ୍ୟ ।
(୩୯) ମୁଦ୍‌ଗଲ-ଅଙ୍ଗିରସ, ଭାର୍ମ୍ୟାଶ୍ୱ, ମୌଦଗଲ୍ୟ ।
(୪୦) ମୌଦ୍‌ଗଲ-ଆତ୍ରେୟ, ଆର୍ଚ୍ଚ ନାନସ, ପୌର୍ବାତିଥ ।
(୪୧) କଣ୍ୱ-ଆଙ୍ଗିରସ, ଅଜମୀଢ଼, କାଣ୍ୱ ।
(୪୨) ଲୌହିତାନସ-ଲୋହିତ, ବିଶ୍ୱାମିତ୍ର, ଆଷ୍ଟକ ।

## ୩୭୨-କେଉଁ କେଉଁ ଗୋତ୍ରରେ ବିବାହ ନିଷିଦ୍ଧ ବା କର୍ତ୍ତବ୍ୟ ତାହାର ବର୍ଣ୍ଣନ ।

ଗୋତ୍ରାଣାଂ ତୁ ସହସ୍ରାଣି ପ୍ରଯୁତାନ୍ୟର୍ବୁଦାନି ଚ ।
ଊନପଞ୍ଚାଶଦେବେଷାଂ ପ୍ରବରା "ଋଷିଦର୍ଶନାତ୍" । (ବୌଧାୟନଃ)



ବ୍ୟାଖ୍ୟା-ଗୋତ୍ର ସହସ୍ର ଅୟୁତ ଓ ଅର୍ବୁଦ ହଏ, ମାତ୍ର ସେମାନଙ୍କର ପ୍ରବର ସଂଖ୍ୟା ଅଣଞ୍ଚାଶ । ତାହା ନିମ୍ନରେ ବର୍ଣ୍ଣିତ ହେଲା । ତନ୍ମଧ୍ୟରୁ ସପ୍ତଭୃଗୁଗଣ, ଯଥା-

ଗୋତ୍ର ପ୍ରବର

(୧) ବତ୍ସ-ଭାର୍ଗବ, ଚ୍ୟବନ, ଆପ୍ନବାନ, ଔର୍ବ, ଯାମଦଗ୍ନ ।
(୨) ବିଦ-ଭାର୍ଗବ, ଚ୍ୟବନ, ଆପ୍ନବାନ, ଔର୍ବ, ବୈଦ ।
(୩) ଆର୍ଷ୍ଟିଷେଣ-ଭାର୍ଗବ, ଚ୍ୟବନ, ଆପ୍ନବାନ ଆର୍ଷ୍ଟିଷେଣ, ଅନୁପ ।

ଏ ତିନି ଗୋତ୍ରରେ ପରସ୍ପର ବିବାହ ନିଷିଦ୍ଧ ।

(୪) ଯାସ୍କ-ଭାର୍ଗବ, ବୈତହବ୍ୟ, ସାବେତସ ।
(୫) ମିତ୍ରୟୁବ-ଭାର୍ଗବ, ଚ୍ୟବନ, ଦିବୋଦାସ ।
(୬) ବୈନ୍ୟ-ଭାର୍ଗବ, ବୈନ୍ୟ, ପାର୍ଥ ।
(୭) ଶୁନକ ବା ଶୌନକ-ଶୁନକ, ଗାର୍ତ୍ସମଦ ।

ଏହି ଚାରିଗୋତ୍ର ପ୍ରବରର ଏକତା ଥିଲେ ମଧ୍ୟ ନିଜ ନିଜ ଗୁଣକୁ ଛାଡ଼ି ଅନ୍ୟାନ୍ୟ ଗଣରେ ବିବାହ କରିପାରିବେ । ଯଥା- ଯାସ୍କମିତ୍ରୟୁବବୈନ୍ୟାଃ ଶୁନକାଃ ପ୍ରବରୈକତଃ । ସ୍ୱଂ ସ୍ୱଂ ହିତ୍ୱାଗଣଂ ସର୍ବେବିବାହେୟୁଃ ପରାବରୈଃ ।

(ସ୍ମୃତ୍ୟର୍ଥସାରେ)

## ଅଙ୍ଗିରସଗଣ, ଯଥା-

ଗୋତ୍ର ପ୍ରବର

(୧) ଆଯାସ୍ୟ-ଆଙ୍ଗିରସ, ଆଯାସ୍ୟ, ଗୌତମ ।
(୨) ଶରଦ୍ୱାନ୍-ଆଙ୍ଗିରସ, ଶାରଦ୍ୱତ, ଗୌତମ ।
(୩) କୌମଣ୍ଡ-ଆଙ୍ଗିରସ, ଔତଥ୍ୟ, କାକ୍ଷୀବତ୍ ।
(୪) ଦୀର୍ଘତମସ-କାକ୍ଷୀବତ୍, ଗୌତମ, ଦୈର୍ଘ୍ୟତମସ ।
(୫) ଔଶନସ-ଆଙ୍ଗିରସ, ଗୌତମ, ଔଶନସ ।
(୬) କରେଣୁପାଳ-ଆଙ୍ଗିରସ, ଗୌତମ, କରେଣୁପାଳ ।
(୭) ରାହୁଗଣ-ଆଙ୍ଗିରସ, ରାହୁଗଣ, ଗୌତମ ।
(୮) ସୋମରାଜକ-ଆଙ୍ଗିରସ, ସୋମରାଜକ, ଗୌତମ ।
(୯) ବାମଦେବ-ଆଙ୍ଗିରସ, ବାମଦେବ, ଗୌତମ ।
(୧୦) ବୃହଦୁକ୍ଥ-ଆଙ୍ଗିରସ, ବୃହଦୁକ୍ଥ, ଗୌତମ ।

ଏହି ସମସ୍ତ ଗୌତମ ଗଣଙ୍କର ପରସ୍ପର ବିବାହ ନିଷିଦ୍ଧ ।

## ଅତ୍ରିଗଣ ଯଥା-

| ଗୋତ୍ର ପ୍ରବର | |
|---|---|
| (୧) ଅତ୍ରି-ଆତ୍ରେୟ, ଆର୍ଚ୍ଚନାନସ, ଶାବାଶ୍ୱ । | ଏହି ଅତ୍ରିଗଣଙ୍କର ପରସ୍ପର ବିବାହ ନିଷିଦ୍ଧ । |
| (୨) ବାଭୁତକ-ଆତ୍ରେୟ, ଆର୍ଚ୍ଚନାନସ, ବାଭୁତକ । | |
| (୩) ଗବିଷ୍ଠିର-ଆତ୍ରେୟ, ଆର୍ଚ୍ଚନାନସ, ଗବିଷ୍ଠିର । | |
| (୪) ମୁଦ୍‌ଗଲ-ଆତ୍ରେୟ, ଆର୍ଚ୍ଚନାନସ, ପୌର୍ବାତିଥ । | |
| (୫) ଧନଞ୍ଜୟ-ଆତ୍ରେୟ, ଆର୍ଚ୍ଚନାନସ, ଧନଞ୍ଜୟ । | |
| (୬) ସୁମଙ୍ଗଲ-ଅତ୍ରି, ସୁମଙ୍ଗଲ, ଶାବାଶ୍ୱ । | |
| (୭) ଅତ୍ରିପୁତ୍ରିକାପୁତ୍ର-ଆତ୍ରେୟ, ବାମରଥ୍ୟ, ପୌତ୍ରିଳ । | |

## ବିଶ୍ୱାମିତ୍ରଗଣ ଯଥା-

| ଗୋତ୍ର ପ୍ରବର | |
|---|---|
| (୧) କୁଶିକ-ବିଶ୍ୱାମିତ୍ର, ଦେବରାତ, ଔଦଳ । | ଏ ବିଶ୍ୱାମିତ୍ରଗଣଙ୍କର ପରସ୍ପର ବିବାହ ନିଷିଦ୍ଧ । |
| (୨) ଲୌହିତ-ବିଶ୍ୱାମିତ୍ର, ଅଷ୍ଟକ, ଲୌହିତ । | |
| (୩) ରୌକ୍ଷକ-ବିଶ୍ୱାମିତ୍ର, ରୌକ୍ଷକ, ରୈବଣ । | |
| (୪) କାମକାୟନ-ବିଶ୍ୱାମିତ୍ର, ଦେବଶ୍ରବସ, ଦୈବତରସ । | |
| (୫) ଅଜ-ବିଶ୍ୱାମିତ୍ର, ମାଧୁଚ୍ଛାନ୍ଦସ, ଆଜ । | |
| (୬) ଅଘମର୍ଷଣ-ବିଶ୍ୱାମିତ୍ର, ଅଘମର୍ଷଣ, କୌଶିକ । | |
| (୭) ପୂରଣ-ବିଶ୍ୱାମିତ୍ର, ପୌରଣ । | |
| (୮) ଇନ୍ଦ୍ରକୌଶିକ-ବିଶ୍ୱାମିତ୍ର, ଐନ୍ଦ୍ରକୌଶିକ । | |
| (୯) ଧନଞ୍ଜୟ-ବିଶ୍ୱାମିତ୍ର, ମାଧୁଚ୍ଛନ୍ଦସ, ଧନଞ୍ଜୟ । | |
| (୧୦) କ୍ଷୀକତ-ବିଶ୍ୱାମିତ୍ର, କାତ୍ୟକୀଳ । | |

## କାଶ୍ୟପଗଣ ଯଥା-

| ଗୋତ୍ର ପ୍ରବର | |
|---|---|
| (୧) ନିଧ୍ରୁବ-କାଶ୍ୟପ, ଅବତ୍ସାର, ନୈଧ୍ରୁବ । | ଏହି କାଶ୍ୟପଗଣଙ୍କର ପରସ୍ପର ବିବାହ ନିଷିଦ୍ଧ ॥ |
| (୨) କାଶ୍ୟପ-କାଶ୍ୟପ, ଅବତ୍ସାର, ଅସିତ । | |
| (୩) ରେଭ-କାଶ୍ୟପ, ଅବତ୍ସାର, ରୈଭ୍ୟ । | |
| (୪) ଶାଣ୍ଡିଲ୍ୟ-କାଶ୍ୟପ, ଅସିତ, ଦେବଳ । | |



## ବଶିଷ୍ଠଗଣ ଯଥା-

ଗୋତ୍ର ପ୍ରବର

(୧) ବଶିଷ୍ଠ-ବାଶିଷ୍ଠ, ଇନ୍ଦ୍ରପ୍ରମଦ, ଆଭରଦ୍‌ବସୁ ।
(୨) କୌଣ୍ଡିନ୍ୟ-ବାଶିଷ୍ଠ, ମୈତ୍ରାବରୁଣ, କୌଣ୍ଡିନ୍ୟ ।
(୩) ଉପମନ୍ୟୁ-ବାଶିଷ୍ଠ, ଇନ୍ଦ୍ରପ୍ରମଦ, ଆଭରଦ୍‌ବସୁ ।
(୪) ପରାଶର-ବାଶିଷ୍ଠ, ଶାକ୍ୟ, ପାରାଶର୍ଯ୍ୟ ।
(୫) ଜାତୁକର୍ଣ୍ଣ୍ୟ-ବାଶିଷ୍ଠ, ଅତ୍ରି, ଜାତୁକର୍ଣ୍ଣ୍ୟ ।

ଏ ବଶିଷ୍ଠଗଣଙ୍କର ପରସ୍ପର ବିବାହ ନିଷିଦ୍ଧ ।

## ଅଗସ୍ତ୍ୟଗଣ ଯଥା-

ଗୋତ୍ର ପ୍ରବର

(୧) ଇଧ୍ମବାହ-ଅଗସ୍ତ୍ୟ, ଦାର୍ଢ୍ୟଚ୍ୟୁତ, ଇଧ୍ମବାହ ।
(୨) ସୋମବାହ-ଅଗସ୍ତ୍ୟ, ଦାର୍ଢ୍ୟଚ୍ୟୁତ, ସୋମବାହ ।
(୩) ସାମ୍ଭବାହ-ଅଗସ୍ତ୍ୟ, ଦାର୍ଢ୍ୟଚ୍ୟୁତ, ସାମ୍ଭବାହ ।
(୪) ଯଜ୍ଞବାହ-ଅଗସ୍ତ୍ୟ, ଦାର୍ଢ୍ୟଚ୍ୟୁତ, ଯଜ୍ଞବାହ ।

ଏହି ଅଗସ୍ତ୍ୟ ଗଣଙ୍କର ପରସ୍ପର ବିବାହ ନିଷିଦ୍ଧ ।

## ୩୭୩-(ବିବାହ) ଜ୍ଞାତିବର୍ଗରେ ନିଷେଧ ବାକ୍ୟ

ସପ୍ତମୀଂ ପିତୃପକ୍ଷାଚ୍ଚ ମାତୃପକ୍ଷାଚ୍ଚପଞ୍ଚମୀଂ ।
ଉଦବହେତ ଦ୍ୱିଜେ ଭାର୍ଯ୍ୟାଂ ନ୍ୟାୟେନ ବିଧିନା ନୃପ ।୧ । (ବିଷ୍ଣୁପୁରାଣେ)

ପିତୃପକ୍ଷାତ୍‌-ପିତୃତଃ* ପିତୃବନ୍ଧୁତଶ୍ଚ, ମାତୃପକ୍ଷାତ୍‌-ମାତୃତଃ (ମାତାମହତଃ)* ମାତୃ ବନ୍ଧୁତଶ୍ଚ । (ଉଦ୍‌ବାହତତ୍ତ୍ୱେ)

ବ୍ୟାଖ୍ୟା-ପିତାଠାରୁ ସାତପୁରୁଷ ଓ ପିତୃବନ୍ଧୁ ଏବଂ ମାତାଠାରୁ ପାଞ୍ଚପୁରୁଷ ଓ ମାତୃବନ୍ଧୁ ଏମାନଙ୍କୁ ଛାଡ଼ି ଦ୍ୱିଜାତିମାନେ କନ୍ୟା ବିବାହ କରିବେ ।୧ ।

---

*୩୭୩-(ଟି)-ପିତୃବନ୍ଧୁ ଓ ମାତୃବନ୍ଧୁ ବର୍ଣ୍ଣନ ଯଥା-

ପିତୁଃ ପିତୁଃ ସ୍ୱସୁଃ ପୁତ୍ରାଃ ପିତୁର୍ମାତୁଃ ସ୍ୱସୁଃ ସୁତାଃ ।
ପିତୁର୍ମାତୁଲପୁତ୍ରଶ୍ଚ ବିଜ୍ଞେୟାଃ ପିତୃବାନ୍ଧବାଃ ।
ମାତୁର୍ମାତୁଃ ସ୍ୱସୁଃ ପୁତ୍ରଃ ମାତୁଃ ପିତୃଃ ସ୍ୱସୁଃ ସୁତାଃ ।
ମାତୁର୍ମାତୁଲପୁତ୍ରାଶ୍ଚ ବିଜ୍ଞେୟା ମାତୃବାନ୍ଧବାଃ । (ଉଦ୍‌ବାହତତ୍ତ୍ୱେ)

ବ୍ୟାଖ୍ୟା-ପିତାର ପିଉସୀପୁଅ ଭାଇ, ମାଉସୀପୁଅ ଭାଇ, ଓ ମଉଳାପୁଅ ଭାଇ ଏମାନେ ପିତୃବନ୍ଧୁ; ସେହିପରି ମାତାର ପିଉସୀପୁଅ ଭାଇ, ମାଉସୀପୁଅ ଭାଇ ଓ ମଉଳାପୁଅ ଭାଇ ଏମାନେ ମାତୃବନ୍ଧୁ ।

## ୩୭୪-ବରଦୋଷ ନିର୍ଣ୍ଣୟ ।

ଉନ୍ମତ୍ତଃ ପତିତଃ କୁଷ୍ଠୀ ଷଣ୍ଡଶ୍ଚୈବ ସ୍ୱଗୋତ୍ରଜଃ ।
ଚକ୍ଷୁଃଶ୍ରୋତ୍ରବିହୀନଶ୍ଚ ତଥାପସ୍ମାରଦୂଷିତଃ ।
ବରଦୋଷାଃ ସ୍ମୃତାହ୍ୟେ ତେ କନ୍ୟାଦୋଷାଃ ପ୍ରକୀର୍ତ୍ତିତାଃ ।

(କାତ୍ୟାୟନଃ)

ବ୍ୟାଖ୍ୟା-ବାତୁଳ, ପତିତ, କୁଷ୍ଠରୋଗୀ, ନପୁଂସକ, ନିଜଗୋତ୍ରଜାତ,ଅନ୍ଧ, ବଧିର ଓ ଅପସ୍ମାର ରୋଗୀ, ଏପରି ଦୋଷଯୁକ୍ତ ବରକୁ କନ୍ୟା ଦେବ ନାହିଁ । କନ୍ୟାଦୋଷ ପୂର୍ବରେ ଲେଖାଯାଇଅଛି ।

## ୩୭୫-ବରର ଗୁଣ ନିର୍ଣ୍ଣୟ

କୁଳଂ ଚ ଶୀଳଂ ଚ ବୟଶ୍ଚ ରୂପଂ ବିଦ୍ୟା ଚ ବିତ୍ତଂ ଚ ସନାଥତାଂ ଚ ।
ଏତାନ୍‌ଗୁଣାନ୍‌ସପ୍ତ ପରୀକ୍ଷ୍ୟ ଦେୟା କନ୍ୟା ବୁଧୈଃ ଶେଷମଚିନ୍ତନୀୟଂ ।। (ଯମଃ)

ବ୍ୟାଖ୍ୟା-ବୁଦ୍ଧିମାନ୍ ଲୋକ ବରର କୁଳ, ସ୍ୱଭାବ, ବୟସ, ରୂପ, ବିଦ୍ୟା, ଧନ ଓ ପିତ୍ରାଦିର ସହାୟତା ଏହି ସାତଗୋଟି ଗୁଣ ପରୀକ୍ଷା କରି କନ୍ୟା ଦାନ କରିବେ ।

ସୁବଦ୍ଧଜତ୍ରୁଜାନ୍ୱସ୍ଥି ସୁବଦ୍ଧାଂସଶିରୋଧରଂ ।
ଯସ୍ୟ ବିପ୍ଳବତେ ରେତୋହ୍ରାଦି ଚ ଫେନିଲଂ ।
ପୁମାନ୍ ସ୍ୟାଲ୍ଲକ୍ଷଣୈରେଭିର୍ବିପରୀତସ୍ତୁ ଷଣ୍ଡଜଃ । (ନାରଦଃ)

ବ୍ୟାଖ୍ୟା-ଯାହା କଣ୍ଠରେ ଦୁଇପାଖ ହାଡ଼, ଉଭୟ ଜଙ୍ଘର ହାଡ଼, ସ୍କନ୍ଧ ଓ ଗ୍ରୀବା ସୁଦୃଢ଼ ହୋଇଥିବ ଓ ଶୁକ୍ର ଗାଢ଼ ଅର୍ଥାତ୍ ଅତି ତରଳ ହୋଇ ନ ଥିବ ଏବଂ ମୂତ୍ର ଶବ୍ଦ ଓ ଫେନଯୁକ୍ତ ହୋଇଥିବ ଏପରି ଲକ୍ଷଣଯୁକ୍ତ ବ୍ୟକ୍ତି କି ପୁରୁଷ କହନ୍ତି । ଏହାର ବିପରୀତ ହେଲେ ତାହାକୁ ନପୁଂସକ କହନ୍ତି ।

ଅପତ୍ୟାର୍ଥେ ସ୍ତ୍ରିୟଂ ସ୍ତ୍ରୀକ୍ଷେତ୍ରଂ ବୀର୍ଜନୋନରାଃ ।
କ୍ଷେତ୍ରଂ ବୀଜବତେ ଦେୟଂ ନାବୀଜୀ କ୍ଷେତ୍ର ମର୍ହତି । (ନାରଦଃ)

ବ୍ୟାଖ୍ୟା-ସନ୍ତାନ ନିମିତ୍ତ ସ୍ତ୍ରୀ ସୃଷ୍ଟି ହୋଇଅଛି, ସ୍ତ୍ରୀ କ୍ଷେତ୍ର ଓ ପୁରୁଷ ବୀଜୀ ଅର୍ଥାତ୍ ବୀର୍ଯ୍ୟବାନ୍, ଅତଏବ ବୀର୍ଯ୍ୟବନ୍ତ ପୁରୁଷକୁ କନ୍ୟାପ୍ରଦାନ କରିବ; କିନ୍ତୁ ଯେ ବୀର୍ଯ୍ୟହୀନ ଅର୍ଥାତ୍ ନପୁଂସକ ସେ ସ୍ତ୍ରୀ କ୍ଷେତ୍ରରେ ଯୋଗ୍ୟ ନୁହେଁ ।



## ୩୭୬-ବିବାହ ଆଠପ୍ରକାର

ବ୍ରାହ୍ମୋ ଦୈବସ୍ତଥୈବାର୍ଷଃ ପ୍ରାଜାପତ୍ୟସ୍ତଥା ସୁରଃ ।
ଗାନ୍ଧର୍ବୋରାକ୍ଷସଶ୍ଚୈବ ପୈଶାଚଶ୍ଚା ଷ୍ଟମୋଽଧମଃ । (ମନୁଃ)

ବ୍ୟାଖ୍ୟା-ଆଠପ୍ରକାର ବିବାହ ଯଥା-(୧) ବ୍ରହ୍ମ, (୨) ଦୈବ, (୩) ଆର୍ଷ, (୪) ପ୍ରାଜାପତ୍ୟ, (୫) ଆସୁର, (୬) ଗାନ୍ଧର୍ବ, (୭) ରାକ୍ଷସ ଓ (୮) ପୈଶାଚ ।

## ୩୭୭-ବର୍ଣ୍ଣଭେଦରେ ବିବାହ ବର୍ଣ୍ଣନା

ଚତ୍ୱାରୋବ୍ରାହ୍ମଣସ୍ୟାଦ୍ୟା ରାଜ୍ଞାଂ ଗାନ୍ଧର୍ବରାକ୍ଷସୌ ।
ରାକ୍ଷସଶ୍ଚାସୁରୋବୈଶ୍ୟେ ଶୂଦ୍ରେ ଚାନ୍ତ୍ୟସ୍ତୁ ଗର୍ହିତଃ । (ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା-ବ୍ରାହ୍ମ, ଦୈବ, ଆର୍ଷ ଓ ପ୍ରାଜାପତ୍ୟ ଏ ଚାରି ବିବାହ ବ୍ରାହ୍ମଣମାନଙ୍କର, ଗାନ୍ଧର୍ବ ଓ ରାକ୍ଷସ ଏ ଦୁଇ ବିବାହ କ୍ଷତ୍ରିମାନଙ୍କର, ରାକ୍ଷସ ଓ ଆସୁର ବିବାହ ବୈଶ୍ୟ ଏବଂ ଶୂଦ୍ରଙ୍କର ପୈଶାଚ ସମସ୍ତଙ୍କ ପକ୍ଷରେ ଗର୍ହିତ ଅଟେ ।

## ୩୭୮-ବ୍ରାହ୍ମ ଆଦି ବିବାହର ଲକ୍ଷଣ

ବ୍ରାହ୍ମୋ ବିବାହ ଆହୂୟ ଦୀୟତେ ଶକ୍ତ୍ୟଲଂକୃତା ।
ତଜ୍ଜଃ ପୁନାତ୍ୟୁଭୟତଃ ପୁରୁଷାନେକ ବିଂଶତି ।୧ । (ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା-ବ୍ରାହ୍ମ, ବିବାହ, ଯଥା-ବରକୁ ନିଜ ଘରକୁ ନିମନ୍ତ୍ରଣ କରିଆଣି ଯଥାଶକ୍ତି ଅଳଂକୃତା କନ୍ୟାକୁ ପ୍ରଦାନ କଲେ ତାଙ୍କଠାରୁ ଉତ୍ପନ୍ନ ପୁତ୍ର ଉଭୟ କୁଳର ଏକୋଇଶ ପୁରୁଷ ଉଦ୍ଧାର କରେ ।୧ ।

ଯଜ୍ଞସ୍ଥାୟର୍ତ୍ୱିଜେ ଦୈବ ଆଦାୟାର୍ଷସ୍ତୁ ଗୋଦ୍ୱୟଂ ।
ଚତୁର୍ଦ୍ଦଶ ପ୍ରଥମଜଃ ପୁନାତ୍ୟୁତ୍ତରଜଶ୍ଚ ଷଟ୍ ।୨ । (ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା-ଦେବବିବାହ ଯଥା-ଯଜ୍ଞକର୍ମରେ ନିଯୁକ୍ତ ହୋଇଥିବା ପୁରୋହିତକୁ କନ୍ୟା ଦେଲେ ତାହାଙ୍କଠାରୁ ଉତ୍ପନ୍ନ ପୁତ୍ର ଉଭୟକୁଳର ଚଉଦ ପୁରୁଷ ଉଦ୍ଧାର କରେ ।୨ ।

ଆର୍ଷ ବିବାହ ଯଥା-କନ୍ୟାପିତା ବରଠାରୁ ଦୁଇଗୋଟି ଗୋରୁ ନେଇ କନ୍ୟା ସହିତ ସେହି ଗୋରୁ ତାହାକୁ ଦାନ କଲେ ତାଙ୍କଠାରୁ ଉତ୍ପନ୍ନ ପୁତ୍ର ଉଭୟକୁଳର ଛଅ ପୁରୁଷ ଉଦ୍ଧାର କରେ ।୩ ।

ଇତ୍ୟୁକ୍ତ୍ୱା ଚରତାଂ ଧର୍ମ ସହ ଯା ଦୀୟତେଽର୍ଥିନେ ।
ସ କାୟଃ ପାବୟେତ୍ତଜଃ ଷଟ୍‌ଷଡ଼୍‌ବଂଶ୍ୟାନ୍‌ସହାତ୍ମନା । (ଯାଜ୍ଞବଲ୍କ୍ୟଃ)

---

* ସହ ଗୋମିଥୁନଂ ଚେତି ଦେବଲଃ ।

ବ୍ୟାଖ୍ୟା-କାୟ ଅର୍ଥାତ୍ ପ୍ରାଜାପତ୍ୟବିବାହ ଯଥା-କନ୍ୟାପିତା ବରକୁ କହିବେକି ତୁମ୍ଭେ ଏହି କନ୍ୟାର ସହିତ ଧର୍ମ ଆଚରଣ କର ଓ କନ୍ୟା ତୁମ୍ଭ ସହିତ ଧର୍ମଆଚରଣ କରୁ । ଏହା କହି କନ୍ୟା ଦାନ କଲେ ତାହାଙ୍କଠାରୁ ଉତ୍ପନ୍ନ ପୁତ୍ର ପିତାମାତାଙ୍କ ସହିତ ଛଅ ପୁରୁଷ ଉଦ୍ଧାର କରେ ।୩ ।

**ଆସୁରୋଦ୍ରବିଣାଦାନାଦ୍ ଗାନ୍ଧର୍ବଃ ସମୟାନ୍ ମିଥଃ ।**
**ରାକ୍ଷସୋ ଯୁଦ୍ଧହରଣାତ୍ ପୈଶାଚଃ କନ୍ୟାକାଛଳାତ୍ ।୪ । (ଯାଜ୍ଞବଲ୍‌କ୍ୟଃ)**

ବ୍ୟାଖ୍ୟା-ଅସୁର ବିବାହ ଯଥା-ବର ନିକଟରୁ ଧନ ନେଇ ତାହାକୁ କନ୍ୟା ବିବାହ କରିଦେଲେ ଏହାକୁ ଅସୁର ବିବାହ କହନ୍ତି ।

ଗାନ୍ଧର୍ବବିବାହ ଯଥା-ସ୍ନେହବଶ ହୋଇ ସ୍ୱଇଚ୍ଛାରେ ବର କନ୍ୟାକୁ କହିବ ତୁମ୍ଭେ ମୋହର ଭାର୍ଯ୍ୟ ହେଲେ, କନ୍ୟା ମଧ୍ୟ ବରକୁ କହିବ ତୁମ୍ଭେ ମୋହର ପତି ହେଲ । ଏହିପରି ଉଭୟ ଶପଥ କରି ବିବାହ କଲେ ଏହାକୁ ଗାନ୍ଧର୍ବ ବିବାହ କହନ୍ତି ।

ରାକ୍ଷସ ବିବାହ ଯଥା-ଯୁଦ୍ଧରେ ଜୟ କରି କିମ୍ବା କନ୍ୟା ପିତାଠାରୁ କନ୍ୟା ବଳାତ୍କାରରେ ଛଡ଼ାଇଆଣି ବିବାହ କଲେ ଏହାକୁ ରାକ୍ଷସ ବିବାହ କହନ୍ତି ।

ପୈଶାଚ ବିବାହ ଯଥା-କପଟରେ କନ୍ୟାକୁ ଭୁଲାଇ ବିବାହ କଲେ ଏହାକୁ ପୈଶାଚ ବିବାହ କହନ୍ତି ।୪ ।

## ୩୭୯-କନ୍ୟାଦାତୃ ନିର୍ଣ୍ଣୟ

ପିତା ପିତାମହୋଭ୍ରାତା ସକୁଲ୍ୟୋଜନନୀ ତଥା ।
କନ୍ୟାପ୍ରଦଃ ପୂର୍ବନାଶେ ପ୍ରକୃତିସ୍ଥଃ ପରଃ ପରଃ ।।
ଅପ୍ରୟଚ୍ଛନ୍ ସମାପ୍ନୋତି ଭ୍ରୂଣହତ୍ୟାମୃତାବୃତୌ ।
ଗମ୍ୟନ୍ତ୍ୱଭାବେ ଦାତୃଣାଂକନ୍ୟା କୁର୍ଯ୍ୟାତ୍ ସ୍ୱୟମ୍ବରଂ ।। (ଯାଜ୍ଞବଲ୍‌କ୍ୟଃ)

ବ୍ୟାଖ୍ୟା-ପିତା, ପିତାମହ, ଭ୍ରାତା, ସକୁଲ୍ୟ (ଗୋତ୍ରଜ) ଓ ମାତା ଏମାନଙ୍କ ମଧ୍ୟରୁ ପୂର୍ବ ୨ ବ୍ୟକ୍ତିର ଅଭାବ ହେଲେ ପର ୨ ବ୍ୟକ୍ତି ପ୍ରକୃତିସ୍ଥ ହୋଇ କନ୍ୟା ଦାନର ଅଧିକାରୀ ହେବେ । ଯେବେ ଏମାନଙ୍କ ମଧ୍ୟରୁ କେହି କନ୍ୟାଦାନ ନ କରନ୍ତି ତେବେ କନ୍ୟାର ପ୍ରତିଋତୁରେ ସେମାନେ ଭ୍ରୂଣହତ୍ୟାର ଭାଗୀ ହୁଅନ୍ତି । ଯେବେ ଉପରୋକ୍ତ ଦାତାର ଅଭାବ ହୁଏ ତେବେ କନ୍ୟା ସ୍ୱଇଚ୍ଛାରେ ଗମନଯୋଗ୍ୟ ବରକୁ ବରଣ କରିବ ।

## ୩୮୦-ମାତୃନାମ୍ନୀ କନ୍ୟା ବିବାହରେ ଦୋଷ

ମାତୁର୍ଯନ୍ନାମ ଗୁହ୍ୟଂ ସ୍ୟାତ୍ ସୁପ୍ରସିଦ୍ଧମଥାପି ବା
ତନ୍ନାମ୍ନୀ ଯା ଭବେତ୍ କନ୍ୟା ମାତୃନାମ୍ନୀଂ ପ୍ରଚକ୍ଷତେ ।।



ପ୍ରମାଦାଦ୍ୟଦି ଗୃହଣୀୟାତ୍ ପ୍ରାୟଶ୍ଚିତ୍ତଂ ସମାଚରେତ୍ ।
ତତଶ୍ଚାନ୍ଦ୍ରାୟଣଂ କୃତ୍ୱା ତାଂ କନ୍ୟାଂ ପରିବର୍ଜୟେତ୍ ॥
(ମତ୍ସ୍ୟସୂକ୍ତ ମହାତନ୍ତ୍ରେ)

ସୁପ୍ରସିଦ୍ଧଂ-ଗୁପ୍ତଂ-ରାଜ୍ୟାଶ୍ରିତମିତି ଯାବତ୍ ॥

ବ୍ୟାଖ୍ୟା-ବରମାତାର ଡାକନାମ ବା ରାଶିନାମ ସହିତ କନ୍ୟାର ନାମ ସମାନ ହେଲେ ତାହାକୁ ମାତୃନାମ୍ନୀ କନ୍ୟା କହନ୍ତି । ଯେବେ କେହି ପ୍ରମାଦବଶରୁ ସେପରି କନ୍ୟାକୁ ବିବାହ କଲେ ତେବେ ସେ ପ୍ରାୟଶ୍ଚିତ୍ତର ଯୋଗ୍ୟ ହୁଏ । ଅର୍ଥାତ୍ ଗୋଟିଏ ଚାନ୍ଦ୍ରାୟଣ ବ୍ରତ କରି ଭାର୍ଯ୍ୟାକୁ ପରିତ୍ୟାଗ କରିବ । ତାହା ସହିତ ଆଉ ଦମ୍ପତିଯୋଗ୍ୟ ବ୍ୟବହାର କରିବ ନାହିଁ ।

## ୩୮୧-ଗୁରୁକନ୍ୟା ବିବାହରେ ଦୋଷ

ସମାନପ୍ରବରା ବାପି ଶିଷ୍ୟସନ୍ତତିରେବ ଚ ।
ବ୍ରହ୍ମଦାତୁର୍ଗରୋଶ୍ଚୈବ ସନ୍ତତିଃ ପ୍ରତିଷିଧ୍ୟତେ ॥ (ମତ୍ସ୍ୟସୂକ୍ତେ)

ବ୍ୟାଖ୍ୟା-ସମାନ ପ୍ରବରଜାତ କନ୍ୟା, ଶିଷ୍ୟର ସନ୍ତତି, ବେଦାଧ୍ୟାପକର ସନ୍ତତି ଓ ଗୁରୁର ସନ୍ତତି, ଏମାନଙ୍କ ସହିତ ବିବାହ ନିଷିଦ୍ଧ ।

## ୩୮୨-ବଡ଼ଭାଇ ଥାଉଁ ଥାଉଁ ସାନଭାଇର ବିବାହ ନିଷିଦ୍ଧ

ଦାରାଗ୍ନି ହୋତ୍ରସଂଯୋଗଂ କୁରୁତେ ଯୋଽଗ୍ରଜେ ସ୍ଥିତେ ।
ପରିବେତ୍ତା ସ ବିଜ୍ଞେୟଃ ପରିବିତ୍ତସ୍ତୁ ପୂର୍ବଜଃ । (ମନୁଃ)

ବ୍ୟାଖ୍ୟା-ବଡ଼ଭାଇ ଥାଉଁ ଥାଉଁ ସାନଭାଇ ଯେବେ ବିବାହ ଓ ଅଗ୍ନିହୋତ୍ର କରେ ତେବେ ତାହାକୁ ପରିବେତ୍ତା କହନ୍ତି ଏବଂ ଅଗ୍ରଜ ଅର୍ଥାତ୍ ବଡ଼ ଭାଇକୁ ପରିବିତ୍ତି କହନ୍ତି ।

ସୌଦର୍ଯ୍ୟେ ତିଷ୍ଠତି ଜ୍ୟେଷ୍ଠେନ କୁର୍ଯ୍ୟାଦ୍ଦାନସଂଗ୍ରହଂ ।
ଆବସଥ୍ୟଂ ତଥା ଧନଂ ପତିତସ୍ତୁ ତଥା ଭବେତ୍ ॥ (ଗାର୍ଗ୍ୟଃ)

ବ୍ୟାଖ୍ୟା-ଜ୍ୟେଷ୍ଠଭ୍ରାତା ଥାଉ କନିଷ୍ଠଭ୍ରାତା ଯେବେ ବିବାହ ଓ ଅଗ୍ନ୍ୟାଧାନ କର୍ମ କରେ ତେବେ ସେ ପତିତ ହୁଏ ।

## ୩୮୩-ବଡ଼ଭାଇ ଥାଉଁ ଥାଉଁ ଅବସ୍ଥାଭେଦରେ ସାନଭାଇର ବିବାହବାକ୍ୟ

ଦେଶାନ୍ତରସ୍ଥ-କ୍ଳୀବୈକବୃଷଣାନସହୋଦରାନ୍ ।
ବେଶ୍ୟାଭିଷକ୍ତପତିତଶୁ ଦ୍ରତୁଲ୍ୟାତିରୋଗିଣଃ ॥

ଜଡ଼ ମୂକାନ୍ଧବଧିର-କୁବ୍‌ଜ-ବାମନ-କୁଣ୍ଠବାନ୍ *(୧)
ଅତିବୃଦ୍ଧାନଭାର୍ଯ୍ୟାଂଶ୍ଚ କୃଷିସକ୍ତାନ୍ ନୃପସ୍ୟ ଚ (୨) ॥
ଧନବୃଦ୍ଧି ପ୍ରସକ୍ତାଂଶ୍ଚ କାମତଃ କାରିଣସ୍ତଥା ।
(୩) କୁଳଟୋନ୍ମତ୍ତଚୌରାଂଶ୍ଚ ପରିବିନ୍ଦନ୍ନ ଦୂଷ୍ୟତି ॥
(ଛନ୍ଦୋଗ୍ୟପରିଶିଷ୍ଟେ)

ବ୍ୟାଖ୍ୟା-ବଡ଼ଭାଇ ଯେବେ ଅନେକ ଦିନରୁ ଖବର ଅନ୍ତର ନ ଦେଇ ବିଦେଶରେ ଥାଏ କିମ୍ବା ନପୁଂସକ, ଏକ ଅଣ୍ଡକୋଷ ବିଶିଷ୍ଟ, ବିମାତୃଗର୍ଭଜାତ, ବେଶ୍ୟାସକ୍ତ, ପତିତ, ଶୂଦ୍ରତୁଲ୍ୟ, ଅତିରୋଗୀ, ଜଡ଼, ମୂକ, ଅନ୍ଧ, ବଧିର କୁଜା, ଅତିଠୁରା, କୁଷ୍ଠରୋଗୀ, ଅତିବୃଦ୍ଧ, ଅଭାର୍ଯ୍ୟ ଅର୍ଥାତ୍ ନୈଷ୍ଠିକ-ବ୍ରହ୍ମଚାରୀ ଆଦି ହୋଇଥାଏ, ଅଥବା କୃଷିପରାୟଣ, ରାଜସେବକ (ବିବିଧ ଉପାୟଦ୍ୱାରା ରାଜାଙ୍କର ଧନ ବୃଦ୍ଧିକାରୀ, ଯଥେଚ୍ଛାଚାରୀ, ଅନ୍ୟର ପୋଷ୍ୟପୁତ୍ର, ବାତୁଳ ଏବଂ ଚୋର ହୋଇଥାଏ ତେବେ ସାନଭାଇ ବଡ଼ଭାଇକୁ ଅପେକ୍ଷା ନ କରି ବିବାହ କଲେ ଦୋଷ ହେବ ନାହିଁ ।

### ୩୮୪-ବଡ଼ଭଉଣୀ ଥାଉଁ ଥାଉଁ ସାନଭଉଣୀର ବିବାହ ନିଷିଦ୍ଧ

ଜ୍ୟେଷ୍ଠାୟାଂ ବିଦ୍ୟମାନାୟାଂ କନ୍ୟାୟୁମୁହ୍ୟତେଽନୁଜା ।
ସାଚାଗ୍ରେଦିଧିଷୁର୍ଜ୍ଞେୟା ପୂର୍ବା ଚ ଦିଧିଷୁଃ ସ୍ମୃତା ।
ପରିତ୍ୟକ୍ତା ଚ ସା ପୋଷ୍ୟ ଭୋଜନାଚ୍ଛାଦନେନ ଚ ॥
(ଉଦ୍‌ବାହତତ୍ତ୍ୱେ ଦେବଳଃ)

ବ୍ୟାଖ୍ୟା-ବଡ଼ଭଉଣୀ ଥାଉଁ ଥାଉଁ ସାନଭଉଣୀ ବିବାହ କଲେ ତାହାକୁ "ଅଗ୍ରେଦିଧିଷୁ" କହନ୍ତି । ବଡ଼ଭଉଣୀକୁ "ଦିଧିଷୁ" କହନ୍ତି । ଏହି ଉଭୟ ବିବାହ କଲେ ତାହାଙ୍କର ସ୍ୱାମୀ ତାଙ୍କୁ ନିଜର ସାଂସାରିକ ବ୍ୟବହାରେ ନ ଆଣି ତ୍ୟକ୍ତ କରି କେବଳ ଭରଣାଚ୍ଛାଦନାଦି ଦେବେ ।

### ୩୮୫-କନ୍ୟାର ପିତୃଗୋତ୍ରରୁ ନିବୃତ୍ତି

ସ୍ୱଗୋତ୍ରାଦ୍ ଭ୍ରଶ୍ୟତେ ନାରୀ ବିବାହାତ୍ ସପ୍ତମେ ପଦେ । (ଲଘୁହାରୀତଃ)

---

* (୧) କୁଣ୍ଠଃ ସର୍ବକ୍ରିୟାଳସଃ (ମିତାକ୍ଷରା) କୁଣ୍ଠୋମନ୍ଦଃ କ୍ରିୟାସୁଚ ଇତ୍ୟମରୋକ୍ତେଃ । (୨) "ନୃପସ୍ୟଚେ" ତି ଚକାରେଣ ସକ୍ତାନିତ୍ୟନୁଷଜ୍ୟତେ । ରାଜାସକ୍ତଃ ବା ରାଜସେବକଃ । (୩) କୁଳାନ୍ୟତୀତି କୁଳଟଃ-ପରକୁଳାଟନଶୀଳଃ ଇତି ନାରାୟଣମହାମହୋପାଧ୍ୟାୟଃ । ତେଷାମୟମାଶୟଃ କୁଳଂ ପରକୁଳଂ ପରଗୋତ୍ରଂ ଅଟତି ଗଚ୍ଛତି ପ୍ରାପ୍ନୋତି ଯୋ ଦତ୍ତକଃ ସ କୁଳଟଃ । (ଉଦ୍‌ବାହତତ୍ତ୍ୱେ)



ବ୍ୟାଖ୍ୟା-ବିବାହରେ ସପ୍ତପଦୀ କଲାପରେ କନ୍ୟା ପିତୃଗୋତ୍ରକୁ ତ୍ୟାଗ କରି ସ୍ୱାମୀର ଗୋତ୍ରକୁ ଆଶ୍ରୟ କରେ । ସେହି ହେତୁରୁ ତାହାର ପିଣ୍ଡୋଦକାଦିକ୍ରିୟା ଅର୍ଥାତ୍ ଶ୍ରାଦ୍ଧ ତର୍ପଣାଦି ସ୍ୱାମୀ ଗୋତ୍ରରେ କରିବାକୁ ହେବ ।

## ୩୮୬-ଏକାବର୍ଷରେ ଦୁଇ ସହୋଦର କିମ୍ବା ଦୁଇ ସହୋଦରାର ବିବାହ ନିଷେଧ

ଏକୋଦରପ୍ରସୂତାନାଂ ଏକସ୍ମିନ୍ନପି ବତ୍ସରେ ।
ବିବାହେ ନୈବ କର୍ତ୍ତବ୍ୟୋ ଗର୍ଗସ୍ୟ ବଚନଂ ଯଥା ।।
(ଗଦାଧରପଦ୍ଧତୌ)

ବିବାହସ୍ତ୍ୱେକଜାତୀନାଂ ଷଣ୍ମାସାଭ୍ୟନ୍ତରେ ଯଦି ।
ଅସଂଶୟଂ ତ୍ରିଭିର୍ବର୍ଷୈସ୍ତତ୍ରୈକା ବିଧବା ଭବେତ ।।

ବ୍ୟାଖ୍ୟା-ଏକାବର୍ଷରେ ସହୋଦର ଦୁଇଭାଇ କିମ୍ବା ସହୋଦରା ଦୁଇଭଉଣୀ ଅଥବା ସହୋଦର ଭାଇଭଉଣୀଙ୍କର ବିବାହ କରିବ ନାହିଁ । ଛ' ମାସ ମଧ୍ୟରେ ବିବାହ କଲେ କନ୍ୟା ତିନିବର୍ଷରେ ବିଧବା ହୁଏ ।

## ୩୮୭-ବିବାହପରେ ଭାଇର ଉପନୟନ ନିଷେଧ

ମୁଣ୍ଡନାନ୍ମଣ୍ଡନଂ କାର୍ଯ୍ୟଂ ମଣ୍ଡନାନ୍ନତୁ ମୁଣ୍ଡନଂ
ଅସ୍ୟାର୍ଥଃ-ବ୍ରତାନ୍ତେ ବିବାହଃ କାର୍ଯ୍ୟୋ ବିବାହାନ୍ତେ ନ ଚ ବ୍ରତଂ ।
(ପଣ୍ଡିତସର୍ବସ୍ୱେ)

ବ୍ୟାଖ୍ୟା-ଛ' ମାସ ମଧ୍ୟରେ ବ୍ରତପରେ ଭଉଣୀର ବିବାହ କରିବ; କିନ୍ତୁ ବିବାହ ପରେ ସହୋଦର ଭାଇର ବ୍ରତ କରିବ ନାହିଁ ।

## ୩୮୮-ମାତୃଗୋତ୍ରକନ୍ୟାର ବିବାହ ନିଷେଧ

ମାତୁଳସ୍ୟ ସୁତା ମୂଢ୍ୱା ମାତୃଗୋତ୍ରାନ୍ତଥୈବ ଚ ।
ସମାନପ୍ରବାରାଂ ଚୈବ ଗତ୍ୱା ଚାନ୍ଦ୍ରାୟଣଂ ଚରେତ୍ ।। (ଶାତାତପଃ)

ବ୍ୟାଖ୍ୟା-ମାମୁରଝିଅ, ମାତୃକୁଳରେ ଜାତ ହୋଇଥିବା କନ୍ୟା ସମାନ ପ୍ରବରରେ ଜନ୍ମିଥିବା କନ୍ୟା ଏମାନଙ୍କ ସହିତ ବିବାହ କରି ସହବାସ କଲେ ଚାନ୍ଦ୍ରାୟଣ କରିବାକୁ ହୁଏ, ଅତଏବ ଏମାନଙ୍କ ସହିତ ବିବାହ କରିବା ଅବିଧି ।

## ୩୮୯-ଭିନ୍ନମାତୃଜର ବିବାହ ବିଧି

ପୃଥଙ୍ ମାତୃଜୟୋଃକାର୍ଯ୍ୟୋ ବିବାହସ୍ତ୍ୱେ କବାସରେ ।
ଏକସ୍ମିନ୍ ମଣ୍ଡପେ କାର୍ଯ୍ୟଃ ପୃଥଗ୍ ବେଦିକୟୋସ୍ତଥା ।। (ମେଧାତିଥିଃ)

ବ୍ୟାଖ୍ୟା-ଭିନ୍ନ ଭିନ୍ନ ମାତାଠାରୁ ଜାତ ହୋଇଥିବା କନ୍ୟା କିମ୍ବା ପୁତ୍ର ଏକ ଦିନରେ ଓ ଏକ ମଣ୍ଡପରେ ବିବାହ କରିପାରିବେ; କିନ୍ତୁ ବେଦୀ ଭିନ୍ନ ଭିନ୍ନ ହେବ ।

## ୩୯୦-ଯମଜବିବାହ ନିର୍ଣ୍ଣୟ

ଏକସ୍ମିନ୍ ବସ୍ରେ ଚୈକବାସରେ ମଣ୍ଡପେ ତଥା ।
କର୍ତ୍ତବ୍ୟଂ ମଙ୍ଗଳଂ ସ୍ୱସ୍ରୋର୍ଭ୍ରାତ୍ରୋର୍ଯମଳଜାତୟୋଃ ॥

(ନିର୍ଣ୍ଣୟସିନ୍ଧୌ)

ବ୍ୟାଖ୍ୟା-ଯାଆଁଳା ଦୁଇଭାଇ କିମ୍ବା ଦୁଇ ଭଉଣୀ ଏକାବର୍ଷରେ ଏକ ଦିନରେ ଏକ ମଣ୍ଡପରେ ବିବାହ କରି ପାରନ୍ତି ।

## ୩୯୧-ବଦଳ ବିବାହାଦି ବର୍ଣ୍ଣନ

ପ୍ରତ୍ୟୁଦ୍‌ବାହୋନୈବ କାର୍ଯ୍ୟା ନୈକସ୍ମୈ ଦୁହିତୃଦ୍ୱୟଂ ।
ନୈବୈକଜନ୍ୟୟୋଃପୁଂସୋରେକଜନ୍ୟେ ତୁ କନ୍ୟକେ ॥
ନୈବଂ କଦାଚିଦୁଦ୍‌ବାହୋ ନୈକଦା ମୁଣ୍ଡନଦ୍ୱୟଂ ॥ (ନାରଦଃ)

ବ୍ୟାଖ୍ୟା-ବଦଳକନ୍ୟା, ଏକ ବରସହିତ ଦୁଇ ଭଉଣୀର ଓ ଯାଆଁଳା ବର ସହିତ ଯାଆଁଳା ଭଉଣୀର କଦାପି ବିବାହ କରିବ ନାହିଁ ଏବଂ ଯାଆଁଳା ପୁଅ ଦୁହିଁଙ୍କର ଏକ ଦିନରେ ମୁଣ୍ଡନ କରାଇବ ନାହିଁ ।

## ୩୯୨-ଦୈବୀବିପଦରେ ବିବାହ ନିର୍ଣ୍ଣୟ

ଦୁର୍ଭିକ୍ଷେ ରାଷ୍ଟଭଙ୍ଗେ ଚ ପିତ୍ରୋର୍ବା ପ୍ରାଣସଂଶୟେ ।
ପ୍ରୌଢ଼ାୟାମପି କନ୍ୟାୟାଂ ନାନୁକୂଲ୍ୟଂ ପ୍ରତୀକ୍ଷ୍ୟତେ ।

(ଜ୍ୟୋତିଷସାରେ)

ବ୍ୟାଖ୍ୟା-ଦୁର୍ଭିକ୍ଷ, ରାଷ୍ଟ୍ରଭଙ୍ଗ ଓ ମାତା ପିତା ଦୁହିଁଙ୍କର ପ୍ରାଣସଂଶୟ ସମୟରେ ଏବଂ କନ୍ୟାର ପ୍ରୌଢ଼ାବସ୍ଥାରେ ଶୁଭକାଳକୁ ଅପେକ୍ଷା ନ କରିବ ଶୀଘ୍ର ବିବାହ କରିଦେବ ।

## ୩୯୩-ଅଶୌଚରେ ବିବାହ କିରବାର ବିଧି

ଦାନେ ବିବାହେ ଯଜ୍ଞେ ଚ ସଂଗ୍ରାମେ ଦେଶବିପ୍ଳବେ ।
ଆପଦ୍ୟପି ଚ କଷ୍ଟାୟାଂ ସଦ୍ୟଃଶୌଚଂ ବିଧିୟତେ ।

(ଯାଜ୍ଞବଲ୍କ୍ୟଃ)

ବ୍ୟାଖ୍ୟା-ଦାନ, ବିବାହ, ଯଜ୍ଞ, ଯୁଦ୍ଧ, ଦେଶରେ ଉପଦ୍ରବ ଓ କଷ୍ଟକର ବିପଦ ସମୟରେ ଅଶୌଚ ଘଟିଲେ ସଦ୍ୟଶୌଚ କରି କର୍ମ କରିବ ।



ବିବାହୋତ୍ସବଯଜ୍ଞେଷୁ ତ୍ୱନ୍ତରାମୃତସୂତକେ
ପୂର୍ବସଂକଳ୍ପିତାର୍ଥେଷୁ ନ ଦୋଷଃ ପରିକୀର୍ତ୍ତିତଃ ।। (ବୃହସ୍ପତିଃ)

ବ୍ୟାଖ୍ୟା-ପୂର୍ବ ସଂକଳ୍ପିତ ବିବାହ, ଉତ୍ସବ ଓ ଯଜ୍ଞକର୍ମମାନଙ୍କ ମଧ୍ୟରେ ଜନନାଶୌଚ ବା ମରଣାଶୌଚ ପଡ଼ିଲେ ସେ ଦୋଷ ଧରାଯାଏ ନାହିଁ ।

ବିବାହୋତ୍ସୂଯଜ୍ଞେଷୁ ତ୍ୱନ୍ତରାମୃତସୂତକେ ।
ପରୈରନ୍ନଂ ପ୍ରଦାତବ୍ୟଂ ଭୋକ୍ତବ୍ୟଂ ଚ ଦ୍ୱିଜୋତ୍ତମୈଃ ।।
(ଷଟତ୍ରିଂଶନ୍ମତେ)

ବ୍ୟାଖ୍ୟା-ବିବାହ, ଉତ୍ସବ ଓ ଯଜ୍ଞ ଏମାନଙ୍କ ମଧ୍ୟରେ ଜନନାଶୌଚ ବା ମରଣାଶୌଚ ଘଟିଲେ ନିଜେ ଖାଦ୍ୟଦ୍ରବ୍ୟ ସ୍ପର୍ଶ ନ କରି ପରଗୋତ୍ରୀ ବ୍ରାହ୍ମଣଦ୍ୱାରା ବ୍ରାହ୍ମଣ ଭୋଜନ କରାଇବ ।

ବ୍ରତଯଜ୍ଞବିବାହେଷୁ ଶ୍ରାଦ୍ଧେ ହୋମେଽର୍ଚ୍ଚନେ ଜପେ ।
ପ୍ରାରବ୍ଧେ ସୂତକଂ ନ ସ୍ୟାଦାନାରବ୍ଧେ ତୁ ସୂତକଂ ।।
ପ୍ରାରମ୍ଭୋବରଣଂ ଯଜ୍ଞେ ସଂକଳ୍ପୋ ବ୍ରତଜାପୟୋଃ ।
ନାନ୍ଦୀଶ୍ରାଦ୍ଧଂ ବିବାହାଦୌ ଶ୍ରାଦ୍ଧେ ପାକପରିଷ୍କ୍ରିୟଃ ।।
(ଉଦ୍‌ବାହତତ୍ତ୍ୱେ)

ବ୍ୟାଖ୍ୟା-ବ୍ରତ, ଯଜ୍ଞ, ବିବାହ, ଶ୍ରାଦ୍ଧ, ହୋମ, ପୂଜା ଓ ଜପ ଇତ୍ୟାଦି କର୍ମମାନ ଆରମ୍ଭ ହୋଇଗଲାପରେ ଅଶୌଚ ଘଟିଲେ କର୍ମ ବନ୍ଦ ହେବ ନାହିଁ; କିନ୍ତୁ ଆରମ୍ଭ ନ ହେବା ପୂର୍ବରୁ ଅଶୌଚ ଘଟିଲେ କର୍ମ ବନ୍ଦ ହେବ । ଋତ୍ୱିକ୍ ପ୍ରଭୃତିଙ୍କୁ ବରଣ କଲେ ଯଜ୍ଞର ଆରମ୍ଭ ହୁଏ, ସଂକଳ୍ପ କଲେ ବ୍ରତ ଓ ଜପର ଆରମ୍ଭ ହୁଏ, ବୃଦ୍ଧି ଶ୍ରାଦ୍ଧ କଲେ ବିବାହ ଓ ଦେବପ୍ରତିଷ୍ଠାଦି କର୍ମର ଆରମ୍ଭ ହୁଏ, ଶ୍ରାଦ୍ଧାନ୍ନ ପାକ ହେଲେ ଶ୍ରାଦ୍ଧର ଆରମ୍ଭ ହୁଏ ।

ଗୃହୀତମଧୁପର୍କସ୍ୟ ଯଜମାନାଚ୍ଚ ଋତ୍ୱିଜଃ ।
ପଶ୍ଚାଦଶୌଚେ ପତିତେ ନାଶୌଚମିତି ନିଶ୍ଚୟଃ ।। (ବ୍ରାହ୍ମେ)

ବ୍ୟାଖ୍ୟା-ଋତ୍ୱିକ୍‌ମାନେ ଯଜମାନଠାରୁ ମଧୁପର୍କ ଗ୍ରହଣ କଲାପରେ ଅଶୌଚ ହେଲେ ତାହା ଧରାଯାଏ ନାହିଁ; କିନ୍ତୁ ମଧୁପର୍କ ଗ୍ରହଣ ପୁର୍ବରୁ ଅଶୌଚ ଧରାଯାଏ ।

## ୩୯୪-ବିବାହକାଳରେ କନ୍ୟା ଋତୁମତୀ ହେଲେ ବିବାହ ବିଧି

ବିବାହ ବିହିତେ ଯଜ୍ଞେ ହୋମକାଳ ଉପସ୍ଥିତେ
କନ୍ୟାଋତୁମତୀଂ ଦୃଷ୍ଟ୍ୱା କଥଂ କୁର୍ବନ୍ତି ଯାଜ୍ଞିକାଃ ।।

ସ୍ନାପୟିତ୍ୱା ତୁ ତାଂ କନ୍ୟାମର୍ଚ୍ଚ ୟିତ୍ୱା ଯଥାବିଧି ।
ଯୁଞ୍ଜାନାମାହୂତିଂ ହୁତ୍ୱା ତତଃ କର୍ମ ନିଯୋଜୟେତ୍ ।। (ଯଜ୍ଞପାର୍ଶ୍ୱେ)

ବ୍ୟାଖ୍ୟା-ବିବାହ, ଯଜ୍ଞ ଓ ହୋମ ସମୟରେ କନ୍ୟା ଋତୁମତୀ ହେଲେ ତାହାଙ୍କୁ ସ୍ନାନ କରାଇ ବିଧିପୂର୍ବକ ସଂସ୍କାର କରି ଆହୁତି ଦେଇ କର୍ମରେ ନିଯୁକ୍ତ କରିବ ।

## ୩୯୫-ବିବାହ କାଳରେ ମାତା ରଜସ୍ୱଳା ହେଲେ ବିବାହ ବିଚାର

ପ୍ରାରମ୍ଭାତ୍ (ନାନ୍ଦୀଶ୍ରାଦ୍ଧାତ୍) ପ୍ରାଗ୍ ବିବାହସ୍ୟ ମାତା ଯଦି ରଜସ୍ୱଳା ।
ନିବୃତ୍ତିସ୍ତସ୍ୟ କର୍ତ୍ତବ୍ୟା ସହସ୍ରଶ୍ରୁତିଚୋଦନାତ୍ ।। (ମାଧବୀୟେ)
ଚୌଳେ ଚ ବ୍ରତବନ୍ଧେ ଚ ବିବାହେ ଯଜ୍ଞକର୍ମଣି ।
ଭାର୍ଯ୍ୟା ରଜସ୍ୱଳା ଯସ୍ୟ ପ୍ରାୟସ୍ତସ୍ୟ ନ ଶୋଭନଂ ।। (ମେଧାତିଥିଃ)
ବିବାହବ୍ରତଚୂଡ଼ାସୁ ମାତା ଯଦି ରଜସ୍ୱଳା ।
ତଦା ନ ମଙ୍ଗଳଂ କାର୍ଯ୍ୟଂ ଶୁଦ୍ଧୌ କାର୍ଯ୍ୟଂ ଶୁଭେପ୍ସୁଭିଃ ।। (ଗର୍ଗଃ)

ବ୍ୟାଖ୍ୟା-ବିବାହର ନାନ୍ଦୀଶ୍ରାଦ୍ଧ ପୂର୍ବରୁ ଯଦି ମାତା ରଜସ୍ୱଳା ହୁଏ, ତାହାହେଲେ କର୍ମ କରିବ ନାହିଁ । ଏହା ଅନେକ ଶ୍ରୁତିର ମତ । ଚୂଡ଼ାକର୍ମ, ଉପନୟନ, ବିବାହ ଓ ଯଜ୍ଞକର୍ମରେ ଭାର୍ଯ୍ୟା ରଜସ୍ୱଳା ହେଲେ ତାହାର ଶୁଭ ହୁଏ ନାହିଁ । ବିବାହ, ବ୍ରତ ଓ ଚୂଡ଼ାକର୍ମ ପ୍ରଭୃତି ମଙ୍ଗଳ କାର୍ଯ୍ୟରେ ମାତା ଯଦି ରଜସ୍ୱଳା ହୁଏ ତେବେ ସେ କର୍ମ କରିବ ନାହିଁ; କିନ୍ତୁ ଶୁଭାଭିଳାଷି ବ୍ୟକ୍ତିମାନେ ସେ ସମୟରେ କର୍ମ ନ କରି ଶୁଦ୍ଧି ହେଲାପରେ କରିବେ ।

## ୩୯୬-ରାତ୍ରିଦାନର ବିଧି ନିଷେଧ

ରାତ୍ରୌ ଦାନଂ ନ ଶଂସନ୍ତିବିନାଚାଭୟଦକ୍ଷିଣାଂ ।
ବିଦ୍ୟାଂ କନ୍ୟାଂ ଦ୍ୱିଜଶ୍ରେଷ୍ଠ ଦୀପମନ୍ନଂ ପ୍ରତିଶ୍ରୟାଂ ।। (ମହାଭାରତେ)

ବ୍ୟାଖ୍ୟା-ହେ ଦ୍ୱିଜଶ୍ରେଷ୍ଠ ! ଅଭୟଦାନ ବିଦ୍ୟାଦାନ, କନ୍ୟାଦାନ, ଦୀପଦାନ, ଅନ୍ନଦାନ ଓ ପ୍ରବାସିକୁ ଆଶ୍ରୟଦାନ ବ୍ୟତିରେକେ ରାତ୍ରରେ ଅନ୍ୟଦାନ ନିଷିଦ୍ଧ ।

## ୩୯୭-ଜ୍ୟେଷ୍ଠପୁତ୍ର ଓ ଜ୍ୟେଷ୍ଠକନ୍ୟାର ଜ୍ୟେଷ୍ଠମାସରେ ବିବାହ ନିଷେଧ

ଜ୍ୟେଷ୍ଠସ୍ୟ ଜ୍ୟେଷ୍ଠକନ୍ୟାୟା ବିବାହୋ ନ ପ୍ରଶସ୍ୟତେ ।
ତୟୋରନ୍ୟତରେ ଜ୍ୟେଷ୍ଠେ ଜ୍ୟେଷ୍ଠୋମାସଃ ପ୍ରଶସ୍ୟତେ ।।



ଦ୍ୱୌ ଜ୍ୟେଷ୍ଠୌ ମଧ୍ୟମୌ ପ୍ରୋକ୍ତାବେକଜ୍ୟେଷ୍ଠଂ ଶୁଭାବହଂ ।
ଜ୍ୟେଷ୍ଠତ୍ରୟଂ ନ କୁର୍ବୀତ ବିବାହ ସର୍ବସମ୍ମତଂ ॥ (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ଜ୍ୟେଷ୍ଠ ମାସରେ ଜ୍ୟେଷ୍ଠ କନ୍ୟାର ବିବାହ ନିଷେଧ । ଏଥିରୁ ଅନ୍ୟତର ଅର୍ଥାତ୍ ଦୁଇ ବା ଏକ ଜ୍ୟେଷ୍ଠ ହେଲେ ବିବାହ କରିବ । ଦୁଇ ଜ୍ୟେଷ୍ଠ ବିବାହରେ ଫଳ ମଧ୍ୟମ, ଏକ ଜ୍ୟେଷ୍ଠ ବିବାହରେ ଫଳ ଉତ୍ତମ ଏବଂ ତିନି ଜ୍ୟେଷ୍ଠ ହେଲେ କଦାପି ବିବାହ କରିବ ନାହିଁ । ଏହା ସର୍ବସମ୍ମତ ।

## ୩୯୮-ବିବାହେ ମାସର ଫଳାଫଳ

ମାଘ ଫାଲ୍‌ଗୁନେବୈଶାଖେ ଯଦ୍ୟୂଢ଼ା ମାର୍ଗଶୀର୍ଷକେ ।
ଜ୍ୟେଷ୍ଠେ ଆଷାଢ଼କେ ଚୈବ ସୁଭଗା ବିତ୍ତସଂଯୁତା ॥ (ବ୍ୟାସଃ)

ବ୍ୟାଖ୍ୟା-ମାଘ, ଫାଲ୍‌ଗୁନ୍, ବୈଶାଖ, ମାର୍ଗଶିର, ଜ୍ୟେଷ୍ଠ ଓ ଆଷାଢ଼ ମାସରେ ବିବାହ କଲେ କନ୍ୟା ସୌଭାଗ୍ୟବତୀ ଓ ଧନଧାନ୍ୟବତୀ ହୁଏ ।

ଶ୍ରାବଣେଽପି ଚ ପୌଷେ ବା କନ୍ୟାଭାଦ୍ରପଦେ ତଥା ।
ଚୈତ୍ରଶ୍ୱୟୁକାର୍ତ୍ତିକେଷୁ ଯାତି ବୈଧବ୍ୟତାଂ ଲଘୁ ॥ (ବ୍ୟାସଃ)

ବ୍ୟାଖ୍ୟା-ଚୈତ୍ର, ଶ୍ରାବଣ, ଭାଦ୍ର, ଆଶ୍ୱିନ, କାର୍ତ୍ତିକ, ପୌଷ ମାସରେ ବିବାହ କଲେ କନ୍ୟା ଅତିଶୀଘ୍ର ବିଧବା ହୁଏ ।

## ୩୯୯-ବିବାହାଦି ଶୁଭକର୍ମ, ଜନ୍ମମାସ, ଜନ୍ମତିଥି ଓ ଜନ୍ମ ନକ୍ଷତ୍ରରେ ନିଷେଧ

ଜନ୍ମର୍ଯେ ଜନ୍ମଦିବସେ ଜନ୍ମମାସେ ଶୁଭଂ ତ୍ୟଜେତ୍ ।
ଜ୍ୟେଷ୍ଠେ ମାସ୍ୟାଦିଗର୍ଭସ୍ୟ ଶୁଭଂ ବର୍ଜ୍ୟଂ ସ୍ତ୍ରିୟାଅପି ॥ (ରାଜମାର୍ତ୍ତଣ୍ଡେ)

ବ୍ୟାଖ୍ୟା-ଜନ୍ମମାସରେ, ଜନ୍ମଦିବସରେ ଓ ଜନ୍ମନକ୍ଷତ୍ରରେ ବର ଓ କନ୍ୟାର ବିବାହାଦି ଶୁଭକର୍ମ ନିଷେଧ, ଆଉ ଜ୍ୟେଷ୍ଠପୁତ୍ର ଓ ଜ୍ୟେଷ୍ଠ କନ୍ୟାର ଜ୍ୟେଷ୍ଠମାସରେ ବିବାହାଦି ଶୁଭକର୍ମ ନିଷେଧ ।

ଜାତଂ ଦିନଂ ଦୂଷୟତେ ବଶିଷ୍ଠୋହ୍ୟଷ୍ଟୌ ଚ ଗର୍ଗୋନିୟତଂ ଦଶାତ୍ରିଃ ।
ଜାତସ୍ୟ ପକ୍ଷଂ କିଳ ଭାଗୁରିଷ୍ଟ ଶେଷାଃ ପ୍ରଶସ୍ତାଃ ଖଳୁ ଜନ୍ମମାସି ॥
(ରାଜମାର୍ତ୍ତଣ୍ଡେ)

ବ୍ୟାଖ୍ୟା-ବଶିଷ୍ଠ କହନ୍ତି କେବଳ ଜନ୍ମଦିବସ ନିଷେଧ, ଗର୍ଗ କହନ୍ତି ଜନ୍ମଦିନଠାରୁ ଆଠଦିନ ପର୍ଯ୍ୟନ୍ତ ନିଷେଧ ଓ ଅତ୍ରି କହନ୍ତି ଜନ୍ମଦିନଠାରୁ ଦଶଦିନ

ପର୍ଯ୍ୟନ୍ତ ନିଷେଧ ଆଉ ଭାଗୁରି କହନ୍ତି କି ଜନ୍ମଦିନଠାରୁ ପନ୍ଦରଦିନ ପର୍ଯ୍ୟନ୍ତ ନିଷେଧ । ଅତଏବ ଏମାନଙ୍କ ମତାନୁସାରେ ଜନ୍ମମାସର ଅବଶିଷ୍ଟ ଦିନମାନଙ୍କରେ ଶୁଭକର୍ମ ହୋଇପାରେ ।

## ୪୦୦-ବିବାହରେ ଗୁରୁଶୁଦ୍ଧି

ସ୍ତ୍ରୀଣଂ ଗୁରୁବଲଂ ଶ୍ରେଷ୍ଠଂ ପୁରୁଷାଣାଂ ରବେର୍ବଲଂ ।
ତୟୋଶ୍ଚନ୍ଦ୍ରବଲଂ ଶ୍ରେଷ୍ଠମିତି ଗର୍ଗେଣ ଭାଷିତଂ ॥

ବ୍ୟାଖ୍ୟା-ସ୍ତ୍ରୀମାନଙ୍କର ଗୁରୁବଳ ଶ୍ରେଷ୍ଠ, ପୁରୁଷମାନଙ୍କର ରବିବଳ ଶ୍ରେଷ୍ଠ ଏବଂ ଉଭୟଙ୍କର ଚନ୍ଦ୍ର ବଳ ଶ୍ରେଷ୍ଠ ଅଟେ, ଏହା ଗର୍ଗଙ୍କର ମତ ।

ନଷ୍ଟାତ୍ମଜା ଧନବତୀ ବିଧବା କୁଶୀଳା । ପୁତ୍ରାନ୍ୱିତ୍ୱା ହତଧବା ସୁଭଗା ବିପୁତ୍ରା ।
ସ୍ୱାମିପ୍ରିୟା ବିଗତପୁତ୍ରଧବା ଧନାଢ୍ୟା ବନ୍ଧ୍ୟା । ଭବେତ୍ ସୁରଗୁରୌ କ୍ରମଶୋଽଭିଜନ୍ମା ॥
(ଦେବଲଃ)

ବ୍ୟାଖ୍ୟ-ଜନ୍ମ ବୃହସ୍ପତିରେ ବିବାହ କଲେ କନ୍ୟାର ସନ୍ତତି ନଷ୍ଟହୁଏ, ଏହିପରି ଦ୍ୱିତୀୟରେ ଧନବତୀ,ତୃତୀୟରେ ବିଧବା, ଚତୁର୍ଥରେ କୁ-ଚରିତ୍ରା, ପଞ୍ଚମରେ ପୁତ୍ରବତୀ, ଷଷ୍ଠରେ ବିଧବା, ସପ୍ତମରେ ସୌଭାଗ୍ୟବତୀ, ଅଷ୍ଟମରେ ପୁତ୍ରହୀନା, ନବମରେ ସ୍ୱାମୀପ୍ରିୟା, ଦଶମରେ ପତିପୁତ୍ରବିହୀନା, ଏକାଦଶରେ ବହୁ ଧନବତୀ ଓ ଦ୍ୱାଦଶରେ ବନ୍ଧ୍ୟା ହୁଏ ।

ଗୁର୍ବାଦିତ୍ୟେ ବ୍ୟତୀପାତେ ବକ୍ରାତୀଚାରଗେ ଗୁରୌ ।
ନଷ୍ଟେ ଶଶିନି ଶୁକ୍ରେବା ବାଲେ ବୃଦ୍ଧେଽଥବା ଗୁରୌ ॥
ପୌଷେ ଚୈତ୍ରେଽଥ ବର୍ଷାସୁ ଶରଦ୍ୟଧିକମାସକେ ।
କେତୂଦ୍‌ଗମେ ନିରଂଶେଽର୍କେସିଂହସ୍ଥେଽମରନ୍ତ୍ରିଣି ॥
ବିବାହବ୍ରତଯାତ୍ରାଦିପୁରହର୍ମ୍ୟଗୃହାଦିକଂ ।
କ୍ଷୌରଂ ବିଦ୍ୟୋପବିଦ୍ୟା ଚ ଯତ୍ନତଃ ପରିବର୍ଜୟେତ୍ । (ଶୌନକଃ)

ବ୍ୟାଖ୍ୟା-ଏକରାଶି ଓ ଏକ ନକ୍ଷତ୍ରରେ ବୃହସ୍ପତି ଓ ସୂର୍ଯ୍ୟ ଥିଲେ ଏହାକୁ ଗୁର୍ବାଦିତ୍ୟ କହନ୍ତି (ଏହା ଅଶୁଦ୍ଧକାଳ) ଆଉ ବ୍ୟତିପାତ ଯୋଗରେ, ଗୁରୁଙ୍କର ବକ୍ର ଓ ଅତିଚାରରେ, ନଷ୍ଟଚନ୍ଦ୍ରରେ ଅର୍ଥାତ୍ ଅମାବାସ୍ୟା ତିଥିରେ, ଶୁକ୍ରାସ୍ତରେ, ଗୁରୁଙ୍କର ବାଲ୍ୟ ଓ ବୃଦ୍ଧାବସ୍ଥାରେ, ପୌଷ ଓ ଚୈତ୍ର ମାସରେ, ବର୍ଷା ଓ ଶରତ୍ ଋତୁରେ, ଅଧିମାସ ଅର୍ଥାତ୍ ମଳମାସରେ, କେତୁ ଗ୍ରହର ଉଦୟ ସମୟରେ, ମାସାନ୍ତରେ, ବୃହସ୍ପତି ସିଂହରାଶିରେ ଥିବା ସମୟରେ ଅଶୁଦ୍ଧକାଳ ହୁଏ, ଏଥିରେ ବିବାହ, ବ୍ରତ, ଯାତ୍ରାଦି, ପୁର, ଅଟ୍ଟାଳିକା ଓ ଗୃହ, କ୍ଷୌର, ବିଦ୍ୟା ଓ ଉପବିଦ୍ୟାର ଆରମ୍ଭ ଇତ୍ୟାଦି କର୍ମମାନ କରିବା ନିଷେଧ ।



## ୪୦୧-ବିବାହରେ ରବିଶୁଦ୍ଧି

ଜନ୍ମନ୍ୟର୍କେ ଚ ନାରୀ ଭବତି ଚ ବିଧବା ବନ୍ଧୁହୀନା ଦ୍ୱିତୀୟେ ।
ନିଃସ୍ୱା ପାତାଳସଂସ୍ଥେ ତଦନୁ ହତସୁତା ସପ୍ତମେ ନଷ୍ଟକାମା ।।
ମୃତ୍ୟୌ ପ୍ରାପ୍ନୋତି ମୃତ୍ୟୁଂ ବ୍ୟୟନବମଗୃହେ ରୋଗଶୋକୌ କ୍ରମେଣ ।
ଶେଷେ ରାଶୌ ବିବାହେ ବିପୁଳଧନବତୀ ସୌଖ୍ୟମାନାର୍ଥଯୁକ୍ତା ।।
(ପଣ୍ଡିତସର୍ବସ୍ୱେ)

ବ୍ୟାଖ୍ୟା-କନ୍ୟାର ଜନ୍ମରାଶିରେ ରବି ଥାଇ ବିବାହ କଲେ ବିଧବା, ଏହିପରି ଦ୍ୱିତୀୟରେ ବନ୍ଧୁହୀନା, ଚତୁର୍ଥରେ ଦରିଦ୍ରା, ପଞ୍ଚମରେ ପୁତ୍ରହୀନା, ସପ୍ତମରେ ନଷ୍ଟକାମା, ଅଷ୍ଟମରେ ମୃତ୍ୟୁପ୍ରାପ୍ତା, ଦ୍ୱାଦଶ ଓ ନବମରେ ରୋଗ ଶୋକାଯୁକ୍ତା; ଆଉ ରବି ଅବଶେଷ ଚାରିଗୋଟି ରାଶି ଅର୍ଥାତ୍ ତୃତୀୟ, ଷଷ୍ଠ, ଦଶମ ଓ ଏକାଦଶ ରାଶିମାନଙ୍କରେ ଥାଇ ବିବାହ କଲେ କନ୍ୟା ବହୁଧନବତୀ ସୁଖଶାଳିନୀ ଓ ସମ୍ମାନଯୁକ୍ତା ହୁଏ ।

## ୪୦୨-ବିବାହରେ ଚନ୍ଦ୍ରଶୁଦ୍ଧି

ବୈଧବ୍ୟମେତି ନିଧନେ ବିଧବା ଚତୁର୍ଥେ ଚନ୍ଦ୍ରେଚିରେଣ ସୁତଧର୍ମଧନବ୍ୟୟସ୍ଥେ ।
ବୈଧବ୍ୟଦୁଃଖଗଦଶୋକଭୟାନି କନ୍ୟା ପ୍ରାପ୍ନୋତି ଶେଷଭବନେଷୁ ସୁତାର୍ଥସମ୍ପତ୍ ।।
(ପଣ୍ଡିତସର୍ବସ୍ୱେ)

ବ୍ୟାଖ୍ୟ-ଚନ୍ଦ୍ର କନ୍ୟାର ଅଷ୍ଟମ, ଚତୁର୍ଥ, ପଞ୍ଚମ, ନବମ, ଦ୍ୱିତୀୟ ଓ ଦ୍ୱାଦଶ ରାଶିରେ ଥିବା ସମୟରେ ବିବାହ କଲେ ସେ କନ୍ୟା ବିଧବା ହୁଏ ଓ ଦୁଃଖ, ରୋଗ, ଶୋକ ଏବଂ ଭୟପ୍ରାପ୍ତ ହୁଏ । ଅବଶିଷ୍ଟ ଛଅଗୋଟି ରାଶିରେ ଥାଇ ବିବାହ କଲେ ସୁତ ଓ ସମ୍ପଦ ଲାଭ ହୁଏ ।

## ୪୦୩-ବିବାହରେ ବାରଶୁଦ୍ଧି

ଗୁରୁ ଶୁକ୍ର ବୁଧେନ୍ଦୂ ନାଂ ଦିନେଷୁ ସୁଭଗା ଭବେତ୍
ସୂର୍ଯ୍ୟାର୍କିଭୂମିପୁତ୍ରାଣାଂ ଦିନେଷୁ କୁଳଟା ଭବେତ୍ ।
ନ ବାରଦୋଷାଃ ପ୍ରଭବନ୍ତି ରାତ୍ରୌ ବିଶେଷତୋଽର୍କୋବନିଭୂଷନୀନାଂ ।।
(ଜ୍ୟୋତିସ୍ତତ୍ତ୍ୱେ)

ବ୍ୟାଖ୍ୟା-ଗୁରୁ, ଶୁକ୍ର, ବୁଧ ଓ ସୋମ ବାରରେ ବିବାହ କଲେ କନ୍ୟା ସୁଭଗା ହୁଏ; କିନ୍ତୁ ରବି, ଶନି ଓ ମଙ୍ଗଳବାରରେ ବିବାହ କଲେ କନ୍ୟା କୁଳଟା ହୁଏ । ରାତ୍ରି ବିବାହରେ ବାରଦୋଷ ଧରାଯାଏ ନାହିଁ ।

## ୪୦୪-ବିବାହରେ ତିଥିଶୁଦ୍ଧି

ନନ୍ଦାସୁ ଚିତ୍ରୋତ୍ସବବାସ୍ତୁତନ୍ତକ୍ଷେତ୍ରାଦି କୁର୍ବୀତ ତଥୈବ ନୃତ୍ୟଂ ।
ବିବାହଭୂଷାଶକଟଧ୍ୱଜାନି ଭଦ୍ରାସୁ କାର୍ଯ୍ୟାଣ୍ୟପି ପୌଷ୍ଟିକାନି ।।
ଜୟାସୁ ସଂଗ୍ରାମବଳେପଯୋଗିକାର୍ଯ୍ୟାଣି ସିଧ୍ୟନ୍ତ୍ୟପି ନିର୍ମିତାନି ।
ରିକ୍ତାସୁ ବିଦ୍ୱଦ୍‌ବଧଘାତସିଦ୍ଧି ବିଷାଦିଶସ୍ତ୍ରାଣି ଚ ଯାନ୍ତି ସିଦ୍ଧିଂ ।।
ପୂର୍ଣ୍ଣାସୁ ମାଙ୍ଗଲ୍ୟବିବାହଯାତ୍ରା ସୁପୌଷ୍ଟିକଂ ଶାନ୍ତିକକର୍ମ କାର୍ଯ୍ୟଂ ।
ସଦୈବ ଦର୍ଶେ ପିତୃକର୍ମଯୁକ୍ତଂ ନାନ୍ୟାନି କାର୍ଯ୍ୟାଣି ଚ ମଙ୍ଗଳାନି ।।
(ଜ୍ୟୋତିଷସାରେ)

ଅମାୟାଂ ଚୈବ ରିକ୍ତାୟାଂ କରଣେ ବିଷ୍ଟି ସଂଜ୍ଞକେ ।
ଯଃ କରୋତି ବିବାହଂ ଶୀଘ୍ରଂ ଯାତି ଯମାଳୟଂ । (ଜ୍ୟୋତିସ୍ତତ୍ତ୍ୱେ)

ବ୍ୟାଖ୍ୟା-ପ୍ରତିପଦ୍, ଷଷ୍ଠୀ, ଏକାଦଶୀ ଏମାନଙ୍କୁ ନନ୍ଦାତିଥି କହନ୍ତି । ଏଥିରେ ଚିତ୍ର ଅର୍ଥାତ୍ ଆନନ୍ଦଦାୟକ କର୍ମ, ଦେବତାମାନଙ୍କର ଉତ୍ସବ, ବାସ୍ତୁତନ୍ତ ଅର୍ଥାତ୍ ଗୃହାରମ୍ଭ ପ୍ରଭୃତି ଗୃହସମ୍ବନ୍ଧୀୟ କର୍ମ ଓ ଗୃହନିର୍ମାଣ, ବାସ୍ତୁକ୍ରିୟାଦିକର୍ମ, କ୍ଷେତ୍ରକର୍ମ ଏବଂ ନୃତ୍ୟ ଗୀତାଦିକର୍ମ କରାଯାଏ । ଦ୍ୱିତୀୟା, ସପ୍ତମୀ, ଦଶମୀ, ଏମାନଙ୍କୁ ଭଦ୍ରାତିଥି କହନ୍ତି । ଏଥିରେ ବିବାହ ଅଳଙ୍କାର, ଶକଟ, ଧ୍ୱଜାଦି ନିର୍ମାଣ ଓ ପୌଷ୍ଟିକ କର୍ମ କରାଯାଏ । ତୃତୀୟା, ଅଷ୍ଟମୀ, ତ୍ରୟୋଦଶୀ ଏମାନଙ୍କୁ ଜୟାତିଥି କହନ୍ତି । ଏଥିରେ ଯୁଦ୍ଧ ଓ ସେନାର ଉପଯୋଗୀ ଅସ୍ତ୍ର ଶସ୍ତ୍ରାଦି ନିର୍ମାଣ କରାଯାଏ । ଚତୁର୍ଥୀ, ନବମୀ, ଚତୁର୍ଦ୍ଦଶୀ ଏମାନଙ୍କୁ ରିକ୍ତା କହନ୍ତି । ଏଥିରେ ବିଦ୍ୱାନ ଲୋକର ବଧ, ଘାତକର୍ମର ସିଦ୍ଧି; ବିଷପ୍ରୟୋଗ, ଶାସ୍ତ୍ରପ୍ରୟୋଗ ଇତ୍ୟାଦି ଉଗ୍ରକର୍ମ କରାଯାଏ । ପଞ୍ଚମୀ, ଦଶମୀ, ପୂର୍ଣ୍ଣିମା ଏମାନଙ୍କୁ ପୂର୍ଣ୍ଣତିଥି କହନ୍ତି । ଏଥିରେ ବିବାହ ଯାତ୍ରା, ପୌଷ୍ଟିକ ଓ ଶାନ୍ତିକ କର୍ମ କରାଯାଏ ଓ ଅମାବ୍ୟାସ୍ୟରେ ପିତୃକର୍ମ କରିବ, ଅନ୍ୟ କୌଣସି ଶୁଭକର୍ମ କରିବ ନାହିଁ । କିନ୍ତୁ ଅମାବାସ୍ୟା, ରିକ୍ତାତିଥି ଓ ବିଷ୍ଟିକରଣରେ ବିବାହକର୍ତ୍ତା ଅତିଶୀଘ୍ର ଯମାଳୟକୁ ଯାଏ ।

## ୪୦୫-ବିବାହ ନକ୍ଷତ୍ର ଫଳ

ରେବତ୍ୟୁତ୍ତର ରୋହିଣୀମୃଗଶିରୋମୂଳାନୁରାଧାମଘା-
ହସ୍ତାସ୍ୱାତିଷୁ ତୌଳିଷଷ୍ଠମିଥୁନେ ଷୁଦ୍ୟତ୍‌ସୁପାଣିଗ୍ରହଃ ।
ସପ୍ତାଷ୍ଟାନ୍ତ୍ୟବହିଃଶୁଭୈରୁଡୁପତାବେକାଦଶେ ଦ୍ୱିତ୍ରିଗେ
କ୍ରୂରୈସ୍ତ୍ର୍ୟାୟଷଡ଼ଷ୍ଟଗୈର୍ନତୁଭୃଗୌ ଷଷ୍ଠେ କୁଜେ ଚାଷ୍ଟମେ ।।
(ବିଶ୍ୱକୋଷେ)



ବ୍ୟାଖ୍ୟା-ରେବତୀ, ଉତ୍ତରଫାଲ୍‌ଗୁନୀ, ଉତ୍ତରଷାଢ଼ା, ଉତ୍ତରଭାଦ୍ରପଦ, ରୋହିଣୀ, ମୃଗଶିରା, ମୂଳା, ଅନୁରାଧା, ମଘା, ହସ୍ତା ଓ ସ୍ୱାତୀ ଏହିସବୁ ନକ୍ଷତ୍ରରେ ମିଥୁନ, କନ୍ୟା ଓ ତୁଳା ଏ ଲଗ୍ନମାନଙ୍କରେ ଏବଂ ଲଗ୍ନର ସପ୍ତମ, ଅଷ୍ଟମ, ଦ୍ୱାଦଶ ଛଡ଼ା ଅନ୍ୟ ସ୍ଥାନରେ ଶୁଭଗ୍ରହ ଥିଲେ ଆଉ ଦ୍ୱିତୀୟ, ତୃତୀୟ ଓ ଏକାଦଶ ସ୍ଥାନରେ ଚନ୍ଦ୍ର ଥିଲେ ପାପଗ୍ରହମାନେ ତୃତୀୟ, ଷଷ୍ଠ, ଏକାଦଶ ଓ ଅଷ୍ଟମ ସ୍ଥାନରେ ଥିଲେ ଏବଂ ଶୁକ୍ର ଷଷ୍ଠରେ ଓ ମଙ୍ଗଳ ଅଷ୍ଟମରେ ନ ଥିଲେ ବିବାହ କଲେ ଶୁଭ ହୁଏ ।

**ଆଦ୍ୟେ ମଘାଚତୁର୍ଭାଗେ ନୈର୍ଋତସ୍ୟାଦ୍ୟଏବ ଚ ।**

**ରେବତ୍ୟନ୍ତେ ଚତୁର୍ଭାଗେ ବିବାହଃ ପ୍ରାଣନାଶକଃ । (ଜ୍ୟୋତିସ୍ତତ୍ତ୍ୱେ)**

ବ୍ୟାଖ୍ୟା-ମଘା ଓ ମୂଳାନକ୍ଷତ୍ରର ଆଦ୍ୟପାଦ ଓ ରେବତୀ ନକ୍ଷତ୍ରର ଚତୁର୍ଥପାଦ, ଏଥିରେ ବିବାହ କଲେ ପ୍ରାଣନାଶ ହୁଏ ।

## ୪୦୬-ବିବାହରେ ଯୋଗ ଶୁଦ୍ଧି

**କୁଳଚ୍ଛେଦୋ ବ୍ୟତୀପାତେ ପରିଘେ ସ୍ୱାମୀନାଶନଂ ।**
**ବୈଧୃତାବପି ବୈଧବ୍ୟଂ ବିପଦାହୋଽତିଗଣ୍ଡକେ ।।**
**ବ୍ୟାଘାତେ ବ୍ୟାଧିସଂଘାତଃ ଶୋକାର୍ତ୍ତିର୍ହର୍ଷଣେ ତଥା ।**
**ଶୂଳେ ଚ ବ୍ରଣଶୂଳଂ ସ୍ୟାଦ୍ ଗଣ୍ଡେ ରୋଗଭୟଂ ତଥା ।**
**ବିଷ୍କୁମ୍ଭେଽପ୍ୟହିଦଂଶଃ ସ୍ୟାଦ୍ ବଜ୍ରକେ ମରଣଂ ଭବେତ୍ ।**
**ଏତେ ବୈ ଦାରୁଣାଃ ସର୍ବେ ଦଶଯୋଗାଃ ପ୍ରକୀର୍ତ୍ତିତାଃ ।**
**(ଜ୍ୟୋତିସ୍ତତ୍ତ୍ୱେ)**

ବ୍ୟାଖ୍ୟା-ବ୍ୟତିପାତ ଯୋଗରେ ବିବାହ କଲେ କୁଳଚ୍ଛେଦ, ପରିଘଯୋଗରେ ସ୍ୱାମୀନାଶ, ବୈଧୃତିଯୋଗରେ ବୈଧବ୍ୟ, ଅତିଗଣ୍ଡ ଯୋଗରେ ବିଷଦାହ, ବ୍ୟାଘାତଯୋଗରେ ବ୍ୟାଧି, ହର୍ଷଣଯୋଗରେ ଶୋକ, ଶୂଳଯୋଗରେ ବ୍ରଣଶୂଳ, ଗଣ୍ଡଯୋଗରେ ରୋଗଭୟ, ବିଷ୍କୁମ୍ଭଯୋଗରେ ସର୍ପଦଂଶନ ଏବଂ ବଜ୍ରଯୋଗରେ ମରଣ ହୁଏ । ଅତଏବ ଏ ଦଶଗୋଟି ଯୋଗ ବିବାହରେ ତ୍ୟାଗ କରିବ ।

## ୪୦୭-ବିବାହରେ ନବପଞ୍ଚକ

**ମୀନାଲିଭ୍ୟାଂ ଯୁତେ କୀଟେ କୁମ୍ଭେ ମିଥୁନସଂଯୁତେ ।**
**ମକରେ କନ୍ୟାଯୁକ୍ତେ ନ କୁର୍ଯ୍ୟାନ୍ନବପଞ୍ଚକେ ।। (ଜ୍ୟୋତିଷସାରେ)**

ବ୍ୟାଖ୍ୟା-ଯେରୂପ ମୀନରାଶିକୁ ଗଣିଲେ ବିଛାରାଶି ନବମ ଓ ବିଛାରାଶିରୁ ଗଣିଲେ ମୀନ ପଞ୍ଚମ ହୁଏ ଓ ବିଛାଠାରୁ କର୍କଟ ନବମ ଓ କର୍କଟଠାରୁ ବିଛା ପଞ୍ଚମ ହୁଏ ଏବଂ ମୀନଠାରୁ କର୍କଟ ପଞ୍ଚମ ଓ କର୍କଟଠାରୁ ମୀନ ନବମ ହୁଏ ଆଉ କୁମ୍ଭଠାରୁ ମିଥୁନ ପଞ୍ଚମ ଓ ମିଥୁନଠାରୁ କୁମ୍ଭ ନବମ ହୁଏ ଏବଂ ମକରଠାରୁ କନ୍ୟା ନବମ ଓ କନ୍ୟାଠାରୁ ମକର ପଞ୍ଚମ ହୁଏ । ଉପରୋକ୍ତ ଏହି ଛଅଗୋଟି ନବମ ପଞ୍ଚମ ରାଶିରେ ବିବାହ କରିବ ନାହିଁ । ଏହାଛଡ଼ା ଅନ୍ୟାନ୍ୟ ନବମ ପଞ୍ଚମ ରାଶିରେ ବିବାହ କରିବ ।

## ୪୦୮-ବିବାହରେ ଅରିଷଡ଼ାଷ୍ଟକ

ମେଷକନ୍ୟକୟୋରେବ ତୁଲାମୀନକୟୋସ୍ତଥା ।
ଯୁଗ୍ମାଲ୍ୟୋସ୍ତୁ ବୁଧୈର୍ଜ୍ଞେୟୋ ମୃତୁର୍ବୈ ନକ୍ରସିଂହୟୋଃ ।
କୁମ୍ଭକର୍କଟୟୋଶ୍ଚୈବ ବୃଷକୋଦଣ୍ଡୟୋସ୍ତଥା । (ଜ୍ୟୋତିଷସାରେ)

ବ୍ୟାଖ୍ୟା-ଅରିଷଡ଼ାଷ୍ଟକ ଯଥା-ମେଷ,କନ୍ୟା ଓ ତୁଳା ମୀନ, ମିଥୁନ ଓ ବୃଶ୍ଚିକ, ମକର ଓ ସିଂହ, କୁମ୍ଭ ଓ କର୍କଟ, ବୃଷ ଓ ଧନୁ ଏହି ଉପରୋକ୍ତ ଯୁଗ୍ମ ୨ ରାଶି କନ୍ୟା ଓ ବରର ରାଶି ହେଲେ ବିବାହରେ ଅରିଷଡ଼ାଷ୍ଟକ ବୋଲାନ୍ତି । ଏଥିରେ ବିବାହ କଲେ ମୃତ୍ୟୁ ହୁଏ ।

## ମିତ୍ରଷଡ଼ାଷ୍ଟକ

ସିଂହୋମୀନଯୁତଶ୍ଚୈବ ତୁଳା ବୃଷଯୁତା ତଥା ।
ଧନୁଃ କ୍ର୍କଯୁତଂ ଚୈବ କୁମ୍ଭକନ୍ୟକୟୋସ୍ତଥା ।
ନକ୍ରସ୍ୟ ମିଥୁନେ ପ୍ରୀତିରକାଲ୍ୟୋଃ ପ୍ରୀତିରୁତ୍ତମା ॥
(ଜ୍ୟୋତିଷସାରେ)

ମିଷ୍ଟଷଡ଼ାଷ୍ଟକ ଯଥା-ସିଂହ ଓ ମୀନ, ତୁଳା ଓ ବୃଷ, କୁମ୍ଭ ଓ କନ୍ୟା, ମିଥୁନ ଓ ମକର, ମେଷ ଓ ବୃଶ୍ଚିକ ଏହି ଉପରୋକ୍ତ ଯୁଗ୍ମ ୨ ରାଶି ବର ଓ କନ୍ୟାର ରାଶି ହେଲେ ବିବାହରେ ମିତ୍ରଷଡ଼ାଷ୍ଟକ ବୋଲାନ୍ତି । ଏଥିରେ ବିବାହ କଲେ ଶୁଭଫଳ ମିଳେ ।

## ୪୦୯-ବିବାହରେ ଅରିଦ୍ୱିଦ୍ୱାଦଶ ଓ ମିତ୍ରଦ୍ୱିଦ୍ୱାଦଶ

ଚାପେ ମୃଗେ ବା ଘଟକେ ଚ ମୀନେ ମେଷେ ବୃଷେ ବା ମିଥୁନେ ଚ କର୍କୌ ।
ସିଂହେ ଯୁବତ୍ୟାଂ ଚ ତୁଳାଳି ଯୋଗେ ଦ୍ୱିଦ୍ୱାଦଶେ ମୃତ୍ୟୁଧନପ୍ରହାଣି ॥



ଚାପେ ଫଣୀନ୍ଦ୍ରେ ଘଟଭେ ମୃଗେ ବା ମେଷେ ଝଷେ ସିଂହକୁଳୀରକେଷୁ ।
ଯୁଗ୍ମେ ବୃଷେ ତୌଳଧରେ ଯୁବତ୍ୟାଂ ଦ୍ୱିଦ୍ୱାଶାଷ୍ଟାର୍ଥକରା ଭବନ୍ତି ॥

(ଜ୍ୟୋତିସ୍ତତ୍ତ୍ୱେ)

ବ୍ୟାଖ୍ୟା-ଅରିଦ୍ୱିଦ୍ୱାଦଶ ଯଥା-ଧନୁ ଓ ମକର, କୁମ୍ଭ ଓ ମୀନ, ମେଷ ଓ ବୃଷ, ମିଥୁନ, ଓ କର୍କଟ, ସିଂହ ଓ କନ୍ୟା, ତୁଳା ଓ ବୃଶ୍ଚିକ ଉପରୋକ୍ତ ଯୁଗ୍ମ ୨ ରାଶି ବର ଓ କନ୍ୟାର ରାଶି ହେଲେ ବିବାହରେ ଅରିଦ୍ୱିଦ୍ୱାଦଶ ବୋଲାନ୍ତି । ଏଥିରେ ବିବାହ ହେଲେ ମୃତ୍ୟୁ ଓ ଧନହାନି ହୁଏ ।

ମିତ୍ରଦ୍ୱିଦ୍ୱାଦଶ ଯଥା-ଧନୁ ଓ ବୃଶ୍ଚିକ, କୁମ୍ଭ ଓ ମକର, ମେଷ ଓ ମୀନ, ସିଂହ ଓ କର୍କଟ, ମିଥୁନ ଓ ବୃଷ, ତୁଳା ଓ କନ୍ୟା ଏହି ଉପରୋକ୍ତ ଯୁଗ୍ମ ୨ ରାଶି ବର ଓ କନ୍ୟାର ରାଶି ହେଲେ ବିବାହରେ ମିତ୍ରଦ୍ୱିଦ୍ୱାଦଶ ବୋଲାନ୍ତି । ଏଥିରେ ବିବାହ କଲେ ଧନ ବୃଦ୍ଧି ହୁଏ ।

## ୪୧୦-ବିବାହରେ ଗଣବିଚାର

ଅନୁରାଧାମୃଗୋଽଶ୍ୱିସ୍ତୁ ଶ୍ରବଣାଦିତିପୁଷ୍ୟକାଃ ।
ସ୍ୱାତିର୍ହସ୍ତୋ ରେବତୀ ଚ ନବ ଦେବଗଣାଃ ସ୍ମୃତାଃ ॥
ପୂର୍ବାତ୍ରୟଂ ରୋହିଣୀ ଚ ଉତ୍ତରାତ୍ରୟମେବ ଚ ।
ଅଶ୍ଳେଷା ଶତଭିଷ୍ମୂଳବିଶାଖାଃ କୃତ୍ତିକା ମଘା ।
ଚିତ୍ରା ଜ୍ୟେଷ୍ଠା ଧନିଷ୍ଠା ଚ ନବୈତେ ରାକ୍ଷସାଃ ସ୍ମୃତାଃ ॥

(ଜ୍ୟୋତିଷସାରେ)

ବ୍ୟାଖ୍ୟା-ଦେବଗଣ ଯଥା-ଅନୁରାଧା, ମୃଗଶିରା, ଅଶ୍ୱିନୀ, ଶ୍ରବଣା, ପୁନର୍ବସୁ, ପୁଷ୍ୟା, ସ୍ୱାତୀ, ହସ୍ତା ଓ ରେବତୀ ।

ନରଗଣ ଯଥା-ପୂର୍ବାଫାଲ୍‌ଗୁନୀ, ପୂର୍ବାଷାଢ଼ା, ପୂର୍ବ ଭାଦ୍ରପଦ, ରୋହିଣୀ, ଉତ୍ତରାଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ, ଆର୍ଦ୍ରା, ଦ୍ୱିଜା ।

ରାକ୍ଷସଗଣ ଯଥା-ଅଶ୍ଳେଷା, ଶତଭିଷା, ମୂଳା, ବିଶାଖା, କୃତ୍ତିକା, ମଘା, ଚିତ୍ରା, ଜ୍ୟେଷ୍ଠା ଓ ଧନିଷ୍ଠା ।

## ୪୧୧-ବିବାହରେ ଗଣଫଳ

ସ୍ୱଗଣେ ଚୋତ୍ତମୀ ପ୍ରୀତିର୍ମଧ୍ୟମା ନରଦେବୟୋଃ ।
କଲେହେ ଦେବଦୈତ୍ୟାନାଂ ମୃତ୍ୟୁର୍ମାନବରକ୍ଷସାଂ ॥

(ଜ୍ୟୋତିଷସାରେ)

ବ୍ୟାଖ୍ୟା-ସ୍ୱଗଣରେ ବିବାହ କଲେ ଉତ୍ତମ ପ୍ରୀତି, ନର ଓ ଦେବଗଣରେ ବିବାହ କଲେ ମଧ୍ୟମ ପ୍ରୀତି, ଦେବ ଓ ରାକ୍ଷସଗଣରେ ବିବାହ କଲେ କଳହ ଏବଂ ମନୁଷ୍ୟ ଓ ରାକ୍ଷସଗଣରେ ବିବାହ କଲେ ମୃତ୍ୟୁ ହୁଏ ।

## ୪୧୨-ବିବାହରେ ନାଗନାଡ଼ୀ

ଅଶ୍ୱିନ୍ୟାଦି ଲିଖେଚ୍ଚକ୍ରଂ ସର୍ପାକାରଂ ତ୍ରିନାଡ଼ିକଂ ।
ତତ୍ର ବେଧବଶାଜ୍ଜ୍ଞେୟଂ ବିବାହାଦି ଶୁଭାଶୁଭଂ ।। (ସ୍ୱରୋଦୟେ)
ତ୍ରିନାଡ଼ୀବେଧନକ୍ଷତ୍ରମଶ୍ୱି ନ୍ୟାର୍ଦ୍ରା ଯୂଗୋତ୍ତରାଃ ।
ହସ୍ତେନ୍ଦ୍ର ମୂଳବାରୁଣ୍ୟଃ ପୂର୍ବଭାଦ୍ରପଦା ତଥା ।।
ଯାମ୍ୟଃ ସୌମ୍ୟୋଗୁରୁର୍ଯୋନିର୍ଷ୍ଟିତ୍ରାମିତ୍ରଂ ଜଳାହ୍ୱୟଂ ।
ଧନିଷ୍ଠା ଚୋତ୍ତରାଭାଦ୍ରା ମଧ୍ୟ ନାଡ଼ୀ ବ୍ୟବସ୍ଥିତା ।।
କୃତ୍ତିକା ରୋହିଣୀ ସର୍ପୌ ମଘା ସ୍ୱାତିବିଶାଖକେ ।
ଉତ୍ତରା ଶ୍ରବଣା ପୌଷ୍ଣଂ ପୃଷ୍ଠନାଡ଼ୀ ବ୍ୟବସ୍ଥିତା ।।
ଏକନାଡ଼ୀସ୍ଥଧିଷ୍ଣ୍ୟାନି ଯଦି ସ୍ୟୁର୍ବରକନ୍ୟୟୋଃ ।
ତଥା ବେଧଂ ବୀଜାନୀୟାଦ୍‌ଗୁର୍ବାଦିଷୁ ତଥୈବ ଚ ।।
ପ୍ରକଟଂ ଯସ୍ୟ ଜନ୍ମର୍କ୍ଷଂ ତସ୍ୟ ଜନ୍ମର୍କ୍ଷତୋ ବ୍ୟଧଃ ।
ପ୍ରନଷ୍ଟଂ ଜନ୍ମଭଂ ଯସ୍ୟ ତସ୍ୟ ନାମର୍କ୍ଷତୋ ବଦେତ୍ ।।
ଦ୍ୱୟୋ ଜନ୍ମଭୟୋ ର୍ବେଧେ ଦୟୋର୍ନମାଭୟୋସ୍ତଥା ।
ନାମଜନ୍ମର୍କ୍ଷୟୋର୍ବେଧେ ନ କର୍ତ୍ତବ୍ୟଂ କଦାଚନ ।।
ଏକନାଡ଼ୀସ୍ଥିତା ଚେତ୍ ସ୍ୟାଦ୍ ଭର୍ତ୍ତୃନାଶାୟ ଚାଙ୍ଗନା ।
ତସ୍ମାନ୍ନାଡ଼ୀବ୍ୟଧୋ ବୀକ୍ଷ୍ୟେ ବିବାହେ ଶୁଭମିଚ୍ଛତା ।।
ପ୍ରାଡ଼୍‌ନ୍ୟାଡ଼୍ୟା ବେଧତୋ ଭର୍ତ୍ତା ମଧ୍ୟନାଡ଼୍ୟୋୟଭଂ ତଥା ।
ପୃଷ୍ଠନାଡ଼ୀବ୍ୟଧେ କନ୍ୟା ମ୍ରିୟତେ ନାତ୍ର ସଂଶୟଃ ।।
(ଜ୍ୟୋତିତତ୍ତ୍ୱ)

ବ୍ୟାଖ୍ୟା-ଅଶ୍ୱିନୀ ନକ୍ଷତ୍ରଠାରୁ ଆରମ୍ଭ କରି ରେବତୀ ପର୍ଯ୍ୟନ୍ତ ନକ୍ଷତ୍ରମାନଙ୍କୁ ଏପରି ତିନିଗୋଟି ଧାଡ଼ିରେ ସ୍ଥାପନ କରିବ, ଯେପରି ତାହା ସର୍ପାକାର ହେବ ପ୍ରଥମ ଧାଡ଼ିରେ ୧, ୬, ୭, ୧୨, ୧୩, ୧୮, ୧୯, ୨୪, ୨୫, ଏହି ନକ୍ଷତ୍ରମାନଙ୍କୁ ବସାଇବ । ମଧ୍ୟମ ଧାଡ଼ିରେ ୨, ୫, ୮, ୧୧, ୧୪, ୧୭, ୨୦, ୨୩, ୨୬ ଏହି ନକ୍ଷତ୍ରମାନଙ୍କୁ ବସାଇବ । ଆଉ ତଳ ଧାଡ଼ିରେ ୩, ୪, ୯, ୧୦, ୧୫, ୧୬, ୨୧, ୨୨, ୨୭ ଏହି ନକ୍ଷତ୍ରମାନଙ୍କୁ ବସାଇବ ।



ବର ଓ କନ୍ୟାର ନକ୍ଷତ୍ର ଏକଧାଡ଼ିରେ ପଡ଼ିଲେ ନାଗନାଡ଼ୀ ବେଧ ହୁଏ । ଆଦ୍ୟ ଧାଡ଼ିରେ ବେଧ ପଡ଼ିଲେ ବରର ମୃତ୍ୟୁ, ମଧ୍ୟମଧାଡ଼ିରେ ବେଧ ପଡ଼ିଲେ ବର କନ୍ୟା ଉଭୟଙ୍କର ମୃତ୍ୟୁ ଏବଂ ଶେଷଧାଡ଼ିରେ ବେଧ ପଡ଼ିଲେ କନ୍ୟାର ମୃତ୍ୟୁ ହୁଏ । ସୁତରାଂ ନାଗନାଡ଼ୀ ବେଧରେ ବିବାହ ଏକାବେଳେ ନିଷିଦ୍ଧ । ଜନ୍ମନକ୍ଷତ୍ର ନ ମିଳିଲେ ବର କନ୍ୟା ଉଭୟଙ୍କର ନାମନକ୍ଷତ୍ରରେ ନାଗନାଡ଼ୀ ଗଣନା କରିବ । ମାତ୍ର ଜଣଙ୍କର ଜନ୍ମନକ୍ଷତ୍ର ଓ ଅନ୍ୟଜଣଙ୍କର ନାମନକ୍ଷତ୍ରରେ ବିବାହ ଗଣନା କରିବ ନାହିଁ ।

## ୪୧୩-ନାଗନାଡ଼ୀ ଚକ୍ର

## *୪୧୪-ବିବାହରେ ରାଜଯୋଟକ

ଏକ ରାଶୌ ଚ ଦମ୍ପତ୍ୟୋଃ ଶୁଭଂ ସ୍ୟାତ୍ ସମସପ୍ତକେ ।
ଚତୁର୍ଥେ ଦଶମେ ଚୈବ ତୃତୀୟୈକାଦଶେ ତଥା ॥

ବ୍ୟାଖ୍ୟା-ବର ଓ କନ୍ୟାର ଏକରାଶି ହେଲେ * ସମସପ୍ତକ (ବର ରାଶିଠାରୁ କନ୍ୟାରାଶି ସପ୍ତମ ଓ କନ୍ୟା ରାଶିଠାରୁ ବରରାଶି ସପ୍ତମ) ହେଲେ, ଚତୁର୍ଥ ଦଶମ ହେଲେ ଓ ତୃତୀୟ ଏକାଦଶରାଶି ହେଲେ ତାହାକୁ ରାଜଯୋଟକ କହନ୍ତି । ଏଥିରେ ବିବାହ କଲେ ଶୁଭ ହୁଏ ।

## ୪୧୫-ବିବାହରେ ରାଜଯୋଟକ ପ୍ରଶଂସା

ନ ରାଜଯୋଗେ ଗ୍ରହବୈରିତା ଚ ନ ତାରକାଶୁଦ୍ଧି ଗଣତ୍ରୟଂ ସ୍ୟାତ୍ ।
ନ ନାଡ଼ୀଦୋଷୋ ନ ଚ ବର୍ଣ୍ଣଦୃଷ୍ଟିର୍ଗର୍ଗାଦୟସ୍ତେ ମୁନୟୋ ବଦନ୍ତି ॥

ବ୍ୟାଖ୍ୟା-ଗର୍ଗାଦି ମୁନିମାନେ କହିଅଛନ୍ତି ରାଜଯୋଟକ ହୋଇଥିଲେ ଗ୍ରହ ଅରି ଦୋଷ, ତାରଦୋଷ, ନରରାକ୍ଷସାଦି ଦୋଷ, ନାଗନାଡ଼ୀ ଦୋଷ ଓ ବର୍ଣ୍ଣଦୋଷ ପ୍ରଭୃତି କିଛି ଧର୍ତ୍ତବ୍ୟ ନୁହେଁ ।

---

*-ରାଶି ଏକ ଥିବ କିନ୍ତୁ ନକ୍ଷତ୍ର ଭିନ୍ନ ଥିବ ତାହାହେଲେ ରାଜଯୋଟକ ହୁଏ । ଏକ ରାଶି ଓ ଏକ ନକ୍ଷତ୍ର ହେଲେ ରାଜଯୋଟକ ହୁଏ ନାହିଁ । ଯଥା-

ଅଭିନ୍ନରକ୍ଷଂ ଯଦି ଚୈକରାଶିର୍ନଦମ୍ପତୀ ତତ୍ର ସୁଖଂ ଲଭେତାଂ ।
ସଭିନ୍ନରକ୍ଷଂ ଯଦିଚୈକରାଶିଃକାର୍ଯ୍ୟୋ ବିବାହୋ ବହୁସୌଖ୍ୟଦଃ ସ୍ୟାତ୍ ।
(ଶ୍ରୀନିବାସଦୀପିକାୟାଂ)

* ବିଷମସପ୍ତକରେ ହେବ ନାହିଁ ।

## ୪୧୬-ବିବାହକାରିକା

ବେଦ୍ୟାଂ ଚ କୁମ୍ଭେ ବରୁଣାଦିପୂଜାଂ କୁର୍ବୀତ କନ୍ୟାଜନକୋ ବରଣ୍ଟ ।
ଦୁହିତୃବାଗ୍‌ଦାନବିଧିଂ ବିଧା ନୈରନ୍ତର୍ମହାବାକ୍ୟଯୁତଂ ଚ କୁର୍ଯ୍ୟାତ୍ ॥
ଦଦ୍ୟାଦ୍‌ବରାୟାଶିଷମକ୍ଷତଂ ଚ ବେଦୀସମୀପଂ ଗୃହମାନୟେତ୍ତଂ ।
ପୂର୍ବୋବୀତଂ କୁସୁମାଢ୍ୟମାଲ୍ୟଂ କନ୍ୟାଗଳେ ଦାସ୍ୟତି ତଦ୍‌ବରସ୍ୟ ॥
କର୍ମାଧିବାସଂ ବରକନ୍ୟାୟୋଷ୍ଟ କୁର୍ଯ୍ୟାତ୍‌ପ୍ରଚେତୋଽର୍ଚ୍ଚ ନପୂର୍ବକଂ ତୁ ।
କନ୍ୟାସୁଚେଳଂ ବିଭୃୟାଦ୍‌ରଣ୍ଟ ମନ୍ତ୍ରେଣ ପୂତଂ ଚ ତଦୁତ୍ତରୀୟଂ ॥
ଆଜ୍ୟାକ୍ତ ସିନ୍ଦୂର ସୁକଜ୍ଜଳଂ ଚ ପୁଷ୍ପଂ କିରୀଟଂ ବିଭୃୟାତ୍‌ପ୍ରଯତ୍ନାତ୍ ।
ବେଦୀସମୀପେ ସ୍ୱଜନୈଃ ସମେତା ବରାୟ କନ୍ୟା ଲବଣଂ କ୍ଷିପେତ ॥
ଯୋଷିତ୍ ସମାଚାରମଥୋପବେଦ୍ୟାଂ କନ୍ୟାପ୍ରସୂଃ ସ୍ତ୍ରୀଭିରମା ପ୍ରକୁର୍ଯ୍ୟାତ୍ ॥
ସମାଚାରମଥୋପବେଦ୍ୟାଂ କନ୍ୟାପ୍ରସୂଃ ସ୍ତ୍ରୀଭିରମା ପ୍ରକୁର୍ଯ୍ୟାତ୍ ।
ବରଂ ଷଡ୍‌ର୍ଘ୍ୟେଣ ଚ ପୂଜୟିତ୍ୱାଭିମୃଶ୍ୟ ବାଗାଦିକସପ୍ତକୈଷ୍ଟ ॥
ବସ୍ତ୍ରାଦିକଂ ପୂର୍ବବରାୟ ଦତ୍ତ୍ୱା ବରଂ ବରତ୍ୱେନ ବୃଣୀତ ବସ୍ତ୍ରୈଃ ।
ସଂସ୍ଥାପ୍ୟ ବେଦ୍ୟାଃ ଖଲୁ ଯୋଜକାଗ୍ନି ମାନୀୟ ସଂମୁକ୍ଷିତକନ୍ୟକାଂ ଚ ॥
ଅଗ୍ନେରୁଦୀଚ୍ୟାମୁପବେଶ୍ୟ ଯତ୍ନାତ୍‌ପ୍ରତ୍ୟଙ୍ମୁଖୀଂ ତାଂ ଚ ବରଂ ସମଞ୍ଜ୍ୟ ।
କନ୍ୟା ବିବାହସ୍ୟ ଚ ଲଗ୍ନଶୁଦ୍ଧ୍ୟୈ ଦଦ୍ୟାଦ୍ଦ୍ୱିଜେଭ୍ୟଃ ସତିଳଂ ହିରଣ୍ୟଂ ॥
ତତୋମହାବାକ୍ୟମୁଦୀର୍ଯ୍ୟ କନ୍ୟାଂ ବରାୟ ଦଦ୍ୟାତ୍ ସବିଭୂଷଣାଂ ଚ ।
ହସ୍ତୌ ଚ ବଦ୍ଧ୍ୱା ବରକନ୍ୟାୟୋଷ୍ଟ ଶୁଭେ ମୁହୂର୍ତ୍ତେ ଖଲୁ ଦର୍ଭରଜ୍ଜ୍ୱା ॥
ଗୁବାକଦୂର୍ବାବଦରାକ୍ଷତେନ ଗ୍ରନ୍ଥିଂ ନିବଧ୍ୟାଥ ତଦୁତ୍ତରୀୟେ ।
ଦତ୍ତ୍ୱା କିରୀଟଂ ଖଲୁ କନ୍ୟକାୟୈ ବରାୟ ଦାୟାଦି ଦଦୀତ ଶକ୍ତ୍ୟା ॥
ବନ୍ଧାପୟିତ୍ୱା ବରକନ୍ୟକେ ଚ ତଦ୍‌ଗ୍ରନ୍ଥି ବନ୍ଧଂ ଚ ତତୋବିମୁଞ୍ଚେତ୍ ।
ବରୋୟଦୈଷୀତି ଜପନ୍ ସ୍ୱଦକ୍ଷେ କଟେ ଚ କନ୍ୟାମୁପବେଶୟେତ୍ତାଂ ॥
ତତଃ ସମାନୀୟ ଗୃହଂ ଚ ସହୋତ୍ତରୀୟଂ ପରିଧାପ୍ୟ ବସ୍ତ୍ର ।
ଅଲଙ୍କୃଂତାଂ ତଣ୍ଡୁଳ ପୂର୍ଣ୍ଣହସ୍ତାଂ ନିବେଶ୍ୟବେଦ୍ୟାଂ ବରଦକ୍ଷଭାଗେ ॥
ଅନ୍ୟୋଽନ୍ୟମୀକ୍ଷେତ ବରସ୍ତୁ ଗାଥାଂ ଜପେଦଘୋରେତି ଚତୁଷ୍ଟୟଂ ଚ
ସର୍ମପ୍ୟ କନ୍ୟାଂ ଜନକୋ ବରାୟ ସମୁସ୍ତ୍ରୁ ଜେଭୋଜ୍ୟମପି ଦ୍ୱିଜେଭ୍ୟଃ ॥
ଦ୍ୱିଜାୟ ଦଦ୍ୟାଦଥ ଦକ୍ଷିଣାଂ ଚ ତତ୍‌କର୍ମଣୋଽଚ୍ଛି ଦ୍ରମଥାବଧାର୍ଯ୍ୟ ।
ଭକ୍ତ୍ୟା ଗୃହୀତ୍ୱା ଶିଷମକ୍ଷତଂ ଚ ଭୁଞ୍ଜୀତ ହୃଷ୍ଟଃ ସହ ବନ୍ଧୁବର୍ଗୈଃ ॥

---

* ସମଞ୍ଜନ ନାମ ସମ୍ମୁଖୀକରଣମିତି ଗଦାଧରଃ-ପରସ୍ପରଂଗାତ୍ରବିଶ୍ଳେଷ ଇତି ଭର୍ତ୍ତୃଯଜ୍ଞଃ



ଜାୟାପତୀ ମେଳକକଳଗ୍ନଶୁଦ୍ଧ୍ୱୈ ଦତ୍ତ୍ୱା ହିରଣ୍ୟଂ ସତିଳଂ ଦ୍ୱିଜେଭ୍ୟଃ ।
ବେଦ୍ୟାମୁପାଧାୟ ଚ ଯୋଜକାଗ୍ନିଂ ବସ୍ତ୍ରୈଶ୍ଚ ବ୍ରହ୍ମାଣମଥୋ ବୃଣୀତ ॥
ବ୍ରହ୍ମାସନଂ ଦକ୍ଷିଣତୋ ନିଧାୟ ବ୍ରହ୍ମେରୁଦୀଚ୍ୟାଂ କକୁଭି ପ୍ରଣୀତାଂ ।
କୁଶାନ୍ ପରୀସ୍ତୀର୍ଯ୍ୟ ଚ ସର୍ବଦିକ୍ଷୁ କୁର୍ଯ୍ୟାକୁଶଣ୍ଡି ଚରୁବର୍ଜିତଂ ଚ ॥
ଶ୍ରୁଚେଃ ସମାରମ୍ଭ ଇବାବତିଷ୍ଠନ୍ କ୍ରମେଣ ଚାଜ୍ୟୈର୍ଜ୍ଜୁହୁୟାତ୍ ସ୍ରୁବେଣ ।
ଆଘାରକୌ ଚାଥ ତଥାଜ୍ୟଭାଗୌ ଦତ୍ତ୍ୱାଥ ପୂଣ୍ୟାହମୁଦୀରୟେଚ୍ଚ ॥
ଭୂରାଦିକାନ୍ ରାଷ୍ଟ୍ରଭୃତୋ ଜୟାଖ୍ୟାଭ୍ୟାତାନକାଖ୍ୟାନ୍ ଜହୁୟାତ୍ କ୍ରମେଣ ।
ଘୃତେନ ଚାଗ୍ନିଂ ଜୁହୁୟାତ୍ତଦ ହ୍ୟଗ୍ନି ସ୍ତ୍ୱିମାଂ ସ୍ୱସ୍ତି ମନ୍ତ୍ରତ୍ରୟେଣ ॥
ବୈବସ୍ୱତଂ ଚାଥ ସୁଗନ୍ଧୁ ମନ୍ତ୍ରୈର୍ମୃତ୍ୟୁଂ ଚ ହୁତ୍ୱା ପରମିତ୍ୟୁଦୀର୍ଯ୍ୟ ।
କ୍ରମାଦଥାଗ୍ନୌ ଜୁହୁୟାତ୍ତୁ ଲାଜୈଃ ଶୁର୍ପସ୍ଥି ତୈରାଜ୍ୟଶମୀଦଳାଢ଼୍ୟୈଃ ॥
ଗୃଭ୍ଣାମୀତ୍ୟୁଚ୍ଚାରୟନ୍ ମନ୍ତ୍ରତୁର୍ଯ୍ୟଂ କନ୍ୟାଦକ୍ଷାଙ୍ଗୁଷ୍ଠଧୃଗ୍ବୈ ବରଶ୍ଚ ।
ସୂର୍ଯ୍ୟଂଦୃଷ୍ଟ୍ୱାରୋହୟେଦ୍‌ବୈ ଶିଳାୟାଂ ଗାଥାଂ ଗୀତ୍ୱା ଦକ୍ଷିଣୀକୃତ୍ୟବହ୍ନିଂ ॥
ଏବଂ ତ୍ରିବାରଂ ଚ ପରିକ୍ରମାନ୍ତଂ କୃତ୍ୱାଥ ଲାଜୈର୍ଜ୍ଜୁହୁୟା ଭଗଂଚ ।
ପ୍ରଜାପତିଂ ଚାଥ ଘୃତେନ ହୁତ୍ୱା ପ୍ରକ୍ରମୟେତ୍ ସପ୍ତପଦୀଂ ବରସ୍ତାଂ ।
ଆପଃ ଶିବା ଆପଇତି କ୍ରିମନ୍ତ୍ରୈର୍ନୃସ୍କନ୍ଧଦୁମ୍ଭାମ୍ଭୁ ଚ ମୂର୍ଦ୍ଧ୍ନିସିଞ୍ଚେତ୍ ॥
ସମକ୍ଷୟେଦର୍କମଥାଲଭେତ ମନ୍ତ୍ରେଣ କନ୍ୟାମଭିମନ୍ତ୍ରୟେଚ୍ଚ ।
କୁର୍ଯ୍ୟାତ୍ ଶିଳାରୋହଣମେବ ଯତ୍ନାଦଗ୍ନୌ ତତଃ ସ୍ୱିଷ୍ଟକୃତଂ ଘୃତେନ ॥
ହୁତ୍ୱା ବରଃ ପ୍ରାଶ୍ୟ ସ ସଂସ୍ରବାଜ୍ୟଂ ଦ୍ୱିଜାୟ ଦଦ୍ୟାଦ୍‌ବରଦକ୍ଷିଣାଂ ଚ ।
ସମୁସ୍ଥ ଜେଦ୍ର ବ୍ରାହ୍ମଣଭୋଜନଂ ଚ ସନ୍ଦର୍ଶ୍ୟ କନ୍ୟାଂ ଧ୍ରୁବମୁତ୍ତରସ୍ୟାଂ ॥
କୁର୍ଯ୍ୟାତ୍ପବିତ୍ରପ୍ରତିପତ୍ତିମପ୍‌ସୁ ନିନୀୟ ମୁଞ୍ଚେତ ପ୍ରଣୀତାଂ ।
ବ୍ରହ୍ମାଗ୍ନି ସଂପୂଜିତଦେବତାଶ୍ଚ ବିସୃଜ୍ୟ ତୌ ଶାନ୍ତିରଚାଭିଷିଞ୍ଚେତ୍ ॥
ଏବଂ ଚ ଗୃହ୍ୟୋକ୍ତବିବାହକର୍ମ ସମାପ୍ୟ ଚାଚ୍ଛିଦ୍ରମଥାବଧାର୍ଯ୍ୟ ।
ପ୍ରଗାହୟେଦାଶିଷମକ୍ଷତଂ ଚ ନୀରାଜନଂ ପୌରବଧୂପ୍ରଯୁକ୍ତଂ ॥

(ଲୋକନାଥଦାସେନ କୃତା)

ବ୍ୟାଖ୍ୟା-ପ୍ରଥମେ କନ୍ୟାପିତା ବେଦୀ ଉପରେ କଳସରେ ବରୁଣପୂଜା କରିବ । ତତ୍ପରେ ବର ବେଦୀଉପରେ ସେହି କଳସରେ ବରୁଣପୂଜା କରିବ । ତଦନନ୍ତର କନ୍ୟାପିତା ବିଧିଅନୁସାରେ ମହାକାବ୍ୟଯୁକ୍ତ କନ୍ୟାର ବାଗ୍‌ଦାନବିଧି କରିବ ଓ ବରକୁ ଆଶୀର୍ବାଦାର୍ଥ ଅକ୍ଷତ ଦେବ । ତତ୍ପରେ ବରକୁ ବେଦୀର ନିକଟବର୍ତ୍ତୀ ଗୃହକୁ ଆଣିବ । ତଦନନ୍ତର କନ୍ୟାପିତା ବରର ପରିତ୍ୟକ୍ତ ଯଜ୍ଞୋପବୀତ ଓ ପୂର୍ବ

ପୁଷ୍ପମାଳା କନ୍ୟାର ଗଳାରେ ଦେବ ଏବଂ ବରୁଣ ପୂଜା କରି କନ୍ୟାର ଅଧିବାସବିଧି କରିବ । ବରକର୍ତ୍ତା ମଧ୍ୟ ବରଥିବା ଗୃହରେ ବରୁଣ ପୂଜା କରି ବରର ଅଧିବାସକର୍ମ କରିବ । ତତ୍ପରେ ବର ବେଦୀଉପରକୁ ଆସି କନ୍ୟାବାସ ଓ ଉତ୍ତରୀୟକୁ ମନ୍ତ୍ରଦ୍ୱାରା ଅଭିମନ୍ତ୍ରଣ କରି ପିନ୍ଧିବ ଏବଂ ଘିଅରେ ଗୋଳାହୋଇଥିବା ସିନ୍ଦୂର, ଉତ୍ତମ କଜ୍ଜ୍ୱଳ, ପୁଷ୍ପ ଓ ମୁକୁଟ ଯତ୍ନପୂର୍ବକ ଧାରଣ କରିବ । ତଦୁତ୍ତାରୁ କନ୍ୟା ଆତ୍ମୀୟଜନର ସହିତ ମିଳିତହୋଇ ବେଦୀ ନିକଟକୁ ଯାଇ ବର ଉପରେ ଲବଣ ପକାଇ ଦେବ । ତଦନନ୍ତର ଉପବେଦୀ ଅର୍ଥାତ କନିଷ୍ଠ ବେଦୀ ଉପରେ ବରକୁ ବସାଇ କନ୍ୟାମାତା ସ୍ତ୍ରୀମାନଙ୍କ ସହିତ ମିଳିତ ହୋଇ ସ୍ତ୍ରୀଆଚାର କର୍ମ କରିବ । ତତ୍ପରେ କନ୍ୟାପିତା ଷଡ଼ାର୍ଘ୍ୟଦ୍ୱାରା ବରର ପୂଜା ଓ ବାଗାଦିସପ୍ତ ମନ୍ତ୍ରଦ୍ୱାରା ଅଭିମର୍ଶଣ (ଇନ୍ଦ୍ରିୟସ୍ପର୍ଶ) କରି ବସ୍ତ୍ରାଦିଦ୍ୱାରା ପୂର୍ବଜାମାତୃ (ବଡ଼ଜ୍ୱାଇଁ) ବରଣ କରିବ । ତଦୁତ୍ତାରୁ ବରକୁ ବସ୍ତ୍ରମାନଙ୍କଦ୍ୱାରା ବରଦ୍ୱରେ ବରଣ କରି ଓ ବେଦୀ ଉପରେ ଯୋଜକାଗ୍ନି ସ୍ଥାପନ ପରେ କନ୍ୟାକୁ ଅଳଙ୍କାର ପିନ୍ଧାଇ ବେଦୀ ଉପରକୁ ଆଣି ଅଗ୍ନିର ଉତ୍ତରଭାଗରେ ପଶ୍ଚିମକୁ ମୁଖ କରି ବସାଇବ । ତତ୍ପରେ କନ୍ୟା ଓ ବର ଉଭୟଙ୍କୁ ପରସ୍ପରରେ ମନ୍ତ୍ରଦ୍ୱାରା ଦର୍ଶନ କରାଇ କନ୍ୟାର ଲଗ୍ନଶୁଦ୍ଧି ନିମିତ୍ତ ବ୍ରାହ୍ମଣଙ୍କୁ ତିଳକାଞ୍ଚନ ଦାନ କରିବ । ତଦୁତ୍ତାରୁ ମହାବାକ୍ୟ ପଢ଼ି ସେହି ସାଳଂକୃତା କନ୍ୟାକୁ ବରକୁ ପ୍ରଦାନ କରିବ । ଶୁଭ ମୁହୂର୍ତ୍ତରେ କୁଶରଜ୍ଜୁଦ୍ୱାରା ବର ଓ କନ୍ୟା ଏ ଉଭୟଙ୍କର ଦକ୍ଷିଣହସ୍ତ ବନ୍ଧନ କରି ଓ ଉଭୟଙ୍କର ଉତ୍ତରୀୟ ବସ୍ତ୍ରରେ ଗୁଆ, ଦୂବ, ବରକୋଳିପତ୍ର ଓ ଅକ୍ଷତ ରଖି ଗଣ୍ଠି ପକାଇ ଦେବ । ତତ୍ପରେ କନ୍ୟା ମସ୍ତକରେ ମୁକୁଟ ବାନ୍ଧି ବରକୁ ଶକ୍ତି ଅନୁସାରେ ଯୌତୁକାଦି ଦେବ । ବର କନ୍ୟା ଉଭୟଙ୍କର ବନ୍ଦାପନା କରି ହାତଗଣ୍ଠି ଫିଟାଇଦେବ । ତତ୍ପରେ ବର "ଯଦେଷି" ମନ୍ତ୍ର ପଢ଼ି କନ୍ୟାକୁ ଆପଣାର ଦକ୍ଷିଣ ଭାଗରେ ପଟ୍ଟମଶିଣା ଉପରେ ବସାଇବ । ତଦନନ୍ତର କନ୍ୟାକୁ ଘରକୁ ନେଇଯାଇ ବସ୍ତ୍ରଯୁଗଳ ଓ ଅଳଙ୍କାର ପିନ୍ଧାଇ କନ୍ୟାହାତରେ ଚାଉଳ ଆଞ୍ଜୁଳି ଦେଇ ବେଦୀଉପରକୁ ଆଣି ବରର ଦକ୍ଷିଣ ଭାଗରେ ବସାଇ କନ୍ୟାପିତା କହିବେ, ଏବେ ତୁମ୍ଭେ ପରସ୍ପର ଦେଖାଦେଖି ହୁଅ । ବରକନ୍ୟା ଉଭୟ ପରସ୍ପର ଦେଖାଦେଖି ହେବେ ଏବଂ ବର ଅଘୋରମନ୍ତ୍ର ଚାରିକାଣ୍ଡି ପଢ଼ିବ । ତଦନନ୍ତର କନ୍ୟାପିତା, ବରକୁ କନ୍ୟା ସମର୍ପଣ କରି ବ୍ରାହ୍ମଣଭୋଜନୋତ୍ସର୍ଗ, ଦକ୍ଷିଣାଦାନ, କର୍ମର ଅଚ୍ଛିଦ୍ରାବଧାରଣ ଭକ୍ତିର ସହିତ ଆଶୀର୍ବାଦକ୍ଷତ ଗ୍ରହଣ କରି ଓ ବନ୍ଧୁବର୍ଗଙ୍କୁ ଘେନି ଆନନ୍ଦରେ ଭୋଜନ କରିବ । ବରକନ୍ୟାଙ୍କ ମେଳକ ସମୟରେ ବର ଲଗ୍ନ ବିଶୁଦ୍ଧି ନିମିତ୍ତ ବ୍ରାହ୍ମଣକୁ ତିଳ କାଞ୍ଚନ ଦାନ କରି, ବେଦୀରେ ଯୋଜକାଗ୍ନି ସ୍ଥାପନ କରି



ଓ ବସ୍ତ୍ରାଦିଦ୍ୱାରା ବ୍ରହ୍ମାଙ୍କୁ ବରଣ କରି, ଅଗ୍ନିର ଦକ୍ଷିଣରେ ବ୍ରହ୍ମା ଓ ଉତ୍ତରରେ ପ୍ରଣୀତାପାତ୍ର ସ୍ଥାପନ କରି ଏବଂ ଅଗ୍ନିର ଚାରିଦିଗରେ କୁଶ ପରିସ୍ତରଣ କରି ଚରୁକୁ ଛାଡ଼ି କୁଶାଣ୍ଡି କର୍ମ କରିବ । ତତ୍ପରେ ବର ବ୍ରହ୍ମାନାରବଧ ହୋଇ କ୍ରମରେ ସ୍ରୁବଦ୍ୱାରା ଆଘାର ଓ ଆଜ୍ୟଭାଗ ଅଗ୍ନିରେ ହୋମ କରି ପୁଣ୍ୟାହବାଚନ କରିବ । ତଦୁତ୍ତାରୁ ଭୂରାଦି ହୋମ, ରାଷ୍ଟ୍ରଭୃତ୍ ହୋମ, ଜୟା ହୋମ ଏବଂ ଅଭ୍ୟାତାନ ହୋମ କରିବ । ତଦନନ୍ତର "ଅଗ୍ନିରୈତୁ" "ଇମାମଗ୍ନି" ଓ ସ୍ୱସ୍ତି ନୋଽଗ୍ନେ" ଏହି ତିନକାଣ୍ଡି ମନ୍ତ୍ର ପଢ଼ି ଅଗ୍ନିଙ୍କୁ ତିନି ଆହୁତି ଦେବ । ତତ୍ପରେ "ସୁଗନ୍ନୁ" ମନ୍ତ୍ର ପଢ଼ି ବୈବସ୍ୱତଙ୍କୁ ଆହୁତିଏ, "ଓ ପରଂମୃତ୍ୟୋ" ଏହି ମନ୍ତ୍ର ପଢ଼ି ମୃତ୍ୟୁଙ୍କୁ ଆହୁତିଏ ଦେବ । ଅନନ୍ତର କୁଲାରେ ଥିବା ଶମୀପତ୍ରମିଶ୍ରିତ ଖଇ ହୋମ କରିବ, ତାହା ସଙ୍ଗେ ସଙ୍ଗେ ଘୃତ ଆହୁତିଏ ଦେବ । "ଗୃଭ୍ଣାମି" ଇତ୍ୟାଦି ଚାରି କାଣ୍ଡ ମନ୍ତ୍ର ପଢ଼ି କନ୍ୟାର ଦକ୍ଷିଣହସ୍ତ ବୁଢ଼ା ଆଙ୍ଗୁଳିକୁ ବର ଦକ୍ଷିଣହସ୍ତରେ ଧରି ସୂର୍ଯ୍ୟଙ୍କୁ ଚାହିଁବ ଓ ସରସ୍ୱତୀ ଗାଥା ଗାଇ କନ୍ୟାକୁ ଶିଳାରୋହଣ କରାଇ ଅଗ୍ନି ପ୍ରଦକ୍ଷିଣ କରିବ । ଏହିପରି ଲାଜାହୋମଠାରୁ ଅଗ୍ନି ପ୍ରଦକ୍ଷିଣ ପର୍ଯ୍ୟନ୍ତ କର୍ମକୁ ତିନିଥର କରି "ଭଗାୟ ସ୍ୱାହା" ଏହି ମନ୍ତ୍ର ପଢ଼ି ଅବଶିଷ୍ଟ ଖଇକୁ ଅଗ୍ନିରେ ଦେବ । ତତ୍ପରେ ଘୃତରେ ପ୍ରଜାପତିଙ୍କୁ ଆହୁତିଏ ଦେଇ କନ୍ୟାର ସପ୍ତପଦୀ କରିବ । ଏହା ଉତ୍ତାରୁ "ଆପଃଶିବା" ଏକକାଣ୍ଡି ଓ "ଆପୋହିଷ୍ଠା" ତିନିକାଣ୍ଡି ଏରୂପ ଚାରିକାଣ୍ଡି ମନ୍ତ୍ର ପଢ଼ି ପୁରୁଷସ୍କନ୍ଧରେ ଥିବା ଜଳପୂର୍ଣ୍ଣ ଘଟରୁ ଜଳନେଇ କନ୍ୟାର ମସ୍ତକରେ ସିଞ୍ଚିଦେବ ଓ "ତଚ୍ଚକ୍ଷୁ" ମନ୍ତ୍ର ପଢ଼ି କନ୍ୟାକୁ ସୂର୍ଯ୍ୟ ଦର୍ଶନ କରାଇ "ମମବ୍ରତେତେ" ଏହି ମନ୍ତ୍ର ପଢ଼ି କନ୍ୟାକୁ ହୃଦୟ ଆଲମ୍ଭନ (ସ୍ପର୍ଶ) କରିବ । ତଦନନ୍ତର ମନ୍ତ୍ରଦ୍ୱାରା କନ୍ୟାକୁ ଅଭିମନ୍ତ୍ରଣ କରି ଯତ୍ନପୂର୍ବକ ପୁନର୍ବାର "ଇହଗାବୋ" ଏହି ମନ୍ତ୍ର ପଢ଼ି ଶିଳାରୋହଣ କରାଇବ । ତଦୂତ୍ତାରୁ ଅଗ୍ନିରେ ସ୍ୱିଷ୍ଟକୃତ ହୋମ କରି ବର ପ୍ରାଶନ ଘୃତ ପାନ କରି ବ୍ରାହ୍ମଣକୁ ବର ଦକ୍ଷିଣା (ଚାରିକାହାଣ କଉଡ଼ି) ଦେବ ଓ ବ୍ରାହ୍ମଣଭୋଜନ କରାଇ "ଧ୍ରୁବମସି" ଏହି ମନ୍ତ୍ରରେ ଉତ୍ତର ଦିଗରେ କନ୍ୟାକୁ ଧ୍ରୁବତାରା ଦେଖାଇ ପବିତ୍ରପ୍ରତିପତ୍ତି, ପ୍ରଣିତାବିମୋକ, ବ୍ରହ୍ମା, ଅଗ୍ନି ଓ ପୂଜିତ ଦେବତାଙ୍କର ବିସର୍ଜନ କରି ଶାନ୍ତି ମନ୍ତ୍ରଦ୍ୱାରା ମସ୍ତକରେ ଜଳ ସିଞ୍ଚିହୋଇ ଅଛିଦ୍ରାବଧାରଣ କରିବ । ତତ୍ପରେ ସୁରସ୍ତ୍ରୀମାନେ ଆଶୀର୍ବାଦ ଅକ୍ଷତ ବର କନ୍ୟାଙ୍କ ମସ୍ତକରେ ଦେଇ ବନ୍ଦାପନା କରି ଗୃହମଧ୍ୟକୁ ନେଇଯିବେ ।

## ୪୧୭-ବିବାହ ସ୍ୱୀକରଣ ବିଧି

କନ୍ୟା ପିତା ବରସ୍ୟ ଗୃହଂ ଗତ୍ୱା ବରୁଣପୂଜାଂ କୃତ୍ୱା ବରାୟ ଗନ୍ଧମାଲ୍ୟାଦିକଂ ଦତ୍ତ୍ୱା ନାରୀକେଳଫଳଂ ହସ୍ତେ ଗୃହୀତ୍ୱା ସ୍ୱୀକରଣଂ କରୋତି । ତଦ୍‌ଯଥା-

ଓଁ ବିଷ୍ଣୁର୍ନମଃ ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟଭୂପ୍ରଦେଶେ ଅମୁକମାସେ ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନା ବସ୍ଥିତେଷୁ ସୈମାଦିଗ୍ରହ ଯୋଗଲଗ୍ନ ବରଣ ମୁହୂର୍ତ୍ତ କାଂଶକେତୁ ଏବଂ ବିଧବିଶେଷଣ ବିଶିଷ୍ଟାୟାଂ ପୁଣ୍ୟ ତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକଗୋତ୍ରାଂ ମମ ଦୁହିତରଂ ଅମୁକନାମ୍ନୀ କନ୍ୟା ଯୁଷ୍ମତ୍‌ପୁ ତ୍ରାୟାମୁତ ଦେବଶର୍ମଣେ ବୈବାହିକେନ ବିଧିନା ଦାସ୍ୟାମୀତ୍ୟେତନ୍ମେ ସତ୍ୟଂ, ଏତନ୍ମେ ସତ୍ୟ ଏତନ୍ମେ ସତ୍ୟଂ କରି ପଠିତ୍ୱା ନାରିକେଳଫଳଂ ବରପିତୃହସ୍ତେ ଦଦ୍ୟାତ୍ ।

ବ୍ୟାଖ୍ୟା-ପ୍ରଥମରେ କନ୍ୟାପିତା ବରର ଘରକୁ ଯାଇ ବରୁଣ ପୂଜା (୧୦୧-୧୨୪ ନମ୍ବର ଦେଖ) କରି ବରକୁ ଗନ୍ଧମାଲ୍ୟାଦି ଦେଇ ହସ୍ତରେ ନାରୀକେଳ ଫଳ ଧରି ବରର ପିତାକୁ କହିବ, "ତୁମର ପୁତ୍ରକୁ ବୈବାହିକ ବିଧିରେ ମୋହର କନ୍ୟା ପ୍ରଦାନ କରିବି" ଏହା ମୋହର ତିନିବାର ସତ୍ୟ । ଏହା କହି ସେହି ନାରୀକେଳକୁ ବରର ପିତାଙ୍କ ହସ୍ତରେ ଦେବ ।

ତତୋବରସ୍ୟ ପିତା ବରୁଣ ପୂଜାଂ କୃତ୍ୱା ନାରୀକେଳଫଳଂ ଗୃହୀତ୍ୱା ସ୍ୱୀକରଣଂ କରୋତି । ତଦ୍‌ଯଥା-ଓଁ ବିଷ୍ଣୁର୍ନମଃ ଇତାରଭ୍ୟ ପୁଣ୍ୟତିଥାବିତ୍ୟନ୍ତଂ ପଠିତ୍ୱା ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅସ୍ମତ୍‌ପୁତ୍ରେଣାମୁକ ଦେବଶର୍ମଣା ସହ ଯୁଷ୍ମଦ୍ଦୁହିତୁରମୁକନାମ୍ନାଃ କନ୍ୟାୟା ବିବାହଂ କାରୟିଷ୍ୟମୀତ୍ୟେତନ୍ମେ ସତ୍ୟଂ ଏତନ୍ମେ ସତ୍ୟଂ ଏତନ୍ମେ ସତ୍ୟଂ । ଇତି ପଠିତ୍ୱା ତନ୍ନାରିକେଳଫଳଂ କନ୍ୟାପିତୃହସ୍ତେ ଦଦ୍ୟାତ୍ । ତତଃ ପୁଣ୍ୟାହବାଚନଂ । ଆଶୀର୍ବାଦଗ୍ରହଣଂ । ବ୍ରାହ୍ମଣଭୋଜନୋତ୍ସର୍ଗଃ ।

ବ୍ୟାଖ୍ୟା-ତତ୍ପରେ ବରର ପିତା ବରୁଣପୂଜା (ନଂ୧୦୧-୧୨୪ ନମ୍ବର ଦେଖ) କରି ନଡ଼ିଆ ଧରି କନ୍ୟାପିତାଙ୍କୁ କହିବ "ମୁଁ ମୋହର ଅମୁକ ପୁତ୍ରର ସହିତ ତୁମ୍ଭର ଅମୁକ ନାମ୍ନୀ କନ୍ୟାର ବିବାହ କରାଇବି । ଏ ମୋହର ତିନିବାର



ସତ୍ୟ” ଏହା କହି ସେହି ନଡ଼ିଆ କନ୍ୟାର ପିତାଙ୍କ ହସ୍ତରେ ଦେବ । ତତ୍ପରେ ଉଭୟ ପୁଣ୍ୟାହବାଚନ କରିବେ ଓ ବ୍ରାହ୍ମଣମାନଙ୍କଠାରୁ ଆଶୀର୍ବାଦ ଗ୍ରହଣ କରି ଓ ବ୍ରାହ୍ମଣଭୋଜନ ଉତ୍ସର୍ଗ କରାଇ କର୍ମ ଶେଷ କରିବେ ।

ଇତି ବିବାହସ୍ୱିକରଣ ବିଧିଃ ।

-୦-

## ୪୧୮-ବାଟବରଣ

* ବିବାହଦିବସେ କନ୍ୟା ପିତା ବରମାନୀୟ ଉପକରଣଦ୍ରବ୍ୟାଣି ଗୃହୀତ୍ୱା ମାର୍ଗେ ବରସ୍ୟ ବରଣଂ କୁର୍ଯ୍ୟାତ୍; ତଦ୍ୟଥା-

ବ୍ୟାଖ୍ୟା- ବିବାହଦିନ କନ୍ୟାଗୃହକୁ ବର ଆସିବା ସମୟରେ କନ୍ୟା ପିତା ଗୋଟିଏ ପାତ୍ରରେ ମହାପ୍ରସାଦ, ଯୋଡ଼ିଏ ପାଞ୍ଚି, ଦୁଇଗୋଟି ପୁଷ୍ପମାଲ୍ୟ, ନଡ଼ିଆ, ସୁବର୍ଣ୍ଣ, ପଇତା, ଚନ୍ଦନ, ସିନ୍ଦୂର, କଜ୍ଜଳ ଏ ପଦାର୍ଥମାନ ନେଇ କିଛିଦୂର ବାଟକୁ ଯାଇ ନିମ୍ନଲିଖିତ ପ୍ରତ୍ୟେକ ମନ୍ତ୍ରଦ୍ୱାରା ପ୍ରତ୍ୟେକ ପଦାର୍ଥ ବରକୁ ଦେଇ ବରଣ କରି ଆଣିବ ।

(୧) ମହାପ୍ରସାଦ ମନ୍ତ୍ର ଯଥା-ଓଁ ତଦ୍‌ବିଷ୍ଣୋଃ ପରମ ପରଂ ସଦା ପଶ୍ୟନ୍ତି ସୂରୟଃ । ଦିବୀଚ ଚକ୍ଷୁରାତତଂ । ଇତି ମହାପ୍ରସାଦଂ ବରମସ୍ତକେ ସ୍ପର୍ଶୟେତ୍ । (ଏ ମନ୍ତ୍ର ପଢ଼ି ବର ମସ୍ତକରେ ମହାପ୍ରସାଦ ଛୁଆଇଁଦେବ ।)

(୨) ନାରୀକେଳ ମନ୍ତ୍ର ଯଥା-ଓଁ ଯାଃ ଫଳନୀର୍ଯା ଅଫଳା ଅପୁଷ୍ପାୟାଶ୍ଚ ପୁଷ୍ପିଣୀଃ । ବୃହସ୍ପତିଃ ପ୍ରସୂତାସ୍ତାନୋ ମୁଞ୍ଚନ୍ତ୍ୱଂହସଃ । ଇତି ନାରୀକେଳଂ ବରମସ୍ତକେ ସ୍ପର୍ଶୟେତ୍ । (ଏହି ମନ୍ତ୍ର ପଢ଼ି ବର ମସ୍ତକରେ ନଡ଼ିଆ ଛୁଆଁଇଦେବ ।)

(୩) ପରିଧାନବସ୍ତ୍ର ଗ୍ରହଣ ମନ୍ତ୍ରୋ ଯଥା-ଓଁ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟୁତ୍ୱାୟ ଜରଦଷ୍ଟି ରସ୍ମି । ଶତଂ ଚ ଜୀବାମି 'ଶରଦଃ * ସୁବର୍ଚ୍ଚାରାୟସ୍ପୋଷ ମଭିସଂବ୍ୟୟିଷ୍ୟେ । ଦ୍ୱିରାଚମନଂ । (ତତ୍ପରେ ବରକୁ ପରିଧାନବସ୍ତ୍ର ଦେବ । ବର ଏହି ମନ୍ତ୍ର ପଢ଼ି ବସ୍ତ୍ର ପିନ୍ଧି ଦ୍ୱିରାଚମନ କରିବ) ।

---

* ୪୧୮-ବରଣରେ ବରଧରାର ଦେୟ ଦ୍ରବ୍ୟ-

ଉପବୀତଂ ଫଳଂ ପୁଷ୍ପଂ ବାସାଂସି ବିବିଧାନି ଚ । ଦେୟଂ ବରାୟ ବରଣେ କନ୍ୟାଭ୍ରାତା ଦ୍ୱିଜେନ ଚ ।

* ପୁରୁବୀରାୟସ୍ପୋଷ ଇତି ପାଠାନ୍ତରଂ ।

(୪) ତତୋଯଜ୍ଞୋପବୀତମନ୍ତ୍ରେଣ ଯଜ୍ଞୋପବୀତଂ ଗୃହ୍ଣାତି-ଯଜ୍ଞୋପବୀତଗ୍ରହଣମନ୍ତ୍ରୋ ଯଥା-ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ * ପ୍ରଜାପତେର୍ଯତ୍ସହଜଂ ପୁରସ୍ତାତ୍ । ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ । ତତୋଦ୍ୱିରାଚମନଂ । (ତତ୍ପରେ ବରକୁ ଯଜ୍ଞୋପବୀତ ଦେବ, ବର ଏହି ମନ୍ତ୍ର ପଢ଼ି ସ୍କନ୍ଧରେ ଯଜ୍ଞୋପବୀତ ଧାରଣ କରି ଦ୍ୱିରାଚମନ କରିବ ।

(୫) ଉତ୍ତରୀୟବସ୍ତ୍ର ଗ୍ରହଣ ମନ୍ତ୍ରୋ ଯଥା-ଓଁ ଯଶସା ମା ଦ୍ୟାବ୍ୟାପୃଥିବୀ ଯଶସେନ୍ଦ୍ରାବୃହସ୍ପତି । ଯଶୋଭଗଶ୍ଚ ମାବିଦ୍ୟଶୋମାଂ ପ୍ରତିପଦ୍ୟତାଂ । ତତୋଦ୍ୱିରାଚମନଂ । (ତତ୍ପରେ ବରକୁ ଉତ୍ତରୀୟ ବସ୍ତ୍ର ଦେବ, ବର ଏହି ମନ୍ତ୍ର ପଢ଼ି କାନ୍ଧରେ ଉତ୍ତରୀୟ ପକାଇ ଦ୍ୱିରାଚମନ କରିବ ।)

(୬) ଗନ୍ଧୋମନ୍ତ୍ରୋ ଯଥା-ଓଁ ଗନ୍ଧଦ୍ୱାରାଂ ଦୁରାଧର୍ଷାନିତ୍ୟପୁଷ୍ଟାଂକରୀଷିଣୀଂ, ଈଶ୍ୱରୀଂ ସର୍ବଭୂତାନାଂତ୍ୱାମିହୋପହ୍ୱୟେ ଶ୍ରିୟଂ । ଇତି ବରସ୍ୟ ଲଲାଟେ ଗନ୍ଧଂ ଦଦ୍ୟାତ୍ । (ଏହି ମନ୍ତ୍ର ପଢ଼ି ବର ଲଲାଟରେ ଚନ୍ଦନ ଦେବ ।)

(୭) ସିନ୍ଦୂର ଦାନ ମନ୍ତ୍ରେ ଯଥା-ଓଁ ସିନ୍ଧୋରିବ ପ୍ରାଧ୍ୱନେଶୂ ଘନାସୋବାତପ୍ରମିୟଃ ପତୟନ୍ତି ଯହ୍ୱାଃ । ଘୃତସ୍ୟ ଧାରା ଅରୁଷୋନବାଜୀ କାଷ୍ଠାଭିନ୍ଦନ୍ନୁର୍ମିଭିଃ ପିନ୍ୱମାନଃ । ଇତି ବରସ୍ୟ ଲଲାଟେ ସିନ୍ଦୂରଂ ଦଦ୍ୟାତ୍ । (ଏହି ମନ୍ତ୍ର ପଢ଼ି ବର ଲଲାଟରେ ସିନ୍ଦୂର ଦେବ ।)

(୮) ସିନ୍ଦୂରଦାନ ମନ୍ତ୍ରୋ ଯଥା-ଓଁ ମହୀନାଂ ପୟୋଽସି ବର୍ଚୋଦାଅସି ବର୍ଚ୍ଚୋମେ ଦେହୀ । ବୃତ୍ରସ୍ୟାସି କନୀନକଶ୍ଚକ୍ଷୁର୍ଦା ଅସିହି ଚକ୍ଷୁମେ ଦେହୀ ଇତି ମନ୍ତ୍ରେଣ ବରସ୍ୟ ଚକ୍ଷୁଷୋଃ କଜ୍ଜଳଂ ଦଦ୍ୟାତ୍ । (ଏହି ମନ୍ତ୍ର ପଢ଼ି ବରର ଦୁଇଚକ୍ଷୁରେ କଜ୍ଜଳ ଦେବ ।)

(୯) କଣ୍ଠେମାଲ୍ୟପୁଷ୍ପଗ୍ରହଣ ମନ୍ତ୍ରୋ ଯଥା-ଓଁ ଯାଆହରଜ୍ଜମଦଗ୍ନିଃଶ୍ରଦ୍ଧାୟୈ ମେଦାୟୈ କାମାୟେନ୍ଦ୍ରିୟାୟ । ତାଅହଂ ପ୍ରତିଗୃହ୍ଣାମି ଯଶସାଚ * ବଳେନ ଚ । ଇତି ମନ୍ତ୍ରେଣ କଣ୍ଠେ ପୁଷ୍ପମାଳଂ ଗୃହ୍ଣୀୟାତ୍ । (ତତ୍ପରେ ବରକୁ ମାଲ୍ୟପୁଷ୍ପ ଦେବ, ବର ଏହି ମନ୍ତ୍ର ପଢ଼ି ତାହାକୁ କଣ୍ଠରେ ଗ୍ରହଣ କରିବେ ।

(୧୦) ଶିରୋମାଲ୍ୟ ଗ୍ରହଣ ମନ୍ତ୍ରୋ ଯଥା-ଓଁ ଯଦ୍ୟଶୋଽପ୍ସରସାମିନ୍ଦ୍ରଶ୍ଚକାରଃ ବିପୁଳଂ ପୃଥୁ । ତେନ ସଂଗ୍ରଥିତାଃ ସୁମନସ

* ବୃହସ୍ପତେର୍ଯଚ୍ଛ ଇତି ପାଠାନ୍ତରଂ ।

* ଭଗେନ ଚ ଇତି ପାଠାନ୍ତରଂ

* ଭଗେନଚ ଇତି ପାଠାନ୍ତରଂ ।



ଆବଧ୍ନାମି ଯଶୋମୟି । ଇତି ମନ୍ତ୍ରେଣ ଶିରସି ପୁଷ୍ପମାଳଂ ଗୃହ୍‌ଣୀୟାତ । (ତତ୍ପରେ ବରକୁ ଶିରୋମାଲ୍ୟ ଦେବ, ବର ଏହି ମନ୍ତ୍ର ପଢ଼ି ମସ୍ତକରେ ମାଲ୍ୟ ଗ୍ରହଣ କରିବ ।)

**(୧୧)** ଅଳଙ୍କାରଗ୍ରହଣ ମନ୍ତ୍ରୋ ଯଥା-ଓଁ ଅଳଙ୍କରଣମସି ଭୂୟୋ ଅଳଙ୍କରଣଂ ମେ ଭୂୟାତ୍ । (ତତ୍ପରେ ବରକୁ ମୁଦ୍ରିକା ଆଦି ଅଳଙ୍କାରମାନ ଦେବ । ବର ଏହି ମନ୍ତ୍ର ପଢ଼ି ଯଥାସ୍ଥାନରେ ଅଳଙ୍କାର ଧାରଣ କରିବ ।)

ଇତ୍ୟର୍ଚ୍ଚନଂ କୃତ୍ୱା ବରସ୍ୟ ଦକ୍ଷିଣହସ୍ତବୃଦ୍ଧାଙ୍ଗୁଳିଂ ଧୃତ୍ୱା ପଠେତ୍ । "ସାଧୁ ଭବାନାସ୍ତାମର୍ଚ୍ଚୟିଷ୍ୟାମୋଭବନ୍ତଂ" ଅର୍ଚ୍ଚୟତ୍ ଇତି ବରୋ ବଦେତ୍ ।

ବ୍ୟାଖ୍ୟା-କନ୍ୟାପିତା ବରର ଦକ୍ଷିଣହସ୍ତ ବୃଦ୍ଧାଙ୍ଗୁଳି ଧରି ଆମନ୍ତ୍ରଣ କରି କହିବେ ଆପଣ ଭଲରୂପେ ବସନ୍ତୁ; ଆପଣଙ୍କୁ ମୁଁ ଅର୍ଚ୍ଚନା କରିବି । ବର କହିବ ଅର୍ଚ୍ଚନା କରନ୍ତୁ ।

-୦-

## ୪୧୯-ମଙ୍ଗଳାଷ୍ଟକ

ମଙ୍ଗଳୋଭଗବାନ୍‌ବିଷ୍ଣୁର୍ମଙ୍ଗଳୋମଧୁସୂଦନଃ ।
ମଙ୍ଗଳଃ ପୁଣ୍ଡରୀକାକ୍ଷୋମଙ୍ଗଳୋଗରୁଡ଼ଧ୍ୱଜଃ ।।
ମାଧବୋମାଧବୋବିଷ୍ଣୁର୍ମାଧବୋମାଧବୋହରିଃ ।
ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବଂ ।।୧।।
ଶ୍ରୀମତ୍‌ପଙ୍କଜବିଷ୍ଟରୋହରିହରୌବାୟୁର୍ମହେନ୍ଦ୍ରୋଽନଳ-
ଶ୍ଚନ୍ଦ୍ରୋ ଭାସ୍କରବିତ୍ତପାଳବରୁଣା ଧର୍ମାଧିପାଳାଗ୍ରହାଃ ।
ପ୍ରଦ୍ୟୁମ୍ନୋନଳକୁବେରଃ ସ୍ୱରଶ୍ରଣଶ୍ଚିନ୍ତାମଣିଃ କୌସ୍ତୁଭଃ ।
ସ୍ୱାମୀ ଶକ୍ତିଧରସ୍ତୁ ଲାଙ୍ଗଲଧରଃ କୁର୍ବନ୍ତୁ ତେ ମଙ୍ଗଳଂ ।।୨।।
ଧେନୁର୍ବତ୍ସପ୍ରଯୁକ୍ତାବୃଷଗଜତୁରଗାଦକ୍ଷିଣାବର୍ତ୍ତବହ୍ନି-
ର୍ଦିବ୍ୟସ୍ତ୍ରୀପୂର୍ଣ୍ଣକୁମ୍ଭ ଦ୍ୱିଜନ ନୃପଗଣିକାଃ ପୁଷ୍ପମାଳା ପତାକା ।
ସଦ୍ୟୋମାଂସଂ ଘୃତଂ ବା ଦଧି ମଧୁ ରଜତଂ କାଞ୍ଚନଂ ଶୁକ୍ଲଧାନ୍ୟଂ
ମୁକ୍ତା ମାଣିକ୍ୟଲାଜାଃଶୁକପିକନକୁଳାଃ କୁର୍ବନ୍ତୁ ତେ ମଙ୍ଗଳଂ ।।୩ ।।
ଗଙ୍ଗା ସିନ୍ଧୁ ସରସ୍ୱତୀ ଚ ଯମୁନା ଗୋଦାବରୀ ନର୍ମଦା
କାବେରୀ ସରଯୂ ମହୀନ୍ଦ୍ରତନୟା ଚର୍ମଣ୍ୱତୀ ରେଣୁକା ।
ସିପ୍ରା ଭୋଗବତୀ ମହାସୁରନଦୀ ଚିତ୍ରୋତ୍ପଳା ଗଣ୍ଡକୀ
ପୁଣ୍ୟା ପୁଣ୍ୟଜଳା ସମୁଦ୍ର ସହିତ କୁର୍ବନ୍ତୁତେ ମଙ୍ଗଳଂ ।।୪ ।।

ସାବିତ୍ରୀ ସତ୍ୟଭାମା ହିମଗିରିତନୟାରୁନ୍ଧତୀଜାମ୍ବବତ୍ୟୋ-
ଲୋପାମୁଦ୍ରା ସୁଭଦ୍ରା ରତିଧୃତିକମଳାରେବତୀ ରୁକ୍ମିଣୀ ଚ ।
ରମ୍ଭା ମେନା ଯଶୋଦା ସୁରପୁରବନିତା ଜାନକୀ ବାଣପୁତ୍ରୀ
ସର୍ବାଃ ସୌଭାଗ୍ୟବତ୍ୟଃ ସକଳଗୁଣଯୁତାଃ କୁର୍ବନ୍ତୁ ତେ ମଙ୍ଗଳଂ ॥୫ ॥
୧ ଝିଲ୍ଲୀ ୨ ଝର୍ଝରିକା ମୃଦଙ୍ଗ ୩ ପଟହୋଭେରୀ ଚ ଶଙ୍ଖଧ୍ୱନି-
ର୍ବୀଣା ୪ ତୁମ୍ବୁରୁ ୫ ଗାନକଣ୍ଠ କଣବୋ ଘଣ୍ଟାରବୋ ଘର୍ଘରଃ ।
ତାଳଃ କାହାଳଦୁନ୍ଦୁଭୀ ଚ ଡମ୍ବରୁ ୬ ର୍ଢକ୍କା ଚ ବଂଶୀଧ୍ୱନି-
ରେତେ ବାଦ୍ୟାଣାଃ ସୁଘୋଷସହିତାଃ କୁର୍ବନ୍ତୁ ତେ ମଙ୍ଗଳଂ ॥୬॥
ଶ୍ରୀଚଣ୍ଡୀ ସିଦ୍ଧିରୂପା ଶିବଶିବଗୃହିଣୀ ଶଂକରୀ ସର୍ବମାତା
ଦୁର୍ଗା ଶ୍ୟାମା ସୁଭଦ୍ରା ସୁରପୂରବନିତା ଯୋଗିନୀ ଯୋଗମାୟା ।
ଗୌରୀ ଶ୍ରୀରାମକାନ୍ତା ସୁରପତିବନିତା ବୈଷ୍ଣବୀ ବେଦମାତା
ସର୍ବାଦେବ୍ୟଃ ପ୍ରସନ୍ନାଃ ସକଳଭୟହରାଃ କୁର୍ବନ୍ତୁ ତେ ମଙ୍ଗଳଂ ॥୭॥
ଶ୍ରୀରାମଃ ପୁରୁଷୋତ୍ତମୋନରହରିନାରାୟଣୋରକ୍ଷକଃ ।
ଶ୍ରୀନାଥଃ କରୁଣାନିଧିଃ କ୍ଷିତିପତିଯୋଗେଶ୍ୱରୋମାଧବଃ ।
କଂସାରିର୍ଦନୁଜଦ୍ୱାନ୍ତକୋହରିଜଗତ୍ପ୍ରାଣାଧିପୌ କେଶବୋ ।
ଗୋପୀନାଥଗଜେନ୍ଦ୍ର ମୋକ୍ଷଣକରୌ କୁର୍ବନ୍ତୁ ତେ ମଙ୍ଗଳଂ ॥୮॥
ଇତି ଶ୍ରୀମଙ୍ଗଳାଷ୍ଟକଂ ।

-୦-

## ୪୧୯-ବିବାହ କର୍ମାରମ୍ଭ

ପ୍ରଥମେ ବିବାହେ ବାଦ୍ୟାଦିକଂ * କାର୍ଯ୍ୟଂ । କନ୍ୟାପିତା ବୈଶ୍ୱଦେବଂ କୃତ୍ୱା ବେଦ୍ୟାଂ ।

---

(୧) ଝର୍ଝର ଶବ୍ଦକାରୀବାଦ୍ୟ ବିଶେଷ, (୨) ଡିଣ୍ଡିମବାଦ୍ୟ, (୩) ନାଗରା, (୪) ତାନପୁରା, (୫) ଢ଼ୋଲ, (୬) ବଡ଼ ଢ଼ୋଲ ।

*୪୧୯-(୧ଟି)-ବିବାହରେ ବାଦ୍ୟାଦି ଉତ୍ସବ କରିବାର ବିଧି ।

ତାଂ ଦତ୍ତ୍ୱା ଚ ପିତା କନ୍ୟାଂ ଭୂଷଣାଦିଚ୍ଛାଦନାଶନୈଃ ।
ପୂଜାୟନ୍ ସ୍ୱର୍ଗ ମାପ୍ନୋତି ନିତ୍ୟମୁତ୍ସବବୃତ୍ତିଷୁ । (ମତ୍ସ୍ୟପୁରାଣେ)

ବ୍ୟାଖ୍ୟା-ଭୂଷଣ ବସ୍ତ୍ର ଭୋଜ୍ୟଦ୍ରବ୍ୟଦ୍ୱାରା ବରକୁ ପୂଜା କରି ଓ ବାଦ୍ୟାଦିଉତ୍ସବ କରି କନ୍ୟାପିତା କନ୍ୟା ପ୍ରଦାନ କରି ନିତ୍ୟ ସ୍ୱର୍ଗ ପ୍ରାପ୍ତ ହୁଏ ।



ବରୁଣପୂଜାଂ କୁର୍ଯ୍ୟାତ୍ । ତଦ୍ୟଥା-ଅୟମାରମ୍ଭଃ ଶୁଭାୟ ଭବତୁ । ଦୂର୍ବାକ୍ଷତଂ ଗୃହୀତ୍ୱା କଳସେ ଦଦ୍ୟାନ୍ମନ୍ତ୍ରେଣ ଓଁ ସର୍ବମଙ୍ଗଳମାଙ୍ଗଲ୍ୟଂ ବରେଣ୍ୟ ବରଦଂ ଶୁଭଂ । ନାରାୟଣଂ ନମସ୍କୃତ୍ୟ ସର୍ବକର୍ମାଣି କାରୟେତ୍ । ନାରାୟଣଂ ପ୍ରଣମେତ । ଓଁ ଅଭିପ୍ରେତାର୍ଥଂ ସିଦ୍ଧ୍ୟର୍ଥଂ ପୂଜିତୋୟଃ ସୁରାସୁରୈଃ । ସର୍ବବିଘ୍ନବିନାଶାୟ ଗଣାଧିପତୟେ ନମଃ । ଇତି ଗଣେଶଂ ପ୍ରଣମେତ୍ । ଓଁ ବରୁଣସ୍ୟୋତ୍ତମ୍ଭନମସି ବରୁଣସ୍ୟ ସ୍କମ୍ଭ ସର୍ଜନିସ୍ଥଃ । ବରୁଣସ୍ୟ ରିତସଦନ୍ୟସି ବରୁଣସ୍ୟ ଋତସଦନମସି ବରୁଣସ୍ୟ ଋତସଦନମାସୀଦ । ଇତି କଳସେ ଜଳଂ ପ୍ରପୂର୍ଯ୍ୟ କର୍ତ୍ତା କୁଶେନ ଭୂମ୍ୟାଦୀନ୍ ସ୍ପୃଷ୍ଟ୍ୱା ବକ୍ଷ୍ୟମାଣମନ୍ତ୍ରାନ୍ ପଠେତ୍ । ଓଁ ଭୂରସି ଭୂମିରସ୍ୟ ଦିତିରସି ବିଶ୍ୱଧାୟା ବିଶ୍ୱସ୍ୟ ଭୁବନସ୍ୟ ଧର୍ତ୍ତ୍ରୀଂ । ପୃଥିବୀଂ ଯଚ୍ଛ ପୃଥିବୀଂ ଦୃହଂ ପୃଥିବୀଂ ମହିଂସୀଃ । ଇତି ଭୂମିସ୍ପର୍ଶନଂ । ଓଁ ଧାନ୍ୟମସି ଧିନୁହି ଦେବାନ୍ ଧିନୁହି ଯଜ୍ଞଂ । ଧିନୁହି ଯଜ୍ଞ ପତିଂ ଧିନୁହି ମାଂ ଯଜ୍ଞନ୍ୟଂ । ଇତି ଧାନ୍ୟ ସ୍ପର୍ଶନଂ । ଓଁ ଆଜିଘ୍ର କଳସଂ ମହ୍ୟାତ୍ତ୍ୱା ବିଶନ୍ତ୍ୱିନ୍ଦବଃ । ପୁନରୁର୍ଜା ନିବର୍ତ୍ତସ୍ୱ ସା ନଃ ସହସ୍ରଂ ଧୁକ୍ଷ୍ୱୋରୁଧାରା ପୟସ୍ୱତୀପୁନର୍ମା ବିଶତା ଦ୍ରୟିଃ । ଇତି କଳସସ୍ପର୍ଶନଂ । ଓଁ ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମ ଉଦ୍‌ଗୁରୁର ମାଣାୟଚାଭିଘ୍ନତେ ଚ । ନମ ଆଖିଦତେ ଚ ପ୍ରଖିଦତେ ଚ ନମ ଇଷୁକୃଦ୍ଭ୍ୟୋ ଧନୁଷ୍କୃଭ୍ୟଶ୍ଚବୋ ନମଃ । ନମୋବଃ କିରିକେଭ୍ୟୋ ଦେବାନଙ୍ଗଂ ହୃଦୟେଭ୍ୟୋ ନମୋ ବିଚିନ୍ୱକ୍ଲେଭ୍ୟୋ ନମୋବିକ୍ଷିଣକ୍ଲେଭ୍ୟୋ ନମ ଆନିହତେଭ୍ୟୋଃ । ଇତି ପଲ୍ଲବଃ ସ୍ପର୍ଶନଂ । ଓଁ ଯାଃ ଫଳିନୀର୍ଯା ଅଫଳା ଅପୁଷ୍ପାୟାଶ୍ଚ ପୁଷ୍ପିଣୀଃ । ବୃହସ୍ପତିପ୍ରସୂତାସ୍ତାନୋ ମୁଞ୍ଚନ୍ତ୍ୱଂହସଃ । ଇତିଫଳଂ । ଓଁ ଯଶସାମା ଦ୍ୟାବାପୃଥିବୀ ଯଶସେନ୍ଦ୍ରାବୃହସ୍ପତି ।

---

୪୧୯-(୨ଟି) ବାଦ୍ୟାଦି ଉତ୍ସବର ଫଳ ଯଥା-

ମାଙ୍ଗଲ୍ୟାନି ଚ ବାଦ୍ୟାନି ବ୍ରହ୍ମଘୋଷଂ ଚ ଗୀତକଂ ।
ଋଦ୍ଧ୍ୟର୍ଥଂ କାରୟେଦ୍‌ବିଦ୍ୱାନ୍ନମାଙ୍ଗଲ୍ୟବିନାଶନଂ । (ମତ୍ସ୍ୟପୁରାଣେ)

ବ୍ୟାଖ୍ୟା-ବିଦ୍ୱାନ୍‌ଲୋକ ଅମଙ୍ଗଳର ବିନାଶ ଓ ସମ୍ପଦର ବୃଦ୍ଧି ନିମିତ୍ତ ବିବାହ ସମୟରେ ମଙ୍ଗଳ ବାଦ୍ୟଧ୍ୱନି, ବେଦପାଠ ଓ ଗୀତ ଗାୟନାଦି ଉତ୍ସବ କରାଇବେ ।

୪୧୯-(୩ଟି)-ଶୁଭ କାର୍ଯ୍ୟରେ ହୁଳହୁଳି ଧ୍ୱନି କରିବା ବିଧି; ଯଥା-

ବଳିକର୍ମଣି ଯାତ୍ରା ୟାଂ ପ୍ରବେଶେ ନବବେଶ୍ମନଃ ।
ମହୋତ୍ସବେଚମାଙ୍ଗଲ୍ୟେ ତତ୍ରସ୍ତ୍ରୀଣାଂ ଧ୍ୱନିଃ ଶୁଭଃ । (ମତ୍ସ୍ୟସୂକ୍ତେ)

ବ୍ୟାଖ୍ୟା-ଦେବପୂଜାଦି କାର୍ଯ୍ୟରେ, ଯାତ୍ରା ସମୟରେ, ନୂତନ ଗୃହ ପ୍ରବେଶକାଳରେ ଓ ମହୋତ୍ସବାଦି ମଙ୍ଗଳକାର୍ଯ୍ୟରେ ସ୍ତ୍ରୀମାନଙ୍କର ମୁଖଧ୍ୱନି ଅର୍ଥାତ୍ ହୁଳହୁଳି ଶବ୍ଦ ଶୁଭପ୍ରଦ ।

ଯଶୋଭଗଷ୍ଟ ମାବିଦଦ୍ ଯଶୋମାଂ ପ୍ରତିପଦ୍ୟତାଂ । ଇତି ବସ୍ତ୍ରଂ । ଓଁ ଗନ୍ଧଦ୍ୱାରା ଦୂରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ । ଈଶ୍ୱରୀଂ ସର୍ବଭୂତାନାଂ ତ୍ୱାମିହୋପହ୍ୱୟେ ଶ୍ରିୟଂ । ଇତି ଗନ୍ଧଂ । ଓଁ ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌବ୍ୟୋତ୍ତଂ । ଇଷ୍ଟଂ ଷାଣାମୁମ୍ମଇଷାଣ ସର୍ବଲୋକଂ ମଇଷାଣ ଇତି ପୁଷ୍ପଂ ଓଁ ସିନ୍ଧୋରିବ ପ୍ରାଧ୍ୱାନେଶୂ ଘନାସୋବାତପ୍ରମିୟଃ ପତୟନ୍ତି ଯହ୍ୱାଃ ଘୃତସ୍ୟ ଧାରା ଅରୁଷୋନବାଜୀ କାଷ୍ଠାଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ । ଇତି ସିନ୍ଦୂରଂ । କଳସସ୍ୟ ମୁଖେ ରୁଦ୍ରଃ କଣ୍ଠେ ବିଷ୍ଣୁଃ ପ୍ରକୀର୍ତ୍ତିତଃ । ଅଧଶେ ବ ସ୍ଥିତୋବ୍ରହ୍ମା ମଧ୍ୟେ ମାତୃଗଣାଃ ସ୍ମୃତାଃ । କୁକ୍ଷୌ ଚ ସାଗରାଃ ସପ୍ତ ସପ୍ତଦ୍ୱୀପାଶ୍ଚ ମେଦିନୀ । ଉଦରେ ସର୍ବ ତୀର୍ଥାନି ଚିନ୍ତୟିତ୍ୱା ପ୍ରକୁଜୟେତ୍ । ଇତି ବିଚିନ୍ତ୍ୟ "ଘଟ" ସ୍ଥାଂ ସ୍ଥୀଂ ସ୍ଥିରୋଭବ । ଇତି ଅକ୍ଷତପ୍ରକ୍ଷେପଃ । ଓଁ ଗଣପତୟେ ନମଃ । ଗଣପତିମାବାହୟାମି । ଗଣପତେଽତ୍ରାଗଚ୍ଛ । ଓଁ ବରୁଣାୟ ନମଃ । ବରୁଣମାବାହୟାମି । ବରୁଣ ଅତ୍ରାଗଚ୍ଛ । ଓଁ ଆଦିତ୍ୟାଦିନବଗ୍ରହେଭ୍ୟୋ ନମଃ । ଆଦିତ୍ୟଦିନବଗ୍ରହମା ବାହୟାମି । ଆଦିତ୍ୟଦି ନବଗ୍ରହା ଅତ୍ରାଗଚ୍ଛତ । ଇନ୍ଦ୍ରାଦିଦଶଦିକ୍ପାଳେତଭ୍ୟୋ ନମଃ । ଇନ୍ଦ୍ରାଦିଦଶଦିକ୍ପାଳାମାବାହୟାମି । ଇନ୍ଦ୍ରାଦି ଦଶଦିକ ପାଳା ଅତ୍ରାଗଚ୍ଛତ । ଓଁ ଗ୍ରାମଦେବତାୟୈ ନମଃ । ଗ୍ରାମଦେବତାମାବାହୟାମି । ଗ୍ରାମଦେବତେଽତ୍ରାଗଚ୍ଛ । ଗଣପତୟେ ଆସନଂ ନମଃ । ବରୁଣାୟ ଆସନଂ ନମଃ ଆଦିତ୍ୟାଦିନବଗ୍ରହେଭ୍ୟ ଆସନଂ ନମଃ । ଇନ୍ଦ୍ରାଦିଦଶଦିକ୍ପାଳେଭ୍ୟ ଆସନଂ ନମଃ । ଗ୍ରାମଦେବତାୟୈ ଆସନଂ ନମଃ । ଏବଂ କ୍ରମେଣ ପାଦାସନାର୍ଘ୍ୟଗନ୍ଧପୁଷ୍ପ ଧୂପଦୀପନୈବେଦ୍ୟକ୍ରମୁକତାମ୍ବୁଳାନ୍ତଂ ପୂଜୟେତ୍ । ତତୋ ଦୁର୍ବାବଦରାକ୍ଷତାନି ଦତ୍ତ୍ୱା ପ୍ରାର୍ଥୟେତ୍ । ତଦ୍ୟଥା-ଆୟୁର୍ଦେହି ଯଶୋଦେହି ଶ୍ରିୟଂ ଦେହି ତ୍ୱମେବ ଚ । ପୁତ୍ରଂ ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ଗଣନାୟକ । ଓଁ ଯସ୍ୟ ଲୋମ୍ନି ସ୍ଥିତା ମେଘାଃ ସିନ୍ଧୁସାଗରନିମ୍ନଗା । କୁକ୍ଷୌ ସମୁଦ୍ରାଶ୍ଚତ୍ୱାରସ୍ତସ୍ମୈ ତୋୟାତ୍ମନେ ନମଃ । ଓଁ ସୂର୍ଯ୍ୟାସୋମାଙ୍ଗରକଙ୍କଜୀବାଶୁକ୍ରାର୍କିରାହବଃ । କେତୁରେତେ ପ୍ରୟଚ୍ଛନ୍ତୁ ମମାୟୁର୍ବଲମୁତ୍ତମଂ । ଓଁ ଇନ୍ଦ୍ରାଗ୍ନି ଯମନୈର୍ଋତ୍ୟବରୁଣାନିଳଧନାଧିପାଃ । ଶଙ୍କରଃ ପଦ୍ମ ଯୋନିଶ୍ଚାନନ୍ତୋ ମାଂ ପାନ୍ତୁ ସର୍ବଦା । ସ୍ଥାନେଶ୍ୱରି ନମସ୍ତୁଭ୍ୟଂ ରୂପସୌଖ୍ୟପ୍ରଦାୟିନୀ । ସ୍ଥାନକାମପ୍ରଦେ ଦେବି ସଦା ମଙ୍ଗଳକାରିଣୀ ।

ଇତି ବରୁଣାଦିପୂଜା ।

 

ବରସ୍ତୁ ବେଦ୍ୟମେବଂ ବରୁଣପୂଜାଂ କୁର୍ଯ୍ୟାତ୍ ।

ତତଃ କନ୍ୟାପିତା ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । ସ୍ୱସ୍ତିପୁଣ୍ୟାହଂ ୩ । ଏବମସ୍ତୁ ବିଜ୍ଞାପୟାମ୍ୟୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଶାନ୍ତିର୍ଭବତୁ । ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମଣା ମୟା ଅମୁସଗୋତ୍ରାୟ ମମ ଦୁହିତୁ-ରମୁକନାମ୍ନ୍ୟା କନ୍ୟାୟା ବୈବାହିକେ କର୍ମଣି ଅମୁଷ୍ମୈ ବରାୟ ସତ୍ୟବାକ୍‌ପ୍ରଦାନାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହା ଏକାଦଶସ୍ଥା ଫଳଦା ଭବନ୍ତୁ ଶୁଭଂ ଭବତୁ୩ ।

ତତଃ କନ୍ୟାପିତା ଶାଳକୋବା କାଂସ୍ୟପାତ୍ରେ ହରିଦ୍ରୋଦକେନ ବରସ୍ୟ * ପାଦପ୍ରକ୍ଷାଳନଂ କୁର୍ଯ୍ୟାତ୍ ।

---

*୪୧୯ (୪ଟି)-ବରର ପାଦଧୌତନିୟମ-

ନୈବାୟ ବୟସା ବୃଦ୍ଧୋ ଜାମାତା ନହି ତତ୍‌କ୍ଷଣାତ୍ ।
କିମର୍ଥଂ ପାଦଧୌତଂ ତୁ କୁର୍ଯ୍ୟାତ୍କନ୍ୟାପିତା ପୁନଃ ।
କନ୍ୟାପିତା ବୃତଃ ପୂର୍ବଂ ବିବାହାର୍ଥମୁପାଗତଃ ।
ଅତୋ ନାରାୟଣ୍ୟଃ ସାକ୍ଷାତ ପାଦଧୌତଂ ବିଧୀୟତେ ।

(ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-ପ୍ରଶ୍ନ ! ଯେ ବୟୋବୃଦ୍ଧ ନୁହେଁ କିମ୍ବା ସେ ସମୟରେ ଜାମାତା ହୋଇନାହିଁ, ଏହି ରୂପ ବରର କନ୍ୟାପିତା କାହିଁକି ଗୋଡ଼ ଧୋଇଦେବ ? ଉତ୍ତର-କନ୍ୟାପିତା, ପୂର୍ବରୁ ବରଣ କରି ଆଣିଅଛି ଏବଂ ସେ ବିବାହ ନିମିତ୍ତ ଗୃହରେ ଉପସ୍ଥିତ ହୋଇଅଛନ୍ତି ଓ କନ୍ୟାପିତା ତାହାଙ୍କୁ ନାରାୟଣ ସ୍ୱରୂପ କଳ୍ପନା କରିଥିବାରୁ ତାଙ୍କର ଗୋଡ଼ ଧୋଇ ଦେବା ବିଧି ।

ନାରିକେଳୋଦକଂ କ୍ଷୀରଂ ହରିଦ୍ରା ଚନ୍ଦନଂ ଜଳଂ ।
ବିବାହେ ପାଦଧୌତାର୍ଥଂ ଚାନ୍ୟତ୍ର ପରିବର୍ଜୟେତ୍ ।।
ବିପ୍ରଃ କ୍ଷୀରେଣ ଧୌତଂ ଚ ନାରିକେଳେନ କ୍ଷତ୍ରିୟଃ ।
ଗନ୍ଧୋଦକେନ ବୈଶ୍ୟଶ୍ଚ ଶୂଦ୍ରୋହାରିଦ୍ରାବାରିଣା ।।
ଏତତ୍ ସର୍ବଂ କଳୌ ନାଦରଣୀୟଂ କେବଳଂ ହରିଦ୍ରାଜଳେନ ।

ବ୍ୟାଖ୍ୟା-ନାରିକେଳୋଦକ, କ୍ଷୀର, ହରିଦ୍ରାଜଳ ଓ ଚନ୍ଦନଜଳ ଏ ସମସ୍ତ ଦ୍ରବ୍ୟ ବିବାହକର୍ମରେ ବରର ପାଦଧୌତ ନିମିତ୍ତ ଆବଶ୍ୟକ ହୁଏ । ଅନ୍ୟାନ୍ୟ କର୍ମରେ ଏପରି ପାଦଧୌତ ହୁଏ ନାହିଁ । ବ୍ରାହ୍ମଣ ନାରିକେଳ ଜଳରେ, କ୍ଷତ୍ରିୟ ଦୁଗ୍ଧରେ, ବୈଶ୍ୟ ଚନ୍ଦନ ଜଳରେ ଓ ଶୂଦ୍ର ହଳଦୀ ପାଣିରେ ବିବାହରେ ଗୋଡ଼ ଧୁଅନ୍ତି । କିନ୍ତୁ ଏ ସମସ୍ତ କଳିଯୁଗରେ ବ୍ୟବହୃତ ହୁଏ । କେବଳ ହରିଦ୍ରାଜଳରେ ପାଦ ଧୌତ ହୁଏ ।

ବ୍ୟାଖ୍ୟା-କନ୍ୟାପିତା ବୈଶ୍ୱଦେବାଦି କରିସାରି ବେଦୀ ଉପରେ ବରୁଣପୂଜା ଓ ପୂଣ୍ୟାହବଚାନ କଲା ଉତ୍ତାରୁ କାଂର୍ସ୍ୟପାତ୍ରରେ ହରିଦ୍ରାଜଳଦ୍ୱାରା ନିଜେ ଅଥବା ଶାଳକ ବରର ପାଦ ଧୋଇଦେବ ।

## ୪୨୦-ପ୍ରଥମ ବରଣ

ତତୋ ବର ଆସନେ ଉପବିଶେତ୍ । କନ୍ୟାପିତା ବରାୟ ଆସନାଦିକଂ ଦଦ୍ୟାତ୍ ।

ବ୍ୟାଖ୍ୟା-ତତ୍‌ପରେ ବର ଆସନରେ ବସିବ । କନ୍ୟାପିତା ତଳଲିଖିତ ମନ୍ତ୍ର ପଢ଼ି ଆସନାଦି ଉପଚାର ଦେବ ।

ମନ୍ତ୍ରୋଯଥା-ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣାୟ ଆସନଂ ଦଦାନି * ଦଦସ୍ୱ ଇତି ବ୍ରାହ୍ମଣ ପ୍ରତି ବଚନଂ । ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ । ବ୍ରାହ୍ମଣାୟ ପାଦାସନଂ ଦଦାନିଂ । ଦଦସ୍ୱ ଇତି ପ୍ରତିବଚନଂ । ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣାୟ ଅର୍ଘ୍ୟଂ ଦଦାନିଂ । ଦଦସ୍ୱ ଇତି ପ୍ରତିବଚନଂ । ଭଗବତଃ ଶ୍ରୀବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣାୟ ଗନ୍ଧଂ ଦଦାନି । ଦଦସ୍ୱ ଇତି ପ୍ରତିବଚନଂ । ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣାୟ ପୁଷ୍ପଂ ଦଦାନିଂ । ଦଦସ୍ୱ ଇତି ପ୍ରତିବଚନଂ । ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣଂ ଅକ୍ଷତେନ ଅର୍ଚ୍ଚନୀୟଂ କରୋମି । ଅର୍ଚ୍ଚିତଂ ? ସ୍ୱର୍ଚ୍ଚିତମସ୍ତୁ ଇତି ପ୍ରତିବଚନଂ । ବ୍ରହ୍ମଣଂ ନାରାୟଣ ସ୍ୱରୂପ ମୁପଚ୍ଛୟାମି । ଉପକଚ୍ଛୟ ଇତି ପ୍ରତି ବଚନଂ । ଓଁ ନମୋଽସ୍ତ୍ୱନନ୍ତାୟସହସ୍ରମୂର୍ତ୍ତୟେ ସହସ୍ରପାଦାକ୍ଷିଶିରୋରୁବାହବେ । ସହସ୍ରନାମ୍ନେ ପୁରୁଷାୟ ଶାଶ୍ୱତେ ସହସ୍ରକୋଟି ଯୁଗଧାରିଣେ ନମଃ । ଓଁ ନମୋ ବ୍ରହ୍ମଣ୍ୟଦେବାୟ ଗୋ ବ୍ରାହ୍ମଣ ହିତାୟ ଚ । ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋନମଃ । ନମୋନମଃ । ଇତି ନମସ୍କାରଃ । ତତଃ କନ୍ୟାପିତା ଭାର୍ଯ୍ୟାଦ୍ରନୁମତିଂ ନିତ୍ୱା * ବସ୍ତ୍ରଯୁଗ-ମାଲ୍ୟଯୁଗ୍ମ-ନାରିକେଳୋପବୀତ-ଚନ୍ଦନ-ମୁଦ୍ରିକାକୁଣ୍ଡଳ-ତାମ୍ବୁଲାକ୍ଷତାନି ଗୃହୀତ୍ୱା ପ୍ରତଙ୍ମୁଖଃ ସନ୍ ବାକ୍ୟଂ କରୋତି । ଓଁ ବିଷ୍ଣୁ ର୍ବିଷ୍ଣୁ ର୍ବିଷ୍ଣୁ । ଶୁକ୍ଲାମ୍ବରଧର

---

*-ଆସନାଦି ଦେଲାବେଳେ ପୂର୍ବୋକ୍ତବାକ୍ୟ ସମୁଦାୟ, ଉଚ୍ଚାରଣ, କରିବ, କେବଳ ବ୍ରାହ୍ମଣାୟ ପରିବର୍ତ୍ତରେ କ୍ଷତ୍ରିୟ ପକ୍ଷରେ ଅମୁକବର୍ମଣେ, ବୈଶ୍ୟପକ୍ଷରେ ଅମୁକଗୁପ୍ତାୟ ଓ ଶୂଦ୍ରପକ୍ଷରେ ଅମୁକ ଦାସାୟ ଏହିପରି ଉଚ୍ଚାରଣ କରିବ ।

*-ବସ୍ତ୍ରଯୁଗ୍ମଂ ମାଲ୍ୟଯୁଗ୍ମଂ ନାରିକେଳଂ ବା କାଞ୍ଚନଂ । ଉପବୀତଂ ଚନ୍ଦନଂ ଚ ଗୃହୀତ୍ୱା ସୁସମାହିତଃ ।

 

ବିଷ୍ଣୁଂ ଶଶିବର୍ଣ୍ଣ ଚତୁର୍ଭୁଜଂ । ପ୍ରସନ୍ନବଦନଂ ଧ୍ୟାୟେତ୍ସର୍ବବିଘ୍ନୋପଶାନ୍ତୟେ । ସ୍ମୃତେ ସକଳକଲ୍ୟାଣଭାଜନଂ ଯତ୍ର ଜାୟତେ । ପୁରୁଷ ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିଂ । ଶଙ୍ଖଚକ୍ରଗଦାପାଣେ ଦ୍ୱାରଦାନିଳୟାଚ୍ୟୁତ । ଗୋବିନ୍ଦ ପୁଣ୍ଡରିକାକ୍ଷ ରକ୍ଷ ମାଂ ଶରଣାଗତଂ ।

ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ । ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟ ଭୂପ୍ରଦେଶେଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକ ନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଯଥାସ୍ଥାନାବସ୍ଥିତେଷୁ ଭୌମାଦି ଗ୍ରହଯୋଗଲଗ୍ନ କରଣମୁହୂର୍ତ୍ତାଂକାଂଶକେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ । ଅମୁକସଗୋତ୍ରଂ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଂ ଦେଶାଧ୍ୟାୟିନଂ ଅମୁକଦେବଶର୍ମାଣଂ ବ୍ରାହ୍ମଣମର୍ଚ୍ଚିତଂ ଅମୁକସଗୋତ୍ରଃ ଶ୍ରୀମାନ ଅମୁକଦେବଶର୍ମା ଅମୁକସଗୋତ୍ରାଂ ମମ ଦୁହିତରଂ ଅମୁକାନମ୍ନୀଂ କନ୍ୟା ବାଚା ଦାତୁମନେନ ବାସୋଯୁଗଳେନ ଗନ୍ଧପୁଷ୍ପାକ୍ଷତ ନାରିକେଳତାମ୍ବୁଳକାଞ୍ଚନଯଜ୍ଞୋପବୀତ ସହିତେନ ବୃହସ୍ପତ୍ୟାଦିର୍ଦ୍ଦୈବତେନ ପାତ୍ରତ୍ୱେନ ତ୍ୱାମହଂ ବୃଣେ । ବୃତୋଽସ୍ମୀତି ବରପ୍ରତିବଚନଂ । ଇତି ସର୍ବଂବରହସ୍ତେ ଦଦ୍ୟାତ୍ ।"।

(ଏହି ଉପରୋକ୍ତ ବାକ୍ୟ ପଢ଼ି ଏ ସମସ୍ତ ଉପକରଣ ବରହସ୍ତରେ ଦେବ ।)

---

ତତୋ ବରୋ ଗନ୍ଧାତ୍କିଂଚିତଦାଦାୟ ହସ୍ତୟୋରୁପଲିପ୍ୟ ମୁଖନାସିକୟୋରାଲମ୍ଭନଂ କୁର୍ଯ୍ୟାଦନେନ ମନ୍ତ୍ରେଣ । (ତତ୍ପରେ ବର ସେହି ଗନ୍ଧରୁ କିଞ୍ଚିତ୍ ହସ୍ତରେ ନେଇ ଉଭୟ ହସ୍ତରେ ନେଇ ଉଭୟ ହସ୍ତରେ ଲେପନ କରି ତଳଲିଖିତ ମନ୍ତ୍ର ପଢ଼ି ମୁଖ ନାସିକାଦି ସ୍ପର୍ଶ କରିବ) ।

ଯଥା-ପ୍ରାଣପାନୌ ମେତର୍ପୟ ଇତି ମୁଖେ । (ଏହା ପଢ଼ି ମୁଖ ସ୍ପର୍ଶ କରିବ) ଚକ୍ଷୁର୍ମେ ତର୍ପୟ ଇତି ଚକ୍ଷୁଷୋଃ । (ଏହି ମନ୍ତ୍ର ପଢ଼ି ଚକ୍ଷୁଦ୍ୱୟ ସ୍ପର୍ଶ କରିବ) ଶ୍ରୋତ୍ରଂ ମେ ତର୍ପୟ ଇତି ଶ୍ରୋତ୍ରୟୋଃ । (ଏହି ମନ୍ତ୍ର ପଢ଼ି ଉଭୟ କର୍ଣ୍ଣ ସ୍ପର୍ଶ କରିବ) "ପିତରଃ ଶୁନ୍ଧଧ୍ୱଂ" ଇତି ଅପସବ୍ୟୋଭୂତ୍ୱା ଦକ୍ଷିଣାସ୍ୟାଂ ଦିଶି ହସ୍ତୌ ପ୍ରକ୍ଷାଳୟେତ୍ । (ଏହା ପଢ଼ି ବର ଅପସବ୍ୟହୋଇଦକ୍ଷିଣଦିଗରେ ଦୁଇହାତ ଧୋଇବ) ତତୋ ବରୋ ଗନ୍ଧଂ ଗୃହୀତ୍ୱା ଲଲାଟେ ତିଳକଂ କୁର୍ଯ୍ୟାତ୍ ମନ୍ତ୍ରେଣ । ଓଁ ସୁରକ୍ଷା ଅହମକ୍ଷୀଭ୍ୟାଗୁଂ ସୁବର୍ଚ୍ଚା ମୁଖେନ । ସୁଶ୍ରୁତ୍କର୍ଣ୍ଣଭ୍ୟାଂ ଭୂୟାସଂ । (ଏହି ମନ୍ତ୍ର ପଢ଼ି ବର କିଞ୍ଚିତ ଗନ୍ଧ ନେଇ ଲଲାଟରେ ତିଳକ କରିବ)

ତତୋ ବରଂ ଆହତଂ ବସ୍ତ୍ରମେକଂ ଗୃହଣାତି ମନ୍ତ୍ରେଣ । ଓଁ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟତ୍ୱାୟ ଜରଦଷ୍ଟିରସ୍ମି । ଶତଂ ଚ ଜୀବାମୀ ଶରଦଃ " ସୁବର୍ଚ୍ଚ । ରାୟସ୍ପୋଷମଭିସଂବ୍ୟାୟିଷ୍ୟେତତୋ ଦ୍ୱିରାଚମନଂ । (ଏହି ମନ୍ତ୍ର ପଢ଼ି ବର ଗୋଟିଏ ପାଞ୍ଚ ପିନ୍ଧି ଦ୍ୱିରାଚମନ କରିବ) ତତୋ ବରୋ ଯଜ୍ଞୋପବୀତ ଗୃହ୍ଣାତି ଯଜ୍ଞୋପବୀତମନ୍ତ୍ରେଣ । ତତୋଦ୍ୱିରାଚମନଂ । (ତପୂରେ ବର ଯଜ୍ଞୋପବୀତ ମନ୍ତ୍ରରେ ଯଜ୍ଞୋପବୀତ ପିନ୍ଧି ଦ୍ୱିରାଚମନ କରିବ) ତତଉତ୍ତରୀୟବସ୍ତ୍ରଂ ଗୃହଣତି ମନ୍ତ୍ରେଣ । ଦ୍ୱିରାଚମନଂ । ଯଶସା ମା ଦ୍ୟାବାପୃଥିବା ଯଶସେନ୍ଦ୍ରାବୃହସ୍ପତି । ଯଶୋଭଗଶ୍ଚ ମାବିଦଦ୍ ଯଶୋମାଂ ପ୍ରତିପଦ୍ୟତାଂ । (ଏହି ମନ୍ତ୍ର ପଢ଼ି ବର ଉତ୍ତରୀୟ ପାଞ୍ଚ କାନ୍ଧରେ ପକାଇ ଦ୍ୱିରାଚମନ କରିବ) ତତୋବରଃ କଣ୍ଠେ ପୁଷ୍ପମାଳଂ ଗୃହ୍ଣାଦି ମନ୍ତ୍ରେଣ । ଓଁ ଯାଆହରଜ୍ଜମଦଗ୍ନିଃ ଶ୍ରଦ୍ଧାୟୈ ମେଧାୟୈ କାମାୟେନ୍ଦ୍ରିୟାୟ । ତା ଅହଂ ପ୍ରତିଗୃହ୍ଣାମି ଯଶସା ଚ ବଳେନ ଚ । (ଭଗେନ ଚ ଇତି ପାଠାନ୍ତରଂ) । (ଏହି ମନ୍ତ୍ର ପଢ଼ି କଣ୍ଠରେ ପୁଷ୍ପମାଳା ପିନ୍ଧିବ) ତତଃ ଶିରସି ପୁଷ୍ପମାଳାଂ ଗୃହ୍ଣାତି ମନ୍ତ୍ରେଣ । ଓଁ ଯଦ୍ୟଶୋଽପସରସା ମିନ୍ଦ୍ରଶ୍ଚକାର ବିପୁଳଂ ପୃଥୁ । ତେନ ସଂଗ୍ରଥିତାଃ ସୁମନସ ଆବଧ୍ନାମି ଯଶୋମୟି । (ଏହି ମନ୍ତ୍ର ପଢ଼ି ଶିରରେ ପୁଷ୍ପମାଳା ଘେନିବ (ତତଃ ଅଳଙ୍କାରଂ ଗୃହ୍ଣାତି ମନ୍ତ୍ରେଣଅଳଂକରଣମସି ଭୂୟୋ ଅଳଂକରଣଂ ମେ ଭୂୟାତ୍ । (ଏହି ମନ୍ତ୍ର ପଢ଼ି ଅଳଙ୍କାର ପିନ୍ଧିବ) ।

## ୪୨୧-ବାଗ୍‌ଦାନ କର୍ମ

ତତଃ କନ୍ୟାପିତା ଶଙ୍ଖେ ଜଳଂ ପୂରୟିତ୍ୱ । ଗନ୍ଧପୂଷ୍ପଦୂର୍ବାକ୍ଷତକୁଶଦ୍ୱୟାକ୍ଷୁର୍ଣ୍ଣଗୁବାକଦ୍ୱୟଂ ତତ୍ର ନିକ୍ଷିପ୍ୟ ହସ୍ତଦ୍ୱୟେନ ଗୃହୀତ୍ୱା ବ୍ରାହ୍ମଣାନନୁଜ୍ଞାପ୍ୟ ମହାବାକ୍ୟଂ କୁର୍ଯ୍ୟାତ୍ ।

ବ୍ୟାଖ୍ୟା-ତପୂରେ କନ୍ୟାପିତା ଶଙ୍ଖରେ ଜଳପୂର୍ଣ୍ଣ କରି ତହିଁରେ ଗନ୍ଧ, ପୁଷ୍ପ, ଦୁର୍ବା, ଅକ୍ଷତ ଓ ଦୁଇଗୋଟି କୁଶ ଆଉ ଦୁଇଗୋଟି ଅକ୍ଷୁର୍ଣ୍ଣ ଗୁଆ ପକାଇ ତାହାକୁ ଦୁଇ ହସ୍ତରେ ଧରି ବ୍ରାହ୍ମଣମାନଙ୍କ ଅନୁଜ୍ଞା ନେଇ ମହାବାକ୍ୟ ପଢ଼ିବ ।

## ୪୨୨-ମହାବାକ୍ୟ

ଓଁ ବିଷ୍ଣୁ ର୍ବିଷ୍ଣୁଃ ର୍ବିଷ୍ଣୁଃ । ଶୁକ୍ଳାମ୍ବରଧରଂ ବିଷ୍ଣୁ ଶଶିବର୍ଣ୍ଣଂ ଚତୁର୍ଭୁଜଂ । ପ୍ରସନ୍ନବଦନଂ ଧ୍ୟାୟେତ୍ସର୍ବବିଘ୍ନୋପଶାନ୍ତୟେ । ସ୍ମୃତେ ସକଳକ୍ୟାଣଭାଜନଂ ଯତ୍ର ଜାୟତେ ।

* ପୁରୁଚୀ ଇତି ପାଠାନ୍ତରଂ ।



ପୂରୁଷଂ ତମଜଂ ନିତ୍ୟଂ ବ୍ରଜାମିଂ ଶରଣଂ ହରି ଶଙ୍ଖଚକ୍ରଗଦାପାଣେ ଦ୍ୱାରକାନିଳୟାଚ୍ୟୁତଂ । ଗୋବିନ୍ଦ ପୁଣ୍ଡରୀକାକ୍ଷ ରଖ ମାଂ ଶରଣାଗତଂ । ଓଁ ବିଷ୍ଣୁ ର୍ବିଷ୍ଣୁ ର୍ବିଷ୍ଣୁଃ । ଅଦ୍ୟ ବ୍ରହ୍ମଣୋଦ୍ୱିତୀୟପରାର୍ଦ୍ଧେ ଶ୍ୱେତବାରାହକଳ୍ପେ ବୈବସ୍ୱତମନ୍ୱୋରଷ୍ଟାବିଂଶତିତମଚତୁର୍ଯ୍ୟୁଗସ୍ୟକଲେ*ର୍ଯାବଦଧିକପଞ୍ଚସହସ୍ର- ଅପରିମିତେଽବ୍ଦେ ବର୍ତ୍ତମାନବ୍ୟାବହାରିକସମ୍ବତ୍ସରେ ଯଥାୟନେ ଯଥର୍ତ୍ତୌ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ- ଭୌମାଦିଗ୍ରହଯୋଗଲଗ୍ନକରଣମୁହୂର୍ତ୍ତକାଂଶକେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୂର୍ଣ୍ୟେତିଥୌ ଇହପୃଥିବ୍ୟାଂ ଜମ୍ବୁଦ୍ୱୀପେଭାରତବର୍ଷେ ଯଥୋକ୍ତଦେଶେ ଅମୁକକ୍ଷେତ୍ରୟେ ଅନ୍ତରାଳେ ମେରୋର୍ଦକ୍ଷିଣତଃ ମହୋଦଧେରୁତ୍ତରଃ ଅମୁକନଦୀତୀରେ ଦେବବ୍ରାହ୍ମଣାଗ୍ନିସନ୍ନିଧୌ ଅମୁକସଗୋତ୍ରାୟ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନେ ଅମୁକଦେବଶର୍ମଣେ ବ୍ରାହ୍ମଣାୟାର୍ଚ୍ଚିତାୟ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମୋ ଅମୁକସଗୋତ୍ରାଂ ମମ ଦୁହିତରଂ ଅମୁକନାମ୍ନୀ କନ୍ୟା ବିବାହସମୟେ ପାରସ୍କରଗୃହ୍ୟୋକ୍ତବେଦବିଧିନା ତୁଭ୍ୟ ଦାସ୍ୟାମୀତି ସତ୍ୟାଂ ବାଚମହଂ ପ୍ରତିଜାନେ । ଇତ୍ୟୁକ୍ତ୍ୱା ଶଙ୍ଖୋ ଜଳାଦିକଂ ସର୍ବଂ ବରହସ୍ତେ ଦଦ୍ୟାତ୍ । ତତଃ କନ୍ୟାପିତା ବରପିତରମୁଦ୍ଦିଶ୍ୟ ଇଦଂ ପଠେତ୍ । ଅବ୍ୟଙ୍ଗେଽପତିତେଽକ୍ଲୀବ ଦଶଦୋଷବିବର୍ଜିତେ । ଇମାଂ କନ୍ୟାଂ ପ୍ରଦାସ୍ୟାମି ଦେବାଗ୍ନି ଦ୍ୱିଜସନ୍ନିଧୌ । ବାଚା ଦତ୍ତାମୟା କନ୍ୟା ପୁତ୍ରାର୍ଥଂ ସ୍ୱୀକୃତା ତ୍ୱୟା । କନ୍ୟାବଲୋକନବିଧୌ ନିଶ୍ଚିତସ୍ତ୍ୱଂ ସୁଖୀଭବ । ତତୋ ବରପିତା କନ୍ୟାପିତାରମୁଦ୍ଦିଶ୍ୟ ଇଦଂ ପଠେତ୍ । ବାଚା ଦତ୍ତା ତ୍ୱୟା କନ୍ୟା ପୁତ୍ରାର୍ଥଂ ସ୍ୱୀକୃତା ମୟା । ବରାବଲୋକନବିଧୌ । ନିଶ୍ଚିତସ୍ତ୍ୱଂ ସୁଖୀଭବ । ତତଃ କନ୍ୟାପିତା ପୂଣ୍ୟାହବାଚନଂ କୁର୍ଯ୍ୟାତ୍ ।

ବ୍ୟାଖ୍ୟା-କନ୍ୟାପତି ଏହି ମହାବାକ୍ୟ ପଢ଼ି ଶଙ୍ଖସ୍ଥିତ ଜଳ ଓ ସମସ୍ତ ପଦାର୍ଥ ବରର ଦକ୍ଷିଣ ହସ୍ତରେ ଦେଇ ବରପିତାଙ୍କୁ ଲକ୍ଷ୍ୟ କରି ଉପରୋକ୍ତ "ଅବ୍ୟଙ୍ଗେ" ଇତ୍ୟାଦି ବାକ୍ୟ ପଢ଼ିବ । ତତ୍ପରେ ବରପିତା ମଧ୍ୟ କନ୍ୟାପିତାଙ୍କୁ ଲକ୍ଷ୍ୟ କରି ଉପରୋକ୍ତ "ବାଚାଦତ୍ତା" ଆଦି ବାକ୍ୟ ପଢ଼ିବ । ଏହାଉତ୍ତାରୁ କନ୍ୟାପିତା ପୁଣ୍ୟାହବାଚନ କରିବ । ପୁଣ୍ୟାହଂ ୩ ଏବମସ୍ତୁ ବିଜ୍ଞାପୟାମ୍ୟୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଶାନ୍ତିର୍ଭବତୁ ଅମୁକସଗୋତ୍ରେଣ

---

* ଯେଉଁ ବର୍ଷରେବିବାହ କରିବ ସେ ବର୍ଷ କଳିର ଯେତେ ବର୍ଷ ଅତୀତ ହୋଇଥିବ ତାହା ଉଚ୍ଚାରଣ କରିବ ।

ଶ୍ରୀମତୀ ଅମୁକଦେବଶର୍ମଣା ମୟା ଅମୁକସଗୋତ୍ରୟା ମମ ଦୁହିତୁରମୁକାନାମ୍ନ୍ୟାଃ କନ୍ୟାୟା ବାଗ୍‌ଦାନକର୍ମ ଯତ୍କୃତଂ ତତ୍ ସୁକୃତମସ୍ତୁ । ଯନ୍ନ୍ୟୁନଂ ଯଚ୍ଛାତିରିକ୍ତଂ ଯଦନ୍ୟଥାବା କୃତଂ ତତ୍ସର୍ବଂ ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରସାଦାତ୍ ସର୍ବଂ ପରିପୂର୍ଣ୍ଣଚ୍ଛିଦ୍ରମସ୍ତୁ ଏତତ୍‌କର୍ମନିମିତ୍ତଂ ବ୍ରାହ୍ମଣୈରାଶୀର୍ବାଦାରମ୍ଭଃ କ୍ରିୟେତ ଯଦା ତଦାତାରାବାରଗ୍ରହନକ୍ଷତ୍ରାଣାମମୃତଯୋଗୋଽସ୍ତୁ । ସର୍ବେ ଗ୍ରହା ଏକାଦଶସ୍ଥା ଫଳଦା ଭବନ୍ତୁ ଶୁଭଂ ଭବତୁ ।୩। ଇତି ବରକନ୍ୟାୟୋରାଶୀର୍ବାନଂ । ତତୋବରଃସ୍ଥାନାନ୍ତରଂ ଗଚ୍ଛେତ୍ । ବରସ୍ୟ ପୂର୍ବମାଲ୍ୟଂ ଯଜ୍ଞୋପବୀତଂ ଚ କନ୍ୟାୟୈ ଦଦ୍ୟାତ୍ । ତ୍ତତୋ ବରକନ୍ୟାୟୋରଧିବାସନଂ କୁର୍ଯ୍ୟାତ୍ ।

**ବ୍ୟାଖ୍ୟା**–ତତ୍ପରେ କନ୍ୟାପିତା ବରର ଗଳାରେ ଥିବା ବିସର୍ଜିତ ପୁଷ୍ପମାଳା ଓ ଯଜ୍ଞୋପବୀତକୁ ନେଇ କନ୍ୟା ଗଳାରେ ଦେବ । ଏହା ଉତ୍ତାରୁ ବର ବେଦୀରୁ ଅନ୍ୟ ସ୍ଥାନକୁ ଉଠିବ । ତତ୍ପରେ ବରକନ୍ୟାଙ୍କର ଅଧିବାସ କର୍ମ ଆରମ୍ଭ କରିବ । ଇତି ବାଗଦାନକର୍ମ ସମାପ୍ତଂ

## ୪୨୩–କନ୍ୟାର ଅଧିବାସ ।*

ତତଃ କନ୍ୟାପିତା କନ୍ୟାମାଦୟ ବେଦ୍ୟାମୁପବେଶ୍ୟ ବରୁଣପୂଜାପୂର୍ବକ ପୁଣ୍ୟାହବାଚନଂ କୁର୍ଯ୍ୟାତ୍ ।

**ବ୍ୟାଖ୍ୟା**–ତତ୍ପରେ କନ୍ୟାପିତା କନ୍ୟାକୁ ଆଣି ବେଦୀରେ ବସାଇ ବରୁଣପୂଜା କରି (୪୨୯ ନମ୍ବର ବିବାହ କର୍ମାରମ୍ଭ ଦେଖ) ପୁଣ୍ୟାହବାଚନ କରିବ ।

**ପୁଣ୍ୟାହମିତ୍ୟାଦି**–ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଅମୁକଗୋତ୍ରାୟା ମମ ଦୁହିତୁରମୁକନାମ୍ନ୍ୟାଃ କନ୍ୟାୟା ବିବାହନିମିତ୍ତଂ ଗନ୍ଧାଧିବାସବହିଃଶାଲାରୋପଣହରିଦ୍ରାଧିବାସାଭ୍ୟୁଦୟିକଶ୍ରାଦ୍ଧକୌତୁକସୂତ୍ର କର୍ମାରମ୍ଭଃକ୍ରିୟତେଯଦ୍ୟେତ୍ୟାଦି ।

ତତଃ କର୍ପୂରମିଶ୍ରିତଗନ୍ଧଂ ଗୃହୀତ୍ୱା ମନ୍ତ୍ରଂପଠେତ୍ । ମନ୍ତ୍ରୋଯଥା-ଓଁ ତ୍ୱାଂ ଗନ୍ଧର୍ବା ଅଖନଂସ୍ତ୍ୱା ମିନ୍ଦ୍ରସ୍ତ୍ୱାଂ ବୃହସ୍ପତିଃ । ତ୍ୱାମୋଷଧେ ସୋମୋ ରାଜ୍ଞା ବିଦ୍ୱାନ୍ନାକ୍ଷ୍ମାଦମୁଚ୍ୟତେ । ଓଁ ଅଂଶୁନା ତେ ଅଂଶୁଃ ପୃଚ୍ୟତାଂ ପୁରୁଷାପରୁଃ । ଗନ୍ଧସ୍ତେ

---

*–କର୍ପୂରଂ ଚନ୍ଦନଂ ବାସଂ ବ୍ରହ୍ମଣୋ ଦକ୍ଷିଣେନ ତୁ । ଫଳଦ୍ୱୟଯୁତଂ ତେନ ଗନ୍ଧାଧିବାସମାଚରେତ୍ ।



ସୋମମବତୁ ମଦାୟ ରସୋଽଚ୍ୟୁତଃ । ଓଁ କୋଽସି କତମୋଽସି କସ୍ମୈ ତ୍ୱା କାୟତ୍ୱା ସୁଶ୍ଲୋକ ସୁମଙ୍ଗଳ ସତ୍ୟ ରାଜନ୍ । ଓଁ ଶ୍ରୀଶ୍ଚ ତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇଷ୍ଟଂନ୍ନିଷାଣାଂ ମୁମ୍ମଇଷାଣ ସର୍ବଲୋକ ମ୍ମଇଷାଣ । ଓଁ ସର୍ବସୁରଭ୍ୟୁନ୍ମର୍ଦ୍ଦନଂ ଭବତି ପରମୋବା ଏଷଗନ୍ଧୋ ଯତ୍ସର୍ବଂ ସୁରଭ୍ୟୁନ୍ମର୍ଦ୍ଦନଂ ଗନ୍ଧେନୈବେନମେତଦଭିଷିଞ୍ଚତି । ଅର୍ଥ ସୁମଙ୍ଗଳନାମାନମାମନ୍ତ୍ରୟତେ । ପ୍ରିୟଂକର ଶ୍ରେୟସ୍କର ଭୂୟସ୍କରେତି ବ୍ରହ୍ମପୁସୂତଂ କଲ୍ୟାଣଂ ମାନୁଷୀଂ ବାଚଂ ବଦାନୀତି । ଏଭିର୍ମନ୍ତ୍ରୈଶ୍ଚତ୍ୱାରୋବ୍ରାହ୍ମଣାଃକନ୍ୟାଙ୍ଗେ ସୁରଭିଗନ୍ଧଲେପନଂ କୁର୍ଯ୍ୟୁଃ ।

(ଚାରିଜଣ ବ୍ରାହ୍ମଣ ଏହି ମନ୍ତ୍ର ପଢ଼ି କନ୍ୟାର ଶରୀରରେ ଗନ୍ଧ ଲେପନ କରିବେ ।)

ଇତି ଗନ୍ଧାଧିବାସଃ ।

## ବହିଃଶାଲାରୋପଣ ବିଧି ଯର୍ଥା-

ବେଦ୍ୟା ପୂର୍ବପ୍ରଦେଶେ ଭୂମୌ ଗର୍ତ୍ତଂ ଖନିତ୍ୱା ଗୋମୟାମ୍ବୁନା ଉପଲିପ୍ୟ ଗର୍ତ୍ତସ୍ୟ ଦକ୍ଷିଣରେ ଗଣପତିଙ୍କ ପୂଜା କରିବ । ତଦ୍ୟଥା-

ବ୍ୟାଖ୍ୟା-ବେଦୀର ପୂର୍ବଭାଗ ଭୂମିରେ ଗୋଟିଏ ଗର୍ତ୍ତ କରି ସେହି ଗର୍ତ୍ତକୁ ଗୋମୟ ଜଳରେ ଲେପି ତାହାର ଦକ୍ଷିଣରେ ଗଣପତିଙ୍କୁ ପୂଜା କରିବ । ତଦ୍ୟଥା-

ଓଁ ଗଣପତୟେ ନମଃ । ଗଣପତି ମାବାହୟାମି । ଗଣପତେଽତ୍ରାଗଚ୍ଛ । ପୂର୍ବେ ଅନନ୍ତାଦୀଂଶ୍ଚ ପୂଜୟେତ୍ । ତଦ୍ୟଥା-(୧) ଓଁ ଅନନ୍ତାୟ ନମଃ । ଅନନ୍ତମାବାହୟାମି ଅନନ୍ତ ଅତ୍ରାଗଚ୍ଛ । (୨) ଓଁ ବାସୁକୟେ ନମଃ । ବାସୁକୀମାବାହାମି । ବାସୁକେଽତ୍ରାଗଚ୍ଛ । (୩) ଓଁ ତକ୍ଷକାୟନମଃ । ତକ୍ଷକମାବାହୟାମି । ତକ୍ଷକ ଅତ୍ରାଗଚ୍ଛ । (୪) ଓଁ କର୍କୋଟକାୟ ନମଃ । କର୍କୋଟମାବାହୟାମି । କର୍କୋଟକ ଅତ୍ରାଗଚ୍ଛ । (୫) ଓଁ ଶଙ୍ଖାୟ ନମଃ । ଶଙ୍ଖମାବାହୟାମି, ଶଙ୍ଖ ଅତ୍ରାଗଚ୍ଛ । (୬) ଓଁ କୁଳିକାୟ ନମଃ । କୁଳିକାମାବାହୟାମି । କୁଳିକ ଅତ୍ରାଗଚ୍ଛ । (୭) ଓଁ ପଦ୍ମାୟ ନମଃ । ପଦ୍ମମାବାହୟାମି । ପଦ୍ମ ଅତ୍ରାଗଚ୍ଛ । (୮) ଓଁ ମହାପଦ୍ମାୟ ନମଃ । ମହାପଦ୍ମମାବାହୟାମି । ମହା ପଦ୍ମ ଅତ୍ରାଗଚ୍ଛ ଏବଂ ସ୍ୱନାମଚତୁର୍ଥ୍ୟନ୍ତମନ୍ତ୍ରେଣ ଆବାହନାଦି ନୈବେଦ୍ୟାନ୍ତଂ ପୂଜୟିତ୍ୱା ପ୍ରାର୍ଥୟେତ୍ । (ଅଷ୍ଟକୁଳନାଗଙ୍କ ପ୍ରାର୍ଥନା ମନ୍ତ୍ର ୨୩୬ ନମ୍ବର ଦେଖ) ।

ତତୋନୈବେଦ୍ୟଂ କ୍ରମୁକଂ ଚ ଗର୍ତ୍ତେ କ୍ଷିପ୍ତ୍ୱା ବେଣୁଦଣ୍ଡଦ୍ୱୟଂ ଯୂପଂ (୨୩୭-ନମ୍ବର ଦେଖ) ବା ପ୍ରକ୍ଷାଲ୍ୟ ବାମହସ୍ତେ ଧୃତ୍ୱା ଗନ୍ଧପୁଷ୍ପେ ଦତ୍ତ୍ୱା କଳସଂ ସ୍ପୃଷ୍ଟ୍ୱା ପ୍ରୋତୟେନ୍ମନ୍ତ୍ରେଣ । ମନ୍ତ୍ରୋଯଥା-ଓଁ ସ୍ଥିରୋଭବ ବିଡ୍‌ବଙ୍ଗ ଆଶୁର୍ଭବ ବାଜ୍ୟର୍ବନ୍ । ପୃଥୁର୍ଭବସୁଷଦସ୍ତମ୍ୱଗ୍ନେଃ । ଇତି ନିକ୍ଷିପେତ୍ । ପୁରୀଷବାହଣଃ । ଇତି ଉଖ୍ଖାତମୃତ୍ତିକାଭିଃ ସ୍ଥିରୀକରଣଂ କୁର୍ଯ୍ୟାତ୍ । ତନ୍ମୂଳେ ପଞ୍ଚବ୍ରୀହିପ୍ରକ୍ଷେପଣଂ ମନ୍ତ୍ରେଣ । ମନ୍ତ୍ରୋଯଥା-ଓଁ ବ୍ରୀହୟଶ୍ଚ ମେ ଯବାଶ୍ଚମେ ମାଷାଶ୍ଚ ମେ ତିଳାଶ୍ଚ ମେ ମୁଦ୍‌ଗାଶ୍ଚ ମେ ଖଲ୍ୱାଶ୍ଚ ମେ ପ୍ରିୟଙ୍ଗବଶ୍ଚ ମେ ଅଣବଶ୍ଚ ମେ ଶ୍ୟାମାକାଶ୍ଚ ମେ ନୀବାରାଶ୍ଚ ମେ ମସୂରାଶ୍ଚ ମେ ଯଜ୍ଞେନ କଳ୍ପନ୍ତାଂ । ଇତି ବହିଃଶାଲାରୋପଣଂ ।

**ବ୍ୟାଖ୍ୟା**-ସେହି ଗର୍ତ୍ତର ପୂର୍ବଭାଗରେ ଅନନ୍ତାଦି ଅଷ୍ଟକୁଳନାଗଙ୍କର ପୂଜା କରି ନୈବେଦ୍ୟ ଓ ଗୁଆକୁ ଗର୍ତ୍ତରେ ପକାଇବ । ତତ୍ପରେ ବଂଶଦଣ୍ଡଦ୍ୱୟ ବା ଯୂପକୁ ଧୋଇ ବାମହସ୍ତରେ ଧରି ସେଥିରେ ଗନ୍ଧପୁଷ୍ପ ଦେଇ କଳସକୁ ସଂଲଗ୍ନ କରି ପୂର୍ବୋକ୍ତ "ସ୍ଥିରୋଭବ" ମନ୍ତ୍ର ପଢ଼ି ସେହି ଗର୍ତ୍ତରେ ପୋତିବ ଆଉ "ପୁରୀଷବାହଣଃ" ଏହି ମନ୍ତ୍ର ପଢ଼ି ଖୋଳିଥିବା ମାଟିକୁ ଗର୍ତ୍ତରେ ପୂରଣ କରିବ, ଏହାପରେ ଉପରୋକ୍ତ "ବ୍ରୀହୟଶ୍ଚ ମେ" ଏହି ମନ୍ତ୍ର ପଢ଼ି ଯୂପମୂଳରେ ପଞ୍ଚ ବ୍ରୀହି ବୁଣିଦେବ । (ସପ୍ତବ୍ରୀହି ଓ ପଞ୍ଚଶସ୍ୟାଦିର ପ୍ରମାଣ ୨୩୮ ନମ୍ବର ଟିପ୍‌ପଣୀ ଦେଖ) ଇତି ବହିଃଶାଲାରୋପଣଂ ।

**ହରିଦ୍ରାଧିବାସବିଧି ଯଥା**-ବ୍ରାହ୍ମଣାଃ ହରିଦ୍ରାଂ ଗୃହୀତ୍ୱା ଗନ୍ଧାଧିବାସମନ୍ତ୍ରୈଃ ପୂର୍ବବଦଧିବାସୟେୟୁଃ ।

**ମନ୍ତ୍ରୋଯଥା**-ଓଁ ତ୍ୱାଂ ଗନ୍ଧର୍ବାଂ, ଓଁ ଅଂଶୁନା ତେ, ଓଁ କୋଽସି, ଓଁ ଶ୍ରୀଶ୍ଚ ତେ, ଓଁ ସର୍ବସୁରଭ୍ୟୁନ୍ମର୍ଦ୍ଦନଂ । ଅତ୍ୟୁକ୍ତ୍ୱା ହରିଦ୍ରାଂ ମଣିବନ୍ଧେ ବିଲେପୟେତ୍ ।

(ବ୍ରାହ୍ମଣମାନେ ହସ୍ତରେ ହରିଦ୍ରା ଧରି ଗନ୍ଧାଧିବାସ ମନ୍ତ୍ର ପଢ଼ି କନ୍ୟାର ବାହୁରେ ବରର ମଣିବନ୍ଧରେ ଲେପନ କରିବେ ।) ଇତି ହରିଦ୍ରାଧିବାସଃ ।

## ୨୪୨-ବିବାହର ଆଭ୍ୟୁଦୟିକ ଶ୍ରାଦ୍ଧ

ପିଣ୍ଡାତ୍ମକଂ ଭୋଜ୍ୟାତ୍ମକଂ ବା । ପ୍ରଥମତଃ ସଂକଳ୍ପଃ । ଦେଶକାଳବାକ୍ୟାଂ ନନ୍ତରଂ ଅମୁକସଗୋତ୍ରଃଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରାୟା ମମଦୁହିତୁରମୁକନାମ୍ନ୍ୟାଃ କନ୍ୟାୟା ବିବାହେ କର୍ତ୍ତବ୍ୟେ ତଦଙ୍ଗତୟାଭ୍ୟୁଦୟିକେ



ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାକ୍ରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ୱେନ-ବସୁସତ୍ୟାଦିସଂଜ୍ଞକାନାଂ ବିଶ୍ୱେଷାଂ ଦେବାନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରପିତାମହୀନାଂ ଅମୁକଦଦେବୀନାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମତ୍ପିତୃପିତାମହପ୍ରପିତାମହାନାଂଅମୁକଦେବ ୩ ଶର୍ମ୍ମଣାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତା ମହ ପ୍ରମାତାମହ ବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ଗଣପତିପୁରଃସରଗୌର୍ଯ୍ୟଦ୍ୟଷ୍ଟାଦଶ-ମାତୃଗଣପୂଜାବସୋର୍ଦ୍ଧାରାୟୁକ୍ଷ୍ୟମନ୍ତ୍ରଜପପୂର୍ବକଭୋଜ୍ୟଦାନମହଂ କୁର୍ବୀୟ । (ଆଭ୍ୟୁଦୟିକ ଶ୍ରାଦ୍ଧବିଚାର ୮୩-୮୬ ନମ୍ବର ପର୍ଯ୍ୟନ୍ତ ଦେଖ) ।

ତତୋଽକ୍ଷତପୁଞ୍ଜେଷୁ ପୀଠୋପରି ହରିଦ୍ରାଚୂର୍ଣ୍ଣେନ ଗଣପତି ପୁରଃସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣାନ୍ ଲିଖିତ୍ୱା ପୂଜୟେତ୍ । ।

(ତପ୍ରେ ଅରୁଆଚାଉଳ ଉପରେ ପୀଢ଼ା ରଖି ହଳଦୀଚୂନାଦ୍ୱାରା ଅଷ୍ଟାଦଶମାତୃଗଣମଣ୍ଡଳ ଲେଖି ପୂଜା କରିବ) । (ମଣ୍ଡଳ ଓ ପୂଜାବିଧି ୬୮ ଓ ୬୯ ନମ୍ବର ଦେଖ)

ଓଁ ଗଣପତୟେ ନମଃ ଗଣପତିମାବାହୟାମି ଗଣପତେଽତ୍ରାଗଚ୍ଛ । ଏବଂ ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସ୍ୱାହା, ସ୍ୱଧା, ମାତରଃ, ଲୋକମାତରଃ, ଧୃତିଃ, ପୁଷ୍ଟିଃ, କ୍ଷମା, ତୁଷ୍ଟିଃ, ଆତ୍ମଦେବତାଃ, କୁଳଦେବତାଃ । ଏତା ଦେବତା ଆବାହନାଦିତାମ୍ବୁଳାନ୍ତଂପୂଜୟେତ୍ । (ଏହାର ବିଶେଷ ବିଧି ୧୩୧ ନମ୍ବରରେ ଦେଖ) । (ବସୋର୍ଦ୍ଧାରାର ସମୁଦାୟ ବିଧି ୮୭, ୮୮, ୧୩୨, ୧୩୩ ଓ ୧୩୪ ନମ୍ବର ମାନଙ୍କରେ ଦେଖ) ।

ତତଉତ୍ସର୍ଗଃ । ଓଁ ବିଷ୍ଣୁରଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂବିଧବିଶେଷଣ-ବିଶିଷ୍ଟାୟାଂ ପୁଣ୍ୟତିଥୌ କାଶ୍ୟପାଦି ନାନାଗୋତ୍ରେଭ୍ୟୋ ବ୍ରାହ୍ମଣେଭ୍ୟୋ ନାନାବେଦନାନାଶାଖାଶାଖୈକଦେଶାଧ୍ୟାୟିଭ୍ୟୋ ନାନାନାମଶର୍ମଭ୍ୟସ୍ତେଭ୍ୟୋ ବ୍ରାହ୍ମଣେଭ୍ୟୋମନସାର୍ଚ୍ଚିତେଭ୍ୟଃ ଶ୍ରୀବିଷ୍ଣୁସ୍ୱରୂପେଭ୍ୟଃ ଅମୂକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ଅମୁକସଗୋତ୍ରାୟା ମମ ଦୁହିତୁରମୁକନାମ୍ନ୍ୟାଃ କନ୍ୟାୟା ବିବାହେ କର୍ତ୍ତବ୍ୟେ ତଦଙ୍ଗତୟାଭୂଦୟିକେ ଶ୍ରାଦ୍ଧ ପ୍ରାପ୍ତେ ସଂପ୍ରତି ସାକ୍ଷାକ୍ରଣାଶକ୍ତୌ ତତ୍ପ୍ରତ୍ୟୋମ୍ନାୟତ୍ୱେନ * ସତ୍ୟବସୁସଂଜ୍ଞବାଦୀନାଂ ବିଶ୍ୱେଷାଂ ଦେବାନାଂସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରପିତାମହୀନାଂ ଅମୁଦେବୀ ୩ ନାଂ ନାନ୍ଦୀମୂଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୂକସଗୋତ୍ରାଣା

* ଆମ୍ନାତିର୍ତ୍ୱେନ ଇତି କୋଚିତ୍ ।

ଅସ୍ମ ପିତୃପିତାମହପ୍ରପିତାମହାନାଂ ଅମୁକଦେବଂ ୩ ଶର୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତମହବୃଦ୍ଧପ୍ରମାତାମହାନାଂ ଅମୁକଦେବଂ ୩ ଶର୍ମଣା ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ * ଇମାନି ସମ୍ମୁୟାଷ୍ଟପରିମିତାନି ପ୍ରଜାପତିଦୈବତାନି ଭୋଜ୍ୟାନି ତେଭ୍ୟୋବ୍ରାହ୍ମଣେଭ୍ୟୋ-ଦାତୁମହମୁତ୍ସୃଜେ । ଅନ୍ନେ ପ୍ରତିଷ୍ଠିତାଦେବାଃ ସର୍ବମନ୍ନେ ପ୍ରତିଷ୍ଠିତଂ । ତସ୍ମାଦନ୍ନପ୍ରଦାନେନ ପ୍ରୀୟତାଂ ମେ ଜନାର୍ଦ୍ଦନଂ । ଇତି ପଠିତ୍ୱା ପ୍ରାର୍ଥୟେତ୍ । ପ୍ରତିଭୋଜ୍ୟାସ୍ୱର୍ଗଃ ।

## ୪୨୫-କୌତୁକ ସୂତ୍ରବିଧି*

ବେଦ୍ୟାଶ୍ଚତୁର୍ଷୁ କୋଣଷୁ ଚତୁରୋ ବ୍ରାହ୍ମଣାନବସ୍ଥାପ୍ୟ ଆଶୁଃ ଶିଶାନ ଇତ୍ୟାନୁବାକ୍ୟଂ ପଠିତ୍ୱା ଈଶାନାଦିସପ୍ତଗୁଣବେଷ୍ଟନଂ ସୂତ୍ରଂତ୍ରିଧା ବିଭଜ୍ୟ ହରିଦ୍ରା ଲେପନଂ କୃତ୍ୱା ଦୂର୍ବାଃସପ୍ତ ବଦରୀତ୍ରମେକଂ ଗୃହୀତ୍ୱା ଯଥେନ୍ଦ୍ରସ୍ୟେତ୍ୟାଦିମନ୍ତ୍ରେଣ ସପ୍ତ ଗ୍ରନ୍ଥୀନ୍ କୁର୍ଯ୍ୟାତ୍ ।

ବ୍ୟାଖ୍ୟା-ବେଦୀ ଚାରିକୋଣରେ ଚାରିଜଣ ବ୍ରାହ୍ମଣ ଠିଆହୋଇ ନିମ୍ନଲିଖିତ "ଆଶୁଃଶିଶାନଃ ଇତ୍ୟାଦି ଷୋଳକାଣ୍ଡି" ମନ୍ତ୍ର ପଢ଼ି ଈଶାନକୋଣକୁ ଆରମ୍ଭି ଦକ୍ଷିଣାବର୍ତ୍ତରେ ସାତଥର ବେଷ୍ଟନ କରିଥିବା ସୂତାକୁ ତିନିଭାଗ କରି ତାହାକୁ ହଳଦୀ କିମ୍ବା କୁଙ୍କୁମଦ୍ୱାରା ରଙ୍ଗେଇ ଦେଇ ଯଥେନ୍ଦ୍ରସେତ୍ୟୋଦି ମନ୍ତ୍ର ପଢ଼ି ସାତଗୋଟି ଗଣ୍ଠି ପକାଇବ । ପ୍ରତ୍ୟେକ ଗଣ୍ଠିରେ ସାତ ସାତ ଗୋଟି ଦୂବ ଓ ଏକ ଏକ ଗୋଟି ବରକୋଳି ପତ୍ର ଦେବ ।

---

*ଇଦଂ ସମ୍ମୁୟଂ ଏକ ପରିମିତଂ ପ୍ରଜାପତିଦୈବମିତି ପାଠାନ୍ତରଂ

*୪୨୫-(୧ଟି)-କୌତୁକ ସୂତ୍ରର ପ୍ରମାଣ-

ବେଦ୍ୟାଶ୍ଚତୁର୍ଷୁ କୋଣେଷୁ ଚତୁରଃ ସ୍ଥାପୟେଦ୍ଦ୍ୱିଜାନ୍ ।
ଆଶୁଃ ଶିଶାନ ଇତ୍ୟାଦ୍ୟୈ ରୀଶାନାଦିକ୍ରମେଣ ତୁ ॥
କାର୍ପାସସୂତ୍ରମଚ୍ଛିଦ୍ରଂ ବେଷ୍ଟୟେତ୍ ସପ୍ତଭିର୍ଗୁଣୈଃ ।
ତ୍ରିଧା ବିଭଜ୍ୟ ତତ୍ ସୂତ୍ରଂ ଲେପୟେଚ୍ଚ ହରିଦ୍ରୟା ॥
ଅଥବା-ସପ୍ତପଞ୍ଚତ୍ରିସୂତ୍ରାଣାଂ ତ୍ରିଗୁଣଂ କୁଙ୍କୁମାନ୍ୱିତଂ ।
ବଦର୍ଯ୍ୟେକଂ ସପ୍ତ ଦୂର୍ବାଂ ମଣିବନ୍ଧେତୁ ଧାରୟେତ୍ ।
ସପ୍ତପର୍ଣ୍ଣା ତ୍ରିପର୍ଣ୍ଣା ଚ ବଦରୀ ଏକ ପର୍ଣ୍ଣିକା ।
ମଧ୍ୟେ ଗ୍ରନ୍ଥିଂ ତତଃ କୁର୍ଯ୍ୟାଦ୍ଧସ୍ତେ ସୂତ୍ରସ୍ୟା ବନ୍ଧନଂ ।
(ଗୃହ୍ୟସୂତ୍ରକାରିକାୟାଂ)

 

## ୪୨୬-ଆଶୁଶିଶାନ ମନ୍ତ

ଓଁ ଆଶୁଃଶିଶୋନୋ ବୃଷଭୋନଭୀମେ ଘନାଘନଃ କ୍ଷୋଭଣଶ୍ଚର୍ଷଣୀନାଂ । ସଂକ୍ରନ୍ଦନୋ ନିମିଷ ଏକବୀରଃ ଶତଂ ସେନା ଅଜୟସ୍ତାକିମିନ୍ଦ୍ରଃ ।୧ । ସଂକ୍ରନ୍ଦନେନା ନିମିଷେଣ ଜିଷ୍ଣୁନାୟୁକ୍ତାରେଣ ଦୁଷ୍ୟବନେନ ଧୃଷ୍ଣୁନା । ତଦିନ୍ଦ୍ରେଣ ଜୟତ ତତ୍ସହଦ୍ଧ୍ୱଂ ଯୁଧୋନର ଇକ୍ଷୁହସ୍ତେନ ବୃଷ୍ଣା ।୨ । ସଇକ୍ଷୁହସ୍ତୈଃ ସନିଷଙ୍ଗଭି ର୍ବଶୀଷପୁଂସ୍ରଷ୍ଟା ସ୍ୟୁଧଇନ୍ଦ୍ରୋଗଣେନ । ସଂସୃଷ୍ଟଜିତ୍ସୋମପାବାହୁ ଶର୍ଦ୍ଧ୍ୟୁଗ୍ରଧନ୍ୱା ପ୍ରତିହିତାଭିରସ୍ତା ।୩ । ବୃହସ୍ପତେ ପରିଦୀୟାରଥେନ ରକ୍ଷୋହାମିତ୍ରଂ । ଅପବାଧମାନଃ । ପ୍ରଭଞ୍ଜସେନାଃ ପ୍ରମୃଣୋୟୁଧା ଜୟନ୍ନସ୍ମାକମେଧ୍ୟବିତାରଥାନାଂ ।୪ । ବଲିବିଜ୍ଞାୟସ୍ଥବିରଃ ପ୍ରବୀରଃ ସହସ୍ୱାନ୍ ବାଜୀ ସହମାନଉଗ୍ରଃ । ଅଭିବୀରୋ ଅଭିସତ୍ୱା ସହୋଜାଜୈତ୍ର ମିନ୍ଦ୍ରରଥମାତିଷ୍ଠଗୋବିତ୍ ।୫ । ଗୋତ୍ରଭିଦଂ ଗୋବିନ୍ଦଂ ବଜ୍ରବାହୁଞ୍ଜୟନ୍ତ ମଜ୍ମପ୍ରମୃଣଂ ତମୋଜସା । ଇମଂ ସଜାତା ଅନୁବୀରୟଧ୍ୱମିନ୍ଦ୍ରଂ ସଖାୟୋ ଅନୁସଂରଭଧ୍ୱଂ ।୬ । ଅଭିଗୋତ୍ରାଣି ସହସା ଗାହମାନୋ ଦୟୋବୀରଃ ଶତମନ୍ୟୁରିନ୍ଦ୍ରଃ । ଦୁଷ୍ୟବନଃ ପୃତନାଷାଡ଼୍ୟୁଧୋଽସ୍ମାକଂ ସେନା ଅବତୁ ପ୍ରଯୁତ୍ସୁ ।୭ । ଇନ୍ଦ୍ର ଆସାନ୍ନେତା ବୃହସ୍ପତିଦକ୍ଷିଣାୟଜ୍ଞଃ ପୁରଏତୁ ସୋମଃ । ଦେବସେନାନାମଭିଭଞ୍ଜତୀନାଞ୍ଜୟନ୍ତୀନାଂ ମରୁତୋୟନ୍ତ୍ୱାଗ୍ରଂ ।୮ । ଇନ୍ଦ୍ରସ୍ୟ ବୃଷ୍ଣୋ ବରୁଣସ୍ୟ ରାଜ୍ଞ ଆଦିତ୍ୟାନାଂ ମରୁତାଙ୍ଗ ଶର୍ଦ୍ଧଉଗ୍ରଂ । ମହାମନସାଂ ଭୁବନଚ୍ୟବାନାଂ ଘୋଷୋ ଦେବାନାଂ ଜୟତା ମୁଦସ୍ଥାତ୍ ।୯ । ଉଦ୍ଧର୍ଷୟ ମଘବନ୍ନାୟୁଧା ନ୍ୟୁତ୍ସତ୍ୱନା ମାମକାନା ମନାଂସି ।

---

୪୨୫ (୨ଟି)-କୌତୁକସୂତ୍ରମାନଙ୍କର ଅଧିଷ୍ଠାତୃ ଦେବତା-

ଏକସୂତ୍ରେ ବସେଦ୍‌ବ୍ରହ୍ମା ଦ୍ୱିସୂତ୍ରେ ବିଷ୍ଣୁରାବିଶେତ୍ ।
ମହାରୁଦ୍ରସ୍ତ୍ରିସୂତ୍ରେ ଚ ଚତୁଃସୂତ୍ରେ ଚ ବାଲ୍ମୀକିଃ ୀ।
ବାର୍ହସ୍ପତ୍ୟଃ ପଞ୍ଚସୂତ୍ରେ ଷଟ୍‌ସୂତ୍ରେ ନାରଦୋ ବସେତ୍ ।
ଯାଜ୍ଞବଲ୍‌କ୍ୟଃ ସପ୍ତସୂତ୍ରେ ଜାନୀୟାଦ୍ ବ୍ରାହ୍ମଣୋତ୍ତମଃ ।

(ଗୃହ୍ୟସୂତ୍ରକାରିକାୟାଂ)

୪୨୫ (୩ଟି)-କୌତୁକସୂତ୍ର ମାନଙ୍କର ଅଧିଷ୍ଠାତୃ ଦେବତା-

ସନକଃ ପ୍ରଥମୋ ଗ୍ରନ୍ଥି ଦ୍ୱିତୀୟଶ୍ଚ ସନନ୍ଦକଃ ।
ସନାତନ ସ୍ତୃତୀୟସ୍ତୁ ଚତୁର୍ଥଃ କପିଳୋମୁନିଃ ॥
ପଞ୍ଚମଶ୍ଚାସୁରିର୍ଜ୍ଞେ ବ ଷଷ୍ଠୋବୋଢ଼ୁଃ ପ୍ରକୀର୍ତ୍ତିତଃ ।
ପଞ୍ଚଶିଖଃସପ୍ତମସ୍ତୁ ଗ୍ରନ୍ଥି ରିତ୍ରଭିଧୀୟତେ । (ଗୃହ୍ୟସୂତ୍ରକାରିକାୟାଂ)

ଉଦ୍‌ବୃତ୍ରନ୍‌ବାଜିନାଂ ବାଜିନା ନ୍ୟୁଦ୍ରଥାନାଂ ଜୟତାଁଜନ୍ତୁ ଘୋଷାଃ ।୧୦ । ଅସ୍ମାକମିନ୍ଦ୍ରଃ ସମୃତେଷୁ ଧ୍ୱଜେଷ୍ୱସ୍ମାକଂ ଯାଇଷବସ୍ତା ଜୟନ୍ତୁ । ଅସ୍ମାକଂ ବୀରା ଉତ୍ତରେ ଭବନ୍ତ୍ୱସ୍ମାଁ । ଉଦେବା ଅବତାହବେଷୁ ।୧୧ । ଅମୀଷାଂ ଚିତ୍ତଂ ପ୍ରତିଲୋଭୟନ୍ତୀ ଗୃହାଣାଙ୍ଗାନ୍ୟପ୍ୱେ ପରେହି । ଅଭିପ୍ରେହି ନିର୍ଦ୍ଦହହୃତ୍ସୁ ଶୋକୈରନ୍ଧେନାମିତ୍ରାସ୍ତମସା ସଚନ୍ତାଂ ।୧୨ । ଅବସୃଷ୍ଟା ପରାପତ ଶରବ୍ୟେ ବ୍ରହ୍ମସଂଶିତେ । ଗଚ୍ଛାମିତ୍ରାନ୍ ପ୍ରପଦ୍ୟସ୍ୱ ମାମୀଷାଂ କଂଚନୋଚ୍ଛିଷଃ ।୧୩ । ପ୍ରେତାଜୟତା ନରଇନ୍ଦ୍ରୋ ବଃ ଶର୍ମୟଚ୍ଛତୁ । ଉଗ୍ରାବଃ ସନ୍ତୁ ବାହବୋନାଧୃଷ୍ୟା ଯଥାସଥ ।୧୪ । ଅସୌୟାସେନା ମରୁତଃ ପରେଷା ମଭ୍ୟୈତି ନ ଓଜସା ସ୍ପର୍ଦ୍ଧମାନା । ତାଂ ଗୂହତ ତମସାପବ୍ରତେନ ଯଥାମୀ ଅନ୍ୟୋ ଅନ୍ୟନ୍ନ ଜାନନ ।୧୫ । ଯତ୍ର ବାଣାଃ ସଂପତନ୍ତି କୁମାର ବିଶିଖାଇବ । ତନ୍ନଇନ୍ଦ୍ରୋ ବୃହସ୍ପତି ରଦିତିଃ ଶର୍ମ ଯଚ୍ଛତୁ ବିଶ୍ୱାହା ଶର୍ମ ଯଚ୍ଛତୁ ।୧୬ । ମର୍ମାଣି ତେ ବର୍ମଣାଚ୍ଛଦୟାମି ସୋମସ୍ତ୍ୱା ରାଜା ମୃତେନାନୁବସ୍ତାଂ । ଉରୋର୍ବରୀୟୋ ବରୁଣସ୍ତେ କୃଣୋତୁ ଜୟନ୍ତନ୍ତ୍ୱାନୁଦେବାମଦନ୍ତୁ ।୧୭ । ଉଦେନଂ ।

## ୪୨୭-କୌତୁକସୂତ୍ର ବନ୍ଧନମନ୍ତ୍ର *

ଓଁ ଯଥେନ୍ଦ୍ରସ୍ୟେନ୍ଦ୍ରାଣୀ । ଯଥା ରାମ ଦେବସ୍ୟ ସୀତା । ଯଥା ରାବଣସ୍ୟ ମନ୍ଦୋଦରୀ । ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ । ଯଥା ଶାନ୍ତନୋର୍ଗଙ୍ଗା । ଯଥା ନଳସ୍ୟ ଦମୟନ୍ତୀ । ଯଥା ସୌଦାସସ୍ୟ ମଦୟନ୍ତୀ । ଯଥା ପୁରୁରବସ ଉର୍ବଶୀ । ଯଥା କନକଚନ୍ଦ୍ରସ୍ୟ ଗୌରୀ । ଯଥା ଚନ୍ଦ୍ରସ୍ୟ ରୋହିଣୀ । ଯଥା ଆଦିତ୍ୟସ୍ୟ ଛାୟା । ଯଥା ବଶିଷ୍ଠସ୍ୟାରୁନ୍ଧତୀ । ଯଥା ସୁଗ୍ରୀବସ୍ୟ ତାରା । ଯଥା ଗୌତମସ୍ୟ୍‌ ଅହଲ୍ୟା । ଯଥା ଅର୍ଜ୍ଜୁନସ୍ୟ ସୁଭଦ୍ରା । ଯଥା ଯୋଗେଶ୍ୱରସ୍ୟ ମୈତ୍ରେୟୀ । ଯଥା ବ୍ରହ୍ମଣଃ

---

*୪୨୭ (୧ଟି) କୌତକସୂତ୍ରର ବନ୍ଧନକ୍ରମ-

ଇନ୍ଦ୍ରୋରାମୋ ରାବଣଶ୍ଚ ଧୃତରାଷ୍ଟ୍ରୟ ଶାନ୍ତନୁଃ ।
ନଳୋରାଜା ତଥା ଜ୍ଞେୟଃ ସୌଦାସଶ୍ଚ ପୁରୁରବାଃ ।
ଚନ୍ଦ୍ରଃ କନକପୂର୍ବଶ୍ଚ ଚନ୍ଦ୍ର ଆଦିତ୍ୟ ଏବ ଚ ।
ବଶିଷ୍ଠୋ ଗୌତମଃ ପାର୍ଥସ୍ତତୋ ଯୋଗେଶ୍ୱରସ୍ତଥା ।
ବ୍ରହ୍ମା ବିଷ୍ଣୁଃ ଶିବଶ୍ଚୈଷାଂ ଭାର୍ଯ୍ୟାଭିର୍ମନ୍ତ୍ରମୁଦ୍ଧରେତ୍ ।
(ଦିବ୍ୟସିଂହବାଜପେୟି ପଦ୍ଧତୌ)



ସାବିତ୍ରୀ ଯଥା ବିଷ୍ଣୋ ରୁକ୍ମିଣୀ । ଯଥା ଉମା ପଶୁପତେରେବଂ ତୁଭ୍ୟମୟଂ । ବରପକ୍ଷେ ତୁଭ୍ୟମିୟଂ । ଇତି କନ୍ୟାୟା ଦକ୍ଷିଣହସ୍ତେ କୌତୂକସୂତ୍ରଂ ବଧ୍ନୀୟାତ୍*

ବ୍ୟାଖ୍ୟା-ଏହି ମନ୍ତ୍ର ପଢ଼ି କୌତୁକସୂତ୍ର କନ୍ୟାର ଦକ୍ଷିଣହସ୍ତରେ ବାନ୍ଧିବ । ଆଉ ମନ୍ତ୍ର ଉଚାରଣବେଳେ କନ୍ୟାପକ୍ଷରେ "ତୁଭ୍ୟମୟଂ" କହିବ ଓ ବର ପକ୍ଷରେ ତୁଭ୍ୟମିୟଂ କହିବ ।

## ୪୨୮-ବରର ଅଧିବାସାଦିକର୍ମ

ତତୋବରସ୍ୟାପ୍ୟେବଂ ଗନ୍ଧାଧିବାସବହିଃଶାଲାରୋପଣହରିଦ୍ରାଧିବାସବୃଦ୍ଧିଶ୍ରାଦ୍ଧପୂର୍ବକଂ କୌତୁକସୂତ୍ରଂ କୃତ୍ୱା ଯଥେନ୍ଦ୍ର ସ୍ୟୋତ୍ୟାତୂଭ୍ୟମିୟମିତ୍ୟୁକ୍ତ୍ୱା ମଣିବନ୍ଧେ କୌତୁକସୂତ୍ରଂ ବଧ୍ନୀୟାତ୍ ।

ବ୍ୟାଖ୍ୟା-ତତ୍ପରେ ବରର ପିତା, ପୂର୍ବୋକ୍ତ କନ୍ୟାର ଅଧିବାସ ବିଧିପରି ପୁତ୍ରର ଗନ୍ଧାଧିବାସ, ବହିଃଶାଲାରୋପଣ, ହରିଦ୍ରାଧିବାସ, ଆଭ୍ୟୁଦୟିକ ଓ କୌତୁକସୂତ୍ର କର୍ମ କରିବ । ତଦୁତ୍ତାରୁ ଉପରୋକ୍ତ ଯଥେନ୍ଦ୍ର ସ୍ୟେତ୍ୟାଦି ମନ୍ତ୍ର ପଢ଼ି ବରର ମଣିବନ୍ଧରେ, କୌତୁକସୂତ୍ର ବାନ୍ଧିବ । ତଦ୍ୟଥା-ବରୁଣପୂଜା ପୂର୍ବକ ପୁଣ୍ୟାହବାଚନଂ-ପୁଣ୍ୟାହମିତ୍ୟାଦି-ମମପୁତ୍ରସ୍ୟ ଅମୁକଶର୍ମଣୋବିବାହନିମିତ୍ତଂ ଗନ୍ଧାଧିବାସ ବହିଃଶାଲାରୋପଣହରିଦ୍ରାଧିବାସ୍ୟଭ୍ୟୁଦୟିକଶ୍ରାଦ୍ଧକୌତୁକସୂତ୍ରକର୍ମାରମ୍ଭ କ୍ରିୟତେ ଯଦେତ୍ୟାଦି । ତତଃ କର୍ପୂର ମିଶ୍ରତଗନ୍ଧଂ ଗୃହୀତ୍ୱା "ତ୍ୱାଂ ଗନ୍ଧର୍ବା" "ଅଂଶୁନା ତେ" "କୋଽସିକତମୋଽସି" "ଶ୍ରୀଶ୍ଚତେ" "ସର୍ବସୁରଭ୍ୟୁନ୍ମର୍ଦନଂ" "ସୁମଙ୍ଗଳନାମାନଂ" ଏଭିର୍ମନ୍ତ୍ରୈଶ୍ଚତ୍ୱାରୋବ୍ରାହ୍ମଣା ବରସ୍ୟ ଅଙ୍ଗେ ଲେପନଂ କୁର୍ଯ୍ୟୁଃ । ପୂର୍ବବଦ୍ ବହିଃଶାଲାରୋପଣଂ । ହରିଦ୍ରାଧିବାସୋଗନ୍ଧାଧିବାସବତ୍ । ତତ୍‌ଆଭ୍ୟୁଦୟିକଶ୍ରାଦ୍ଧଂ । ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରସ୍ୟ ମମପୁତ୍ରସ୍ୟାମୁକଦେବଶର୍ମଣୋ ବିବାହେ କର୍ତ୍ତବ୍ୟେ ତଦଙ୍ଗତୟାଭ୍ୟୁୟିକେ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟଦ୍ରେନଅମୁକସଗୋତ୍ରାଣାଂ ଅସ୍ମନ୍ମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀ ନାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମତ୍ପିତୃପିତାମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖାନାଂ ଅମୁକସଗୋତ୍ରଣାଂ ଅସ୍ମନ୍ମାତାମହାପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବ ୩

---

୪୨୭ (୨ଟି) କନ୍ୟାର ଦକ୍ଷିଣହସ୍ତରେ କୌତୁକସୂତ୍ର ବାନ୍ଧିବାର ପ୍ରମାଣ-
ସ୍ତ୍ରୀଣାଂ ବାମକରେଚୈବ ବ୍ରତେ ବୈ ସୂତ୍ରଧାରଣଂ ।
ବିବାହେ ଚୈବ ନାରୀଣାଂ ବଧ୍ନୀୟାଦ୍ଦକ୍ଷିଣେ କରେ ॥
(ଦିବ୍ୟସିଂହବାଜପେୟିପଦ୍ଧତୌ)

ଶର୍ମଣାଂ ନାନ୍ଦୀମୁଖାନାଂ ଗଣପତି ପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣପୂଜା-ବସୋର୍ଦ୍ଧାରାୟୁଷ୍ୟମନ୍ତ୍ର ଜପପୂର୍ବକଭୋଜ୍ୟଦାନମହଂ କରିଷ୍ୟେ । ଇତି ସଂକଳ୍ପ୍ୟ ଅଷ୍ଟାଦଶମାତୃଗଣାନ ପୂର୍ବବତ୍ ପୂଜୟେତ୍ । ବସୋର୍ଦ୍ଧାରାଂ ଚ ଦଦ୍ୟାତ୍ । ଭୋଜ୍ୟୋତ୍ସର୍ଗଃବିଷ୍ଣୁର୍ନମ ଇତ୍ୟାରଭ୍ୟ ପୁଣ୍ୟତିଥାବିତ୍ୟନ୍ତଂ ପଠିତ୍ୱା କାଶ୍ୟପାଦିନାନାଗୋତ୍ରେଭ୍ୟୋ ବ୍ରାହ୍ମଣେଭ୍ୟୋନାନାବେଦନାନାଶାଖାଶାଖୈକଦେଶା-ଧ୍ୟାୟିଭ୍ୟୋନାନାନାମଶର୍ମଭ୍ୟସ୍ତେଭ୍ୟୋମନସାର୍ଚ୍ଚିତେଭ୍ୟଃ ଶ୍ରୀବିଷ୍ଣୁ ସ୍ୱରୂପେଭ୍ୟଃ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରସ୍ୟ ମମ ପୁତ୍ରସ୍ୟ ଅମୁକଦେବଶର୍ମଣୋବିବାହେ କର୍ତ୍ତବ୍ୟେ ତଦଙ୍ଗତୟାଭ୍ୟୁଦୟିକେଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନା ୟଦ୍ୱେନ ବିଶ୍ୱେଷାଂ ଦେବନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତ୍ ପିତାମହୀପ୍ରମିତାମହୀନାଂ ଅମୁକଦେବୀ ୩ ନଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାଂ ଅସ୍ମପ୍ତିତୃପିତାମହପ୍ରପିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସ ଗୋତ୍ରାଣାଂ ଅସ୍ମମାତାମହ ପ୍ରମାତାମହ ବୃଦ୍ଧ ପ୍ରମାତାମହାନାଂ ଅମୁକଦେବଂ ଶର୍ମଣାଂ ନାନ୍ଦୀମୁଖାନାଂ ସ୍ଥାନେ ଭୋଜନଦ୍ୱୟଂ ଇମାନି ସମ୍ଭୁୟାଷ୍ଟପରିମିତାନି ପ୍ରଜାପତିଦୈବତାନି ତେଭ୍ୟୋବ୍ରହ୍ମଣୋଭ୍ୟୋଦାତୁମହମୁସ୍ତ୍ରଜେ । ଇତି ଭୋଜ୍ୟୋତ୍ସର୍ଗଃ । କୌତୁକସୂତ୍ରଂ ପୂର୍ବବତ୍ । ତତଃପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ମମ ପୁତ୍ରସ୍ୟାମୁକଦେବଶର୍ମଣୋବିବାହନିମିତ୍ତଂ ଗନ୍ଧାଧିବାସାଦି କର୍ମ ଯତ୍କୃତଂ ତସ୍ମୈକୃତମସ୍ତିତ୍ୟାଦି । ଆଶୀର୍ବାଦନଂ ।

## ୪୨୯-ବରର କନ୍ୟାବାସପରିଧାନ ବିଧି

ତତଃ କନ୍ୟାୟାବସ୍ତ୍ରଂ ମନ୍ତ୍ରୟିତ୍ୱା ପରିଦଧାତି ବରଃ । ମନ୍ତ୍ରୋଯଥା- ଓଁ ଜରାଂ ଗଚ୍ଛ ପରିଧସ୍ୱ ବାସୋଭବାକୃଷ୍ଟୀନାମଭିଶସ୍ତି ପାବା । ଶତଂ ଚ ଜୀବଶରଦଃ ସୁବର୍ଚ୍ଚାରୟିଂ ଚ ପୁତ୍ରାନନୁସଂବ୍ୟୟ ସ୍ୱାୟୁଷ୍ମତୀଦଂ ପରିଧାସ୍ୱ ବାସଃ । ଇତି ମନ୍ତ୍ରଃ ପରିଧାପନୀୟସ୍ୟ ।

ବ୍ୟାଖ୍ୟା-ତତ୍ପରେ କନ୍ୟାବାସକୁ ବସ୍ତ୍ରାଭିମନ୍ତ୍ରଣ ମନ୍ତ୍ରଦ୍ୱାରା ଅଭିମନ୍ତ୍ରଣ କରି ଉପରଲିଖିତ ମନ୍ତ୍ର ପଢ଼ି ବର ପରିଧାନ କରିବ । ଏହା ଏଦେଶୀୟ ବ୍ରାହ୍ମଣଙ୍କର ବ୍ୟବହାର ଅଛି, କିନ୍ତୁ ଗୃହ୍ୟସୂତ୍ରର ଭିନ୍ନ ମତ, ଟିପ୍ପଣୀ ଦେଖ ।

---

*୪୨୯ କନ୍ୟାବାସ ପିନ୍ଧିବା ବିଚାର-

ଅଥୈନାଂ ବାସଃ ପରି ଧାପୟତି ଜରାଂଗଚ୍ଛ.......ଅଥୋତ୍ତରୀୟଂ ଯା କୃନ୍ତନ୍ନ......ଇତି ପାରସ୍କରଃ ।



ଉତ୍ତରୀୟ ବସ୍ତ୍ରଗ୍ରହଣମନ୍ତ୍ରୋଯଥା-ଓଁ ଯା ଅକୃନ୍ତନ୍ନବୟଂ ଯା ଅତନ୍ୱତ । ଯାଶ୍ଚଦେବୀସ୍ତନ୍ତୂନଭିତୋ ତତନ୍ଥ । ତାସ୍ତ୍ୱା ଦେବୀର୍ଜରସେ ସଂବ୍ୟୟସ୍ୱାୟୁଷ୍ମତୀଦଂ ପରିଧସ୍ୱ ବାସଃ । ଇତ୍ୟୁତ୍ତରୀୟଗ୍ରହଣଂ ।

ବ୍ୟାଖ୍ୟା-ବର ଏହି ଉପଲିଖିତ ମନ୍ତ୍ର ପଢ଼ି ଉତ୍ତରୀ ଗ୍ରହଣ କରିବ ।

## ୪୩୦-ମୁକୁଟ ଗ୍ରହଣ ମନ୍ତ୍ର

ତତୋ ମୁକୁଟ ମନ୍ତ୍ରେଣ । ତଦ୍ୟଥା-

ଓଁ ଯୁବାସୁବାସଃ ପରିବୀତଆଗତ୍ ସଉଶ୍ରେୟାନ୍ ଭବତି ଜାୟମାନଃ ।
ତଂ ଧୀରାସଃ କବୟ ଉନ୍ନୟନ୍ତି ସ୍ୱାଧ୍ୟୋମନସା ଦେବୟନ୍ତଃ ॥

## ସିନ୍ଦୂରଗ୍ରହଣ ମନ୍ତ୍ର

ତତଃ ସିନ୍ଦୂରଗ୍ରହଣଂ ମନ୍ତ୍ରେଣ । ତଦ୍ୟଥା-

ଓଁ ସିନ୍ଧୋରିବ ପ୍ରାଧ୍ୱନେଶୁ ଘନାସୋ ବାତପ୍ରମିୟଃ ପତୟନ୍ତି ୟହ୍ୱାଃ ।
ଘୃତସ୍ୟ ଧାରା ଅରୁଷୋନବାଜୀ କାଷ୍ଠାଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ ॥

## କଜ୍ଜଳଗ୍ରହଣ ମନ୍ତ୍ର*

ତତଃ କଜ୍ଜଳଗ୍ରହଣ ମନ୍ତ୍ରେଣ ତଦ୍ୟଥା-

ଓଁ ମହୀନାଂ ପୟୋଽସି ବର୍ଚ୍ଚୋଦାଅସି ବର୍ଚ୍ଚୋମେ ଦେହି ।
ବୃତ୍ରସ୍ୟ କନୀନକାସୀ ଚକ୍ଷୁର୍ଦାଅସି ଚକ୍ଷୁର୍ମେ ଦେହି । ଉଭୟୋରାଶୀର୍ଦାନଂ ।
(ତତ୍ପରେ ବର ଓ କନ୍ୟା ଉଭୟଙ୍କୁ ଆଶୀର୍ବାଦ କରିବ) ।

---

ଅଥାଗ୍ନିସ୍ଥାପନାନନ୍ତରଂ ଏନାଂ କୁମାରୀଂ ବାସଃ ଆହତଂ ସଦଶଂ ବସ୍ତ୍ରଂ ପରିଧାପୟତି ପରିହିତଂ କାରୟତି ବରଃ । ଜରାଂଗଛେତି ମନ୍ତ୍ରଂ ପଠିତ୍ୱା କୁମାରୀ ତ ସ୍ୱୟଂ ପରିଧତ୍ତେ । ବସ୍ତ୍ର ପରିଧାନାନନ୍ତରଂ ଉତ୍ତରୀୟଂ ବାସଃ ପରିଧାପୟତି ବରଃ । ଯା ଅକୃନ୍ତନ୍ନିତି ମନ୍ତ୍ରମୁକ୍ତ୍ୱା ।

ଅତ୍ରପରିଧାପୟତୀତି ଣିଜନ୍ତସ୍ୟ କାରିତାର୍ଥତ୍ୱାତ୍ ପରିଧତ୍ସ୍ୱ ବାସ ଇତି ମନ୍ତ୍ରସ୍ୟାପି ତଦର୍ଥତ୍ୱାତ୍ ପରିଧାପୟିତା ଅନ୍ୟ ଇତ୍ୟବଗମ୍ୟତେ । ସ କିଂ ବରଃ ଅଧ୍ୱର୍ୟୁର୍ବା ଇତି ସଂଶୟଃ । ତନ୍ନାଧ୍ୱର୍ୟୁଃ କର୍ମସୁ ବେଦଯୋଦିତି ପରିଭାଷାବଳାତ୍ ଅଧ୍ୱର୍ୟୁଃ ପରିଧାପୟିତା ଇତି ଚେତ୍ ତନ୍ନ ସ୍ମାର୍ତ୍ତେଷୁ କର୍ମସୁ ଅଧ୍ୱର୍ୟୋଃ କର୍ତ୍ତୃତ୍ୱ ଯୋଗଭାବାଦିତି ହରିହରଃ ।

ବ୍ୟାଖ୍ୟା-ବର "ଜରାଂଗଛ" ମନ୍ତ୍ର ପଢ଼ି କନ୍ୟାକୁ ଲୁଗା ପିନ୍ଧିବାକୁ ଦେବ, କନ୍ୟା ନିଜେ ପିନ୍ଧିବ, ପୁଣି, "ଯାଅକୃନ୍ତଂ" ମନ୍ତ୍ର ପଢ଼ି ଉତ୍ତରୀୟ ବସ୍ତ୍ର କନ୍ୟାକୁ ଦେବ । କିନ୍ତୁ ପୁରୋହିତ ପିନ୍ଧାଇବ ନାହିଁ । ଏ ସୂତ୍ରକାର ଓ ଭାଷ୍ୟକାରମାନଙ୍କର ଅଭିପ୍ରାୟ ।

*ପ୍ରଥମେ ବାମଚକ୍ଷୁରେ କଜ୍ଜଳ ଘେନିବାର ପ୍ରମାଣ-
ବୃତ୍ର ସ୍ୟେତ୍ୟକ୍ଷିଣୀ ଅଙ୍କ୍ତ୍ରେଽଭ୍ୟଞ୍ଜନେ ନାଭିନାସିକଂ । ସବ୍ୟଂ ପ୍ରଥମମିତ୍ୟେବ ଶ୍ରୂୟତେ ବହ୍ୱୃଚସ୍ମୃତୌ ।

## ୪୩୧-ଲବଣ ଚାମରୀ କର୍ମ

ତତଃ କନିଷ୍ଠବେଦିକାସମୀପେ ବରସ୍ତିଷ୍ଠେତ୍ । ତତଃ କନ୍ୟା ହସ୍ତେନ ଲବଣଂ ଗୃହୀତ୍ୱା ବରସ୍ୟୋପରି କ୍ଷିପେଦନେନ ମନ୍ତ୍ରେଣ । ତଦ୍ୟଥା-ଓଁ ଦୁର୍ଗେ ଦେବୀ ଜଗଦ୍ଧାତ୍ରି ପତିଂ ମେ ବଶମାନୟ । ଶତବର୍ଷଂ ନିଯୋଜ୍ୟାୟୁଃ ସୁଗଭାଂ ମାଂ ସଦା କୁରୁ ।

ବ୍ୟାଖ୍ୟା-ତପ୍ରେ ବର ବ୍ରାହ୍ମଣମାନଙ୍କୁ ନମସ୍କାର କରି ଓ ତାହାଙ୍କଠାରୁ ଆର୍ଶୀବାଦ ଗ୍ରହଣ କରି ଅଧିବାସ ଗୃହରୁଯାଇ କନିଷ୍ଠବେଦୀ ସମୀପରେ ଠିଆହୋଇ ଓ କନ୍ୟା ହସ୍ତରେ ଲବଣ ଘେନି ଶୁଭାଭିଳାଷିଣୀ ହୋଇ ଉପରଲିଖିତ ମନ୍ତ୍ର ପଢ଼ି ଚାମରପରି ଉକ୍ତ ଲବଣକୁ ବର ଉପରେ ପକାଇବ ।*

## ୩୪୨-କନିଷ୍ଠ ବେଦୀକର୍ମ*

ତତଃ କନିଷ୍ଠବେଦୀକୋପରି କନ୍ୟାମାତା ନାରିକେଳୋଦକେନ ବରସ୍ୟ ପାଦୌ ପ୍ରକ୍ଷାଲ୍ୟ ସ୍ୱବସ୍ତ୍ରେଣ ପ୍ରୋଞ୍ଚ୍ୟ ତତ୍ରାଲକ୍ତକଂ ଚ ଦତ୍ତ୍ୱା ତାମ୍ବୁଳପତ୍ରଯୁଗଳଂ ହୃଦି

---

*୪୩୧ (୧ଟି) ଲବଣ ଚାମରୀର୍ଲକ୍ଷଣ-

ଲବଣଂ କନ୍ୟକା ହସ୍ତେ ଗୃହୀତ୍ୱା ବରସମ୍ମୁଖେ ।
ତିଷ୍ଠତି ସ୍ମରତି ଦୁର୍ଗାଂ ବରସ୍ୟୋପିର ତତ୍କ୍ଷିପେତ୍ । (ପଦ୍ଧତିକାରଃ)
ଆଶିଷଂ ପ୍ରତିଗୃହ୍ଣୀୟାନ୍ନମସ୍କୃତ୍ୟ ଦ୍ୱିଜାନ୍ ବରଃ ।
କନିଷ୍ଠବେଦିକାସନ୍ନୋ ଗୃହଂ ଗତ୍ୱାବତିଷ୍ଠତେ ।
ଲବଣଂ ବରଗାତ୍ରେଷୁକ୍ଷିପେତକନ୍ୟାଶୁଭାନ୍ୱିତା । (ଗୃହ୍ୟସୂତ୍ରକାରିକାୟାଂ),

*୪୩୧ (୨ଟି) -ଲବଣଚାମରୀ ପୂଜା-

ଗୃହାଭ୍ୟନ୍ତରେ ଉପଲିପ୍ତେ ଶୁଚୌ ଦେଶେ ଚତୁରସ୍ରବେଦିଂ କୃତ୍ୱା ତନ୍ମଧ୍ୟେ ଲବଣେନ ଦୁର୍ଗା ପ୍ରତିମାଂ ନିର୍ମାୟ "ଅମ୍ବେ ଅମ୍ବିକେ" ବା ସ୍ୱନାମଚତୁର୍ଥ୍ୟମନ୍ତ୍ରେଣ ଆବାହନାଦିତାମ୍ବୁଲାନ୍ତଂ ଦତ୍ତ୍ୱା ପୂଜୟେତ୍ ।

ପ୍ରାର୍ଥନା-ନମସ୍ତେ କାମଦେ ଦେବି ନମସ୍ତେ ସୁଖସୌଖ୍ୟଦେ । ନମସ୍ତେ କାମଜନନି ନମସ୍ତେ ଶଙ୍କରପ୍ରିୟେ । ଏବଂ କୃତ୍ରମିଦ୍ ବ୍ୟବହାରୋଽସ୍ତି ।

ବ୍ୟାଖ୍ୟା-କୌଣସି କ୍ରୌଣସି ସ୍ଥାନରେ ଏପରି ବ୍ୟବହାର ଅଛି ଯେ ଗୃହମଧ୍ୟକୁ ଗୋମୟଦ୍ୱାରା ଶୁଦ୍ଧ କରି ତହିଁରେ ଚତୁରସ୍ର ବେଦୀ କରି ତାହା ମଧ୍ୟରେ ଲବଣରେ ଦେବୀପ୍ରତିମା ନିର୍ମାଣ କରି "ଅମ୍ବେ ଅମ୍ବିକେ" ମନ୍ତ୍ରରେ କିମ୍ୱା ସ୍ୱନାମଚତୁର୍ଥ୍ୟନ୍ତମନ୍ତ୍ରରେ ଆବାହନାଦି ତାମ୍ବୁଳ ପର୍ଯ୍ୟନ୍ତ ଉପଚାର ଦେଇ ପୂଜା ଉପରଲିଖିତ ମନ୍ତ୍ର ପଢ଼ି କନ୍ୟା ଦେବୀଙ୍କୁ ପ୍ରାର୍ଥନା କରିବ ।

*-କନିଷ୍ଠବେଦୀ ବରଣ-

କନିଷ୍ଠବେଦ୍ୟାଂ ସଂସ୍ଥାପ୍ୟ ଚତୁଷ୍କୋଣେ ପ୍ରଦୀପକଂ ।
ଶିଳାପୁତ୍ରନିଧାନଂ ଚ କୁକର୍ମାଚରଣଃ ତତଃ ।
ସଭର୍ତୃକାଃ ସ୍ତ୍ରିୟଃ ସପ୍ତ କନ୍ୟାମାତା ସହୈବ ଚ । (ଗୃହ୍ୟସୂତ୍ରକାରିକାୟାଂ)



ପୃଷ୍ଠେ ଚ ଯୁଗପନ୍ନି ଧାୟ ସିନ୍ଦୂରକଜ୍ଜଳାଭ୍ୟାଂ ମୁଖମଣ୍ଡନଂ କୃତ୍ୱା ସ୍କନ୍ଧେ ଯଜ୍ଞୋପବୀତଂ ଚ ଦତ୍ତ୍ୱା ଦୂର୍ବାକ୍ଷତାନି ବରସ୍ୟୋପରିନିକ୍ଷିପ୍ୟସପ୍ତାନ୍ନ-ମୁଷ୍ଟିଭିର୍ଗୋମୟପିଣ୍ଡେକେନ ଚ ସପ୍ତବର୍ତ୍ତିକୟା ନୀରାଜନଂ ସ୍ତ୍ରୀଭି ସହ କୁର୍ଯ୍ୟାତ୍ ।

**ବ୍ୟାଖ୍ୟା**-ତଦନନ୍ତର କନିଷ୍ଠବେଦୀର ଚାରିକୋଣରେ ଦୀପ ଜଳାଇ ତାହାମଧ୍ୟରେ ଶିଳଉପରେ ବରକୁ ବସାଇ କନ୍ୟାମାତା ନାରୀକେଳଜଳରେ ବର ପାଦଦ୍ୱୟକୁ ଧୋଇ ନିଜ ପଣତରେ ପୋଛି ସେହି ପାଦଦ୍ୱୟରେ ଅଳତା ଲଗାଇଦେଇ ଦୁଇଗୋଟି ପାନପତ୍ର ହସ୍ତରେ ଧରି ଏକ ସମୟରେ ବରର ହୃଦୟ ଓ ପିଠିରେ ରଖି ସିନ୍ଦୂର ଓ କଜ୍ଜଳଦ୍ୱାରା ବରର ମୁଖମଣ୍ଡନ କରି ଓ ସ୍କନ୍ଧରେ ଯଜ୍ଞୋପବୀତ ପିନ୍ଧାଇ ବର ଉପରେ ଦୂବ ଚାଉଳ ପକାଇ ଗୋଟିଏ ପାତ୍ରରେ ଏକଗୋଟି ଗୋମୟପିଣ୍ଡ, ସାତମୁଠି ଚାଉଳ ଓ ସାତଦୀପ ରହି ସାତଜଣ ସଧବ ସ୍ତ୍ରୀ ସଙ୍ଗେ ନେଇ ବରକୁ ବନ୍ଧାପନା କରିବ ।

## ୪୩୩-ଷଡ଼ାର୍ଘ୍ୟ*କର୍ମାରମ୍ଭ

ତତୋ ବୃହଦ୍ ବେଦିକୋପରି ବରସ୍ୟାଗ୍ରେ କନ୍ୟାପିତା ବରୁଣପୂଜାପୂର୍ବକଂ ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । (ତତ୍ପରେ ବୃହଦ୍ ବେଦୀଉପରେ କନ୍ୟାପିତା ବସି ବରୁଣପୂଜା କରି ବରର ସମ୍ମୁଖରେ ପୁଣ୍ୟାହବଚାନ କରିବ) । ତଦ୍‌ଯଥା-ମମ ଦୁହିତୁରମୁକନାମ୍ନ୍ୟାଃ କନ୍ୟାୟାବିବାହାର୍ଥମାଗତସ୍ୟ ବରସ୍ୟ ଷଡ଼ର୍ଘ୍ୟାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

ବରୁଣାଦିଦାରୁ ମୟପୀଠାଦି ଆସନଂ ଅନୁଚରୈରାନାଯ୍ୟ-କନ୍ୟାପିତ ଆସନାଦୁତ୍‌ଥାୟ ବରସ୍ୟାଭିମୁଖେ ସ୍ଥିତ୍ୱା ଆହ ।-ସାଧୁଭବାନାସ୍ତାମର୍ଚ୍ଚୟିଷ୍ୟା ମେ ଭବନ୍ତଂ, "ଅର୍ଚ୍ଚୟର" ଇତି ବରୋବଦେତ୍ ।

**ବ୍ୟାଖ୍ୟା**-କନ୍ୟାପିତା । ବରୁଣକାଠପ୍ରଭୃତିରେ ଆସନ ନିର୍ମାଣ କରାଇ ଅନୁଚରଦ୍ୱାରା ଅଣାଇ ରଖିବ । ତତ୍ପରେ ଆପେ ଆସନରୁ ଉଠି ବରର ସମ୍ମୁଖରେ ରହି (ଦକ୍ଷିଣହସ୍ତରେ ତାଙ୍କ ବୃଦ୍ଧାଙ୍ଗୁଳି ଧରି) କହିବେ କି ଆପଣ ଏହି ବରୁଣକାଠ ଆସନରେ ସୁଖରେ ବସନ୍ତୁ, ଆମ୍ଭେ ଆପଣଙ୍କୁ ପୂଜା କରିବୁ । ବର କହିବ ପୂଜା କରନ୍ତୁ ।

*** ୪୩୩ ଅର୍ଘ୍ୟଯୋଗ୍ୟ ବ୍ୟକ୍ତି-**

ଷଡ଼ର୍ଘ୍ୟାଭବନ୍ତ୍ୟାଚାରଦ୍ୱିଗ୍‌ବୈବାହ୍ୟୋରାଜା ପ୍ରିୟଃ ସ୍ନାତକ ଇତି ପାରସ୍କରଃ । ପ୍ରତିସମ୍ବତ୍ସରାନର୍ହୟେୟୁଃ । ନ ସମ୍ବତ୍ସରାଦର୍ବାକ୍ ।

**ବ୍ୟାଖ୍ୟା**-ଆଚାର୍ଯ୍ୟ (ବେଦାଧ୍ୟାପକ), ଋତ୍ୱିକ (ପୁରୋହିତ ବ୍ରାହ୍ମଣ ପ୍ରଭୃତି) ବୈବାହ୍ୟ (ବର), ରାଜା, ପ୍ରିୟ (ସଖା), ସ୍ନାତକ (ବ୍ରହ୍ମଚର୍ଯ୍ୟବ୍ରତ ଶେଷ କରି ଯେ ଗୃହସ୍ଥାଶ୍ରମକୁ ଫେରିଆସେ ତାହାକୁ ସ୍ନାତକ କହନ୍ତି) ଏହି ଛ'ଜଣ ଅର୍ଘ୍ୟଯୋଗ୍ୟ ହୁଅନ୍ତି । ଏମାନେ ଗୃହକୁ ଆସିଲେ ପ୍ରତିବର୍ଷରେ ପୂଜା କରିବ । କିନ୍ତୁ ବର୍ଷମଧ୍ୟରେ ଅନେକଥର ଆସିଲେ ପୂଜା କରିବାର ବିଧି ନୁହେଁ ।

## ୪୩୪-ବିଷ୍ଟରାଦିର ଆସାଦନ

କନ୍ୟାପିତା ବିଷ୍ଟରାଦିନାସାଦୟତି-

ବିଷ୍ଟରଂ ଚୈବ ପାଦ୍ୟଂଚ ପୁନର୍ବିଷ୍ଟରମେବ ଚ ।
ଅର୍ଘ୍ୟଂ ଚାଚମନୀୟଂ ଚ ମଧୁପର୍କଂ ତତଃପରଂ ।

ବିଷ୍ଟରଂ-ପଞ୍ଚବିଂଶତିଦର୍ଭୈ ର୍ବାମାବର୍ତ୍ତବ୍ରହ୍ମଗ୍ରନ୍ଥିଯୁକ୍ତଂ ।

ପାଦ୍ୟଂ-ପାଦପ୍ରକ୍ଷାଳନାର୍ଥଂ ତାମ୍ରପାତ୍ରସ୍ଥ ମୁଷ୍ଣୋଦକଂ
ପୂର୍ବବଦ୍ ଦ୍ୱିତୀୟବିଷ୍ଟରଂ

ଅର୍ଘ୍ୟ- ଗନ୍ଧପୁଷ୍ପାକ୍ଷତକୁଶତିଳଶୁଭ୍ରସର୍ପଦଧିଦୁର୍ବାନ୍ୱିତଂ
ସୁବର୍ଣ୍ଣାଦିପାତ୍ରସ୍ଥମର୍ଘ୍ୟାର୍ଥମୁଦୁକଂ ।

ଆଚମନୀୟଂ-ଆଚମନାର୍ଥଂ କମଣ୍ଡଳୁସମ୍ଭୃତଂ ସୁବାସିତଜଳଂ ।

*ମଧୁପର୍କଂ-ଦଧିମଧୁଘୃତଂଯୁକ୍ତଂ କାଂସ୍ୟପାତ୍ରସ୍ଥମପର-କାଂସ୍ୟାପାତ୍ରେଣାଚ୍ଛାଦିତଂ । ଏତାନ୍ୟାସାଦ୍ୟ ।

ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ବିଷ୍ଟରାଦି ସଂଗ୍ରହ କରି ରଖିବ । ଯଥା- (୧) ବିଷ୍ଟର, (୨) ପାଦ୍ୟ, (୩) ପୁନର୍ବିଷ୍ଟର, (୪) ଅର୍ଘ୍ୟ, (୫) ଆଚମନୀୟ ଓ (୬) ମଧୁପର୍କ । ଅର୍ଥାତ୍-(୧) ପଞ୍ଚାଶଗୋଟି କୁଶରେ ବାମାବର୍ତ୍ତରେ ବ୍ରହ୍ମଗ୍ରନ୍ଥି ଦେଲେ ବିଷ୍ଟର ହୁଏ । (୨) ପାଦପ୍ରକ୍ଷାଳନ ନିମିତ୍ତ ତାମ୍ରପାତ୍ରରେ ଉଷ୍ଣଜଳ ରଖିବ । (୩) ପୂର୍ବପରି ଆଉ ଗୋଟିଏ ବିଷ୍ଟର ରଖିବ । (୪) ସୁବର୍ଣ୍ଣାଦି ଧାତୁପାତ୍ରରେ ଅର୍ଘ୍ୟ ନିମିତ୍ତ ଗନ୍ଧପୁଷ୍ପ, ଅକ୍ଷତ, କୁଶ, ତିଳ, ଧଳା ସୋରିଷ ଦଧିଦୁର୍ବାମିଶ୍ରିତ ଜଳ ରଖିବ । (୫) ଆଚମନ ନିମିତ୍ତ କମଣ୍ଡଳୁରେ (ଗଡୁରେ) ସୁବାସିତ ଜଳ ରଖିବ । (୬) କାଂସ୍ୟପାତ୍ରରେ ଦଧି ମଧୁଘୃତକୁ ଯୁକ୍ତ କରି ଅନ୍ୟ କାଂସ୍ୟପାତ୍ରଦ୍ୱାରା ତାହାକୁ ଘୋଡ଼ାଇ ରଖିଲେ ମଧୁପର୍କ ହୁଏ ।

---

* ୪୩୪-ମଧୁପର୍କ ଦ୍ରବ୍ୟ ଅଭାବର ନିୟମ-

ମଧୁପର୍କେ ଦଧ୍ୟଭାବେ ପୟୋଜଳଂ ବା ପ୍ରତିନିଧିଃ । ମଧ୍ୱଭାବେ ଘୃତଂ ଗୁଡ଼ୋ ବା ଇତି ଆଶ୍ୱଳାୟନଃ । (ମଧୁପର୍କରେ ଦଧିର ଅଭାବ ହେଲେ ଦୁଗ୍ଧ କିମ୍ବା ଜଳବ୍ୟବହାର କରିବ । ମଧୁର ଅଭାବ ହେଲେ ଘୃତ ବା ଗୁଡ଼ ବ୍ୟବହାର କରିବ ।)



## ୪୩୫-ବିଷ୍ଟର ଆଦି ଅର୍ପଣ ବିଧି

ତତଃ କନ୍ୟାପିତା ବିଷ୍ଟରଂ ଗୃହୀତ୍ୱା ବିଷ୍ଟରୋ ବିଷ୍ଟରୋ ବିଷ୍ଟରଃ । ପ୍ରତିଗୃହ ତାମିତି ବଦତି । ପ୍ରତିଗୃହଣାମୀତି ବରଃ । ବରୋବିଷ୍ଟରଂ ଗୃହୀତ୍ୱା ମନ୍ତ୍ରଂ ପଠେତ୍ । ତଦ୍ୟଥା-ଓ ବର୍ଷ୍ମୋଽସ୍ମି ସମାନାନା ମୁଦ୍ୟତାମିବସୂର୍ଯ୍ୟଃ । ଇମଂ ତମଭିତିଷ୍ଠାମି ଯୋମାକଶ୍ଚା ଭିଦାସିତ । ଇତି ଉତ୍ତରାଗ୍ରବିଷ୍ଟରୋପରି ଉପବିଶେତ୍ ।

**ବ୍ୟାଖ୍ୟା**-ତତ୍ପରେ କନ୍ୟାପିତା ବିଷ୍ଟରକୁ ହସ୍ତରେ ଧରି "ବିଷ୍ଟରୋ ବିଷ୍ଟରୋବିଷ୍ଟରଃ ତିନିଥର ଉଚ୍ଚାରଣ କରି ବରକୁ କହିବେ କି ତୁମ୍ଭେ ଏହା ଗ୍ରହଣ କର । ବର କହିବ- ମୁଁ ଗ୍ରହଣ କଲି, ଏହା କହି "ବର୍ଷ୍ମୋଽସ୍ମି" ଏହି ମନ୍ତ୍ର ପଢ଼ି ବିଷ୍ଟରକୁ ଉତ୍ତର ଆଡ଼କୁ ଅଗ୍ର କରି ରଖି ତାହାଉପରେ ବସିବ ।

ତତଃ କନ୍ୟାପିତା ପାଦ୍ୟଂ ଗୃହୀତ୍ୱା ପାଦାର୍ଥମୁଦକଂ ୩ ପ୍ରତିଗୃହ୍ୟତାମିତି ବଦତି । ପ୍ରତିଗୃହ୍ଣାମୀତି ବରଃ । ବରଃପାଦାର୍ଥମୁଦକଂଭୂମୌ ସ୍ଥାପୟିତ୍ୱା ହସ୍ତଦ୍ୱୟେନ ପାଦୌ ପ୍ରକ୍ଷାଳୟତି ମନ୍ତ୍ରେଣ । ତଦ୍ୟଥା-ବିରାଜୋ ଦୋହୋଽସି ବିରାଜୋ ଦୋହୋମଶୀୟମୟି ପାଦ୍ୟୟୈ ବିରାଜୋ ଦୋହଃ । ଇତି ପ୍ରଥମ ଦକ୍ଷିଣପାଦଂ । ପଶ୍ଚାଦ୍ ବାମପାଦଂ ଉଭୟତ୍ରାୟଂ ମନ୍ତ୍ରଂ ।

**ବ୍ୟାଖ୍ୟା**-ତତ୍ପରେ କନ୍ୟାପିତା ପାଦଧୌତ ନିମିତ୍ତ ଜଳଧରି ପାଦାର୍ଥମୁଦକଂ ପାଦାର୍ଥମୁଦକଂ ପାଦାର୍ଥମୁଦକଂ ଏହିପରି ତିନିଥର ଉଚ୍ଚାରଣ କରି ବରକୁ କହିବେ ତୁମ୍ଭେ ଏହି ପାଦ୍ୟ ଗ୍ରହଣ କର, ବର କହିବ ମୁଁ ଗ୍ରହଣ କଲି । ଏହା କହି ସେହି ଜଳ ପାତ୍ରକୁ ଭୂମିରେ ରଖି ତହିଁରୁ କିଛି ଜଳ ନେଇ "ବିରାଜ୍ୟୋ ଦୋଽହୋଽସି" ଏହି ମନ୍ତ୍ର ପଢ଼ି ପ୍ରଥମରେ ଦକ୍ଷିଣପାଦ ଓ ତତ୍ପରେ ବାମପାଦ ଧୌତ କରିବ । ବ୍ରାହ୍ମଣ ବର ପ୍ରଥମରେ ଦକ୍ଷିଣ ପାଦ ଧୋଇବ ଆଉ ଅନ୍ୟଜାତି ପ୍ରଥମରେ ବାମପାଦ ଧୋଇବେ ଏହାର ପ୍ରମାଣ ତଳ ଟିପ୍ପଣୀ ଦେଖ ।*

**ବ୍ୟାଖ୍ୟା**-ତତ୍ପରେ ବର ପୂର୍ବବିଷ୍ଟରପରି ଏହି ବିଷ୍ଟରକୁ କନ୍ୟାପିତାଠାରୁ ଗ୍ରହଣ କରି "ବର୍ଷ୍ମୋସ୍ମି" ମନ୍ତ୍ର ପଢ଼ି ତହିଁରେ ପାଦଦ୍ୱୟ ରଖିବ ।

---

* ସବ୍ୟଂ ପାଦଂ-ପ୍ରକ୍ଷାଲ୍ୟ ଦକ୍ଷିଣଂ ପ୍ରକ୍ଷାଳୟତି । ବ୍ରାହ୍ମଣ ଶ୍ଚେତ୍ ଦକ୍ଷିଣଂ ପ୍ରଥମଂ । (ପାରସ୍କରଃ)

ତତଃ କନ୍ୟାପିତା ଅର୍ଘ୍ୟପାତ୍ରଂ ଗୃହୀତ୍ୱା ଅର୍ଘୋ ଅର୍ଘୋ ଅର୍ଘଃ ପ୍ରତିଗୃହ୍ୟତା ମିତି ବଦତି । ପ୍ରତିଗୃହ୍ଣାମୀତି ବରଃ । ଆପସ୍ଥ ଯୁଷ୍ମାଭିଃ ସର୍ବାନ କାମାନବାପ୍ନବାନି । ଇତି ବାମହସ୍ତେ ଅର୍ଘ୍ୟ ଗୃହୀତ୍ୱା । ଦକ୍ଷିଣହସ୍ତେନ ଶିରସି ତ୍ରିବାରଂସିଞ୍ଚେନ୍‌ମନ୍ତ୍ରେଣ । ତଦ୍‌ଯଥା-ଓଁ ସମୁଦ୍ରଂ ବଃପ୍ରହିଣୋମ ସ୍ୱାଂଯୋନିମଧିଗଚ୍ଛତ ଅରିଷ୍ଟାସ୍ମାକଂ ବୀରାମପରା ସେଚିମପ୍ୟଃ । ଇତି ପଠିତ୍ୱା ଅର୍ଘ * ଶେଷଂ ମୂର୍ଦ୍ଧପର୍ଯ୍ୟନ୍ତମାନୀୟ ଭୂମୌ ନିକ୍ଷିପେତ୍ ।

ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ଅର୍ଘପାତ୍ର ଧରି ଅର୍ଘୋ ଅର୍ଘୋ ଅର୍ଘଃ ଏହିପରି ତିନିଥର ଉଚ୍ଚାରଣ କରି ବରକୁ କହିବ ତୁମ୍ଭେ ଅର୍ଘ ଗ୍ରହଣ କର । ବର କହିବ ମୁଁ ଗ୍ରହଣ କଲି । ଏହା କହି "ଅପସ୍ଥଯୁଷ୍ମାଭି" ଏହି ମନ୍ତ୍ର ପଢ଼ି ବାମ ହସ୍ତରେ ଅର୍ଘ ଧରି ଦକ୍ଷିଣହସ୍ତଦ୍ୱାରା ତିନିଥର ମସ୍ତକରେ ସିଞ୍ଚିଦେବ ତତ୍ପରେ "ସମୁଦ୍ରଂବଃ" ଏହି ମନ୍ତ୍ର ପଢ଼ି ଅର୍ଘ ଶେଷକୁ ମସ୍ତକପର୍ଯ୍ୟନ୍ତ ଆଣି ଭୂମିରେ ପକାଇଦେବ ।

ତତଃ କନ୍ୟାପିତା ଆଚମନୀୟମାଚମନୀୟ ମାଚମନୀୟଂ ପ୍ରତିଗୃହତାମିତି ବଦତି । ପ୍ରତିଗୃହ୍ଣାମୀତି ବରଃ । ଆଚମନୀୟପାତ୍ରଂ ବାମହସ୍ତେ ଧୃତ୍ୱା ଦକ୍ଷିଣଂ ହସ୍ତେନ ଜଳଚଲୁକଂ ଗୃହୀତ୍ୱାଂ ଆଚମତି ମନ୍ତ୍ରେଣ ତଦ୍‌ଯଥା-

ଆମାଗନ୍ୟଶସାସଂସୃଜ ବର୍ଚ୍ଚସା । ତାଂ ମାକୁରୁ ପ୍ରିୟଂ ପ୍ରଜାନାମାଧିପତିଂ ପଶୂନାମରିଷ୍ଟଂ ତନୁନାଂ । ଇତି ସକୃଦାଚମନଂ । ଦ୍ୱିସ୍ତୁଷ୍ଣୀଂ । ତତଃ *ସ୍ମାର୍ତ୍ତାଚମନଂ ।

ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ଆଚମନୀୟ ପାତ୍ର ଧରି "ଆଚମନୀୟ ମ ମାଚମନୀୟମାଚମନୀୟଂ ଏହିପରି ତିନିଥର ଉଚ୍ଚାରଣ କରି ବରକୁ କହିବେ ତୁମ୍ଭେ ଏହି ଆଚମନୀୟ ଜଳ ଗ୍ରହଣ କର । ବର କହିବ ଗ୍ରହଣ କଲି । ଏହା କହି ଆଚମନୀୟ ପାତ୍ରକୁ ବାମହସ୍ତରେ ଧରି ସେହି ଜଳରୁ ଦକ୍ଷିଣହସ୍ତରେ ଚଳୁଏ ନେଇ "ଆମାଗନ୍ୟଶସାସଂ" ଏହି ମନ୍ତ୍ର ପଢ଼ି ଥରେ ଆଚମନ କରିବ, ବିନାମନ୍ତ୍ରରେ

---

* ୪୩୫ (୧ଟି)-ସ୍ମାର୍ତ୍ତାଚମନ ଲକ୍ଷଣ-

ଆଚମନଂ ସକୃନ୍ମନ୍ତ୍ରେଣ ତତଃ ସ୍ମାର୍ତ୍ତାଚମନଂ କରୋତି ଏବଂ ସର୍ବତ୍ର (ହରିହରଃ)

ଶୁଦ୍ଧଂ ସ୍ମାର୍ତ୍ତଂ ତଥାଚୈବ ପୌରାଣଂ ବୈଦିକ ତଥା ।
ତାନ୍ତ୍ରିକଂ ଶୌତସ୍ମାର୍ତ୍ତଂ ଚ ଷଡ଼ବିଧଂ ଶ୍ରୁତିସମ୍ମତଂ ।



ଆଉ ଦୁଇଥର ଆଚମନ କରିବ । ତତ୍ପରେ ସ୍ମାର୍ତ୍ତଚମନ କରିବ । * ମଧୁପର୍କୋମଧୂପର୍କୋ ମଧୁପର୍କଃ । ପ୍ରତିଗୃହ୍ୟତାମିତି କନ୍ୟାପିତା ବଦତି । ତତୋବରୋ "ମିତ୍ରସ୍ୟତ୍ୱା ଚକ୍ଷୁଷାପ୍ରତିକ୍ଷେ" ଇତି ମନ୍ତ୍ରେଣ ମଧୁପର୍କଂ ପ୍ରତୀକ୍ଷତେ । ଦେବସ୍ୟ ତ୍ୱା ସବିତୁଃ ଯସବେଶ୍ୱିନୋବାହୁଭ୍ୟାଂ ପୁଷ୍ଣୋହସ୍ତାଭ୍ୟାଂ ପ୍ରତିଗୃହ୍ଣାମୀତି ମନ୍ତ୍ରେଣ ।

---

ବିଶ୍ୱମିତ୍ରାଦିକଶୌଚେ ତୁ "ଶୁଦ୍ଧଂ" ଚ ପରିକୀର୍ତ୍ତିତଂ ।
"ସ୍ମାର୍ତ୍ତ' "ପୌରାଣିକଂ" କର୍ମଣ୍ୟାଚମେଦ୍ ବିଧିପୂର୍ବକଂ ।
"ବୈଦିକଂ" "ଶୌତ" ମିତ୍ୟାଦି ବ୍ରହ୍ମଯଜ୍ଞାଦି ପୂର୍ବକଂ ।
ଅସ୍ତ୍ରବିଦ୍ୟାଦିକାର୍ଯ୍ୟାଣାଂ ତାନ୍ତିକୋବିଧିରୁଚ୍ୟତେ । (ବିଶ୍ୱାମିତ୍ରକଳ୍ପେ)

ବ୍ୟାଖ୍ୟା-ବିଶ୍ୱାମିତ୍ର କଳ୍ପରେ କଥିତ ଅଛି ଆଚମନ ଛଅପ୍ରକାର ହୁଏ । ଯଥା- (୧) ଶୁଦ୍ଧ, (୨) ସ୍ମାର୍ତ୍ତ, (୩) ପୌରାଣ, (୪) ବୈଦିକ, (୫) ତାନ୍ତ୍ରିକ (୬) ଶ୍ରୌତସ୍ମାର୍ତ୍ତ । ମଳମୂତ୍ରତ୍ୟାଗର ଶୌଚରେ ଯେ ଆଚମନ କରାଯାଏ ତାହାର ନାମ ଶୁଦ୍ଧ । କର୍ମରେ ବିଧିପୂର୍ବକ ଆଚମନ କରିବାର ନାମ ସ୍ମାର୍ତ୍ତ ବା ପୌରାଣ ଆଚମନ । ବ୍ରହ୍ମଯଜ୍ଞାଦିପୂର୍ବକ ଆଚମନର ନାମ ବୈଦିକ ବା ଶୌଚ ପ୍ରଭୃତି । ଅସ୍ତ୍ରବିଦ୍ୟାଦି କର୍ମରେ ଯେ ଆଚମନ ହୁଏ ତାହାର ନାମ ତାନ୍ତ୍ରିକ ଆଚମନ ।

୪୩୫ (୨) ବିଧିପୂର୍ବକ ଆଚମନ କରିବାର ନିୟମ-

ପ୍ରକ୍ଷ୍ୟାଲ୍ୟ ପାଣିପଦୌ ଚ ତ୍ରିଃ ପିବେଦମ୍ବୁ ବୀକ୍ଷତଂ-
ସଂବୃତ୍ୟାଙ୍ଗୁ ଷ୍ଠମୂଳେନ ଦ୍ୱିଃ ପ୍ରମୃଜ୍ୟାତ୍ତତୋମୁଖଂ ।। (ଦକ୍ଷଃ)
ଗୋକର୍ଣ୍ଣାକୃତିହସ୍ତେନ ମାସମଗ୍ନଜଳଂ ପିବେତ୍ ।
ତନ୍ନ୍ୟୂନମଧିକଂ ବାପି ପୀତଂ ତଦ୍ରୁଧିରଂ ଭବେତ୍ ।। (କାତ୍ୟାୟନଃ)
ଦକ୍ଷିଣେ ତୋୟମାଦାୟ ବାମେନ ସ୍ଥାପୟେତ୍ତତଃ ।
ପୁନର୍ଦକ୍ଷିଣହସ୍ତେ ତୁ ପୁନର୍ବାମେନ ସ୍ଥାପୟେତ୍ ।
ମଧ୍ୟମାଭିର୍ମୁଖଂ ପୂର୍ବଂ ତିସୃଭିଃସମୁପସ୍ପୃଶେତ୍ ।
ଅଙ୍ଗୁଷ୍ଠତର୍ଜନୀଭ୍ୟାଂ ଚ ନାସିକେ ତଦନନ୍ତରଂ ।।
ତାଭ୍ୟାଂ ଚ ଶ୍ରବଣେ ନାଭିଂ କନିଷ୍ଠାଙ୍ଗୁଷ୍ଠଯୋଗତଃ ।
ତଳେନ ହୃଦୟଂ ସ୍ପୃଷ୍ଟ୍ୱା ସର୍ବାଭି ଶିର ଏବ ଚ ।
ବାହୂ ଚାଗ୍ରେଣ ସଂସ୍ପୃଶ୍ୟ ତତଃ ଶୁଦ୍ଧି ର୍ନ ସଂଶୟ ।। (ଯୋଗିଯାଜ୍ଞବଲ୍କଃ)

ବ୍ୟାଖ୍ୟା-ପ୍ରଥମରେ ହାତ ଗୋଡ଼ ଧୋଇ ହସ୍ତକୁ ଗୋକର୍ଣ୍ଣର ଆକୃତି କରି ସେଥିରେ ବ୍ରୀହି ବୁଡ଼ିଯିବା ପରିମାଣରେ ଜଳ ରଖି ତାହାକୁ ଉତ୍ତମରୂପେ ଦେଖି ତିନିଥର ପାନ କରି ବୁଢ଼ା ଆଙ୍ଗୁଳି ମୂଳଦ୍ୱାରା ମୁଖକୁ ଦୁଇଥର ପୋଛିଦେବ, ଜଳ ତହିଁରୁ ନ୍ୟୂନ ବା ଅଧିକ ହେଲେ ଯେ ରୁଧିର ତୁଲ୍ୟ ହୁଏ, ତତ୍ପରେ ଦକ୍ଷିଣ ହସ୍ତରେ ଜଳ ଆଣି ବାମ ହସ୍ତରେ ରଖିବ । ପୂନର୍ବାର ସେହି ଜଳକୁ ଦକ୍ଷିଣହସ୍ତରେ ରଖି

ତତୋମଧୁପର୍କଂ ବାମହସ୍ତେ ଗୃହୀତ୍ୱା ଦକ୍ଷିଣହସ୍ତସ୍ୟାନାମିକାଙ୍ଗୁଷ୍ଠାଭ୍ୟାଂ ତ୍ରିଃ ପ୍ରଯୌତି (ଆଲୋଡ଼ୟତି) ଚ ଭୂମୌ ତ୍ରିର୍ନିରୁକ୍ଷୟତି (କ୍ଷିପତି) ମନ୍ତ୍ରେଣ । ଓଁ ନମଃ ଶ୍ୟାବାସ୍ୟାୟାନ୍ନଶନେଯତ୍ତ । ଆବିଦ୍ଧଂ ତତ୍ତେ ନିଷ୍କୃନ୍ତାମି । ମଧୁପର୍କଂ ଭୂମୌ ସ୍ଥାପୟିତ୍ୱା । ଯନ୍ମଧୂନୋ ମଧବ୍ୟଂ ପରମଂ ରୂପମନ୍ନାଦ୍ୟଂ । ତେନାହଂ ମଧୁନୋ ମଧବ୍ୟେନ ପରମେଣ ରୂପେଣାନ୍ନାଦ୍ୟେନ ପରମୋ ମଧୁବ୍ୟୋଽନାଦୋଽସାନି । ଇତି ମନ୍ତ୍ରେଣ ମଧୁପର୍କସ୍ୟ ଏକଦେଶମାଦାୟ ଅନାମିକାଙ୍ଗୁଷ୍ଠାଭ୍ୟାଂ ସକୃତ୍ ପ୍ରାଶ୍ନାତି । ଏବମପରଂ ବାରଦ୍ୱୟଂ ପ୍ରାଶ୍ନାତି । ମଧୁବାତାଇତି ତିସୃଭିରଗ୍ଭିଃ ପ୍ରତ୍ୟୃଚଂ ପ୍ରତିମନ୍ତ୍ରଂ ବା ପୂର୍ବବତ୍ତ୍ରିଃ ପ୍ରାଶ୍ନାତି । ଓଁ ମଧୁବାତା ଋତାୟତେ ମଧୁକ୍ଷରନ୍ତି ସିନ୍ଧବଃ ମାଧ୍ୱୀର୍ନ୍ନଃ ସନ୍ତୋଷଧୀଃ । ଓଁ ମଧୁନକ୍ତ ମୃତୋଷସୋ ମଧୁମତ୍ପାର୍ଥିବଂ ରଜଃ । ମଧୁଦ୍ୟୌରସ୍ତୁ ନଃ ପିତା । ଓଁ ମଧୁମାନ୍ନୋ ବନସ୍ପତିର୍ମଧୁ ମାଂ ଅସ୍ତୁ ସୂର୍ଯ୍ୟଃ । ମାଧ୍ୱୀର୍ଗାବୋଭବନ୍ତୁ ନଃ । ଇତି ଋକ୍ତ୍ରୟେଣ ପୂର୍ବବତ୍ତ୍ରିଃ ପ୍ରାଶ୍ନାତି । ପୂର୍ବସ୍ୟାଂ ଦିଶି ଯତ୍ର ଜାନ ନ ସଞ୍ଚରନ୍ତି ମଧୁପର୍କ ଶେଷଂ ତସ୍ମିନ୍ନସଞ୍ଚରେ ପ୍ରକ୍ଷିପେତ୍ ।

---

ପୂନର୍ବାର ବାମହସ୍ତରେ ରଖିବ । ପ୍ରଥମରେ ଦକ୍ଷିଣହସ୍ତର ତର୍ଜନୀ, ମଧ୍ୟମା, ଅନାମିକା ଏହି ତିନି ଅଙ୍ଗୁଳିକୁ ସେହି ଜଳରେ ବୁଡ଼ାଇ ମୁଖସ୍ପର୍ଶ କରିବ । ଅନନ୍ତର ଅଙ୍ଗୁଷ୍ଠ ତର୍ଜନୀକୁ ସେହି ଜଳରେ ବୁଡ଼ାଇ ନାସିକାଦ୍ୱୟକୁ ସ୍ପର୍ଶ କରିବ । ଅଙ୍ଗୁଷ୍ଠ ଓ ଅନାମିକା ଅଙ୍ଗୁଳିକୁ ସେହି ଜଳରେ ବୁଡ଼ାଇ କର୍ଣ୍ଣଦ୍ୱୟ ଏବଂ ଅଙ୍ଗୁଷ୍ଠ ଓ କନିଷ୍ଠା ଅଙ୍ଗୁଳିକୁ ସେହି ଜଳରେ ବୁଡ଼ାଇ ନାଭିସ୍ପର୍ଶ କରିବ । ଦକ୍ଷିଣହସ୍ତରେ ଜଳଭାଗକୁ ସେହି ଜଳରେ ବୁଡ଼ାଇ ହୃଦୟ ସ୍ପର୍ଶ କରିବ ଏବଂ ଦକ୍ଷିଣ ହସ୍ତରେ ସମସ୍ତ ଅଙ୍ଗୁଳି ସେହି ଜଳରେ ବୁଡ଼ାଇ ମସ୍ତକ ସ୍ପର୍ଶ କରିବ ଦକ୍ଷିଣ ହସ୍ତର ଅଙ୍ଗୁଳିର ଅଂଶ ଭାଗକୁ ସେହି ଜଳରେ ବୁଡ଼ାଇ ଦୁଇ ବାହୁସ୍ପର୍ଶ କରିବ । ଏହି ବିଧିରେ ଆଚମନ କଲେ ସ୍ନାର୍ତ୍ତାଚମନ ହୁଏ ।

***୪୩୫ (୩ଟି) ମଧୁପର୍କ ଭକ୍ଷଣବିଧି-**

ବିବାହେ ମଧୁପର୍କ ତୁ ଗର୍ଭସ୍ଥଂ କ୍ଷେପୟେଦ୍ଦ୍ୱିଜଃ ।
କଣ୍ଠସ୍ଥଂ କ୍ଷେପୟେତ୍ କ୍ଷତ୍ରୋବୈଶ୍ୟସ୍ତୁ ମୁଖତଃ ସ୍ପୃଶେତ୍ ।
ଶୂଦ୍ରସ୍ତୁ ଚକ୍ଷୁଷା ପଶ୍ୟେନ୍ମଧୁପର୍କଂ ନ ଭକ୍ଷୟେତ୍ ।

ବ୍ୟାଖ୍ୟା-ବିବାହ କାଳରେ ବ୍ରାହ୍ମଣ ମଧୁପର୍କକୁ ଗର୍ଭସ୍ଥ କରିବ । କ୍ଷତ୍ରିୟ କେବଳ କଣ୍ଠପର୍ଯ୍ୟନ୍ତ ନେଇ ବାହାର କରି ପକାଇବ । ବୈଶ୍ୟ ଟିକିଏ ମୁହଁରେ ନେଇ ପକାଇ ଦେବ । ଶୂଦ୍ର କେବଳ ଚକ୍ଷୁରେ ଦେଖିବ । ଖାଇବ ନାହିଁ-

**୪୩୫ (୪ଟି) ମଧୁପର୍କ ନିରୀକ୍ଷଣର ଫଳାଫଳ-**

ଗୋଲୋମୋଦୃଶ୍ୟତେ ବନ୍ଧ୍ୟା ମକ୍ଷିକା ବିଧବା ଭବେତ୍ ।
ମଧୁକୀଟୋ ଭବେଦ୍ ବେଶ୍ୟା ତଦ୍ଦ୍ରବ୍ୟଂ ତୁ ନିରୀକ୍ଷୟେତ୍ ।



ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ମଧୁପର୍କପାତ୍ରକୁ ଧରି ବରକୁ କହିବେ ତୁମ୍ଭେ ଏହି ମଧୁପର୍କ ଗ୍ରହଣ କର । ତଦନନ୍ତର ବର "ମିତ୍ରସ୍ୟ ତ୍ୱା ଚକ୍ଷୁସା ପ୍ରତୀକ୍ଷେ" ଏହି ମନ୍ତ୍ର ପଢ଼ି ସେହି ମଧୁପର୍କକୁ ଦେଖିବ । ତାହାପରେ "ଦେବସ୍ୟତ୍ୱା" ଏହି ମନ୍ତ୍ର ପଢ଼ି ଗ୍ରହଣ କରିବ । ତତ୍ପରେ ମଧୁପର୍କକୁ ବାମହସ୍ତରେ ରଖି "ନମଃ ଶ୍ୟାବାସ୍ୟାୟା" ଏହି ମନ୍ତ୍ର ପଢ଼ି ଦକ୍ଷିଣହସ୍ତର ଅଙ୍ଗୁଷ୍ଠ ଓ ଅନାମିକାଦ୍ୱାରା ତିନିଥର ଗୋଳାଇ ଦେଇ ତିନିଥର ଭୂମିରେ ପକାଇବ । ତତ୍ପରେ ସେହି ମଧୁପର୍କ ପାତ୍ରକୁ ତଳେ ରଖି "ଯନ୍ମଧୁନୋ ମଧବ୍ୟଂ" ଏହି ମନ୍ତ୍ର ପଢ଼ି ଦକ୍ଷିଣହସ୍ତ ଅଙ୍ଗୁଷ୍ଠ ଓ ଅନାମିକାଦ୍ୱାରା ନେଇ ଥରେ ମୁଖରେ ଦେବ । ତତ୍ପରେ ଏହି ମନ୍ତ୍ର ଆଉ ଦୁଇଥର ପଢ଼ି ଦୁଇଥର ପ୍ରାଶନ (ଭକ୍ଷଣ) କରିବ । ମତାନ୍ତରେ "ମଧୁବାତା" ଏହି ମନ୍ତ୍ର ପଢ଼ି ଥରେ ଏବଂ "ମଧୁନକ୍ତ ମୃତୋଷସୋ" ଏହି ମନ୍ତ୍ର ପଢ଼ି ଆଉ ଥରେ ଓ "ମଧୁମାନ୍ନୋବନସ୍ପତିଃ" ଏହି ମନ୍ତ୍ର ପଢ଼ି ତୃତୀୟଥର ପ୍ରାଶନ କରି । ଏ ଉଭୟର ଏତିକି ପ୍ରଭେଦ ଯେ "ଯନ୍ମଧୁନୋମଧବ୍ୟ" ଏହି ମନ୍ତ୍ରକୁ ତିନିଥର ପଢ଼ି ତିନିଥର ପ୍ରାଶନ କରିବ, ଆଉ ମଧୁବାତାଦି ତିନିକାଣ୍ଡି ମନ୍ତ୍ର ପଢ଼ି ତିନିଥର ପ୍ରାଶନ କରିବ । ଅବଶିଷ୍ଟ ମଧୁପର୍କକୁ ପୂର୍ବଦିଗରେ ମନୁଷ୍ୟର ଅସଞ୍ଚର ଭୂମିରେ ପକାଇଦେବ ।

---

ବ୍ୟାଖ୍ୟା-ଯେବେ ମଧୁପର୍କରେ ଗୋରୁରୁମ ଦେଖାଯାଏ, ତେବେକନ୍ୟା ବନ୍ଧ୍ୟା ହୁଏ । ଯେବେ ମାଛି ଦେଖାଯାଏ, ତେବେ ବିଧବା ହୁଏ । ମହୁମାଛି ଦେଖାଗଲେ ବେଶ୍ୟା ହୁଏ । ଅତଏବ ମଧୁପର୍କକୁ ଉତ୍ତମରୂପେ ନିରୀକ୍ଷଣ କରିବ ।

**୪୩୫ (୫ଟି) ମଧୂପର୍କ ପ୍ରାଶନର ଫଳ-**

ମାତୃଗର୍ଭେ ତୁ ଯତ୍ପାପଂ ମାତୃସ୍ତନପରିଗ୍ରହେ ।
ତସ୍ୟ ଚୋଦ୍ଧାରଣାର୍ଥାୟ ମଧୁର୍ପକଂ ଚ ପ୍ରାଶୟେତ୍ ।

ବ୍ୟାଖ୍ୟା-ମାତୃଗର୍ଭରେ ଯେ ପାପ ହୋଇଥାଏ ଏବଂ ମାତାର ସ୍ତନ ଗ୍ରହଣରେ ଯେ ପାପ ହୋଇଥାଏ, ତାହାର ମୋଚନ ନିମିତ୍ତ ବର ମଧୁପର୍କ ପ୍ରାଶନ କରିବ ।

**୪୩୫ (୬ଟି)-ମଧୁପର୍କଭାଗ ପରିମାଣ-**

ଘୃତମେକପଳଂ ଚୈବ ମଧୁଦ୍ୱିପଳମେବ ଚ ।
ଦଧିତ୍ରିପଳକଂ କୁର୍ଯ୍ୟାନ୍ମଧୁପର୍କେଽତ୍ୟୟଂ ବିଧିଃ ॥

ବ୍ୟାଖ୍ୟା-ମଧୁପର୍କରେ ଘୃତ ଏକପଳ, ମହୁ ଦୁଇପଳ ଓ ଦହି ତିନିପଳ କରିବ ।

ମଧୁ ପର୍କେ ଚ ସୋମେ ଚ ଅପ୍‌ସୁ ପ୍ରାଣାହୁତିଷୁ ଚ ॥
ନୋଚ୍ଛିଷ୍ଟଂ ଚ ଭବେଦ୍‌ବିପ୍ର ଆତ୍ରେୟ ବଚନଂ ଯଥା ।
ଶେଷମୁଚ୍ଛିଷ୍ଟପାତ୍ରଂ ତୁ ବ୍ରାହ୍ମଣାୟ ସମର୍ପୟେତ୍ ।

## ୪୩୬-ବରର ଇନ୍ଦ୍ରିୟ ସ୍ପର୍ଶନ ବିଧି

ଦ୍ୱିରାଚମନଂ । ତତୋବରଃ ବାମେପାଣାବୁଦକମାଦାୟ ତେନୋଦକେନ ଅଙ୍ଗାନ୍ୟଭିମୃଶେତ୍ ମନ୍ତ୍ରେଣ । *ଓଁ ବାଙ୍ମ ଆସ୍ୟେଽସ୍ତୁ (ଇତି ମୁଖଂ କରାଗ୍ରେଣ) । ଓଁ ନମୋଃ ପ୍ରାଣେମେଽସ୍ତୁ ଇତି ତର୍ଜନ୍ୟଙ୍ଗୁଷ୍ଠାଭ୍ୟାଂ ଯୁଗପଦ୍ଦକ୍ଷିଣାଦି ନାସାରନ୍ଧ୍ରେ । ଓଁ ଅକ୍ଷ୍ଣୋଶ୍ଚକ୍ଷୁର୍ମେଽସ୍ତୁ (ଇତି ଅନାମିକାଙ୍ଗୁଷ୍ଠାଭ୍ୟାଂ ଚକ୍ଷୁଷୀ) । ଓଁ କର୍ଣ୍ଣୟୋ ଶ୍ରୋତ୍ରଂମେଽସ୍ତୁ (ଇତି ମଧ୍ୟମାଙ୍ଗୁଷ୍ଠାଭ୍ୟାଂ ଦକ୍ଷିଣଂ କର୍ଣ୍ଣମଭିମୃଶ୍ୟ ତତୋବାମମନେନୈବ ମନ୍ତ୍ରେଣ) । ଓଁ ବାହ୍ୱୋର୍ବଲଂମେଽସ୍ତୁ (ଇତି ଦକ୍ଷିଣବାହୁଂ ତତୋବାମମନେନୈବ ମନ୍ତ୍ରେଣ) । ଉର୍ବୋରୋଜୋମେଽସ୍ତୁ (ଇତି ଉରୁଦ୍ୱୟଂ ହସ୍ତେନ) । ଓଁ ଅରିଷ୍ଟାନିମେଽଙ୍ଗାନି ତନୂସ୍ତନ୍ୱାମେ ସହ ସନ୍ତୁ (ଇତି ଶିରଃ ପ୍ରଭୃତୀନି ପାଦାନ୍ତାନି ସର୍ବାଣ୍ୟଙ୍ଗାନି ଉଭାଭ୍ୟାଂ ହସ୍ତାଭ୍ୟାମାଲଭତେ ।)

ବ୍ୟାଖ୍ୟା-ତତ୍ପରେ ବର ଦ୍ୱିରାଚମନ କରି ବାମହସ୍ତରେ ଜଳ ଧରି ଦକ୍ଷିଣହସ୍ତରେ ଅଙ୍ଗୁଳିଦ୍ୱାରା ତଳଲିଖିତ ମନ୍ତ୍ର ଅନୁସାରେ କ୍ରମରେ ଇନ୍ଦ୍ରିୟସ୍ପର୍ଶ କରିବ । ଯଥା-

"ବାଙ୍ମଆସ୍ୟେଽସ୍ତୁ" ଏହି ମନ୍ତ୍ର ପଢ଼ି ଦକ୍ଷିଣହସ୍ତର ଅଙ୍ଗୁଳି ଅଗ୍ରରେ ବାମହସ୍ତରୁ ଜଳ ନେଇ ମୁଖ ସ୍ପର୍ଶ କରିବ । "ନସୋଃ ପ୍ରାଣୋମେଽସ୍ତୁ" ଏହି ମନ୍ତ୍ର ପଢ଼ି ତର୍ଜନୀ ଓ ଅଙ୍ଗୁଷ୍ଠଦ୍ୱାରା ଏକକାଳେ ବାମହସ୍ତରୁ ଜଳ ନେଇ ଦକ୍ଷିଣ ଓ ବାମ ନାସାରନ୍ଧ୍ରକୁ ସ୍ପର୍ଶ କରିବ । "ଅକ୍ଷ୍ଣୋଶ୍ଚକ୍ଷୁର୍ମେଽସ୍ତୁ" ଏହି ମନ୍ତ୍ର ପଢ଼ି ଅନାମିକା ଅଙ୍ଗୁଷ୍ଠଦ୍ୱାରା ଓ ଏକକାଳରେ ବାମହସ୍ତରୁ ଜଳ ନେଇ ଦକ୍ଷିଣ ଓ ବାମ ଚକ୍ଷୁ ସ୍ପର୍ଶ କରିବ । "କର୍ଣ୍ଣୟୋଃଶ୍ରୋତ୍ରମେଽସ୍ତୁ" ଏହି ମନ୍ତ୍ର ପଢ଼ି ମଧ୍ୟମା ଅଙ୍ଗୁଷ୍ଠଦ୍ୱାରା

---

ବରସ୍ୟ ଯା ଭବେଚ୍ଛାଖା ଦଦ୍ୟାତ୍ତଚ୍ଛାଖିନେଽପି ଚ ।
ମଧୂପର୍କଃ ପ୍ରଦାତବ୍ୟଃ କର୍ହିଚିନ୍ନାନ୍ୟଶାଖିନେ ॥ (ଗୃହ୍ୟପରିଶିଷ୍ଟେ)

ବ୍ୟାଖ୍ୟା-ଆତ୍ରେୟ କହିଅଛନ୍ତି ମଧୁପର୍କ, ସୋମରସ, ଜଳ ଓ ପଞ୍ଚପ୍ରାଣାହୁତିଅନ୍ନ, ଏମାନେ ଉଚ୍ଛିଷ୍ଟ ହୁଅନ୍ତି ନାହିଁ । ମଧୂପର୍କ ଅବଶେଷ ସହିତ ପାତ୍ର ନିଜ ଶାଖାଧ୍ୟାୟି ବ୍ରାହ୍ମଣକୁ ଦେବ । ଅନ୍ୟଶାଖାଧ୍ୟାୟିଙ୍କୁ ଦେବ ନାହିଁ ।

*-ହରିହରେଣ ପ୍ରାଣାୟତନସ୍ପର୍ଶଃ ସଜଳହସ୍ତେନ କର୍ତ୍ତବ୍ୟ ଉକ୍ତ୍ୟୁକ୍ତଂ ତଦତୀବ ମନ୍ଦଂ । ନହ୍ୟତ୍ର ସୂତ୍ରେ ଜଳଗ୍ରହଣମସ୍ତି । ସର୍ବାଙ୍ଗାଲମ୍ଭେ ଉଭାଭ୍ୟାଂ ଦସ୍ତାଭ୍ୟାମାଲମ୍ଭଃ ଉକ୍ତଃ ସୋଽପି ନ ଯୁକ୍ତଃ । ଆଚମ୍ୟେତି ଗ୍ରହଣଂ । ଆଚାନ୍ତୋଦକାୟେତି ବକ୍ଷ୍ୟମାଣଦ୍ୱାଦନାଚାନ୍ତସ୍ୟୈବ ପ୍ରାଣାୟତନସମ୍ମର୍ଶନଂ ମାଭୂଦିତ୍ୟେତଦର୍ଥଂ ।



ବାମହସ୍ତରୁ ଜଳ ନେଇ ଦକ୍ଷିଣକର୍ଣ୍ଣକୁ ସ୍ପର୍ଶ କରିବ । ପୁନର୍ବାର ସେହି ମନ୍ତ୍ର ପଢ଼ି ସେହିପରି ଜଳ ନେଇ ବାମକର୍ଣ୍ଣ ସ୍ପର୍ଶ କରିବ । "ବାହ୍ୱୋର୍ବଲଂ ମେଽସ୍ତୁ" ଏହି ମନ୍ତ୍ର ପଢ଼ି ଅଙ୍ଗୁଳିମାନଙ୍କ ଅଗ୍ରଦ୍ୱାରା ବାମହସ୍ତରୁ ଜଳ ନେଇ କହୁଣୀ ନୁଆଁଇ ଦକ୍ଷିଣବାହୁ ସ୍ପର୍ଶ କରିବ । ସେହି ଜଳ ଦେଇ ଏହି ମନ୍ତ୍ର ପଢ଼ି ବାମବାହୁ ସ୍ପର୍ଶ କରିବ । "ଉର୍ବୋରୋଜୋମେଽସ୍ତୁ" ଏହି ମନ୍ତ୍ର ପଢ଼ି ବାମହସ୍ତରେ ଥିବା ଜଳରେ ଦକ୍ଷିଣହସ୍ତର ସମସ୍ତ ଅଙ୍ଗୁଳି ବୁଡ଼ାଇନେଇ କ୍ରମେ ଉରୁ ଦ୍ୱୟକୁ ସ୍ପର୍ଶ କରିବ । " ଅରିଷ୍ଟାନିମେଽଙ୍ଗାନିସ୍ତନୁସ୍ତନ୍ୱା ମେ ସହ ସନ୍ତୁ" ଏହି ମନ୍ତ୍ର ପଢ଼ି ଉଭୟ ହସ୍ତରେ ଅବଶିଷ୍ଟ ଜଳ ଲେପନ କରି ଶିରଠାରୁ ଆରମ୍ଭ କରି ପାଦପର୍ଯ୍ୟନ୍ତ ସମସ୍ତ ଅଙ୍ଗ ସ୍ପର୍ଶ କରିବ ।

## ୪୩୭-ପୂର୍ବଜାମାତୃ ବରଣ

ତତଃ ପୁର୍ବ ଜାମାତ୍ରେ କୃତାର୍ଘ୍ୟାୟ ବସ୍ତ୍ରଦାନଂ । ଭଗବତଃ ଶ୍ରୀ ବାସୁଦେବସ୍ୟ ପ୍ରୀତୟେ ବ୍ରାହ୍ମଣାୟ ଆସନଂ ଦଦାନି ଏବଂ ପାଦସନଂ, ପାଦ୍ୟଂ, ଅର୍ଘ୍ୟ, ଗନ୍ଧଂ, ପୁଷ୍ପଂ ଚ ଦଦାନି । ଅକ୍ଷତେନ ଅର୍ଚ୍ଚନୀୟଂ କରୋମି । ଅର୍ଚ୍ଚିତଂ । ସ୍ୱର୍ଚ୍ଚିତମସ୍ତୁ । ବ୍ରାହ୍ମଣଂ ନାରାୟଣସ୍ୱରୂପମୁପକଳ୍ପୟାମି । "ଉପକଳ୍ପିତୋଽସ୍ମୀ" ତି ପ୍ରତିବଚନଂ ଓଁ ନମୋ ବ୍ରହ୍ମଣ୍ୟେତି ପ୍ରଣମ୍ୟ-ଫଳପୁଷ୍ପାକ୍ଷତବସ୍ତ୍ରଦ୍ୱୟଂ ଗୃହୀତ୍ୱା । ଓଁ ବିଷ୍ଣୁରଦ୍ୟେହେତ୍ୟାଦି ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଇତ୍ୟନ୍ତଂ ବାକ୍ୟଂ କୃତ୍ୱା । ଅମୁକସଗୋତ୍ରାୟ ଅମୁକବେଦାନ୍ତର୍ଗତ ଅମୁକଶାଖଶାଖୈକଦେଶାଧ୍ୟାୟିନେ ଅମୁକଦେବଶର୍ମଣେ ପୂର୍ବଜାମାତ୍ରେ କୃତାର୍ଘ୍ୟାୟ ଅମୁକସଗୋତ୍ର । ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରାୟ ମମ ଦୁହିତ୍ରମୁକଦେବ୍ୟାଃ+କନ୍ୟାୟା ବିବାହେ କର୍ତ୍ତବ୍ୟେ ତଦଙ୍ଗତୟା ବଦଂ ବସୋଯୁଗଳଂ ଗନ୍ଧ ପୁଷ୍ପାକ୍ଷତନାରିକେଳଫଳସହିତଂ ବୃହସ୍ପତିଦୈବତଂ ତୁଭ୍ୟମହଂ ସଂପ୍ରଦଦେ । ଇଦଂ ବସ୍ତ୍ରଦ୍ୱୟଂ ବୃହସ୍ପତିଦୈବତଂ ପ୍ରତି ଗୃହଣାମୀତି ପୂର୍ବଜାମାତା ବହବଶ୍ଚେତ୍ ପ୍ରତ୍ୟେକମେବଂ ବଦେୟୁଃ । ସ୍ୱସ୍ତି ୩ କୋଦାତ୍ କସ୍ମାଽଦାତ୍ କାମୋଽଦାତ୍ କାମାୟାଽଦାତ୍ କାମୋଦାତା କାମଃ ପ୍ରତିଗ୍ରହୀତା କାମୈତତ୍ତେ ଇବକାମ ସତା ଭୂନଜାମହୈ । ଇତି ପଠେତ୍ ଇଦଂ ତୁ ସମାଚାରାତ୍ ।

---

* ଯାବନ୍ନ ପୂଜୟେ ଦେବୀଂ ତାବଦ୍ଦେବୀ ନ କନ୍ୟକା । କନ୍ୟାଦେବୀ ସମାଖ୍ୟାତା ଷଡ଼ର୍ଘ୍ୟାଦୌ ବିଧୀୟତେ । ସ୍ମୃତିରିୟଂ ପଦ୍ଧତୌ ଦୃଷ୍ଟା ।

ବ୍ୟାଖ୍ୟା-ତତ୍ପରେ ପୂର୍ବଜାମାତାଙ୍କୁ ଆସନ, ପାଦାସନ, ପାଦ୍ୟ, ଅର୍ଘ୍ୟ, ଗନ୍ଧ, ପୁଷ୍ପ, ଅକ୍ଷତ ଦେଇ ପୂଜା କରିବ । ତତ୍ପରେ ଗନ୍ଧ, ପୁଷ୍ପାକ୍ଷତ ଓ ନାରିକେଳ ସହିତ ବସ୍ତ୍ରଦ୍ୱୟକୁ ଉପରୋକ୍ତ ବାକ୍ୟ ପଢ଼ି ଦେବ । ପୂର୍ବଜାମାତା ବସ୍ତ୍ର ଗ୍ରହଣ କରିବା ସମୟରେ ସ୍ୱସ୍ତି ମନ୍ତ୍ର ପାଠ କରିବେ । ଏକରୁ ଆଉ ଅଧିକ ଜାମାତା ଥିଲେ ତାହାଙ୍କୁ ପୂର୍ବନିୟମ ଅନୁସାରେ ବସ୍ତ୍ରାଦି ଦେଇ ପୂଜା କରିବ ।

## *୪୩୮-ଦ୍ୱିତୀୟବରଣ

ତତଃ କନ୍ୟାପିତା ପ୍ରଥମ ବରଣବଦ୍ଦ୍ୱିତୀୟବରଣଂ କରୋତି ଉପବୀତଂ ବିନା (୪୨୦ ନମ୍ବର ଦେଖ) ବାକ୍ୟେ ଅୟଂ ତୁ ବିଶେଷଃ । ଓଁ ବିଷ୍ଣୁଃ ଶୁକ୍ଲାମ୍ବରଧରମିତ୍ୟାରଭ୍ୟ ଏବଂବିଧବିଶେଷଣବିଶିଷ୍ଟାୟଂ ପୁଣ୍ୟତିଥୌ ଇତ୍ୟନ୍ତଂ ପଠିତ୍ୱା । ଅମୁକସଗୋତ୍ରଂ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନଂ ଅମୁକଦେବଶର୍ମ୍ମାଣଂ ବ୍ରାହ୍ମଣମର୍ଚ୍ଚିତଂ । ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଅମୁକସଗୋତ୍ରାଂ ମମ ଦୁହିତରଂ ଅମୁକଦେବୀଂ କନ୍ୟାଂ ବିବାହବିଧିନା ଦାତୁମନେନ ବାସୋଯୁଗଳେନ ଗନ୍ଧପୁଷ୍ପାକ୍ଷତାନାରିକେଳଫଳକାଞ୍ଚନସହିତେନ ବୃହସ୍ପତ୍ୟାଦିଦୈବତେନ ବସ୍ତ୍ରେନ ତ୍ୱାମହଂ ବୃଣେ । "ବୃତୋଽସ୍ମୀତି" ବରଃ । ପ୍ରଥମବରଣବଦ୍‌ଗନ୍ଧାଦୀନ୍ ଦଦ୍ୟାତ୍ "ପ୍ରାଣାପାନୌ ମେ ତର୍ପୟ" ଇତ୍ୟାରଭ୍ୟ "ଅଳଂକରଣମସି" ପର୍ଯ୍ୟନ୍ତଂ କୁର୍ଯ୍ୟାଦୁପବୀତଂ ବିନା ।

ବ୍ୟାଖ୍ୟା-କନ୍ୟାପିତା ପ୍ରଥମେ ବରଣ ଅନୁସାରେ ବାକ୍ୟ ପଢ଼ି ଯଜ୍ଞୋପବୀତ ବ୍ୟତିରେକ ଆଉ ବସ୍ତ୍ର ଆଦି ସମସ୍ତ ସାମଗ୍ରୀ ବର ହସ୍ତରେ ଦେବେ । ବର ପ୍ରଥମବରଣ ଗ୍ରହଣ ମନ୍ତ୍ର ପଢ଼ି ସମସ୍ତ ଦ୍ରବ୍ୟ ଗ୍ରହଣ କରିବ ।

---

*୪୩୮-ଦୁଇଥର ବରଣ କରିବାର ପୁରାତନ ପ୍ରଥା-ବସ୍ତ୍ରଯୁଗ୍ମଂ ମାଲ୍ୟଯୁଗ୍ମଂ ନାରିକେଳଂ ସକାଞ୍ଚନଂ । ଉପବୀତଂ ବିନା ଗନ୍ଧଂ ଗୃହୀତ୍ୱା ସୁସମାହିତଃ । ତ୍ରେତାୟାଂ ସୂର୍ଯ୍ୟବଂଶେଜ୍ୟ ବଶିଷ୍ଠବଚନେନ ଚ । ବିବାହେ ରାମଚନ୍ଦ୍ରସ୍ୟ ଜନକୋ ବରଣଦ୍ୱୟଂ । ଉଦକଂ ଦୀୟତେ ପୂର୍ବଂ ପଶ୍ଚାତ୍କନ୍ୟା ପ୍ରଦୀୟତେ । ଏଷ ଏବ ବିଧିର୍ଜ୍ଞେୟୋ ବିବାହେ ବରଣଦ୍ୱୟଂ ।

ବ୍ୟାଖ୍ୟା-ସୂର୍ଯ୍ୟବଂଶର ଗୁରୁଦେବ ବଶିଷ୍ଠଙ୍କ ବଚନ ଅନୁସାରେ ତ୍ରେତାଯୁଗରେ ଜନକରାଜ ରାମଚନ୍ଦ୍ରଙ୍କ ବିବାହ ସମୟରେ ଦୁଇଥର ବରଣ କରି ପ୍ରଥମେ ଜଳଦାନ ତତ୍ପରେ କନ୍ୟାଦାନ କରିଥିଲେ । ଏ ପ୍ରଥା ପୂର୍ବରୁ ପ୍ରଚଳିତ ଥିବାରୁ ବିବାହରେ ଦୁଇଥର ବରଣ କରାଯାଏ ।



## ୪୩୯-ବିବାହର ଅଗ୍ନିସ୍ଥାପନ

ତତଃ ପଞ୍ଚଭୂସଂସ୍କାରାନ୍ କୃତ୍ୱା ଅଗ୍ନେଃ ସ୍ଥାପନଂ । *ଯୋଜକନାମାଗ୍ନୟେ ନମଃ ଯୋଜକନାମାଗ୍ନିମାବାହୟାମି ଯୋଜକନାମାଗ୍ନେଽତ୍ରାଗଚ୍ଛ । ଏହାର ସମୁଦାୟ ବିଧି ୧୪୬,୧୪୭ ନମ୍ବର ଦେଖ ।

## ୪୪୦-ବରକନ୍ୟାଙ୍କର ସମ୍ମୁଖୀକରଣ

ଅଗ୍ନେଃପଶ୍ଚାତ୍ କଟଂ *ତୃଣପୁଲୀଂ ବା ସ୍ଥାପୟିତ୍ୱା କନ୍ୟା ବସ୍ତ୍ରଦ୍ୱୟଂ "ଜରାଂଗଚ୍ଛ" "ଯାଅକୃନ୍ତଂ" ଇତି ମନ୍ତ୍ରଦ୍ୱୟେନାଭିମନ୍ତ୍ର୍ୟ କନ୍ୟାଂ ପରିଧାପ୍ୟ ହସ୍ତେ ଶର୍କରାଂ ଦତ୍ତ୍ୱା ବେଦ୍ୟାମାନୀୟ ଅଗ୍ନେରୁତ୍ତରତଃ ପିତୁରଙ୍କେ ଉପବେଶୟେତ୍ । ଜତଃ କନ୍ୟାପିତା ପ୍ରତ୍ୟଙ୍ମୁଖୀଂ କନ୍ୟା ପ୍ରାଙ୍ମୁଖଂ ବରଂ ଚ ପରସ୍ପରଂ ସମଞ୍ଜେଥାଂ ଇତି ବଦେତ୍ ।

---

*୪୩୯ (୧ଟି)-ଭୂସଂସ୍କାର ହୋଇଥିବା ଆସାଦିତ ଦ୍ରବ୍ୟକୁ ଦିଗମାନଙ୍କରେ ପକାଇବାର ଫଳାଫଳ-

ପୂର୍ବେ ଶତ୍ରୁ ଭୟଂ କୁର୍ଯ୍ୟାଦ୍ଦକ୍ଷିଣେ ମରଣଂ ଧ୍ରୁବଂ ।
ପଶ୍ଚିମେ ରୋଗଶୋକୌ ଚ ସର୍ବସିଦ୍ଧି ତଥୋତ୍ତରେ ।

ବ୍ୟାଖ୍ୟା-ପୂର୍ବରେ ଭୂସଂସ୍କାର କୁଶ ପକାଇଲେ ଶତ୍ରୁ ଭୟ, ଦକ୍ଷିଣ ଦିଗରେ ମୃତ୍ୟୁ, ପଶ୍ଚିମରେ ରୋଗ ଓ ଶୋକ ହୁଏ ଏବଂ ଉତ୍ତର ଦିଗରେ ପକାଇଲେ ସର୍ବସିଦ୍ଧି ହୁଏ ।

*୪୩୯ (୨ଟି) ଆସାଦିତ ଦ୍ରବ୍ୟର ସ୍ଥାନ ପରିମାଣ-

ଅଙ୍ଗୁଳିତ୍ରୟମାନେନ । (ବିଶେଷ ବିଧି ୧୪୯ ନମ୍ବର ଟିପ୍ପଣୀ ଦେଖ ।)

*୪୪୦-କଟ (ମସିଣା) ଆସନର ପ୍ରଶଂସା-

ହସ୍ତମାତ୍ରଂ ମୂଳତୃଣଂ କଟଂ କୁର୍ଯ୍ୟାତ୍ପ୍ରଯତ୍ନତଃ ।
ବସ୍ତ୍ରେଣାଚ୍ଛାଦୟେଚ୍ଛୈବମାସନଂ ଚ ପ୍ରଦାପୟେତ୍ ॥୧॥
ମଙ୍ଗଳାନି ଚ ସର୍ବାଣି କାର୍ଯ୍ୟାଣି ଚ କଟୋପରି ।
ପ୍ରକୁର୍ଯ୍ୟାତ୍ତତ୍ତୃଣଂ ଯତ୍ତୁବିଧାତ୍ରା ନିର୍ମିତଂ ପୁରା ॥୨॥
କଟଂ ପ୍ରବେଶ୍ୟ ବରକନ୍ୟୟୋଷ୍ଟ ବିବାହକାର୍ଯ୍ୟଂ କୁରୁତେ ମୁଦାଚେତ୍ ।
ଆୟୁର୍ଧନାପତ୍ୟବିବୃଦ୍ଧି ହେତୁର୍ଭବେଦିତି ବେଦବିଦୋବଦନ୍ତି ॥୩॥
ନ କରୋତି କଟଂଯସ୍ତୁ କନ୍ୟାଦାନେ ପ୍ରଯତ୍ନତଃ ।
କନ୍ୟା ବନ୍ଧ୍ୟା ରୋଗିଣୀ ସ୍ୟାଦାତୁଃ କର୍ମ ଚ ନିଷ୍ଫଳଂ ॥୪॥
କଟଃ ପଟଃ କମ୍ବଳଶ୍ଚ ସୂର୍ଣ୍ଣରୌପ୍ୟାଦିପାତ୍ରକଂ ।
ନବୀନବର ଏଷାଂ ତୁ ସ୍ପର୍ଶାସ୍ପର୍ଶଂ ନ ଦୋଷଭାକ୍ ॥୫॥
ସରସ୍ୱତୀବିବାହେ ତୁ କଟରାକ୍ଷସମାରଣେ ।
କଟସ୍ୟାସ୍ତରଣଂ ଚକ୍ରେପ୍ରଶସ୍ତଂତୁକଟାସନଂ ॥୬॥ (ଗୃହ୍ୟସୂତ୍ରକାରିକାୟାଂ)

**ବ୍ୟାଖ୍ୟା**-ଅଗ୍ନିର ପଶ୍ଚାଭାଗରେ ପରୁଡ଼ିମସିଣା ଅଥବା ତୃଣ ପୁଳାଏ ରଖି କନ୍ୟାର ପିନ୍ଧିବା ଲୁଗା ଓ ଉତ୍ତରୀୟ ବସ୍ତ୍ରକୁ "ଜରାଂଗଛ" "ଯାଅକୃନ୍ତଂ" ଏ ଦୁଇ ମନ୍ତ୍ରଦ୍ୱାରା ଅଭିମନ୍ତ୍ରଣ କରି କନ୍ୟାକୁ ପିନ୍ଧାଇ ଓ ଉତ୍ତରୀୟ ବସ୍ତ୍ର ଘୋଡ଼ାଇ ଦେଇ ଏବଂ କନ୍ୟା ହସ୍ତରେ ଶର୍କରାଦେଇ ଆଣି ବେଦୀ ଉପରେ ଅଗ୍ନିର ଉତ୍ତର ଭାଗରେ ପଶ୍ଚିମକୁ ମୁଖ କରି ପିତାଙ୍କ କୋଳରେ ବସାଇବ । ତତ୍ପରେ କନ୍ୟାପିତା ପଶ୍ଚିମାଭିମୁଖୀ କନ୍ୟା ଓ ପୂର୍ବାଭିମୁଖୀ ବରକୁ କହିବେ ତୁମ୍ଭେ ଦୁହେଁ ପରସ୍ପରରେ ସମ୍ମୁଖୀନ ହୁଅ ।

ତତଃ ସମ୍ମୁଖୀଭୂୟ ବରଃ ପଠତି । ତତ୍ପରେ ବର ସମ୍ମୁଖୀନ ହୋଇ ତଳଲିଖିତ ମନ୍ତ୍ର ପଢ଼ିବ) ମନ୍ତ୍ରୋଯଥା-ଓଁ ସସଞ୍ଜନ୍ତୁ ବିଶ୍ୱଦେବାଃ ସମାପୋହ୍ୟଦୟାନି ନୌ । ସମ୍ମାତରିଶ୍ୱା ସଂଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ ।

## ୪୪୧-କନ୍ୟାପିତାର କାଞ୍ଚନଦାନ

ତତଃ କନ୍ୟାପିତା ଲଗ୍ନବିଶୁଦ୍ଧାର୍ଥଂ ସଙ୍କଳ୍ପପୂର୍ବକଂ କିଞ୍ଚିତ ସୁବର୍ଣ୍ଣଦାନଂ କୁର୍ଯ୍ୟାତ୍ । (ତତ୍ପରେ କନ୍ୟାପିତା ଲଗ୍ନବିଶୁଦ୍ଧି ନିମିତ୍ତ କାଞ୍ଚନଦାନ କରିବ) କୁଶ, ତିଳ, ତୁଳସୀପତ୍ର ସହିତଂ ଜଳଂ ଗୃହୀତା ବାକ୍ୟ କୁର୍ଯ୍ୟାତ୍ । (କନ୍ୟାପିତା ଦ୍ରବ୍ୟ ପୂଜା (୧୯୮ ନମ୍ବର ଦେଖ) ଓ ବ୍ରାହ୍ମଣପୂଜା (୧୪୮ ନମ୍ବରେ ଦେଖ) କରିସାରି ହସ୍ତରେ କୁଶ, ଖସା, ତୁଳସୀପତ୍ର ସହିତ ଜଳ ଧରି ନିମ୍ନଲିଖିତ ବାକ୍ୟ ପଢ଼ିବ । ତଦ୍ୟଥା-ଓଁ ବିଷ୍ଣୁର୍ନମ ଅଦ୍ୟ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶି ସ୍ଥିତେ ଶ୍ରୀଭାସ୍କରେ ଅମୁକ ରାଶିସ୍ଥିତେ ଶ୍ରୀ ଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥି ତେଷୁ ଭୌମାଦିଗ୍ରହଯୋଗଲଗ୍ନ କରଣମୁହୂର୍ତ୍ତାଂଶକେଷୁ

---

**ବ୍ୟାଖ୍ୟା**-ହସ୍ତ ପରିମାଣ ମୂଳଆଡୁ ତୃଣରେ କଟ (ପରୁଡ଼ି ମସିଣା) ଆସନ କରିବ ଏବଂ ତାହାକୁ ବସ୍ତ୍ରାଚ୍ଛାଦିତ କରି ତହିଁରେ ବରକନ୍ୟାଙ୍କୁ ବସାଇବ ।୧ । ସମସ୍ତ ମଙ୍ଗଳ କାର୍ଯ୍ୟରେ କଟଆସନ ଉପରେ ବସି କର୍ମ କରିବା ବିଧେୟ । ଯେହେତୁ ତାହା ପୂର୍ବରୁ ବିଧାତାଙ୍କଦ୍ୱାରା ନିର୍ମିତ ହୋଇଅଛି ।୨ । ବେଦଜ୍ଞ ବ୍ୟକ୍ତିମାନେ କହିଅଛନ୍ତି ଯେ କଟ (ମସିଣା) ଉପରେ ବରକନ୍ୟାଙ୍କୁ ଆନନ୍ଦରେ ବସାଇ ବିବାହ କଲେ ତାହାଙ୍କର ଆୟୁଷ, ଧନ ଓ ସନ୍ତାନ ବୃଦ୍ଧି ହୁଏ ।୩ । ଯେଉଁ ବ୍ୟକ୍ତି କନ୍ୟା ଦାନରେ କଟ ଆସନ ନ କରେ ତାହାର କନ୍ୟା ବନ୍ଧ୍ୟା ହୁଏ ଓ ରୋଗିଣୀ ହୁଏ ଏବଂ ଦାତାର ଦାନକର୍ମ ମଧ୍ୟ ନିଷ୍ଫଳ ହୁଏ ।୪ । କଟ, ପଟ, କମ୍ବଳ, ସ୍ୱର୍ଣ, ରୌପ୍ୟାଦି ପାତ୍ର ଏବଂ ନୂତନ ବର ଏମାନଙ୍କର ସ୍ପର୍ଶାସ୍ପର୍ଶ ଦୂଷଣୀୟ ନୁହେଁ ।୫ । ସରସ୍ୱତୀ ବିଷ୍ଣୁଙ୍କ ସହିତ ବିବାହ ସମୟରେ କଟ ନାମକରାକ୍ଷସର ମୃତ୍ୟୁ ବାଞ୍ଛା କରି କଟଆସନ ବ୍ୟବହାର କରିଥିଲେ । ସେହି ଦିନଠାରୁ ବିଘ୍ନବିନାଶନିମିତ୍ତ କଟାସନ ବିବାହରେ ପ୍ରଶସ୍ତ ।୬ ।

 

ଏବଂ ବିଧବିଶେଷେଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରାୟ ଅମୁବେଦାନ୍ତର୍ଗତ ଅମୁକଶାଖାଶାଖୈକ ଦେଶାଧ୍ୟାୟିନେ ଅମୁକଦେବଶର୍ମଣେ ବ୍ରାହ୍ମଣାୟାର୍ଜିତାୟ ଅମୁକସଗୋତ୍ରଃ ଶ୍ରୀମାନ ଅମୁକଦେବଶର୍ମା ଅମୁକସଗୋତ୍ରାୟା ମମ ଦୁହିତୁରମୁକଦେବ୍ୟାଃ କନ୍ୟାୟାଃ ପାଣିଗ୍ରହଣସମୟେ ଲଗ୍ନାଦି ସର୍ବଦୋଷବ୍ୟାପୋହନାର୍ଥମିଦଂ ସୁବର୍ଣ୍ଣଂ ସଦକ୍ଷିଣମଗ୍ନିଦୈବତକଂ ତୁଭ୍ୟମହଂ ସଂପ୍ରଦଦେ । ହିରଣ୍ୟଗର୍ଭ ଗର୍ଭସ୍ଥଂ ହେମବୀଜଂ ବିଭାବସୋଃ । ଅନନ୍ତପୁଣ୍ୟ ଫଳଦମତଃ ଶାନ୍ତିଂ ପ୍ରୟଚ୍ଛ ମେ । ଇତି ପ୍ରାର୍ଥୟେତ୍ । (ବ୍ରାହ୍ମଣହସ୍ତେ ଜଳ ଓ ଦକ୍ଷିଣା ସହିତ କାଞ୍ଚନ ଦେଇ ଏହି ପ୍ରାର୍ଥନା ମନ୍ତ୍ର ପଢ଼ି ପ୍ରାର୍ଥନା କରିବ ।)

## ୪୪୨-କନ୍ୟାଦାନ*

କନ୍ୟାପିତା ଶଙ୍ଖେ ଜଳଂ ପୂରିୟତ୍ୱା । ଗନ୍ଧପୁଷ୍ପାକ୍ଷତଦୁର୍ବାକୁଶତ୍ରୟ-ବାଗ୍‌ଦାନସମ୍ବନ୍ଧିଗୁବାକଦ୍ୱୟଂ ଚ ପ୍ରକ୍ଷିପ୍ୟ ବ୍ରାହ୍ମଣାନନୁଜ୍ଞାପ୍ୟ କନ୍ୟାଦାନାର୍ଥଂ ବାଗ୍‌ଦାନ ବନ୍‌ମହାବାକ୍ୟଂ କୁର୍ଯ୍ୟାତ୍ । (ମହାବାକ୍ୟ ୪୨୨ ନମ୍ବର ଦେଖ) ।

---

*୪୪୨ (୧ଟି)-କନ୍ୟାଦାନରେ ବ୍ରାହ୍ମଣାନୁମତିର ପ୍ରମାଣ ବାକ୍ୟ-

ବ୍ୟାସାଙ୍ଗିରଃ ସମାବିପ୍ରାଃ ସର୍ବେ ଚ ବେଦପାରଗାଃ ।
ମମ ପୁତ୍ରୀବିହାହେତ ସର୍ବେ ରାଜ୍ଞା ପ୍ରଦୀୟତାଂ । (ଗୃହ୍ୟ ସୂତ୍ରକାରିକାୟାଂ)

ବ୍ୟାଖ୍ୟା-ଆପଣ ସମସ୍ତ ବ୍ରାହ୍ମଣମାନେ ବେଦପାରଗ ଅଙ୍ଗିରାଋଷି ଓ ବ୍ୟାସଦେବଙ୍କ ତୁଲ୍ୟ ଅଟନ୍ତି । ଅତଏବ ମୋହର କନ୍ୟା ବିବାହରେ ଅନୁମତି ପ୍ରଦାନ କରନ୍ତୁ ।

୪୪୨ (୨ଟି)-କେଉଁ କେଉଁ କର୍ମରେ ମହାବାକ୍ୟ କରାଯାଏ ତାହାର ପ୍ରମାଣ-

କନ୍‌କାଶ୍ୱତିଳାନାଗଦାସୀରଥମହୀମୃଗାଃ ।
କନ୍ୟା ଚ କପିଳାଧେନୁ ର୍ମହାଦାନାନି ବୈ ଦଶ (ଗୃହସୂତ୍ରକାରିକାୟାଂ)

ବ୍ୟାଖ୍ୟା-(୧) କନକ (ସୁବର୍ଣ୍ଣ ପୁରୁଷାଦି) (୨) ଅଶ୍ୱ, (୩) ତିଳ (ତିଳପୁରୁଷ ପ୍ରଭୃତି) (୪) ଗଜ, (୫) ଦାସୀ, (୬) ରଥ, (୭) ପୃଥିବୀ, (୮) ମୃଗ, (୯) କନ୍ୟା ଓ (୧୦) କପିଳାଧେନୁ । ଏହି ଦଶଗୋଟି ଦାନକୁ ମହାଦାନ କହନ୍ତି । ଏହି ମହାଦାନମାନଙ୍କରେ ମହାବାକ୍ୟ ପଢ଼ିବ ।

୪୪୨ (୩ଟି) କେଉଁ କେଉଁ କର୍ମରେ ପ୍ରବରର ଉଚ୍ଚାରର କରିବ ତାହାର ପ୍ରମାଣ-

ତୁଳାପୁରୁଷଦାନେ ଚ ତଥାଚ ହାଟକାଚଳେ ।
କନ୍ୟାଦାନେ ତଥୋତ୍ସର୍ଗେ କୀର୍ତ୍ତୟେତ୍‌ପ୍ରବରାଦିକଂ । (ମତ୍ସ୍ୟପୁରାଣେ)

ବ୍ୟାଖ୍ୟା-ତୁଳା ପୁରୁଷ ଦାନରେ, ଅଧିକ ପରିମାଣ ସୁବର୍ଣ୍ଣ ଦାନରେ ଏବଂ କନ୍ୟାଦାନ ସମୟରେ ଉତ୍ସର୍ଗରେ ପ୍ରବରାଦି ଉଚ୍ଚାରଣ କରିବ ।

୪୪୨ (୪ଟି) ଦାନରେ ନାମ ଗୋତ୍ରାଦି ଉଚ୍ଚାରଣ ପ୍ରମାଣ-

ନାମଗୋତ୍ରେ ସମୁଚ୍ଚାର୍ଯ୍ୟ ପ୍ରଦଦ୍ୟାତ୍ ଶ୍ରଦ୍ଧୟାନ୍ୱିତଃ ।
ପରିତୁଷ୍ଟେନ ଭାବେନ ତୁଭ୍ୟଂ ସଂପ୍ରଦଦେ ଇତି । (ବ୍ୟାସଃ)

ଓଁ ବିଷ୍ଣୁଃ ୩ ଗଙ୍ଗାଦ୍ୟାଃ ସରିତ ଇତ୍ୟାରଭ୍ୟ ଦେବବ୍ରାହ୍ମଣାଗ୍ନିସନ୍ନିଧୌ ଇତ୍ୟନ୍ତଂ ପଠିତ୍ୱା (କନ୍ୟାଂ କନକସମ୍ପନ୍ନାଂ କନକାଭରଣୈର୍ଯୁତାଂ । ଦାସ୍ୟାମି ବିଷ୍ଣବେ ତୁଭ୍ୟଂ ବ୍ରହ୍ମଲୋକଜିଗୀଷୟା । ବିଶ୍ୱମ୍ଭରଃ ସର୍ବଭୂତାଃ ସାକ୍ଷିଣ୍ୟ ସର୍ବଦେବତାଃ । ଇମାଂ କନ୍ୟାଂ ପ୍ରଦାସ୍ୟାମି ପିତୃଣାଂ ତାରଣାୟ ଚ । ଇତି ମନ୍ତ୍ରଦ୍ୱୟଂ ଚ ଦ୍ୱୟ ଚ ପଠିତ୍ୱା) । ବରପକ୍ଷେ-ଅମୁକସଗୋତ୍ରସ୍ୟ ଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃପ୍ରପୌତ୍ରାୟ ।

---

ବ୍ୟାଖ୍ୟା-ମହର୍ଷି ବ୍ୟାସ କହିଅଛନ୍ତି ଯେ "ନାମଗୋତ୍ର ଉଚ୍ଚାରଣ କରି ଶ୍ରଦ୍ଧାଯୁକ୍ତ ଆନନ୍ଦିତ ଚିତ୍ତରେ ମୁଁ ତୁମ୍ଭଙ୍କୁ ସମ୍ପ୍ରଦାନ କରୁଅଛି" ଏରୂପ କହି ସମସ୍ତ ଦାନ କରିବ ।

**୪୪୨ (୫ଟି)-ଦାନର ଭୋଜନ ବିଚାର-**

ଭୁକ୍ତ୍ୱା ସମୁଦ୍ୱହେତ୍ କନ୍ୟାଂ ସାବିତ୍ରୀଗ୍ରହଣେ ତଥା ।
ଉପୋଷିତଃ ସୁତାଂ ଦଦ୍ୟାଦର୍ଚ୍ଚିତାୟ ଦ୍ୱିଜନ୍ମନେ୍ । (ବ୍ୟାସଃ)

ବ୍ୟାଖ୍ୟା-ବର ଭୋଜନ କରି କନ୍ୟା ଗ୍ରହଣ କରିପାରେ, ବ୍ରହ୍ମଚାରୀ ମଧ୍ୟ ଭୋଜନ କରି ସାବିତ୍ରୀ ମନ୍ତ୍ର ଗ୍ରହଣ କରିପାରେ; ମାତ୍ର କନ୍ୟାପିତା ଜଳାହାର ନ କରି ବରକୁ କନ୍ୟାଦାନ କରିବେ । ଏହା ବ୍ୟାସ କହିଅଛନ୍ତି ।

**୪୪୨ (୬ଟି)-ଦାତା ଓ ପ୍ରତିଗ୍ରହିତାର ଉପବେଶନ ନିୟମ-**

ସର୍ବତ୍ର ପାଙ୍ମୁଖୋଦାତା ଗ୍ରହୀତା ଚ ଉଦଙ୍ମୁଖଃ ।
ଏଷଦାନ ବିଧିର୍ଦୃଷ୍ଟୋ ବିବାହେ ତୁ ବ୍ୟତିକ୍ରମଃ ।

ବ୍ୟତିକ୍ରମ ଇତି ପ୍ରତ୍ୟୁଙ୍ମୁଖଃ ସଂପ୍ରଦାତା । ପ୍ରତିଗ୍ରହୀତା ପ୍ରାଙ୍ମୁଖଃ । ତଥାଚ ସମ୍ବନ୍ଧ ବିବେକେ-

ପ୍ରାଙ୍‌ମୁଖାୟାଭିରୂପାୟ ବରାୟ ଶୁଚିସନ୍ନିଧୌ ।
ଦଦ୍ୟାତ୍ ପ୍ରତ୍ୟଙ୍ମୁଖଃ କନ୍ୟାଂ କ୍ଷଣେ ଲକ୍ଷଣଂସଯୁତେ ।

ବ୍ୟାଖ୍ୟା-ସବୁଦାନରେ ଦାତା ପୂର୍ବମୁଖ ଓ ଗ୍ରହୀତା ଉତ୍ତରମୁଖ ହୋଇ ବସିବେ । ଦାନ ମାତ୍ରରେ ଏହି ବିଧି ପ୍ରଚଳିତ । କିନ୍ତୁ ବିବାହ ସମୟରେ ଏହା ବ୍ୟତିକ୍ରମ ହୋଇଥାଏ । ଅର୍ଥାତ୍ ଦାତା ପଶ୍ଚିମମୁଖ ଓ ଗ୍ରହିତା ପୂର୍ବମୁଖ ହୋଇ ବସିବେ । ସମ୍ବନ୍ଧ ବିବେକରେ କଥିତ ଅଛି ପୂର୍ବମୁଖସ୍ଥିତ ସୁଲକ୍ଷଣ ବରକୁ ଅଗ୍ନିସମୀପରେ ଶୁଭକ୍ଷଣରେ ପଶ୍ଚିମମୁଖ ହୋଇ କନ୍ୟାଦାନ କରିବ ।

**୪୪୨ (୭ଟି) ଚୂଡ଼ାକରଣ, ମେଖଳାବନ୍ଧନ, ସାବିତ୍ରୀପ୍ରଦାନ ଓ ବେଦପଠନ ଇତ୍ୟାଦି କର୍ମରେ ବ୍ରହ୍ମଚାରୀ ବସିବାର ଦିନ ନିରୂପଣ ।**

ସାବିତ୍ରୀଗ୍ରହଣାଦ୍ୟବେଦପଠନେ, ସ୍ୟାନ୍ ମେଖଳାବନ୍ଧନେ ।
ଚୂଡ଼ାକର୍ମଣି ଚୋପନାୟବପନେ ଗୃହଣଂଷ୍ଟ ପ୍ରତ୍ୟଙ୍‌ମୁଖଃ ।

ବ୍ୟାଖ୍ୟା-ସାବିତ୍ରୀମନ୍ତ୍ରଗ୍ରହଣରେ, ଆଦ୍ୟବେଦପଠନରେ, ମେଖଳା ବନ୍ଧନରେ, ଚୂଡ଼ାକର୍ମରେ ଉପନୟନରେ କ୍ଷୌରରେ ବ୍ରହ୍ମଚାରୀ ପଶ୍ଚିମକୁ ମୁଖ କରି ବସିବ ।

 

ଅମୁକସଗୋତ୍ରସ୍ୟଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃ ପୁତ୍ରାୟ । ଅମୁକସ୍ୟଗୋତ୍ରସ୍ୟ ଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃ ପୁତ୍ରାୟ । (ଇତର ବରପକ୍ଷେ-ଅମୁକବର୍ମଣେ, ଅମୁକଗୁପ୍ତାୟ, ଅମୁକଦାସାୟ ଇତି ବିଶେଷଃ) । (କନ୍ୟା ପକ୍ଷେ) ଅମୁକସଗୋତ୍ରସ୍ୟ ଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃ ପ୍ରପୌତ୍ରୀଂ । ଅମୁକସଗୋତ୍ରସ୍ୟ ଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃ ପୌତ୍ରୀଂ । ଅମୁକଗୋତ୍ରସ୍ୟ ଅମୁକପ୍ରବରସ୍ୟ ଅମୁକଦେବଶର୍ମଣଃ ପୁତ୍ରୀଂ । ଏବଂ ତ୍ରିବାରୋଚ୍ଚାରଣାନ୍ତରଂ ଅମୁକସଗୋତ୍ରାୟ ଅମୁକପ୍ରବରାୟ* ଅମୁକବେଦାନ୍ତର୍ଗତଅମୁକଶାଖାଶାଖୈକଦେଶ-ଧ୍ୟାୟିନେଅମୂକଦେବଶର୍ମଣେ ବ୍ରାହ୍ମଣାୟ ବରାୟାର୍ଚ୍ଚିତାୟା ଅମୁକସଗୋତ୍ରାଂ ଅମୁକପ୍ରବରାଂଅମୁକଦେବୀଂ କନ୍ୟାଂ ଯଥା-ବସ୍ତ୍ରାଲଂକୃତାଂ-ପ୍ରଜାପତିଦୈବାତାଂପ୍ରଜାପ୍ରାଦନାର୍ଥଂକନ୍ୟାଦାନଫଳପ୍ରାପ୍ତିକାମଃ ଭଗବତଃ ଶ୍ରୀବାସୁଦେବସ୍ୟ ପ୍ରିତୟେ ତୁଭ୍ୟମହଂ ସଂପ୍ରଦଦେ । ଇତ୍ୟୁକ୍ତ୍ୱା । ଶଙ୍ଖସ୍ଥିତଗୁବାକଦ୍ୱୟଗନ୍ଧପୁଷ୍ପାକ୍ଷତକୁଶସହିତମୁଦକଂ ଦତ୍ତ୍ୱା କନ୍ୟାହସ୍ତଂ ବରହସ୍ତେ ଦଦ୍ୟାତ୍ । (ଗୋତ୍ରପ୍ରବର ନିୟମ ୩୭୧, ୩୭୨ ଦେଖ) ।

---

୪୪୨ (୮ଟି)-କନ୍ୟାଦାନଫଳ-

କୂପାରାପ୍ରପାକାରୀ ତଥା ବୃକ୍ଷାଦିରୋପକଃ ।
କନ୍ୟାପ୍ରଦଃ ସେତୁକାରୀ ସ୍ୱର୍ଗମାପ୍ନୋତ୍ୟସଂଶୟଂ । (ଯମଃ)

ବ୍ୟାଖ୍ୟା-ଯମ କହିଅଛନ୍ତି, କୂପ, ଆରାମ ଓ ପ୍ରପା (ଜଳସତ୍ର) ପ୍ରସ୍ତୁତକାରୀ, ବୃକ୍ଷରୋପଣକାରୀ, କନ୍ୟାଦାତା ଓ ସେତୁ ନିର୍ମାଣକାରୀ ଏମାନେ ନିଃସନ୍ଦେହରେ ସ୍ୱର୍ଗ ପ୍ରାପ୍ତ ହୁଅନ୍ତି ।

୪୪୨ (୯ଟି)-କେଉଁଠାରୁ ପୁରୁଷ ଶର୍ମାପଦବାଚ୍ୟ ହେବ ଓ କନ୍ୟା ଦେବୀ ପଦବାଚ୍ୟ ହେବ ତାହାର ପ୍ରମାଣବାକ୍ୟ-

ଶର୍ମାଖଃ ପ୍ରାପ୍ତଗାୟତ୍ରିନାମଖଃ ସ୍ୟାତ୍ତଦା ଶିଶୁଃ ।
ନାମ୍ନୀ ତୃପୁତ୍ରଗୋତ୍ରା ଯା ଦେବୀ ତତ୍ପରତଃ ସ୍ମୃତା । (ଗୃହ୍ୟସୂତ୍ରକାରିକାୟାଂ)
ଦେବ୍ୟନ୍ତାଶ୍ଚ ସ୍ତ୍ରୀୟଃ ସର୍ବା ଦାସ୍ୟନ୍ତାଃ ଶୂଦ୍ରକାତୟଃ । (ବିଶ୍ୱକୋଷେ)

ବ୍ୟାଖ୍ୟା-ଉପନୀତ ନ ହୋଇଥିବା ଶିଶୁର କେବଳ ନାମ ମାତ୍ର ଥାଏ ଏବଂ ଉପନୀତ ହେଲେ ତାହାର ନାମରେ ଶର୍ମାପଦ ଯୋଗହୁଏ । ସେହିପରି କନ୍ୟା ପିତୃଗୋତ୍ରାରେ ଥିବାପର୍ଯ୍ୟନ୍ତ କନ୍ୟା ଥାଏ । ଅନ୍ୟଗୋତ୍ରକୁ ଗଲେ ଦେବୀ ବୋଲାଏ । ବିବାହ ପରେ ଦ୍ୱିଜାତି ସ୍ତ୍ରୀମାନଙ୍କର ଦେବୀସଂଜ୍ଞା ଓ ଶୂଦ୍ରସ୍ତ୍ରୀର ଦାସୀସଂଜ୍ଞା ହୁଏ ।

*-ଗୋତ୍ରପ୍ରବର୍ତ୍ତକମୁନି ବ୍ୟବର୍ତ୍ତକୋମୁନିଗଣଃ । (ଶବ୍ଦକଳ୍ପଦ୍ରୁମେ)

ଯେଉଁ ଋଷି ଯଜ୍ଞରେ ଯେଉଁ ଗୋତ୍ରରେ ନିମନ୍ତ୍ରିତ ହୋଇଥିବେ ସେହି ଋଷି ସେହି ଗୋତ୍ରର ପ୍ରବର ।

## ୪୪୩-ହସ୍ତଗ୍ରନ୍ଥି

ତତଃ ସମାଚାରାତ୍ କୁଶରଜ୍ଜ୍ୱା ବରକନ୍ୟା ଯୋର୍ହସ୍ତବନ୍ଧନଂ*କୁର୍ଯ୍ୟାନ୍ମନ୍ତ୍ରେଣ ।

ଓଁ ଯନ୍ତେ ଦେବୀ ନିର୍ଋତି ରାବବନ୍ଧ ପାଶଂ ଗ୍ରୀବା ସ୍ୱବିଚୃର୍ତ୍ୟଂ । ତନ୍ତେ ବିଷ୍ୟାମ୍ୟାୟୁଷୋ ନମଦ୍ଧ୍ୟାଦଥୈତଂ ପିତୁମଦ୍ଧି ପ୍ରସୂତଂ । ନମୋଭୂତ୍ୟୈ ୟେଦଂ ଚକାର ।

(ତତ୍ପରେ ସମାଚାର (ଦେଶାଚାର) ମତେ ଏହି ଉପରୋକ୍ତ ମନ୍ତ୍ର ପଢ଼ି ବରକନ୍ୟାଙ୍କ ଦକ୍ଷିଣହସ୍ତକୁ ମିଶାଇ କୁଶରଜ୍ଜୁରେ ବାନ୍ଧିବ ।)*

ତତଃ କନ୍ୟୋତ୍ତରୀୟବସ୍ତ୍ରାଗ୍ରେ ବରୋତ୍ତୀୟବସ୍ତ୍ରମୂଳେ କ୍ରମୁକଦ୍ୱୟଂ ଦୂର୍ବାଦିକଂ ଚ ନିକ୍ଷିପ୍ୟ ଗ୍ରନ୍ଥିଂ ବଧ୍ନୀୟାତ୍ ।

ବ୍ୟାଖ୍ୟା-ତତ୍ପରେ ବରହାତରେ ଦେଇଥିବା ଗୁଆ ଓ ଅକ୍ଷତାଦି ମଧ୍ୟରୁ ଗୋଟିଏ ଗୁଆ ଓ ଅକ୍ଷତାଦି କନ୍ୟାର ଉତ୍ତରୀୟ ବସ୍ତ୍ରର ଅଗ୍ରଭାଗରେ ବାନ୍ଧିବ । ସେହିପରି ଅପର ଗୋଟିଏ ଗୁଆ ଓ ଅକ୍ଷତାଦି ବରର ଉତ୍ତରୀୟ ବସ୍ତ୍ରର ମୂଳଭାଗରେ ବାନ୍ଧିବ ଓ ଉଭୟ ଗଣ୍ଠିକୁ ଏକତ୍ର କରି ଗୋଟିଏ ଗଣ୍ଠି ପକାଇଦେବ ।

## ୪୪୪-ବରର ସ୍ୱସ୍ତିମନ୍ତ୍ରପାଠ

ତତୋବରଂ ସ୍ୱସ୍ତି ତ୍ରିବାରଂ ପଠେତ୍ । ଗାୟତ୍ରୀଂ ତ୍ରିଃ ପଠେତ୍ । (ତତ୍ପରେ ବର ସ୍ୱସ୍ତି ତିନିବାର ପଢ଼ି ଗାୟତ୍ରୀ ତିନିଥର ପଢ଼ିବ) ଦ୍ୟୌସ୍ତ୍ୱା ଦଦାତୁ । ପୃଥିବୀ ତ୍ୱା ପ୍ରତିଗୃହଣାତୁ । ଇତି ମନ୍ତ୍ରେଣ ଇମାଂ କନ୍ୟାଂ ପ୍ରଜାପତି ଦୈବାତଂ ପ୍ରତିଗୃହ୍ଣାମିତି

---

*୪୪୩ (୧ଟି)-ରଜ୍ଜୁବନ୍ଧନର କାରଣ-

ଅପୂର୍ବେୟଂ ହରେର୍ମାୟା ତ୍ରିଗୁଣା ରଜ୍ଜୁରୂପିଣୀ ।
ତୟା ବଦ୍ଧଂ ନ ଚଳତି ଚିତ୍ତଂ ଧାବତି ଧାବତି ।।
ଅପୂର୍ବା ତ୍ରିଗୁଣା ରଜ୍ଜୁ ର୍ବିଧାତ୍ରା ଯା ଚ ନିର୍ମିତା ।
ସତ୍ୱଂରଜସ୍ତମଶ୍ଚୈବ ଶୁଭବନ୍ଧନମୁଚ୍ୟତେ ।। (ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-ଈଶ୍ୱରଙ୍କର ନିର୍ମିତ ସତ୍ୱ, ରଜ, ତମ ଏହି ତ୍ରିଗୁଣଯୁକ୍ତ ମାୟାରୂପ ରଜ୍ଜୁରେ ହସ୍ତବନ୍ଧନ ହେଲେ ସର୍ବଦା ଧାବମାନ ହେଉଥିବା ମନ ଆବଦ୍ଧ ହୁଏ, ଅତଏବ ବରକନ୍ୟାଙ୍କର ହସ୍ତବନ୍ଧନ ଶୁଭ ବୋଲି କଥିତ ହୁଏ ।

*୪୪୩ (୨ଟି)-ହସ୍ତବନ୍ଧନ ପ୍ରାର୍ଥନା-

ଅମ୍ବେ ଅମ୍ବାଳିକେ ମାତର୍ନମସ୍ତେ ଶଙ୍କରପ୍ରିୟେ ।
ବରକନ୍ୟାଦ୍ୱୟଂ ଦେବି ରକ୍ଷ ତ୍ୱଂ ସର୍ବତୋଭୟାତ୍ ।



ବଦତି* (ଉପରୋକ୍ତ ମନ୍ତ୍ର ପଢ଼ି ବର କହିବ ମୁଁ କନ୍ୟା ଗ୍ରହଣ କଲି) ତତଃ କାମସ୍ତୁତିଂ ପଠେତ୍ । ଓଁ କୋଽଦାତ୍ କସ୍ମାଦାତ୍ କାମୋଦାତ୍ କାମାୟାଦାତ୍ କାମୋଦାତା କାମଃ ପ୍ରତିଗ୍ରହୀତା। କାମୈତରେ ତବ କାମ ସବା ଭୂନଜାମହେ । (ତଦନନ୍ତର ବର ହି କାମସ୍ତୁତି ପାଠ କରିବ ।)

## ୪୪୫-କନ୍ୟାଦାନ ଦକ୍ଷିଣାବାକ୍ୟ

କନ୍ୟାପିତା ପୁନଃ ଶଙ୍ଖୋଦକଂ ଗୃହୀତ୍ୱା କୃତୈତତ୍‌କନ୍ୟାଦାନକର୍ମଣଃ ସୁପ୍ରତିଷ୍ଠାସିଦ୍ଧ୍ୟର୍ଥଂ ଇଦଂ ସୁବର୍ଣ୍ଣ ଗୋମିଥୁନଂ ଚ ତୁଭ୍ୟମହଂ ସଂପ୍ରଦଦେ ।

ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ଶଙ୍ଖରେ ଜଳ ଧରି ଉପଭୋକ୍ତ ବାକ୍ୟ ପଢ଼ି ସୁବର୍ଣ୍ଣ ଓ ଗୋମିଥୁନ (ଷଣ୍ଢ ଓ ଗାଈ) ଦକ୍ଷିଣା ବରକୁ ଦେବ ।

## ୪୪୬-ଯୌତୁକ ଦାନ *

ତତୋଦାତା ଜଳଭାଜନ ଭୋଜନ-ଭାଜନ-ଗୋ ମହିଷ୍ୟଂଶ୍ୱ-ଗଜ ଦାସ-ଦାସୀ ଭୂବାହନାଲଂକାରଦି ଯଥାବିଭବସଂକଳ୍ପପୂର୍ବକଂ ବରାୟ ଦଦ୍ୟାତ୍ । ସମାଚାରଦନ୍ୟଦପି ସୁବର୍ଣ୍ଣଂ ରଜକଂ ଧାନ୍ୟଂ ଖଟ୍ୱାଂ ଶଯ୍ୟାଂ ବ୍ୟଜନଂ ଛତ୍ରଂ ପୀଠଂ ଉପାନହୌ କମଣ୍ଡଳୁଂ ଚ ଯଥାସମ୍ଭବଂ ଯୌତୁକଂ ଦଦ୍ୟାତ୍ । ଅନ୍ୟେଽପି ବାନ୍ଧବାଦୟଃ ଯଥାସମ୍ଭବଂ ଯୌତୁକଂ ଦଦ୍ୟୂଃ ।

---

*ତତଃ କନ୍ୟାପିତା ପଠେତ୍-

ଗୌରୀଂ କନ୍ୟାମିମାଂ ବିପ୍ର ଯଥାଶକ୍ତି ବିଭୂଷିତାଂ ।
ଗୋତ୍ରାୟ ଶର୍ମଣେ ତୁଭ୍ୟଂ ଦତ୍ତାଂ ବିପ୍ର ସମାଶ୍ରୟ ॥
କେନ୍ୟ ମମାଗ୍ରତୋ ଭୂୟାଃ କନ୍ୟେ ମେ ଦେବି ପାର୍ଶ୍ୱୟୋଃ ।
କନ୍ୟେ ମେ ପୃଷ୍ଠତୋ ଭୂୟା ତ୍ତଦାନାନ୍ ମୋକ୍ଷମାପ୍ନୁ ୟାଂ ।
ମମ ବଂଶେ ସମୁଦ୍ଭୂତା ପାଳିତା ବତ୍ସରାଷ୍ଟକଂ ॥
ତୁଭ୍ୟଂ ବିପ୍ର ମୟା ଦତ୍ତା ପୁତ୍ରପୌତ୍ରପ୍ରବର୍ଦ୍ଧିନୀ ।
ନ୍ୟୁନବୟସ୍କାୟାଂ ପାଳିତା ବର୍ଷସପ୍ତକମିତ୍ୟାଦ୍ୟୂହ୍ୟଃ ॥

(ଇତି ଗଦାଧରଃ)

*କନ୍ୟାଦାନାମାରଭ୍ୟ ଚତୁର୍ଥୀ କର୍ମପର୍ଯ୍ୟନ୍ତଂ ବିବାହଶବ୍ଦେନୋଚ୍ୟତେ ତନ୍ମଧ୍ୟେ କନ୍ୟାୟା ସ୍ୱପିତ୍ରାଦିଭ୍ୟୋ ଯଦ୍ଧନଂ ପ୍ରାପ୍ତଂ ତଦ୍‌ଯୌତୁକଂ (ହରିହରଃ) ।

ବ୍ୟାଖ୍ୟା-କନ୍ୟାଦାନଠାରୁ ଚତୁର୍ଥୀ ପର୍ଯ୍ୟନ୍ତ ସଂମୟକୁ ବିବାହ କୁହାଯାଏ । ଏଥିମଧ୍ୟରେ ଯେକୌଣସି ପଦାର୍ଥ କନ୍ୟାକୁ ପିତ୍ରାଦିମାନେ ଦିଅନ୍ତି ତାହାକୁ ଯୌତୁକ କହନ୍ତି ।

ବ୍ୟାଖ୍ୟା-ଦେଶାଚାର ଅନୁସାରେ କନ୍ୟାପିତା ବରକୁ ଜଳପାତ୍ର, ଭୋଜନ ପାତ୍ର, ଗୋରୁ, ମଇଁଷି, ଅଶ୍ୱ, ଗଜ, ଦାସ, ଦାସୀ, ଭୂମି, ବାହାନ, ଅଳଙ୍କାର, ସୁନା ରୂପା, ଧାନ, ତମ୍ବା, ଖଟ, ଶେଯ, ବିଛଣା, ଛତା, ପୀଢ଼ା, ଯୋତା ଓ ଗଡୁ ପ୍ରଭୃତି ଉପକରଣାଦି ଯଥାଶକ୍ତି ଯୌତୁକ ଦେବେ ।

## ୪୪୭-ହସ୍ତଗ୍ରନ୍ଥି ମୋଚନ

ତତଃ ସଭର୍ତ୍ତୃକା ସ୍ତ୍ରୀ ବରକନ୍ୟାୟୋହିସ୍ତବେଷ୍ଟିତକୁଶଗ୍ରନ୍ଥିଂ ବିମୁଚ୍ୟ ତୟୋର୍ବସ୍ତ୍ରଗ୍ରନ୍ଥିଂ ଦୃଢ଼ୀକୁର୍ଯ୍ୟାତ୍ । ଦୁର୍ବାବଦରାକ୍ଷତଂ ଦତ୍ତ୍ୱା* ବନ୍ଧାପନାଂ ଚ କୁର୍ଯ୍ୟାତ୍ ।

ବ୍ୟାଖ୍ୟା-ତତ୍ପରେ ସଧବାସ୍ତ୍ରୀ ବରକନ୍ୟାଙ୍କର ହସ୍ତଗ୍ରନ୍ଥି ମୋଚନ କରି ସେ ଦୁହିଁଙ୍କର ବସ୍ତ୍ର ଗ୍ରନ୍ଥି ଏକତ୍ର କରି ଦୃଢ଼ରୂପେ ବାନ୍ଧିଦେବ ଓ ବରକନ୍ୟାଙ୍କ ଉପରେ ଅକ୍ଷତ ଦୂବ ବରକୋଳିପତ୍ର ପକାଇ ସାତଦୀପରେ ବନ୍ଧାପନା କରିବେ ।

## ୪୪୮-କନ୍ୟାକୁ ବରସମୀପେ ଆନୟନ ଓ ନାମଗ୍ରହଣ

ତତୋବରଃ କନ୍ୟାୟା ଦକ୍ଷିଣହସ୍ତଂ ଗୃହୀତ୍ୱା ପତିଗ୍ରହସ୍ଥା ନାନ୍ନିଷ୍କ୍ରାମ୍ୟ ଆତ୍ମସମୀପମାନୟେନ୍ମନ୍ତ୍ରେଣ ।

ବ୍ୟାଖ୍ୟା-ତତ୍ପରେ ବର କନ୍ୟାର ଦକ୍ଷିଣ ହସ୍ତକୁ ଧରି ପ୍ରତିଗ୍ରହସ୍ଥାନକୁ ଉଠାଇନେଇ ତଳଲିଖିତ ମନ୍ତ୍ର ପଢ଼ି ଆପଣାର ସମୀପକୁ ଅଣି ଦକ୍ଷିଣଭାଗରେ କଟମସିଣା ଉପରେ ବସାଇବ ।

ମନ୍ତ୍ରୋଯଥା-ଓଁ ଯଦୈଷୀ ମନସା ଦୂରଂ ଦିଶୋଽନ ପବମାନୋବା । ହିରଣ୍ୟ ପର୍ଣ୍ଣୋ ବୈ କର୍ଣ୍ଣଃ ସତ୍ୱା ମନ୍ମନସାଂ କରୋତୁ । *ଅମୁକଦେବୀତି କନ୍ୟା ନାମଗ୍ରହଣଂ ।

(କନ୍ୟା ବରପକ୍ଷରୁ ଅମୁକଦେବୀ ନାମ ଗ୍ରହଣ କରିବ)

---

*୪୪୭ (୧ଟି)-ସାଦୀପରେ ବନ୍ଧାପନା କରିବାର ବିଧି ।

ଅଙ୍ଗରିଷ୍ଟପ୍ରଶାନ୍ତ୍ୟର୍ଥଂ ସପ୍ତବର୍ତ୍ତିକୟାଳତିଂ ।
ଅକ୍ଷତଂ ବଦରୀଂ ଦୂର୍ବାଂ ଦତ୍ତ୍ୱା ଶିରସି ତ୍ରିଃପୁନଃ ।

(ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-ଅଙ୍ଗରିଷ୍ଟ ଶାନ୍ତି ନିମିତ୍ତ ଅକ୍ଷତ, ଦୂବ, ବରକୋଳିପତ୍ର ମସ୍ତକରେ ଦେଇ ତିନିଥର ସାତଦୀପରେ ଆଳତି (ବନ୍ଧାପନା) କରିବ ।

*-ଅସାବିତି୧୫-ସୂତ୍ର-କନ୍ୟାନାମଗ୍ରହଣଂ ମନ୍ତ୍ରାନ୍ତେ । (ଇତିକର୍କଃ)



## ୪୪୯-କନ୍ୟା ସମର୍ପଣ ବିଧି

ତତୋନାର୍ଯ୍ୟଃ କନ୍ୟାଂ ଗୃହଂ ନୀତ୍ୱା ବସ୍ତ୍ରାଦିନା ସଚ୍ଛୀକୃତ୍ୟ ତଣ୍ଡୁଳପୂର୍ଣ୍ଣହସ୍ତାଂ *ତାଂ ପୁନଃ ପିତୁରଙ୍କେ କୁର୍ଯ୍ୟୁଃ ।

ବ୍ୟାଖ୍ୟା-ତତ୍ପରେ ସଧବା ସ୍ତ୍ରୀମାନେ କନ୍ୟାକୁ ଗୃହକୁ ନେଇ ବସ୍ତ୍ର ଓ ଅଳଙ୍କାରଦ୍ୱାରା ସୁସଜ୍ଜିତ କରି ଆଣି କନ୍ୟା ହସ୍ତରେ ଚାଉଳ ଆଞ୍ଜୋଳି ଦେଇ ପିତାକୋଳରେ ଦେବେ ।

ପିତା କନ୍ୟାଂ ମନ୍ତ୍ରେଣ ସମର୍ପୟେତ୍ । ତଦ୍ୟଥା-ତ୍ୱଂ ଗୌରୀ ଶଙ୍କରାୟାସ୍ମୈ ବରାୟ ବିନିବେଦିତା । ବେସସନ୍ତତିବୃଦ୍ଧ୍ୟର୍ଥଂ କନ୍ୟେ ବାଞ୍ଛିତମସ୍ତୁ ମେ ।*

## ୪୫୦-ବରକନ୍ୟାଙ୍କର ପରସ୍ପର ସମୀକ୍ଷଣ ବିଧି

ଅଥ ଏତୌ ବଧୂବରୌ କନ୍ୟାପିତା ପରସ୍ପରଂ ସମୀକ୍ଷେଥାମିତି ପ୍ରେଷେଣ ସମୀକ୍ଷୟତି । ତତଃ ସମୀକ୍ଷମାଣୋ ବରଃ ପଠତି ।

ବ୍ୟାଖ୍ୟା-ଅନନ୍ତର କନ୍ୟାପିତା ବରକନ୍ୟାଙ୍କୁ କହିବେ ତୁମ୍ଭେ ଦୁହେଁ ପରସ୍ପର ଦେଖା ଦେଖି ହୁଅ । ତତ୍ପରେ ବର କନ୍ୟାକୁ ଦେଖିବା ସମୟରେ ତଳଲିଖିତ ଚାରିକାଣ୍ଡି ମନ୍ତ୍ର ପଢ଼ିବ । ମନ୍ତ୍ରୋଯଥା-

ଓଁ ଅଘୋରଚକ୍ଷୁରପତିଘ୍ନ୍ୟେଧି ଶିବା ପଶୁଭ୍ୟଃ ସୁବର୍ଚ୍ଚାଃ । ବୀରସୂର୍ଦେବକାମା ସ୍ୟୋନା ଶନ୍ନୋ ଭବ ଦ୍ୱିପଦେଶଂ ଚତୁଷ୍ପଦେ । ସୋମଃ ପ୍ରଥମୋ ବିବିଦେ ଗନ୍ଧର୍ବୋ ବିବିଦଉତ୍ତରଃ । ତ୍ୱତୀୟେଽଗ୍ନିଷ୍ଟେ ପତିସ୍ତୁରୀୟସ୍ତେ ମନୁଷ୍ୟଜାଃ । ସୋମୋଽଦଦଦ୍‌ଗନ୍ଧର୍ବାୟ ଗନ୍ଧର୍ବୋଽଦଦଦ୍‌ଗ୍ନୟେ । ରୟିଂ ଚ ପୁତ୍ରା ଙ୍ଂ ଶ୍ଚାଦାଦଗ୍ନିର୍ମହ୍ୟମଥୋଇମାଂ । ସାନଃ ପୁଷା ଶିବତମା ମୈରୟ ସାନ ଉରୁଷତି ବିହର । ଯଶ୍ୟାମୁଶନ୍ତଃ ପ୍ରହରାମ ଶେଫଂ ଯସ୍ୟା ମୁକାମା ବହବୋନିବିଷ୍ଟ୍ୟୈ । ଏତସ୍ୟ ମନ୍ତ୍ରସ୍ୟାନ୍ତେ ପରସ୍ପରନିରୀକ୍ଷଣଂ ।

---

*୪୪୯(ଟି)-ରିକ୍ତହସ୍ତରେ ନିମ୍ନଲିଖିତ ସ୍ଥାନକୁ ଯିବା ନିଷେଧ-

ସ୍ୱଗୃହଂ ଯଜ୍ଞଶାଳାଂ ଚ ବିବାହଂ ସିନ୍ଧୁ ମଜ୍ଜନଂ ।
ରିକ୍ତେ ହସ୍ତେ ନ ଗଚ୍ଛନ୍ତି ଈଶ୍ୱରଂ ଦୈବତଂ ଗୁରୁଂ ।।

ବ୍ୟାଖ୍ୟା-ସ୍ୱଗୃହ, ଯଜ୍ଞଶାଳା, ବିବାହ, ସମୁଦ୍ରସ୍ନାନ, ଈଶ୍ୱର, ଦେବତା ଓ ଗୁରୁଙ୍କ ନିକଟକୁ ରିକ୍ତ ହସ୍ତରେ ଗମନ କରିବ ନାହିଁ । ଅତଏବ ବରକନ୍ୟା ବେଦୀ ଉପରକୁ ଆଞ୍ଜୁଳି ନେଇଯିବେ ।

*-ଇତି କୃତ୍ୟକୌମୁଦ୍ୟାଂ ବିଦ୍ୟତେ ନାତ୍ର ମୂଳେ ।

## ୪୫୧-ବରକନ୍ୟାଙ୍କର ଅଗ୍ନିପ୍ରଦକ୍ଷିଣ

ତତଃ ପ୍ରଦକ୍ଷିଣମଗ୍ନିଂ ପରୀତ୍ୟ ପଶ୍ଚାଦଗ୍ନେଃ ପୂର୍ବସ୍ଥାପିତକଟୋପରି ଦକ୍ଷିଣପାଦଂ ଦତ୍ତ୍ୱା ବରଉପବିଶତି । ତଦ୍ଦକ୍ଷିଣେ ବଧୂତ୍ତପବିଶତି ।

ବ୍ୟାଖ୍ୟା-ତତ୍ପରେ ବର କନ୍ୟା ଦୁହେଁ ବ୍ରହ୍ମା ଓ ଅଗ୍ନିଙ୍କ ମଧ୍ୟ ଦେଇ ଅଗ୍ନି ପ୍ରଦକ୍ଷିଣ କରି ଅଗ୍ନିର ପଶ୍ଚାଦ୍ ଭାଗରେ ପୂର୍ବରୁ ସ୍ଥାପିତ କଟମସିଣା ଉପରେ ବର ପ୍ରଥମେ ଦକ୍ଷିଣପାଦ ଦେଇ ବସିବ ଏବଂ କନ୍ୟା ବରର ଦକ୍ଷିଣ ଦିଗରେ ବସିବ ।

## ୪୫୨-ପାଣିପାଦାର୍ଘ୍ୟ ବିଧି

ଅଥ ଲୌକିକବ୍ୟବହାରାତ୍ କନ୍ୟାପିତା ଚ ଉଭୌ ନବବସ୍ତ୍ରଂ ପରିଧାୟ ବେଦ୍ୟାଂପୀଠୋପରି କ୍ରମୂକଂସ୍ଥାପୟିତ୍ୱା ତତ୍ର ବ୍ରହ୍ମାଣଂବିଷ୍ଣୁଂମହେଶ୍ୱରଂ ଚ ଗନ୍ଧପୁଷ୍ପାଦିନା ସଂପୂଜ୍ୟ ଶଙ୍ଖେ ଅର୍ଘ୍ୟଜଳଂ ଗୃହୀତ୍ୱା "ଆବ୍ରହ୍ମନ୍ନି" ତି ମନ୍ତ୍ରେଣ ବ୍ରହ୍ମଣେ "ତଦ୍‌ବିଷ୍ଣୋ" ରିତି ମନ୍ତ୍ରେଣ ବିଷ୍ଣବେ "ତ୍ର୍ୟମ୍ବକ" ମିତି ମନ୍ତ୍ରେଣ ମହେଶ୍ୱରାୟ ଚଅର୍ଘ୍ୟଂ ଦତ୍ତ୍ୱା ସ୍ୱ ସ୍ୱ ପୂର୍ବଶାସନସ୍ଥବ୍ରାହ୍ମଣେଭ୍ୟଃ ପୃଥକ ପୃଥକ୍ ଅର୍ଘ୍ୟଂ

ବ୍ୟାଖ୍ୟା-କନ୍ୟାପିତା ଓ ବରପିତା ଉଭୟେ ନବବସ୍ତ୍ର ପିନ୍ଧି ବେଦୀରେ ପୀଢ଼ା ଉପରେ ଗୁଆ ରଖି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଗନ୍ଧ ପୁଷ୍ପ ଦେଇ ପୂଜା କରି ଶଙ୍ଖରେ ଅର୍ଘ୍ୟଜଳ ଧରି "ଆବ୍ରାହ୍ମନ୍ ବ୍ରାହ୍ମଣୋ ବ୍ରହ୍ମବର୍ଚ୍ଚସୀ ଜାୟତା ମାରାଷ୍ଟ୍ରେ ରାଜନ୍ୟଃ । ଶୁରଇଶ ବ୍ୟୋତି ବ୍ୟାଧି ମହାରତୋଜାୟତାଂ ।" ଏହି ମନ୍ତ୍ର ପଢ଼ି

---

*୪୫୧-ବରକନ୍ୟାଙ୍କର ଅଗ୍ନି ପ୍ରଦକ୍ଷିଣ ନିୟମ-

ଦମ୍ପତ୍ୟୋର୍ଗଚ୍ଛତୋ ସ୍ତତ୍ର ବ୍ରହ୍ମାଗ୍ନ୍ୟୋରନ୍ତରା ଗ୍ରତି । (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ବରକନ୍ୟା ଦୁହେଁ ବ୍ରହ୍ମା ଓ ଅଗ୍ନି ଏ ଦୁହିଁଙ୍କର ମଧ୍ୟଭାଗ ଦେଇ ଅଗ୍ନି ପ୍ରଦକ୍ଷିଣ କରିବେ ।

*୪୫୨ (୧ଟି)-ସମର୍ପଣ ବିଧି-ବ୍ରାହ୍ମଣେତରପକ୍ଷେ-

ଦଶ ଦୋଷଃ ପରିତ୍ୟାଜ୍ୟାଃ ଶରଣଂ ତ୍ୱମତଃପରା ।
ପାଲିତେୟଂ ଚ ମତ୍ପୁତ୍ରୀ ଦତ୍ତା ପଥହରୀତକୀ ।

ବ୍ୟାଖ୍ୟା-କନ୍ୟାପିତା ପାଞ୍ଚଗୋଟି ହରିଡ଼ା ହାତରେ ଧରି ବରପିତାଙ୍କୁ କହିବେ କି ମୋହର ଅତି ଯତ୍ନରେ ପାଳିତା ଏହି କନ୍ୟା ସହିତ ପାଞ୍ଚଗୋଟି ହରୀତକୀ ଆପଣଙ୍କୁ ସମର୍ପଣ କରି ଶରଣ ପଶିଲି । ଆପଣ କନ୍ୟାର ତଳଲିଖିତ ଦୋଷ ମାର୍ଜନା କରିବେ ।

କନ୍ୟା କନକସମ୍ପନ୍ନା କନ୍ୟାଭରଣ ଭୂଷିତା ।
ପାଳନୀୟା ଚ ତ୍ୱତ୍‌ପୁତ୍ରୀ ପଞ୍ଚପୂଗୀ ପ୍ରଗୃହ୍ୟତାଂ ॥

 

ବ୍ରହ୍ମାଙ୍କୁ, ଓଁ ତଦ୍‌ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ । ଦିବୀବ ଚକ୍ଷୁରାତତଂ" । ଏହି ମନ୍ତ୍ର ପଢ଼ି ବିଷ୍ଣୁଙ୍କୁ ଏବଂ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ । ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍" । ଏହି ମନ୍ତ୍ର ପଢ଼ି ମହେଶ୍ୱରଙ୍କୁ ଅର୍ଘ୍ୟଜଳ ଦେବେ । ତତ୍ପରେ "ଅମୁକଶାସନସ୍ଥିତବ୍ରାହ୍ମଣେଭ୍ୟଃ ପାଣି ପାଦାର୍ଘ୍ୟଂ ନମଃ ଇତ୍ୟୁଚାର୍ଯ୍ୟ ସ୍ୱୀୟପୂର୍ବ ଶାସନସ୍ଥ ବ୍ରାହ୍ମଣେଭ୍ୟଃ ପାଣି ପାଦାର୍ଘ୍ୟ ଦଦ୍ୟାତ୍" (ଏହି ସ୍ୱନାମ ଚତୁର୍ଥ୍ୟନ୍ତ ମନ୍ତ୍ରରେ ସ୍ୱ ୨ ପୂର୍ବଶାସନସ୍ଥ ବ୍ରାହ୍ମଣମାନଙ୍କୁ ପାଣିପାଦାର୍ଘ୍ୟ ଦେବେ । ଏ ରୂପ ଲୋକବ୍ୟବହାର ଅଛି । ଏହା କେବଳ ବ୍ରାହ୍ମଣ ପକ୍ଷରେ ।)

ତତଃ କନ୍ୟାପିତା ବ୍ରାହ୍ମଭୋଜନୋତ୍ସର୍ଗଂ ଦକ୍ଷିଣାଦାନଂ ଅଚ୍ଛିଦ୍ରାବଧାରଣଂ ଆଶୀର୍ଗ୍ରହଣଂ ଚ କୃତ୍ୱା ଗୃହଂ ଗଚ୍ଛେତ୍ ।

ବ୍ୟାଖ୍ୟା-ତତ୍ପରେ କନ୍ୟାପିତା ବ୍ରାହ୍ମଣଭୋଜନୋତ୍ସର୍ଗ, ପୂର୍ଣ୍ଣପାତ୍ର ଦକ୍ଷିଣାଦାନ, ଅଚ୍ଛିଦ୍ରାବଧାରଣ ଆଶୀର୍ଗ୍ରହଣ ପ୍ରଭୃତି କର୍ମ ଶେଷ କରି ବେଦୀ ଛାଡ଼ି ଚାଲିଯିବେ ।

## ୪୫୩-ବରର ତିଳକାଞ୍ଚନ ଦାନ

ତତୋବରୋଲଗ୍ନାଦିଦୋଷଶାନ୍ତ୍ୟର୍ଥଂ ତିଳକାଞ୍ଚନଂ ଦଦ୍ୟାତ୍ । ତଦ୍‌ଯଥା- ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା- ମମାବୟୋର୍ବରକନ୍ୟାୟୋ ର୍ବିବାହମେଳକସମୟେ ଲଗ୍ନାଦିଦୋଷବ୍ୟପୋହନାର୍ଥଂ ତିଳକାଞ୍ଚନଦାନମହଂ କରିଷ୍ୟେ । ଇତି ସଂକଳ୍ପ୍ୟ ବ୍ରାହ୍ମଣଂ ସଂପୁଜ୍ୟ ହସ୍ତେ କୁଶଜଳଂ ଗୃହୀତ୍ୱା ବିଷ୍ଣୁର୍ନମ ଇତ୍ୟାଦି ପଠିତ୍ୱା ଅମୁସଗୋତ୍ରାୟ ଅମୁକ ବେଦାନ୍ତର୍ଗତ

---

ବ୍ୟାଖ୍ୟା-ବରପିତା ପାଞ୍ଚଗୋଟି ଗୁଆ କନ୍ୟାପିତାକୁ ଦେଇ କହିବେ ତୁମ୍ଭର ସ୍ୱର୍ଣ୍ଣ ଓ ନାନାବିଧ ଅଳଙ୍କାରଯୁକ୍ତ ଏହି କନ୍ୟା ମୋହର ପାଳନୀୟ । ବ୍ରହ୍ମାଙ୍କ ଛଡ଼ା ଆଉ ସମସ୍ତଙ୍କ ପାଇଁ ଏ ବିଧି ପ୍ରଚଳିତ ଅଛି ।

**୪୫୨ (୨ଟି)-ଦଶଦୋଷ ଲକ୍ଷଣ-**

ନିର୍ଲଜ୍ଜା ଚୌରବୃତ୍ତିଷ୍ଚ ଡାକିନୀ ବ୍ୟଭିଚାରିଣୀ ।
ମୁଖରା ହିଂସ୍ରକା ଦୁଷ୍ଟା ମିଥ୍ୟାବାଦିନ୍ୟତୋଷିଣୀ ।।
ପଳାୟନପରାଭୂୟେ ଦଶଦୋଷା ଇତି ସ୍ମୃତାଃ ।

ବ୍ୟାଖ୍ୟା-(୧) ନିର୍ଲଜ୍ଜା, (୨) ଚୋରଣୀ, (୩) ଡାଆଣୀ, (୪) ବ୍ୟଭିଚାରିଣୀ, (୫) କଟୁଭାଷିଣୀ, (୬) ଦୁଷ୍କର୍ମକାରିଣୀ, (୮) ମିଥ୍ୟାବାଦିନୀ, (୯) ସର୍ବଦା ଅସନ୍ତୁଷ୍ଟା, (୧୦) ବାରମ୍ୱାର ଶାଶୁଘରୁ ପଳାଉଥିବା । ଏହିଗୁଡ଼ିକୁ କନ୍ୟାର ଦଶଦୋଷ କହନ୍ତି ।

ଅମୁକଶାଖାଶାଖୈକଦେଶାଧ୍ୟାୟିନେଅମୁକଦେବଶର୍ମଣେ ବ୍ରହ୍ମଣାୟାର୍ଚ୍ଚିତାୟ, ଅମୁସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ମମାବୟୋର୍ବରକନ୍ୟୟୋର୍ବିବାହମେଳକ ସମୟେଲଗ୍ନାଦିଦୋଷ-ବ୍ୟପୋହନାର୍ଥମିଦଂ ସଦକ୍ଷିଣଂତିଳକାଞ୍ଚନଂ ଗନ୍ଧାଦ୍ୟର୍ଚ୍ଚିତଂ ବିଷ୍ଣୁ ଦୈବତକଂ ତୁଭ୍ୟମହଂ ସଂପ୍ରଦଦେ । ପ୍ରାର୍ଥନା-

ତ୍ରୈଲୋକ୍ୟନାଥ ଦେବେଶ ଲୋକାନୁଗ୍ର କାରକ ।
ଦାନେନାନେନ ଦେବେଶ ଯଥୋକ୍ତଫଳଦୋଭବ ॥

## ୪୫୪-ବିବାହରେ ବ୍ରହ୍ମାଙ୍କ ବରଣ *

ଆସନାଦିକଂ ଦତ୍ତ୍ୱା ଅର୍ଚ୍ଚିତଂ ସ୍ୱର୍ଚ୍ଚିତମସ୍ତୁ ବ୍ରାହ୍ମଣଂ ନାରାୟଣସ୍ୱରୂପମୁପକଳ୍ପ୍ୟ ନମୋଽସ୍ତନନ୍ତାୟେତି ପଠିତ୍ୱା ବସ୍ତ୍ରାଦିକଂ ଗୃହୀତ୍ୱା ଓଁ ବିଷ୍ଣୁ ରଦ୍ୟେହେତ୍ୟାଦି ପୂର୍ବୋକ୍ତବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଂ ଅମୁକବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନଂ ଅମୁଦେବଶର୍ମାଣଂବ୍ରାହ୍ମଣମର୍ଚ୍ଚିତଂ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମା ମମାବୟୋର୍ବରକନ୍ୟାୟୋର୍ବି ବାହାଙ୍ଗହୋମକର୍ମଣି ବସ୍ତ୍ରନାରିକେଳାକ୍ଷତ ଦିନା କୃତାକୃତାବେକ୍ଷକଃତ୍ୱନ ବ୍ରାହ୍ମଣଂ ତ୍ୱାମହଂ ବୃଣେ । 'ବୃତୋଽସ୍ମୀତି' ବ୍ରହ୍ମା ବଦେତ୍ । "ଯଥାବିହିତଂ କର୍ମପଶ୍ୟ" ଯଜମାନଃ । ପଶ୍ୟାମୀତି ବ୍ରହ୍ମା । ସୁରାଣାମସୁରାଣାଂ ଚେତି ପ୍ରାର୍ଥନା । (ଏହାର ବିଶେଷ ବିଧି ୧୪୯ ନମ୍ବର ଦେଖ ।)

---

*-୪୫୪ (ଟି) ବ୍ରହ୍ମା କାହିଁକି ଦକ୍ଷିଣରେ ବସନ୍ତି-

ଉତ୍ତରେ ସର୍ବତୀର୍ଥାନି ଉତ୍ତରେ ସର୍ବଦେବତାଃ ।
ଉତ୍ତରେ ପ୍ରୋକ୍ଷଣୀପାତ୍ରଂ ବ୍ରହ୍ମା ଦକ୍ଷିଣତଃ କଥଂ ।

ଉ- ଯମୋ ବୈବସ୍ୱତୋରାଜା ବସେଦକ୍ଷିଣତୋ ଦିଶି ।
ତସ୍ୟ ଦର୍ପବିନାଶାୟ ବ୍ରହ୍ମା ବସତି ଦକ୍ଷିଣେ ॥
ବ୍ରହ୍ମା ପ୍ରକାଶତେ ଯତ୍ର ତ୍ରୈଲୋକ୍ୟସ୍ୟ ସ୍ଥିତିଭବେତ୍ ।
ତେନାହଂ ବରୟେବ୍ରହ୍ମା ବସେଦ୍‌ଯଜ୍ଞସ୍ୟ ପାର୍ଶ୍ୱକେ ॥

(ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-(ପ୍ରଶ୍ନ)-ସର୍ବତୀର୍ଥ, ସର୍ବଦେବତା ଓ ପ୍ରୋକ୍ଷଣୀ ପାତ୍ର ଏମାନେ ଅଗ୍ନିର ଉତ୍ତରରେ ଅଛନ୍ତି, ବ୍ରହ୍ମା କାହିଁକି ଦକ୍ଷିଣଦିଗରେ ବସିବେ ?

ଉଃ-ସୂର୍ଯ୍ୟଙ୍କ ପୁତ୍ର ଯମରାଜା ଦକ୍ଷିଣ ଦିଗରେ ବାସ କରନ୍ତି, ତାହାଙ୍କ ଦର୍ପ ଚୂର୍ଣ୍ଣ କରିବା ପାଇଁ ବ୍ରହ୍ମାଙ୍କୁ ଦକ୍ଷିଣରେ ଆସନ ଦିଆଯାଏ । ଯେଉଁ ସ୍ଥାନରେ ବ୍ରହ୍ମା ବରଣ ହୁଅନ୍ତି, ସେଠାରେ ତ୍ରୈଲୋକ୍ୟର ସ୍ଥିତି ହୁଏ । ସେ ହେତୁ ବ୍ରହ୍ମାଙ୍କୁ ବରଣ କରି ଦକ୍ଷିଣ ପାର୍ଶ୍ୱରେ ବସାଇବେ ।



## ୪୫୫-ବିବାହର କୁଶାଣ୍ଡି

ଦକ୍ଷିଣତୋବ୍ରହ୍ମାସନଂ । ଉତ୍ତରେ ପ୍ରଣୀତାପ୍ରଣୟନଂ । ଅଗ୍ରେଣ ମୂଳମାଚ୍ଛାଦ୍ୟ ପ୍ରାଚ୍ୟାଦିଚତୁର୍ଦ୍ଦିକ୍ଷୁ ପରିସ୍ତରଣଂ । ପୂର୍ବେ ଉତ୍ତରାଗ୍ରଂ । ଦକ୍ଷିଣେ ପୂର୍ବାଗ୍ରଂ । ପଶ୍ଚିମେ ଉତ୍ତରାଗ୍ରଂ । ଉତ୍ତରେ ପୂର୍ବାଗ୍ରଂ । ଏବଂ କୁଶୈଃ ପରିସ୍ତରଣଂ । ଦକ୍ଷିଣତଃ ପାତ୍ରାସାଦନମୁତ୍ତରସଂସ୍ଥଂ । ପବିତ୍ରଚ୍ଛେଦନାନିକୁଶତ୍ରୟବ୍ରହ୍ମଗ୍ରନ୍ଥି ଯୁତାନି । ପବିତ୍ରେ, ଦ୍ୱେ । ପ୍ରୋକ୍ଷଣୀପାତ୍ରଂ । ଆଜ୍ୟସ୍ଥାଲୀ । ସମ୍ମାର୍ଜନକୁଶାଃ ୧୦ । ଉପଯମନକୁଶାଃ ୧୩ । ତ୍ରିସ୍ରଃ ସମିଧଃ । ସ୍ରୁବଃ । ଆଜ୍ୟଂ ପୂର୍ଣ୍ଣପାତ୍ରାର୍ଥତଣ୍ଡୁଳାଃ । ନବରକ୍ତିକାପରିମିତସ୍ୱର୍ଣ୍ଣଦକ୍ଷିଣା ବରୋବା । ସ୍ରୁବଃ । ଆଜ୍ୟଂ ପୂର୍ଣ୍ଣପାତ୍ରାର୍ଥତଣ୍ଡୁଳାଃ । ନବରକ୍ତିକାପରିମିତସ୍ୱର୍ଣ୍ଣଦକ୍ଷିଣା ବରୋବା । ପାତ୍ରାସାଦନେଽୟଂବିଶେଷଃ । (୧) ଶୂର୍ପଂ, (୨) ଶମୀପତ୍ରମିଶ୍ରାଲାଜାଃ, (୩) ଅଶ୍ମଖଣ୍ଡଂ, (୪) ଅଖଣ୍ଡଲୋହିତମାନଡୁହଂ ଚର୍ମ, (୫) କୁମାର୍ଯ୍ୟାଭ୍ରାତା, (୬) ଦୃଢ଼ପୁରୁଷଃ, (୭) ଏତାନିଉ ପ୍ରକଳ୍ପୟେତ୍ ନତୁ ପ୍ରୋକ୍ଷୟେତ୍ ।

ବ୍ୟାଖ୍ୟା-୧ କୁଲା, (୨) ଶମୀପତ୍ର ମିଶ୍ରିତ ଖଇ, (୩) ଶିଳ, (୪) ନାଲିଆ ଅଣ୍ଡିରାବାଛୁରୀର ଅକ୍ଷୁର୍ଣ୍ଣ ଚର୍ମ, (୫) କନ୍ୟାର ଭାଇ, (୬) ବଳବାନ୍ ପୁରୁଷ, (୭) ଏ ଦ୍ରବ୍ୟମାନଙ୍କୁ ସ୍ଥାପନ କରିବ କିନ୍ତୁ ପ୍ରୋକ୍ଷଣ କରିବ ନାହିଁ ।

ପବିତ୍ରଚ୍ଛେଦନୋପରି ପବିତ୍ରେ ଦତ୍ତ୍ୱା ପ୍ରଦକ୍ଷିଣଂ ବେଷ୍ଟୟିତ୍ୱା ପ୍ରାଦେଶମାତ୍ରଂ ନଖବର୍ଜଂ ପବିତ୍ରଚ୍ଛେଦନଂ କୃତ୍ୱା ପ୍ରୋକ୍ଷଣ୍ୟୁପରି ପବିତ୍ରେ ସ୍ଥାପୟିତ୍ୱା ଦକ୍ଷିଣସ୍ୟା ଙ୍ଗୁଷ୍ଠାନାମିକୟା ଭ୍ରାମୟିତ୍ୱା ଉଦ୍ଦିଗଂନଂ । ତାଂ ସବ୍ୟହସ୍ତେ କୃତ୍ୱା ପବିତ୍ରାଭ୍ୟାମୁ ତ୍ପବନଂ । ତଚ୍ଛଲେନାସାଦିତପାତ୍ରପ୍ରୋକ୍ଷଣଂ । ଅଗ୍ନିପ୍ରଣୀତୟୋର୍ମଧ୍ୟମସଂଚରଃ, ଅସଂଚରେପ୍ରୋକ୍ଷଣୀନିଧାନଂ । ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ । ଆଜ୍ୟଧିଶ୍ରୟଣମଗ୍ନୌ ଜ୍ୱଲତ୍କାଷ୍ଠେନ ଆଜ୍ୟସ୍ୟ ପର୍ଯ୍ୟଗ୍ନିକରଣଂ ଉଦକ ସ୍ପର୍ଶନଂ । ସ୍ରୁବ ପ୍ରତିପନଂ । ସମ୍ମାଜନ କୁଶୈଃ ଶ୍ରୁବ ସମ୍ମାର୍ଜନଂ । ମୁଲେନ ମୂଲଂ ମଧ୍ୟେନ ମଧ୍ୟଂ ଅଗ୍ରେଣାଗ୍ରଂ । ପ୍ରାଣୀତୋଦକେନ ସ୍ରୁବାଭ୍ୟୁକ୍ଷଣଂ । ପୁନଃଶ୍ରୁବପ୍ରତପନଂ । ଅଧୋମୁଖତୟାଭୂମୌ ନିଧାନଂ । ଆଜ୍ୟୋଦ୍‌ବାସନଂ ପବିତ୍ରାଭ୍ୟାମାଜ୍ୟୋତ୍ପବନଂ । ପ୍ରୋକ୍ଷଣ୍ୟୁତ୍ପବନଂ । ଆଜ୍ୟାବେକ୍ଷଣଂ । ପ୍ରୋକ୍ଷଣବ୍ୟବେକ୍ଷଣଂ । ଆଜ୍ୟେ ଶ୍ରୁବନିଯୋଜନଂ । ଉପଯମନକୁଶାନାଦାୟ ବାମହସ୍ତେ ଗୃହୀତ୍ୱା ଉତ୍ତିଷ୍ଠନ୍ ସମିଧଗ୍ନୌ ତୁଷ୍ଣୀଂକ୍ଷିପେତ୍ ବା ସମିଧାଗ୍ନିମିତି ମନ୍ତ୍ରେଣ । ପ୍ରୋକ୍ଷଣୀଜଳଂ ସପବିତ୍ରଂ ଗୃହୀତ୍ୱା ଅଗ୍ନେରୀଶାନ କୋଣାଦାରଭ୍ୟ ତଦନ୍ତଂ ପର୍ଯ୍ୟୁକ୍ଷଣଂ । ପ୍ରଣୀତାୟାଂ ପବିତ୍ରନିଧାନଂ । ଦକ୍ଷିଣଜାନୁ ଭୂମୌ ନିପାତ୍ୟ ବ୍ରହ୍ମାନ୍ୱାରବ୍ଧହୋମଃ । *ଆଘାରାବାଜ୍ୟଭାଗୌ ଜୁହୁୟାତ୍ । ଓଁ ପ୍ରଜାପତୟେ ସ୍ୱାହା । ଇଦଂ ପ୍ରଜାପତୟେ । ଓଁ ଇନ୍ଦ୍ରାୟ ସ୍ୱାହା । ଇଦମିନ୍ଦ୍ରାୟ । ଓଁ ଅଗ୍ନୟେ ସ୍ୱାହା ।

---

*-ତତଃଶ୍ରୁବମାଦାୟଦକ୍ଷିଣଂଜାନ୍ୱାଚ୍ୟ ଆଘାରାବାଜ୍ୟଭାଗୌ ମହାବ୍ୟାହୃତୟଃସର୍ବପ୍ରାୟଶ୍ଚିତ୍ତଂବ୍ରହ୍ମାନ୍ୱାରବ୍‌ଧୋହୁତ୍ୱାରାଷ୍ଟ୍ରଭୃଜ୍ଜୟାଭ୍ୟା-ତାନାଗ୍ନିରୈଦ୍ୱିତ୍ୟାଦିକାନ୍ ଅନନ୍ୱାରବ୍‌ଧୋ ଜୁହୁୟାତ୍ । ପ୍ରାଶାନାନ୍ତେ ବା ପରଂମୃତ୍ୟବିତି । (ପାରସ୍କରଃ)

ଇଦମଗ୍ନୟେ । ଓଁ ସୋମାୟ ସ୍ୱାହା । ଇଦଂ ସୋମାୟ । (ସମୁଦାୟ କୁଶାଣ୍ଡିନିୟମ ୧୫୫ ନମ୍ବରରେ ଦେଖ ।)

ତତଃ ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । ସ୍ୱସ୍ତି ପୁଣ୍ୟାହଂ ୩ । ଏବମସ୍ତୁ ବିଜ୍ଞାପୟାମୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଚ ଶାନ୍ତିର୍ଭବତୁ । ଅମୁକସଗୋତ୍ରେଣ ଶ୍ରୀମତା ଅମୁକଦେବଶର୍ମଣା ମୟା ଆବୟୋର୍ବରକନ୍ୟାୟୋର୍ବିବାହାଙ୍ଗହୋମକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି । (ବିଶେଷବିଧି ୧୦୦ ନମ୍ବରରେ ଦେଖ) ।

## ୪୫୬-ବିବାହ ହୋମ

ଓଁ ଭୂଃ ସ୍ୱାହା । ଇଦଂ ଭୂଃ । * ସଂଶ୍ରବଧାରଣଂ । ଓଁ ଭୁବଃ ସ୍ୱାହା । ଇଦଂ ଭୁବଃ । ଓଁ ସ୍ୱଃ ସ୍ୱାହା । ଇଦଂ ସ୍ୱଃ । ଓଁ ତ୍ୱନ୍ନୋଅଗ୍ନେ-ଇଦମଗ୍ନୀବରୁଣାଭ୍ୟାଂ । ଓଁ-ସତ୍ୱନ୍ନୋ ଅଗ୍ନେ-ଇଦମଗ୍ନୀବରୁଣାଭ୍ୟାଂ । ଓଁ ଅୟାଶ୍ଚାଗ୍ନେଇଦମଗ୍ନୟେ । ଓଁ ଯେତେ

---

ବ୍ୟାଖ୍ୟା-ତତ୍ପରେ ଶ୍ରୁବ ଧରି ଦକ୍ଷିଣ ଜାନୁ ତଳେ ପକାଇବ ଓ ବ୍ରହ୍ମାନ୍ୱାରବ୍ଧ ହୋଇ ଆଘାର ଦୁଇ ଓ ଆଜ୍ୟଭାଗ ଦୁଇ, ମହାବ୍ୟାହୃତି ତିନି ଓ ସର୍ବପ୍ରାୟଶ୍ଚିତ୍ତ ପାଞ୍ଚ, ଏରୂପ ବାର ଆହୁତି ଅଗ୍ନିରେ ଦେଇ ତତ୍ପରେ ବ୍ରହ୍ମାନ୍ୱାରବ୍ଧନ ହୋଇ ନିଜେ ରାଷ୍ଟ୍ରଭୃତ୍, ଜୟା, ଅଭ୍ୟାତାନ, ଅଗ୍ନି ରୈତୁ ପ୍ରଭୃତି ହୋମ କରିବ । ମତାନ୍ତର "ପରଂ ମୃତ୍ୟୁ" ଏହି ମନ୍ତ୍ର ପଢ଼ି ପ୍ରାଶନ ଶେଷରେ ଆହୁତିଏ ଦେବ ।

ସର୍ବପ୍ରାୟଶ୍ଚିତ୍ତଂ ପ୍ରାଜାପତ୍ୟାନ୍ତରମେତଦାବାପସ୍ଥାପନଂ ବିବାହେ ॥ (ପାରସ୍କରଃ)

ବ୍ୟାଖ୍ୟା-କେବଳ ବିବାହରେ ସର୍ବପ୍ରାୟଶ୍ଚିତ୍ତ (ତ୍ୱନ୍ନୋ ଅଗ୍ନେ ପ୍ରଭୃତି ପାଞ୍ଚ ଆହୁତି) ଓ ରାଷ୍ଟ୍ରଭୃତ୍ ହୋମଠାରୁ ଆରମ୍ଭ କରି ସମସ୍ତ ବିବାହ ହୋମ ସାରି ଶେଷରେ ପ୍ରଜାପତି ହୋମ କରିବ । କିନ୍ତୁ ଅନ୍ୟ ହୋମର ପ୍ରାୟଶ୍ଚିତ୍ତ ହୋମ ପରେ ପ୍ରଜାପତି ହୋମ କରିବା ବିଧି ।

*୪୫୬-ପ୍ରାଶନପାତ୍ରରେ ପାନ ଓ ସଂସ୍ରବ ଧାରଣର ନିୟମ-

ନାଗବଲ୍ଲୀଦ୍ୱୟଂ ବୈକଂ ହୋମସ୍ଥାନେ ନିୟୋଜୟେତ୍ ।
ତସ୍ୟୋପରି ଘୃତୋଚ୍ଛିଷ୍ଟଂ ପ୍ରକ୍ଷିପେଦଭିବାଦୟେତ୍ ॥
ଅନ୍ୟକର୍ମଣି ଏକୈକଂ ଯାଗକର୍ମଣି ବିଂଶତିଃ ।
ବିବାହେ ଦ୍ୱୟ ମାସ୍ତୀର୍ଯ୍ୟ ତତୋ ହୋମଂ ମାଚରେତ୍ ॥
ନ କୁର୍ଯ୍ୟାତ୍ତୁ ଯଦି ତ୍ୟାଗଂ ନ ଗୃହ୍ୟନ୍ତି ସୁରାହବିଃ ।
ତାଶ୍ଚ ନିଷ୍ଫଳତାଂ ଯାନ୍ତି ତୁଳାୟାମଗ୍ନି ସନ୍ନିଭଂ ॥ (ଗୃହ୍ୟସୂତ୍ରକାରିକାୟାଂ)



ଶତଂ-ଇଦଂ ବରୁଣାୟ ସବିତ୍ରେ ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋ ମରୁଦ୍ଭ୍ୟଃ ସ୍ୱର୍କେଭ୍ୟଃ । ଓଁ ଉଦୁତମଂ-ଇଦଂ ବରୁଣାୟ । (ସମ୍ପୂର୍ଣ୍ଣମନ୍ତ୍ର ୨୨୩ ନମ୍ବର ଦେଖ) ।

## ୪୫୭-ରାଷ୍ଟ୍ରଭୃତ୍ହୋମ

ଓଁ ଋତାଷାଡୃତଧାମାଗ୍ନିର୍ଗନ୍ଧର୍ବଃ । ସନଇଦଂ ବ୍ରହ୍ମକ୍ଷତ୍ରଂ ପାତୁ ତସ୍ମୈସ୍ୱାହା ବାଟ୍ । ଇଦମୃତାସାହେ ଋତଧାମ୍ନେ ଅଗ୍ନୟେ ଗନ୍ଧର୍ବାୟ ।୧ । ଓଁ ଋତାଷାଡୃତଧାମାଗ୍ନିର୍ଗନ୍ଧର୍ବଃ । ତସ୍ୟୌଷଧୟୋଽପ୍ସରସୋମୁଦୋନାମ ତାଭ୍ୟଃ ସ୍ୱାହା । ଇଦମୋଷଧିଭ୍ୟୋଽପ୍ସରୋଭ୍ୟୋ ମୁଦ୍ଭ୍ୟଃ ।୨ । ଓଁ ସଂହିତୋ ବିଶ୍ୱସାମା ସୂର୍ଯ୍ୟୋ ଗନ୍ଧର୍ବଃ । ସନଇଦଂ ବ୍ରହ୍ମକ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ । ଇଦଂ ସଂହିତାୟ ବିଶ୍ୱସାମ୍ନେ ସୂର୍ଯ୍ୟାୟ ଗନ୍ଧର୍ବାୟ ।୩। ଓଁ ସଂହିତୋ ବିଶ୍ୱସାମା ସୂର୍ଯ୍ୟୋ ଗନ୍ଧର୍ବଃ । ତସ୍ୟ ମରୀଚୟୋଽପ୍ସରସ ଆୟୁବୋନାମ ତାଭ୍ୟଃ ସ୍ୱାହା । ଇଦଂ ମରୀଚିଭ୍ୟୋଽପ୍ସରୋଭ୍ୟ ଆୟୁଭ୍ୟଃ ।୪ । ଓଁ ସୁଷୁମ୍ନଃ ସୂର୍ଯ୍ୟରଶ୍ମିଶ୍ଚନ୍ଦ୍ରମା ଗନ୍ଧର୍ବଃ । ସନଇଦଂ ବ୍ରହ୍ମକ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ । ଇଦଂ ସୁଷୁମ୍ନାୟ ସୂର୍ଯ୍ୟରଶ୍ମୟେ ଚନ୍ଦ୍ରମସେ ଗନ୍ଧର୍ବାୟ ।୫ । ଓଁ ସୁଷୁମ୍ନଃ ସୂର୍ଯ୍ୟରଶ୍ମିଶ୍ଚନ୍ଦ୍ରମା ଗନ୍ଧର୍ବଃ । ତସ୍ୟ ନକ୍ଷତ୍ରାଣ୍ୟପ୍ସରସୋ ଭେକୁରୟେ ନାମ ତାଭ୍ୟଃ ସ୍ୱାହା । ଇଦଂ ନକ୍ଷତ୍ରେଭ୍ୟୋଽପ୍ସରୋଭ୍ୟୋ ଭେକୁରିଭ୍ୟଃ ।୬ । ଇଁ ଇଷିରୋ ବିଶ୍ୱବ୍ୟଚା ବାତୋ ଗନ୍ଧର୍ବଃ । ସନଇହଂ ବ୍ରହ୍ମକ୍ଷତ୍ରଂ ପାତୃ ତସ୍ମୈ ସ୍ୱାହା ବାଟ୍ ଇଦମିଷିରାୟ ବିଶ୍ୱବ୍ୟଚସେ ବାତାୟ ଗନ୍ଧର୍ବାୟ ।୭ । ଓଁ ଇଷିରୋବିଶ୍ୱବ୍ୟଚାବାତୋ ଗନ୍ଧର୍ବଃ । ତସ୍ୟାପୋଽପ୍ସରସଉର୍ବୋନାମତାଭ୍ୟଃସ୍ୱାହା । ଇଦମଭ୍ୟୋଽପ୍ସରୋଭ୍ୟ ଉର୍ଗ୍ଭ୍ୟଃ ।୮ । ଓଁ ଭୁଜ୍ୟଃ ସୁପର୍ଣ୍ଣୋ ଯଜ୍ଞୋ ଗନ୍ଧର୍ବଃ । ସନଇଦଂ ବ୍ରହ୍ମକ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ । ଇଦଂଭୁଜ୍ୟବେ ସୁପର୍ଣ୍ଣାୟ ଯଜ୍ଞାୟ ଗନ୍ଧର୍ବାୟ ।୯ । ଓଁ ଭୁଜ୍ୟୁଃ ସୁପର୍ଣ୍ଣୋ ଯଜ୍ଞୋଗନ୍ଧର୍ବଃ ତସ୍ୟ ଦକ୍ଷିଣାପ୍ସରସସ୍ତାବାନାମ ତାଭ୍ୟଃ ସ୍ୱାହା । ଇଦଂ ଦକ୍ଷିଣାଭ୍ୟେଽପ୍ସରୋଭ୍ୟସ୍ତାବାଭ୍ୟଃ ।୧୦ । ଓଁ ପ୍ରଜାପତିବିଶ୍ୱକର୍ମା ମନୋ ଗନ୍ଧର୍ବଃ । ଇନଇଦଂ ବ୍ରହ୍ମକ୍ଷତ୍ରଂ ପାତୁ ତସ୍ମୈ ସ୍ୱାହା ବାଟ୍ । ଇଦଂ ପ୍ରଜାପତୟେ ବିଶ୍ୱକର୍ମଣେ ମନସେ ଗନ୍ଧର୍ବାୟ ।୧୧ । ଓଁ ପ୍ରଜାପତି ବିଶ୍ୱକର୍ମା ମନୋ ଗନ୍ଧର୍ବଃ । ତସ୍ୟ ଋକ୍ସାମାନ୍ୟପ୍ସରସ ଏଷ୍ଟୟୋ ନାମ ତାଭ୍ୟଃ ସ୍ୱାହା । ଇଦମୃକ୍ସାମଭ୍ୟୋ ଅପସରୋଭ୍ୟ ଏଷ୍ଟିଭ୍ୟେଃ ।୧୨ । ଏତେ ଦ୍ୱାଦଶମନ୍ତ୍ର ରାଷ୍ଟ୍ରଭୃତ୍ସଂଜ୍ଞକାଃ ॥

## ୪୫୮-ଜୟା ହୋମ

ଓଁ ଚିତ୍ତଂ ଚ ସ୍ୱାହା । ଇଦଂ ଚିତ୍ତାୟ ।୧ । ଓଁ ଚିତ୍ତିଶ୍ଚ ସ୍ୱାହା । ଇଦଂ ଚିତ୍ତ୍ୟୈ ।୧ । ଓଁ ଆକୂତଂ ଚ ସ୍ୱାହା । ଇଦମାକୂତାୟ ।୩ । ଓଁ ଆକୁତିଶ୍ଚ ସ୍ୱାହା । ଇଦମାକୁତ୍ୟୈ ।୪ । ଓଁ ବିଜ୍ଞାତଂ ଚ ସ୍ୱାହା । ଇଦଂ ବିଜ୍ଞାତାୟ ।୫ । ଓଁ ବିଜ୍ଞାତିଶ୍ଚ ସ୍ୱାହା ଇଦଂ ବିଜ୍ଞାତ୍ୟୈ ।୬। ଓଁ ମନଶ୍ଚ ସ୍ୱାହା ଇଦଂ ମନସେ ।୭। ଓଁ ଶକ୍ୱରୀଶ୍ଚ ସ୍ୱାହା । ଇଦଂ ଶକ୍ୱରୀଭ୍ୟଃ ।୮। ଓଁ ଦର୍ଶଶ୍ଚ ସ୍ୱାହା । ଇଦଂ ଦର୍ଶାୟ ।୯ । ଓଁ ପୌର୍ଣ୍ଣମାସଂ ଚ ସ୍ୱାହା । ଇଦଂ ପୌର୍ଣ୍ଣ ମାସାୟ ।୧୦ । ଓଁ ବୃହଚ୍ଚ ସ୍ୱାହା । ଇଦଂ ବୃହତେ ।୧୧ । ଓଁ ରଥନ୍ତରଂ ଚ ସ୍ୱାହା । ଇଦଂ ରଥନ୍ତରାୟ ।୧୨ । ଓଁ ପ୍ରଜାପତିର୍ଜୟାନିନ୍ଦ୍ରାୟ ବୃଷ୍ଣେ ପ୍ରାୟଚ୍ଛଦୁଗ୍ରଃ ପୃତନା ଜୟେଷୁ । ତସ୍ମୈ ବିଶଃ ସମନମନ୍ତ ସର୍ବାଃସଉଗ୍ରଃ ସଇହବ୍ୟୋ ବଭୂବ ସ୍ୱାହା । ଇଦଂ ପ୍ରଜାପତୟେ ଜୟାନିନ୍ଦ୍ରାୟ ।୧୩ । ଏତାସ୍ତ୍ରୟୋଦଶହୁତୟୋ ଜୟାସଂଜ୍ଞକାଃ ।

## ୪୫୯-ଅଭ୍ୟାତାନ ହୋମ ।

ଓଁ ଅଗ୍ନିର୍ଭୁତାନାଧିପତିଃ । ସମାବତ୍ୱସ୍ମିନ୍‌ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍‌କର୍ମଣସ୍ୟାଂ ଦେବହୂତ୍ୟାଙ୍ଗଂ ସ୍ୱାହା । ଇଦମଗ୍ନୟେ ଭୂତାନାମାଧିପତୟେ ।୧ । ଓଁ ଇନ୍ଦ୍ରୋ ଜ୍ୟେଷ୍ଠାନାମାଧିପତିଃ ସମାବତ୍ୱସ୍ମିନ୍‌ବ୍ରହ୍ମଣ୍ୟସ୍ମିନ୍ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂପୁରୋଧାୟାମସ୍ମିନ୍ କର୍ମଣ୍ୟାସ୍ୟାଂଦେବହୂତ୍ୟାଙ୍ଗଂ ସ୍ୱାହା । ଇଦମିନ୍ଦ୍ରାୟ ଜ୍ୟେଷ୍ଠାନାମଧିପତୟେ ।୨ । ଓଁ ଯମଃ ପୃଥିବ୍ୟା ଅଧିପତଃ ସମାବତ୍ୱସ୍ମିନ୍‌ବ୍ରହ୍ମଣ୍ୟସ୍ମିନ୍‌କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟା ମସ୍ମିନ୍ କର୍ମଣସ୍ୟାଂ ଦେବହୂତ୍ୟାଙ୍ଗଂସ୍ୱାହା । ଇଦଂ ଯମାୟ ପୃଥିବ୍ୟା ଅଧିପତୟେ ।୩ । *ଉଦକସ୍ପର୍ଶନଂ । ଓଁ ବାୟୁରନ୍ତରିକ୍ଷସ୍ୟାଧିପତିଃ ସମାବତ୍ୱସ୍ମିନ୍ ବ୍ରହ୍ମଣ୍ୟସ୍ମିନ୍

---

*-ଉଦକସ୍ପର୍ଶନବିଧି-

ଯମନୈର୍ଋତ୍ୟସର୍ପାଣାଂ ଭୂତପ୍ରେତାଦିରକ୍ଷସାଂ ।
ଉଚ୍ଛିଷ୍ଟଂ ରୁଦ୍ରମୃତ୍ୟୋଶ୍ଚ ବିଷବଦ୍‌ଗର୍ହିତଂ ତ୍ୟଜେତ୍ ॥
ପିତୃରାକ୍ଷସରୁଦ୍ରାଶ୍ଚ ଯମୋମୃତ୍ୟୁ ସ୍ତଥୈବ ଚ ।
ଏଷାମନ୍ତେଷ୍ୱପୋଽସ୍ପୃଷ୍ଟ୍ୱା ସଂସ୍ରବଂ ନତୁ ଧାରୟେତ୍ ॥

(ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-ଯମ, ନୈର୍ଋତ; ସର୍ପ, ଭୂତ, ପ୍ରେତ, ରାକ୍ଷସ, ରୁଦ୍ର, ମୃତ୍ୟୁ ମନ୍ତ୍ରର ଆହୁତିଶେଷ ବିଷତୁଲ୍ୟ ଗର୍ହିତ ଅଟେ, ଅତଏବ ତାହାକୁ ତ୍ୟାଗ କରିବା ବିଧି । ଆଉ ପିତୃ, ରାକ୍ଷସ, ରୁଦ୍ର, ଯମ ଓ ମନ୍ତ୍ରର ଆହୁତି ଶେଷରେ (ସ୍ରୁବଦ୍ୱାରା) ଜଳସ୍ପର୍ଶ କରି ସଂସ୍ରବ ଧାରଣ କରିବ ।



କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂପୁରୋଧାୟାମସ୍ମିନ୍ନକର୍ମଣ୍ୟସ୍ୟାଂଦେବହୂ୍ୟତ୍ୟାଙ୍ଗ ସ୍ୱାହା । ଇଦଂ ବାୟବେଽନ୍ତରିକ୍ଷସ୍ୟାଧିପତୟେ ।୪ । ଓଁ ସୂର୍ୟୋ ଦିବୋଽଧିପତିଃ ସମାବତ୍ୱସ୍ମିନ୍ନିତ୍ୟାଦି । ଇଦଂ ସୂର୍ଯ୍ୟାୟ ଦିବୋଧିପତୟେ ।୫ । ଓଁ ଚନ୍ଦ୍ରମାନକ୍ଷତ୍ରାଣାମଧିପତିଃ ସମବତ୍ୱସ୍ମିନ୍ନିତ୍ୟାଦି । ଇଦଂ ଚନ୍ଦ୍ରମସେ ନକ୍ଷତ୍ରାଣାମଧିପତୟେ ।୬ । ଓଁ ବୃହସ୍ପତିର୍ବ୍ରହ୍ମଣୋଧିପତିଃସମାବତ୍ୱସ୍ମିନ୍ନତ୍ୟାଦି । ଇଦଂ ବୃହସ୍ପତୟେ ବ୍ରହ୍ମଣୋଽଧିପତୟେ ।୭ । ଓଁ ମିତ୍ର ସତ୍ୟାନାମଧିପତିଃ ସମାତ୍ୱସ୍ମିନ୍ନିତ୍ୟାଦି ଇଦଂ ମିତ୍ରାୟ ସତ୍ୟାନାମଧିପତୟେ ।୮ । ଓଁ ବରୁଣୋଽପାମଧିପତିଃ ସମାବତ୍ୱସ୍ମିନ୍ନିତ୍ୟାଦି । ଇଦଂ ବରୁଣୟାପାମଧିପତୟେ ।୯ । ଓଁ ସମୁଦ୍ରଃ ସ୍ରୋତ୍ୟାନାମାଧିପତିଃ ସମାବତ୍ୱସ୍ମିନ୍ନିତ୍ୟାଦି । ଇଦଂ ସମୁଦ୍ରାୟ ସ୍ରୋତ୍ୟାନାମାଧିପତିଃ ।୧୦ । ଓଁ ଅନ୍ନଙ୍ଗ ସାମ୍ରାଜ୍ୟାନାମଧିପତି ସମାବତ୍ୱସ୍ମିନ୍ନିତ୍ୟାଦି । ଇଦମନ୍ନାୟ ସାମ୍ରାଜ୍ୟାନାମଧିପତୟେ ।୧୧ । ଓଁ ସୋମଓଷଧୀନାମଧିପତି ସମାବତ୍ୱସ୍ମିନ୍ନିତ୍ୟାଦି ଇଦଂ ସୋମାୟୌଷଧିନାମଧିପତୟେ ।୧୨ । ଓଁ ସବିତା ପ୍ରସବାନାମଧିପତିଃ ସମାବତ୍ୱସ୍ମିନ୍ନିତ୍ୟାଦି । ଇଦଂ ସବିତ୍ରେ ପ୍ରସବାନାମଧିପତୟେ ।୧୩। ଓଁ ରୁଦ୍ରଃ ପଶୁନାମାଧିପତିଃ ସମାବତ୍ୱସ୍ମିନ୍ନିର୍ତ୍ୟାଦି । ଇଦଂ ରୁଦ୍ରାୟ ପଶୂନାମଧିପତୟେ ।୧୪ । ଉଦକସ୍ପର୍ଶନଂ । ଓଁ ତ୍ୱଷ୍ଟା ରୂପାଣାମଧିପତିଃ ସମାବହସ୍ମିନ୍ନିତ୍ୟାଦି । ଇଦଂ ତ୍ୱଷ୍ଟେ ରୂପାଣାମଧିପତୟେ ।୧୫ । ଓଁ ବିଷ୍ଣୁଃ ପର୍ବତାନାମଧିପତିଃ ସମାବତ୍ୱସ୍ମିନ୍ନିତ୍ୟାଦି । ଇଦଂ ବିଷ୍ଣବେ ପର୍ବତନାମାଧିପତୟେ ।୧୬। ଓଁ ମରୁତୋଗଣନାମାଧପତୟେ ସ୍ତେମାବନ୍ତ୍ୱସ୍ମିନ୍ନିତ୍ୟାଦି । ଇଦଂ ମରୁଦ୍ଭ୍ୟୋ ଗଣାନାମାଧିପତିଭ୍ୟଃ ।୧୭ । ଓଁ ପିତରଃ ପିତାମହଃ ପରେଽବରେ ତତାସ୍ତତାମହାଃ ଇବମାବନ୍ତ୍ୱସ୍ମିନ୍ନିତ୍ୟାଦି । ଇଦଂ ପିତୃଭ୍ୟଃ ପିତାମହେଭ୍ୟଃ ପରେଭ୍ୟୋଽବରେଭ୍ୟସ୍ତତେଭ୍ୟ ସ୍ତତାମହେଭ୍ୟଃ ।୧୮ । ଉଦକସ୍ପର୍ଶନଂ । ଏତେ ଅଷ୍ଟାଦଶମନ୍ତ୍ରା ଅଭ୍ୟାତାନସଂଜ୍ଞକା ।

## ୪୬୦-ଅଗ୍ନିରୈତ୍ୱାଦି ହୋମ

ଓଁ ଅଗ୍ନିରୈତୁ ପ୍ରଥମୋ ଦେବତାନାଙ୍ଗ ସୋଽସ୍ୟୈ ପ୍ରଜାଂ ମୁଞ୍ଚତୁ ମୃତ୍ୟୁପାଶାତ୍ ତଦୟଂ ରାଜା ମରୁଣୋଽନୁମନ୍ୟତାଂ ଯଥେୟଙ୍ଗ ସ୍ତ୍ରୀପୌତ୍ରମଘନ୍ନରୋଦାତ୍ ସ୍ୱାହା । ଇଦ ମଗ୍ନୟେ ।୧ । ଓଁ ଇମାମଗ୍ନିସ୍ତ୍ରାୟତାଂ ଗାର୍ହପତ୍ୟଃ ପ୍ରଜାମସ୍ୟୈନୟତୁ ଦୀର୍ଘମାୟୁଃଅଶୂନ୍ୟୋପସ୍ଥା ଜୀବତାମସ୍ତୁ ମାତା ପୌତ୍ରମାନନ୍ଦମଭିବିବୁଧ୍ୟତାର୍ମିୟଙ୍ଗ ସ୍ୱାହା । ଇଦମଗ୍ନୟେ ।୨ । ଓଁ ସ୍ୱସ୍ତିନୋ ଅଗ୍ନେ ଦିବଆପୃଥିବ୍ୟା ବିଶ୍ୱାନିଧେହ୍ୟଯଥାଯଜତ୍ର । ଯଦସ୍ୟାଂମହି ଦିର୍ବି ଜାତଂ ପ୍ରଶସ୍ତଂ ତଦସ୍ମାସୁଦ୍ରବିଣଂ

ଧେହି ଚିତ୍ରଙ୍ଗ ସ୍ୱାହା । ଇଦମଗ୍ନୟେ । ୩ ଓଁ ସୁଗନ୍ନୁପନ୍ଥାଂ ପ୍ରଦିଶନ୍ନ ଏହି ଜ୍ୟୋତିଷ୍ମଧ୍ୟେ ହ୍ୟଜରନ୍ନ ଆୟୁଃ । ଅପୈତୁ ମୃତ୍ୟୁରମୃତାଂ ମଆଗାଦ୍‌ବୈବସ୍ୱତୋନୋ ଅଭୟଂ କୃଣୋତୁ ସ୍ୱାହା । ଇଦଂ ବୈବସ୍ୱତାୟ ।୪ । ଓଁ ପରଂ ମୃତ୍ୟୋଅନୁପରେହି ପନ୍ଥାଂ ଯସ୍ତେ ଅନ୍ୟ ଇତରୋ ଦେବଯାନାତ୍ । ଚକ୍ଷୁଷ୍ମତେ ଶୃଣ୍ୱତେ ତେ ବ୍ରବୀମି ମାନଃ ପ୍ରଜାଙ୍ଗଂରୀଷୋ ମୋତବୀରାଂ ସ୍ୱାହା । ଇଦଂ ମୃତ୍ୟବେ ।୫ । ଉଦକସ୍ପର୍ଶନଂ । ନ ସଂସ୍ରବଧାରଣଂ । ଏକେ ସଂସ୍ରବପ୍ରାଶନାନ୍ତେ ପରଂମୃତ୍ୟବିତି ଜୁହୂୟାଦିତୀଛନ୍ତି ହୋମାନ୍ତେ ପୁନରେତସ୍ୟ ସଂସ୍ରବପ୍ରାଶନଂ ।

ବ୍ୟାଖ୍ୟା-ଅଗ୍ନିରୈତୁ ଆଦି ପାଞ୍ଚକାଣ୍ଡି ମନ୍ତ୍ରମଧ୍ୟରୁ ପ୍ରଥମ ଚାରିକାଣ୍ଡି ମନ୍ତ୍ରରେ ସଂସ୍ରବଧାରଣ କରିବ ଅର୍ଥାତ୍ ପ୍ରାଶନପାତ୍ରରେ ଆହୁତି ଶେଷ ରଖୁଥିବ । ମାତ୍ର "ପରଂମୃତ୍ୟୋ" ଏହି ମନ୍ତ୍ରରେ ସଂସ୍ରବଧାରଣ କରିବ ନାହିଁ । ଉଦକସ୍ପର୍ଶନ ଶ୍ରୁବଦ୍ୱାରା କରିବ । କେହି କେହି କହନ୍ତି ପ୍ରାଶନ ଶେଷରେ "ପରଂମୃତ୍ୟୋ" ମନ୍ତ୍ରରେ ହୋମ କରାଯାଏ; କିନ୍ତୁ ପ୍ରାଶନଶେଷରେ ହୋମ କରିବା ଅବିଧି, ହୋମଶେଷରେ ପ୍ରାଶନ କରାଯାଏ । ଅତଏବ "ପରଂମୃତ୍ୟୋ" ମନ୍ତ୍ରରେ ହୋମ କଲେ ଆଉ ଥରେ ପ୍ରାଶନ କରିବାକୁ ହେବ ।

## *୪୬୧-ଲାଜାହୋମ ।

କୁମାର୍ଯ୍ୟଭ୍ରାତା ଉପକଳ୍ପିତାନ୍ ଶମୀପଲାଶମିଶ୍ରାନ୍ ଲାଜାନ୍ ସୂର୍ପକୃତାନ୍ ତ୍ରିଧା ବିଭଜ୍ୟ ଭାଗମେକଂ ସ୍ୱେନାଞ୍ଜଳିନା ଗୃହୀତ୍ୱା । କୁମାର୍ଯ୍ୟା ଅଞ୍ଜଲୌ ଆବପତି ।

---

*୪୬୧ (୧ଟି) ବରକନ୍ୟା ଚତୁର୍ହସ୍ତ ହୋଇ ଲାଜାହୋମ କରିବାର ପ୍ରମାଣ-

ତିଷ୍ଠନ୍ତ୍ୟା ସ୍ଥିଷତା ପତ୍ୟା ଗୃହୀତାଞ୍ଜଳି ନୈବ ସା ।
ଅଞ୍ଜଳିସ୍ଥାନ୍ତ୍ରିଧା ସର୍ବାନ୍ ପ୍ରାଙ୍‌ମୁଖୀ ପ୍ରତିମନ୍ତ୍ରତଃ ।।
ପ୍ରାଜାପତ୍ୟେନ ତୀର୍ଥେନ ଦୈବେନୈବେତି ବହ୍ୱୃଚାଃ ।
ଅନ୍ୟୋ ଭ୍ରାତୁରଭାବେ ସ୍ୟାଦ୍‌ବାନ୍ଧବୋ ଜାତିରେବ ଚ ।।
ଭ୍ରାତା ଭ୍ରାତୃସ୍ଥାନୋ ବା ଇତ୍ୟାଶ୍ୱଲାୟନଗୃହ୍ୟେ-
ଭ୍ରାତୃସ୍ଥାନେ ପିତୃବ୍ୟସ୍ୟ ମାତୁଳସ୍ୟ ତୁ ଯଃ ସୁତଃ ।
ମାତୃଷ୍ୱସୁଃ ସୁତସ୍ତଦ୍‌ବତ୍ ସୁତସ୍ତଦ୍‌ବତ୍ ପିତୃଷ୍ୱସୁଃ ।।
(ଇତି ବହ୍ୱୃଚକାରିକାୟାଂ)

ଦ୍ରବ୍ୟତ୍ୟାଗେ ତୁ ବରସ୍ୟ କର୍ତ୍ତୃତ୍ୱଂ ପ୍ରଧାନଃ ସ୍ୱାମୀ ।
ଫଳଯୋଗାଦିତ୍ୟୁକ୍ତତ୍ୱାଦିତି (ଗଦାଧରଃ) ।



କୁମାରା ପ୍ରାଙ୍‌ମୁଖୀତିଷ୍ଠନ୍ତୀ ଉର୍ଦ୍ଧ୍ୱାଞ୍ଜଳିସ୍ଥାନ୍ ତାନ୍ ଲାଜାନ ଅବିରଳେନାଞ୍ଜଳିନା "ଅର୍ଯ୍ୟମ୍ଣ" ମିତ୍ୟାଦିତ୍ରିଭିର୍ମନ୍ତ୍ରୈର୍ବିବାହାଗ୍ନୌ ଜୁହୋତି । ମନ୍ତ୍ରତ୍ରୟଂ କନ୍ୟୈବ ପଠତି ପଠନାଶକ୍ତୌ ଆଚାର୍ଯ୍ୟଃ ନତୁ ବରଃ ।

ବ୍ୟାଖ୍ୟା-କନ୍ୟାର ଭାଇ ପୂର୍ବରୁ କୁଲାରେ ଆସାଦିତ ହୋଇଥିବା ଶମୀପତ୍ର ମିଶ୍ରିତ ଖଇକୁ ତିନିଭାଗ କରି ଭାଗେ ନିଜ ଆଙ୍ଗୁଳିରେ ନେଇ କନ୍ୟାର ଆଞ୍ଜୁଳିରେ ଦେବ । କନ୍ୟା ପୂର୍ବକୁ ମୁଖ କରି ଠିଆହେବ । ତାହା ପୃଷ୍ଠଭାଗରେ ବର ଠିଆହୋଇ ଆପଣାର ହାତରେ କନ୍ୟାର ଆଞ୍ଜୁଳିକୁ ଧରିବ । (ଏପରି ହେଲେ ଚତୁର୍ହସ୍ତ ହେଲା)

---

ବ୍ୟାଖ୍ୟା-ପୂର୍ବମୁଖୀ ହୋଇ ଖଇ ଆଞ୍ଜୁଳି ଧରି ଠିଆ ହୋଇଥିବା କନ୍ୟାର ପୃଷ୍ଠଭାଗରେ ବର ଠିଆହୋଇ କନ୍ୟାର ଆଞ୍ଜୁଳିକୁ ଦୁଇହସ୍ତରେ ତଳୁ ଧରିବ । କନ୍ୟା ଆଞ୍ଜୁଳିସ୍ଥିତ ସମସ୍ତ ଖଇକୁ ତିନିଭାଗ କରି ପ୍ରାଜାପତ୍ୟତୀର୍ଥ (କନିଷ୍ଠାଙ୍ଗୁଳି ମୂଳରେ କିମ୍ବା ଦୈବତୀର୍ଥ (ଅଙ୍ଗୁଳିଅଗ୍ରରେ) ପ୍ରତ୍ୟେକ ମନ୍ତ୍ରରେ ଭାଗେ ୨ ଅଗ୍ନିରେ ପକାଇବ । ଯେଉଁ କନ୍ୟାର ନିଜଭାଇ ନାହିଁ ସେ ସ୍ଥଳରେ ତାହାର ଅନ୍ୟ ଭାଇ (ଖୁଡୁତାପୁଅ ଓ ଜେଡୁତାପୁଅ ଭାଇ) କିମ୍ବା ଭ୍ରାତୃସ୍ଥାନୀୟ ବାନ୍ଧବ (ମଉଳାପୁଅ, ମାଉସୀପୁଅ ଓ ପିଉସୀପୁଅ ଭାଇ) ଖଇ ଅଞ୍ଜୁଳି କନ୍ୟା ହସ୍ତରେ ଦେବେ ।

୪୬୧ (୨ଟି)-ମତାନ୍ତରେ ଲାଜାହୋମ ବିଧି-

କନ୍ୟା ଲାଜାନ୍ ସମାଧତ୍ତେ ସମାଧତ୍ତେ ବରୋ ହବିଃ ।
ଆଚାର୍ଯ୍ୟସ୍ତୁ ପଠେନ୍ମନ୍ତ୍ରଂ ଲାଜାହୋମସ୍ୟ ଲକ୍ଷଣଂ ॥
ଉତ୍‌ଥାପ୍ୟଚାବପେଲ୍ଲନ୍ତୋତ୍‌ଥାପ୍ୟ ଚାବପେଦ୍ଧବିଃ ।
ଅଞ୍ଜଳିନାଞ୍ଜଳିସ୍ଥାନାମର୍ଦ୍ଧଂ ଚୈ ଜୁହୁୟାତ୍ତତଃ ॥
ମନ୍ତ୍ରତ୍ରୟଂ ପଠେତ୍ କନ୍ୟା ଆଚାର୍ଯ୍ୟୋ ବା ବରୋ ନତୁ ।
ଅଙ୍ଗୁଲ୍ୟଗ୍ରେ ତୁ ହୋତବ୍ୟଂ ତଯୈ ବାଞ୍ଜଳିଭେଦତଃ ।
ଅଞ୍ଜଳେର୍ବାମପାର୍ଶ୍ୱେ ତୁ ଲାଜାହୋମୋ ବିଧୀୟତେ ॥

(ଗୃହ୍ୟସୂତ୍ରକାରିକାୟାଂ)

ବ୍ୟାଖ୍ୟା-କନ୍ୟା ଅଞ୍ଜୁଳିରେ ଲାଜା ଧରିବ, ବର ଶ୍ରୁବରେ ଘୃତ ଧରିବ ଏବଂ ଆଚାର୍ଯ୍ୟ କିମ୍ବା କନ୍ୟା ମନ୍ତ୍ରତ୍ରୟ ପଢ଼ିବେ; କିନ୍ତୁ ବରର ମନ୍ତ୍ର ପଢ଼ିବା ଅବିଧି, ସେ କେବଳ ବସି ଆହୁତି ଦେବ । କନ୍ୟା ଠିଆହୋଇ ଆଞ୍ଜୁଳିସ୍ଥିତ ଖଇ ମଧ୍ୟରୁ ତିନିଭାଗରୁ ଏକଭାଗ ଅଙ୍ଗୁଳିର ଅଗ୍ରଭାଗଦ୍ୱାରା ହାତକୁ କିଞ୍ଚିତ୍ ବାମଆଡ଼କୁ ବକ୍ର କରି ଏକକାଣ୍ଡି ମନ୍ତ୍ର ପଢ଼ି ହୋମ କରିବ । ଏହିପରି ଆଉ ଦୁଇକାଣ୍ଡି ମନ୍ତ୍ର ପଢ଼ି ପ୍ରତ୍ୟେକ ମନ୍ତ୍ରରେ ଭାଗେ ୨ଖଇ ହୋମ କରିବ । ଏ କାହାରି କାହାରି ମତ ।

ତତ୍ପରେ କନ୍ୟା ସେହି ଖଇ ଆଞ୍ଜୁଳିକ ତିନିଭାଗ କରି ତିନିଥର ମନ୍ତ୍ର ଶେଷରେ ହୋମ କରିବ । କନ୍ୟା ମନ୍ତ୍ର ପଢ଼ି ନ ପାରିଲେ ଆଚାର୍ଯ୍ୟ ମନ୍ତ୍ରପାଠ କରିବେ; କିନ୍ତୁ ବରର ମନ୍ତ୍ରପାଠ କରିବା ନିଷେଧ । ଲାଜାହୋମ ମନ୍ତ୍ରୋ ଯଥା :-

ଓଁ ଅର୍ଯ୍ୟମଣଂ ଦେବଂ କନ୍ୟା ଅଗ୍ନି ମୟକ୍ଷତ । ସନୋ ଅର୍ଯ୍ୟମା ଦେବ ପ୍ରେତୋ ମୁଞ୍ଚତୁ ମା ପତୟେ ସ୍ୱାହା । ଇଦମର୍ଯ୍ୟମଣେ । ଇତ୍ୟନେବ ମନ୍ତ୍ରେଣ ଅଞ୍ଜଳିସ୍ଥିତାନାଂ ଲାଜାନାଂ ତୃତୀୟାଂଶଂ ଜୁହୋତି । ଓଁ ଇୟଂନ୍ନାର୍ଯ୍ୟୁପବ୍ରୁତେ ଲାଜାନାବପନ୍ତିକା । ଆୟୁଷ୍ମାନସ୍ତୁ ମେ ପତିରେଧନ୍ତାଂ ଜ୍ଞାତୟୋ ମମ ସ୍ୱାହା । ଇଦମଗ୍ନୟେ । ଇତ୍ୟନେନ ମନ୍ତ୍ରେଣ ପୁନରଞ୍ଜଳିସ୍ଥିତଲାଜାନାଂ ଅର୍ଦ୍ଧଂ ଜୁହୋତି । ଓଁ ଇମାଂଲ୍ଲାଜାନ୍ନାବପାମ୍ୟଗ୍ନୌ ସମୃଦ୍ଧିକରଣଂତବ । ମମ ତୁଭ୍ୟ ତୁ ସଂବନନଂ ତଦଗ୍ନିରମନୁନ୍ୟତାମିୟଙ୍ଗ ସ୍ୱାହା । ଇଦମଗ୍ନୟେ । ଇତ୍ୟନେନ ମନ୍ତ୍ରେଣ ସର୍ବାନ୍ ଲାଜାନ୍ ଜୁହୋତି ।

ବ୍ୟାଖ୍ୟା-କନ୍ୟା ଅଞ୍ଜଳିସ୍ଥିତ ଲାଜାମଧ୍ୟରୁ ପ୍ରଥକାଣ୍ଡି ମନ୍ତ୍ର ପଢ଼ି ତୃତୀୟାଂଶ ହୋମ କରିବ । ତତ୍ପରେ ଦ୍ୱିତୀୟକାଣ୍ଡି ମନ୍ତ୍ର ପଢ଼ି ଅବଶିଷ୍ଟ ଲାଜାମଧ୍ୟରୁ ଅର୍ଦ୍ଧେକ ହୋମ କରିବ ଏବଂ ତୃତୀୟକାଣ୍ଡି ମନ୍ତ୍ର ପଢ଼ି ହସ୍ତସ୍ଥିତ ସମସ୍ତ ଲାଜା ହୋମ କରିବ ।

**ଅଥ କୁମାର୍ଯ୍ୟା ଦକ୍ଷିଣହସ୍ତସ୍ୟାଙ୍ଗୁଷ୍ଠଂ ବରୋଗୃହ୍ଣାତି ମନ୍ତ୍ରେଣ ।**

ବ୍ୟାଖ୍ୟା-ତତ୍ପରେ ବର ତଳଲିଖିତ ମନ୍ତ୍ର ପଢ଼ି କନ୍ୟାର ଦକ୍ଷିଣ ହସ୍ତରେ ବୁଢ଼ାଆଙ୍ଗୁଳିକୁ ଧରିବ । ମନ୍ତ୍ରୋଯଥା-

ଓଁ ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟି ର୍ଯଥା ସଃ ଭଗୋଽର୍ଯ୍ୟମା ସବିତା ପୁରନ୍ଧିର୍ମହ୍ୟଂ ତ୍ୱାଽଦୁର୍ଗାର୍ହପତ୍ୟାୟ ଦେବାଃ । ଅମୋଽହମସ୍ମି ସାତ୍ୱଙ୍ଗ ସାତ୍ୱମସ୍ୟା ମୋ ଅହଂ । ସାମାହମସ୍ମି ଋକ୍ତ୍ୱଂ ଦ୍ୟୌରହଂ ପୃଥିବୀ ତ୍ୱଂ ତାବେହି ବିବହାବହୈ ସହରେତୋ ଦଧାବହୈ । ପ୍ରଜାଂ ପ୍ରଜନୟାବହୈ ପୁତ୍ରାନ୍ ବିନ୍ଦ୍ୟାବହୈ ବହୁନ୍ତେ ସନ୍ତୁ ଜରଦଷ୍ଟୟଃ । ସଂପ୍ରିୟୌ ରୋଚିଷ୍ଣୁ ସୁମନସ୍ୟମାନୌ ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଂ ଶତଂ ।

## ୪୬୨-ଶିଳାରୋହଣ

ଅଥୈନାଂ ବର ଉତ୍ତରତୋଽଗ୍ନେର୍ବ୍ୟବସ୍ଥିତମଶ୍ମାନଂ ସ୍ୱଦକ୍ଷିଣହସ୍ତେନ ବଧୂଦକ୍ଷିଣପାଦଂ ଗୃହୀତ୍ୱାରୋହୟତି ମନ୍ତ୍ରେଣ । ଓଁ ଆରୋହେ ମମଶ୍ମାନମଶ୍ମେବତ୍ୱଙ୍ଗ ସ୍ଥିରା ଭବ । ଅଭିତିଷ୍ଠ ପୃତନ୍ୟତୋଽବବାଧସ୍ୱ ପୃତନାୟତଃ ।



ବ୍ୟାଖ୍ୟା-* ବର ଆପଣାର ଦକ୍ଷିଣହସ୍ତଦ୍ୱାରା କନ୍ୟା ଦକ୍ଷିଣପାଦ ଧରି ଅଗ୍ନିର ଉତ୍ତର ଭାଗରେ ଥିବା ଶିଳାର ଉପରେ ଉପରୋକ୍ତ ମନ୍ତ୍ର ପଢ଼ି ଆରୋହଣ କରାଇବ ।

## ୪୬୩-ବରର ଗାଥାଗାନ

ଅଥାଶ୍ମନି ଆରୂଢ଼ାୟାଂ କୁମାର୍ଯ୍ୟାଂ ବରୋ ଗାଥାଂ ଗାୟତି ।

ବ୍ୟାଖ୍ୟା-କୁମାରୀ ଶିଳାରୋହଣ କରିବା ସମୟରେ ବର ତଳଲିଖିତ ଗାଥା ଗାନ କରିବ । ଗାଥା ଯଥା-

ଓଁ ସରସ୍ୱତୀ ପ୍ରେଦମବ ସୁଭଗେ ବାଜିନୀବତି । ଯାଂ ତ୍ୱା ବିଶ୍ୱସ୍ୟ ଭୂତସ୍ୟ ପ୍ରଜାୟା ମସ୍ୟାଗ୍ରତଃ । ଯସ୍ୟାଂ ଭୂତଙ୍ଂ ସମଭବଦ୍‌ଯସ୍ୟାଂ ବିଶ୍ୱମିଦଂ ଜଗତ୍ । ତାମଦ୍ୟ ଗାଥାଂ ଗାସ୍ୟାମି ଯାସ୍ତ୍ରୀଣାମୁତ୍ତମଂ ଯଶଃ ।

## ୪୬୪-ବର କନ୍ୟାର ପୁନର୍ବାର ମନ୍ତ୍ରସହିତ ଅଗ୍ନି ପ୍ରଦକ୍ଷିଣ

ଅଥ ବଧୂବରୌ ପ୍ରଦକ୍ଷିଣମଗ୍ନିଂ ପରିକ୍ରାମତଃ ମନ୍ତ୍ରେଣ । (ତପ୍ରେ ବରକନ୍ୟା ଉଭୟ ଦକ୍ଷିଣାବର୍ତ୍ତରେ ଅଗ୍ନି ଚାରିପାଖରେ ଥରେ ବୁଲିଆସିବା ସମୟରେ ବର ତଳଲିଖିତ ମନ୍ତ୍ର ପାଠ କରୁଥିବ ।)

ମନ୍ତ୍ରୋଯଥା-ଓଁ ତୁଭ୍ୟମଗ୍ରେ ପର୍ଯ୍ୟବହନ୍ ସୂର୍ଯ୍ୟାଂ ବହତୁ ନାସହ । ପୁନଃ ପତିଭ୍ୟୋ ଜାୟଂ ଦାଗ୍ନେ ପ୍ରଜୟା ସହ । ଇତ୍ୟନ୍ତସ୍ୟ ମନ୍ତ୍ରସ୍ୟ ବରପଠିତ ସ୍ୟାନ୍ତେ ଏବଂ ପୁନର୍ବାରଦ୍ୱୟଂ ଲାଜାବପନାଦିପରିକ୍ରମାଣାନ୍ତଂ କର୍ମ ନିର୍ବିଶେଷଂ ଭବତି । ତତସ୍ତୃତୀୟପରିକ୍ରମଣାନ୍ତରଂ କୁମାର୍ଯ୍ୟାଭ୍ରାତା ସୁପକୋଣପ୍ରଦେଶେନ ସର୍ବାଂଲ୍ଲାଜାନ୍ କୁମାର୍ଯ୍ୟଞ୍ଜଲାବାବପତି । ସା ତିଷ୍ଠନ୍ତୀ କୁମାରୀ ସ୍ୱୟମେବ ଜୁହୋତି । ମନ୍ତ୍ରେଣ ଓ

---

-୪୬୨ ଶିଳାରୋହଣ ନିୟମ-

ଗଚ୍ଛେଭାବୁତ୍ତରେଣାଗ୍ନିଂ ତସ୍ୟାଃ ସବ୍ୟେତରଂ କରଂ ।
ସବ୍ୟେନାଦାୟ ହସ୍ତେନ ବଧୂପାଦଂ ତୁ ଦକ୍ଷିଣଂ ।
ଶିଳାମାରୋହୟେତ୍ ପ୍ରାଗାୟତାଂ ଦକ୍ଷିଣପାଣିନା ।
ମନ୍ତ୍ରପାଠଶ୍ଚ ବରସ୍ୟ ନ କୁମାର୍ଯ୍ୟା ଇତି ଗଦାଧରଃ ।
ହରୋ ବିବାହସମୟେ ଯତ୍ସ୍ତିଷ୍ଠତି ପର୍ବତେ ।
ଅତଃ ପାପୈର୍ନଲିପ୍ୟେତ ଶିଳାମାରୋହୟମନ୍ ବରଃ ॥

ବ୍ୟାଖ୍ୟା-ଯେପରି ପୂର୍ବକାଳରେ ମହାଦେବ ପର୍ବତ ଉପରେ ବସି ବିବାହ କରିଥିବାରୁ ପାପର ଲିପ୍ତ ହୋଇ ନ ଥିଲେ, ସେହିପରି ବର କନ୍ୟାକୁ ଶିଳାରୋହଣ କରାଇଲେ ପାପରେ ଲିପ୍ତ ହୁଅନ୍ତି ନାହିଁ ।

ଭଗାୟ ସ୍ୱାହା । ଇଦଂ ଭଗାୟ । ସମାଚାରାତ୍ ତୁଷ୍ଣୀଂ ଚତୁର୍ଥଂ ପରିକ୍ରମଣଂ କୁରୁତଃ । ତତଃ ସ୍ୱସ୍ଥାନେ ଉପବିଶ୍ୟ ବ୍ରହ୍ମାନ୍ୱାରବଧେନ ଘୃତେନ ଜୁହୋତି । ଓଁ ପ୍ରଜାପତୟେ ସ୍ୱାହା । ଇଦଂ ପ୍ରଜାପତୟେ ।

**ବ୍ୟାଖ୍ୟା**-କୁଲାରେ ଥିବା ଦ୍ୱିତୀୟ ଭାଗ ଖଇକୁ ପୂର୍ବବତ୍ ହୋମ କରି ପୂର୍ବପରି ଶିଳାରୋହଣ ପ୍ରଭୃତି ଅଗ୍ନିପ୍ରଦକ୍ଷିଣ କାର୍ଯ୍ୟ କରାଇବ । ତତ୍ପରେ କୁଲାରେ ଥିବା ତୃତୀୟ ଭାଗ ଖଇକୁ ପୂର୍ବପରି ହୋମ ଓ ଶିଳାରୋହଣ ଅଗ୍ନିପ୍ରଦକ୍ଷିଣ ଆଦି କର୍ମମାନ କରାଇବ । ଏହିପରି ତିନିଥର ଅଗ୍ନିପ୍ରଦକ୍ଷିଣ କରିସାରି କନ୍ୟାର ଭାଇ କୁଲାରେ ଥିବା ଅବଶିଷ୍ଟ ଖଇକୁ ଏକକୋଣକୁ ଆଣି କନ୍ୟାହାତରେ ଅଜାଡ଼ିଦେବ । କନ୍ୟା "ଭଗାୟ ସ୍ୱାହା" ଏହି ମନ୍ତ୍ର ପଢ଼ି ସେହି ଖଇକୁ ଅଗ୍ନିରେ ଦେବ । ତତ୍ପରେ ବରକନ୍ୟା ଆଉଥରେ ମୌନଭାବରେ ଅଗ୍ନିପ୍ରଦକ୍ଷିଣ କରିବେ । ତଦୁତ୍ତାରୁ ସ୍ୱସ୍ଥାନରେ ବସି ବର ବ୍ରହ୍ମାନ୍ୱାରବ୍ଧ ହୋଇ "ପ୍ରଜାପତୟେ ସ୍ୱାହା" କହି ଆହୁତିଏ ଦେବ ।

## ୪୬୫-ସପ୍ତପଦୀ

ଅଥୈନାଂ ବଧୂମୁଦୀଚୀଂ (ଉଦଙ୍‌ମୁଖୀମିତି ହରିହରଗଦାଧରୌ) ସପ୍ତପଦାନି ପ୍ରକ୍ରାମୟତି । ତଦ୍‌ଯଥା-ବରଃ କନ୍ୟାୟା ଦକ୍ଷିଣପାଦଂ ସ୍ୱଦକ୍ଷିଣହସ୍ତେନ ଗୃହୀତ୍ୱା ସପ୍ତଭିର୍ମନ୍ତ୍ରୈରଗ୍ନେରୁତ୍ତରତଃ ପୂର୍ବାଗ୍ରକୁଶଦଳେଷୁ ସପ୍ତପଦାନି ପ୍ରକ୍ରାମୟତି । ମନ୍ତ୍ରେଣ-

**ବ୍ୟାଖ୍ୟା**-ଉତ୍ତରମୁଖୀ ହୋଇଥିବା କନ୍ୟାର ଦକ୍ଷିଣପାଦକୁ ବର ଆପଣାର ଦକ୍ଷିଣହସ୍ତରେ ଧରି ଅଗ୍ନିର ଉତ୍ତରଦିଗରେ ପୂର୍ବରୁ ଆସାଦିତ ହୋଇଥିବା ପୂର୍ବାଗ୍ର ସାତଗୋଟି କୁଶଉପରେ ତଳଲିଖିତ ସାତଗୋଟି ମନ୍ତ୍ର ପଢ଼ି କ୍ରମରେ ସାତଥର କନ୍ୟାକୁ ପ୍ରକ୍ରମଣ କରାଇବ (ଚଲାଇଦେବ) । ମନ୍ତ୍ରୋ ଯଥା-

ଓଁ ଏକମିଷେ ବିଷ୍ଣୁସ୍ତ୍ୱା ନୟତୁ । ଇତି ପ୍ରଥମଂ । ଦ୍ୱେ ଉର୍ଜେ ବିଷ୍ଣୁସ୍ତ୍ୱା ନୟତୁ । ଇତି ଦ୍ୱିତୀୟଂ । ତ୍ରୀଣି ରାୟସ୍ପୋଷାୟ ବିଷ୍ଣୁସ୍ତ୍ୱା ନୟତୁ । ଇତି ତୃତୀୟଂ । ଚତ୍ୱାରି ମାୟୋ ଭବାୟ ବିଷ୍ଣୁସ୍ତ୍ୱା ନୟତୁ । ଇତି ଚତୁର୍ଥଂ । ପଞ୍ଚପଶୁଭ୍ୟୋ ବିଷ୍ଣୁସ୍ତ୍ୱା ନୟତୁ । ଇତି ପଞ୍ଚମଂ । ଷଡ୍‌ଋତୁଭ୍ୟୋ ବିଷ୍ଣୁସ୍ତ୍ୱା ନୟତୁ । ଇତି ଷଷ୍ଠଂ । ସଖେ ସପ୍ତପଦା ଭବ ସା ମାମନୁ ବ୍ରତା ଭବ ବିଷ୍ଣୁସ୍ତ୍ୱା ନୟତୁ । ଇତି ସପ୍ତମଂ ।



## ୪୬୬-ବଧୂର ଅଭିଷେକ ବିଧି

*ଅଥ ବରଃ କଲସାଦୁଦକମାଦାୟ ବଧୂମୂର୍ଦ୍ଧନ୍ୟଭିଷିଞ୍ଚତି ମନ୍ତ୍ରେଣ-

(ଅନନ୍ତର ବର କଳସରୁ ଜଳ ନେଇ କନ୍ୟା ମସ୍ତକ ଉପରେ ତଳଲିଖିତ ମନ୍ତ୍ର ପଢ଼ି ସିଞ୍ଚିଦେବ ।)

ମନ୍ତ୍ରୋଯଥା-ଓଁ ଆପଃ ଶିବାଃ ଶିବତମାଃ ଶାନ୍ତାଃ ଶାନ୍ତତମାଃ । ତାସ୍ତେ କୃଣ୍ୱନ୍ତୁ ଭେଷଜଂ । ଆପୋହିଷ୍ଠେତି ତିସୃଭିଃ ଋଗ୍‌ଭିର୍ମାର୍ଜୟେତ୍ ।

## ୪୬୭-କନ୍ୟାକୁ ବରର ସୂର୍ଯ୍ୟଦର୍ଶନ କରାଇବା ବିଧି

*-ଅଥ ବରଃ ସୂର୍ଯ୍ୟମୂଦୀକ୍ଷସ୍ୱ ଇତି ପ୍ରେକ୍ଷୟତି । (ଅନନ୍ତର ବର କନ୍ୟାକୁ କହିବ କି ତୁମ୍ଭେ ସୂର୍ଯ୍ୟ ଦର୍ଶନ କର । ତତ୍ପରେ କନ୍ୟା ତଳଲିଖିତ ମନ୍ତ୍ର ପଢ଼ି ସୂର୍ଯ୍ୟ ଦର୍ଶନ କରିବ ।)

ମନ୍ତ୍ରୋଯଥା-ଓଁ ତଚ୍ଚକ୍ଷୁର୍ଦ୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଃ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ ।

## ୪୬୮-ବରଦ୍ୱାରା ବଧୂର ହୃଦୟ ଆଲମ୍ଭନ ବିଧି

ତତୋବରୋବଧ୍ୱାଦକ୍ଷିଣାଂସୋପରି ହସ୍ତଂ ଦତ୍ତ୍ୱା ହୃଦୟମାଲଭତୋ ମନ୍ତ୍ରେଣ । (ତତ୍ପରେ ବର କନ୍ୟାର ଦକ୍ଷିଣସ୍କନ୍ଧବାଟେ ହାତ ନେଇ ତଳଲିଖିତ ମନ୍ତ୍ର ପଢ଼ି ହୃଦୟ ସ୍ପର୍ଶ କରିବ ।)

ମନ୍ତ୍ରୋଯଥା-ଓଁ ମମ ବ୍ରତେ ତେ ହୃଦୟଂ ଦଧାମି ମମ ଚିତ୍ତମନୁଚିତ୍ତଂ ତେ ଅସ୍ତୁ । ମମ ବାଚମେକମନା ଜୁଷସ୍ୱ ପ୍ରଜାପତିଷ୍ଟ୍ୱା ନିଯୁନକ୍ତୁ ମହ୍ୟଂ ।

## ୪୬୯-ବରଦ୍ୱାରା କନ୍ୟାର ଅଭିମନ୍ତ୍ରଣ ବିଧି

ଅଥ ହୃଦୟାଲମ୍ଭନାନନ୍ତରଂ ବରୋବଧୂମଭିମନ୍ତ୍ରୟତେ ମନ୍ତ୍ରେଣ । (ତତ୍ପରେ ବର ତଳଲିଖିତ ମନ୍ତ୍ର ପଢ଼ି କନ୍ୟାକୁ ଅଭିମନ୍ତ୍ରଣ କରିବ ।)

---

*-କଶ୍ଚିତ୍ ପୁରୁଷଃ ଉଦକପୂର୍ଣ୍ଣଂ କୁମ୍ଭଂ ସ୍କନ୍ଧେ ଗୃହୀତ୍ୱା ବିବାହାଗ୍ନେ ର୍ଦ୍ଦକ୍ଷିଣତୋ ବାଗ୍‌ଯତସ୍ତୁଷ୍ଣୀଂ ତିଷ୍ଠେତ୍ । ଏକେଷାଂ ଆଚାର୍ଯ୍ୟାଣାଂ ମତେ ଅଗ୍ନେରୁତ୍ତରତସ୍ତିଷ୍ଠତି । (ଗଦାଧରଃ)

*ଏତତ୍ତୁ ଦିବା ବିବାହେ ନତୁ ରାତ୍ରିବିବାହେ । (ଗଦାଧରଃ)

ମନ୍ତ୍ରୋଯଥା-ସୁମଙ୍ଗଲୀରିୟଂ ବଧୂରିମା ସମେତ ପଶ୍ୟତ । ସୌଭାଗ୍ୟମସ୍ୟୈ ଦତ୍ତ୍ୱାୟାଥାସ୍ତଂ ବିପରେତନ ।

## ୪୭୦-ଆନଡୁହଚର୍ମ ପରିବର୍ତ୍ତରେ ବସ୍ତ୍ରାଚ୍ଛାଦିତ ଶିଳାରୋହଣ ବିଧି ।

ଅଥାଗ୍ନେଃ ପ୍ରାଗୁଦଗ୍‌ବା ପୂର୍ବକଳ୍ପିତେଽନୁଗୁପ୍ତ ଆଗାରେ ଉତ୍ତରଲୋମ୍ନି ପ୍ରାଗ୍‌ଗ୍ରୀବେ ଆନଡୁହେ ଚର୍ମଣିତାଂ ବଧୂଂ* ଦୃଢ଼ପୁରୁଷଉତ୍‌ଥାପ୍ୟୋପବେଶୟତି । "ଇହ ଗାବଃ" ଇତ୍ୟନେନ ମନ୍ତ୍ରେଣ ।

ବ୍ୟାଖ୍ୟା-ଅନନ୍ତର ଅଗ୍ନିର ପୂର୍ବରେ ବା ଉତ୍ତରରେ ପୂର୍ବରୁ ଆସାଦିତ ହୋଇଥିବା ନାଲିଆ ଅଣ୍ଡିରା ବାଛୁରୀ ଚର୍ମକୁ ପୂର୍ବକୁ ଗ୍ରୀବା କରି ଓ ଉତ୍ତରକୁ ଲୋମ କରି ବିଛାଇବ ଏବଂ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରିଦେବ । ତତ୍ପରେ କୌଣସି ବଳବାନ୍ ପୁରୁଷ କିମ୍ବା ନିଜେ ବର କନ୍ୟାଙ୍କୁ ଉଠାଇ ତଳଲିଖିତ "ଇହ ଗାବଃ" ମନ୍ତ୍ର ପଢ଼ି ସେହି ଚର୍ମ ଉପରେ ବସାଇବ । ଗୃହ୍ୟସୂତ୍ରର ଏହିପରି ମତ; କିନ୍ତୁ ବ୍ୟବହାର କର ନାହିଁ; ନିମ୍ନଲିଖିତ ରୀତି ପ୍ରଚଳ ଅଛି ।

ଶିଳାଂ ବରକନ୍ୟୟୋଃ ସମ୍ମୁଖେ ସ୍ଥାପୟିତ୍ୱା ବସ୍ତ୍ରେଣାଚ୍ଛାଦ୍ୟ ଅକ୍ଷତଂ ଗୃହୀତ୍ୱା "ଇହ ଗାବୋ ନିଷୀଦନ୍ତିହାଶ୍ୱା ଇହ ପୁରୁଷାଃ । ଇହୋସହସ୍ରଦକ୍ଷିଣୋଯଜ୍ଞ ଇହ ପୁଷା ନିଷୀଦନ୍ତୁ" ଇତି ପଠିତ୍ୱା ଆଚାର୍ଯ୍ୟସ୍ତଦୁପରି କ୍ଷିପେତ୍ ।

ବ୍ୟାଖ୍ୟା-ଆଚାର୍ଯ୍ୟ ବରକନ୍ୟାଙ୍କ ସମ୍ମୁଖରେ ଶିଳା ରଖି ତାହାକୁ ବସ୍ତ୍ରରେ ଆଚ୍ଛାଦନ କରି ହସ୍ତରେ ଅକ୍ଷତ ନେଇ ଉପରଲିଖିତ "ଇହ ଗାବଃ" ଏହି ମନ୍ତ୍ର ପଢ଼ି ଶିଳା ଓ ବରକନ୍ୟାଙ୍କ ଉପରେ ପକାଇବେ ।

## ୪୭୧-ବରର ସ୍ୱିଷ୍ଟକୃତ୍ ହୋମବିଧି

ତତଃପୂର୍ବବଦୁପବିଶ୍ୟ ବର ଜୁହୋତି । ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା । ଇଦମଗ୍ନୟେ ସ୍ୱିଷ୍ଟେକୃତେ ।

---

* ୪୭୦ ଦୃଢ଼ପୁରୁଷଲକ୍ଷଣ-ଦୃଢ଼ପୁରୁଷଃ-କଶ୍ଚିତ୍ ବଳବାନ୍ ପୁରୁଷ ଇତି (ହରିହରଃ)

ଦୃଢ଼ପୁରୁଷୋ ଜିତେନ୍ଦ୍ରିୟଇତି ଭର୍ତ୍ତୃଯଜ୍ଞଃ । ଜାମାତୈବ ଦୃଢ଼ପୁରୁଷ ଇତି ରେଣୁକଦୀକ୍ଷିତ ଗଙ୍ଗାଧରୌ ॥

ଅସ୍ମାକଂ ମତେ ବର ଏବ ତସ୍ୟ ଚ ଦୃଢ଼ତ୍ୱଂ ଜିତେନ୍ଦ୍ରିୟତ୍ୱେନ ଅନ୍ୟଥା ବଧ୍ୱା ।

ଅନୁଗୁପ୍ତାଗାରନୟନେ ମନସି ଉନ୍ମାଦୋତ୍ପତ୍ତେଃ ନହ୍ୟଦ୍ୟାପି ଭାର୍ଯ୍ୟାତ୍ୱମୁତ୍ପନ୍ନମିତି । (ଗଦାଧରଃ)

 

(ତତ୍ପରେ ପୂର୍ବପରି କନ୍ୟା ସହିତ ବର ଆସନରେ ବସି ସ୍ୱିଷ୍ଟକୃତ୍ ହୋମ କରିବ ।)

ସଂସ୍ରବପ୍ରାଶନଂ । ମାର୍ଜନଂ । ସୁମିତ୍ରିୟାନ ଆପଓଷଧୟଃସନ୍ତୁ ଦୁର୍ମିତ୍ରିୟା ସ୍ତସ୍ମୈସନ୍ତୁ । ଯୋଽସ୍ମାଂ ଦ୍ୱେଷ୍ଟିୟଞ୍ଚ ବୟଂ ଦ୍ୱିଷ୍ମଃ । ଇତି ମନ୍ତ୍ରେଣ ।

(ତତ୍ପରେ ବର ପ୍ରାଶନପାତ୍ରରୁ ଘୃତପ୍ରାଶନ କରି କୁଶଜଳ ନେଇ ଉପରୋକ୍ତ ମନ୍ତ୍ର ପଢ଼ି ନିଜେ ନିଜର ମାର୍ଜନ କରିବ ।)

## ୪୭୧- (କ) ବିବାହରେ ଆଚାର୍ଯ୍ୟ ଦକ୍ଷିଣା

ତତୋଦକ୍ଷିଣାଦାନଂ । ଓଁ ବିଷ୍ଣୁରଦ୍ୟେହ୍ୟେତ୍ୟାଦି ପୂର୍ବୋକ୍ତ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଇତ୍ୟନ୍ତଂ ପଠିତ୍ୱା ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମ୍ମା ଆବୟୋର୍ବରକନ୍ୟୟୋର୍ବିବାହଙ୍ଗହୋମକର୍ମଣଃ ସୁପ୍ରତିଷ୍ଠାର୍ଥଂ ବ୍ରହ୍ମଣେ ପୂର୍ଣ୍ଣପାତ୍ରଂ ସହିତ ବରଦକ୍ଷିଣସ୍ତୁଭ୍ୟମହଂ ସଂପ୍ରଦଦେ । ବ୍ରାହ୍ମଣଶ୍ଚେଦ୍ଗାଂ । କ୍ଷତ୍ରିୟଶ୍ଚୋଦ୍ଗ୍ରାମଂ ବା ଭୂମିଂ । ବୈଶ୍ୟଶ୍ଚେଦଶ୍ୱଂ । ଅନ୍ୟେଷାଂ ସୁବର୍ଣ୍ଣାଦି ।

ବ୍ୟାଖ୍ୟା-ଏହି ଉପରୋକ୍ତ ବାକ୍ୟ ପଢ଼ି ଆଚାର୍ଯ୍ୟଙ୍କୁ ଦକ୍ଷିଣା ଦେବ । ବ୍ରାହ୍ମଣ ବର ହୋଇଥିଲେ ଗୋରୁ ଦେବ । କ୍ଷତ୍ରିୟ ବର ହୋଇଥିଲେ ଗ୍ରାମ ବା ଭୂମି । ବୈଶ୍ୟ ହୋଇଥିଲେ ଅଶ୍ୱ । ଏତଭିନ୍ନ ଅନ୍ୟ ଜାତିମାନେ ସୁବର୍ଣ୍ଣାଦି ଦକ୍ଷିଣା ଦେବେ ।

## ୪୭୨-ବର ବଧୂକୁ ଧ୍ରୁବଦର୍ଶନ କରାଇବାର ବିଧି

ତତୋବରୋବଧୂମୁତ୍ତରସ୍ୟାଂ ଦିଶି ଧ୍ରୁବଂ ଦର୍ଶୟତି । ଦିବାଯଚେଦ୍ବିବାହ ସ୍ତଦାଽସ୍ତମିତେ ଧ୍ରୁବଂ ଦର୍ଶୟତି ବରୋବଧୂଂ । ମନ୍ତ୍ରୋଯଥା-ଓଁ ଧ୍ରୁବମସିଧ୍ରୁବଂ ତ୍ୱା ପଶ୍ୟାମି ଧ୍ରୁବୈଧିପୋଷ୍ୟେ ମୟି । ମହ୍ୟଂ ତ୍ୱାଦାଦ୍ ବୃହସ୍ପତିର୍ମୟା ପତ୍ୟା ପ୍ରଜାବତୀ ସଂଜୀବ ଶରଦଃ ଶତଂ । ଇତି ମନ୍ତ୍ରେଣ ଦର୍ଶୟତି ।

(ତତ୍ପରେ ଉପରୋକ୍ତ ମନ୍ତ୍ର ପଢ଼ି କନ୍ୟାକୁ ବର ଉତ୍ତର ଦିଗରେ ଧ୍ରୁବତାରା ଦେଖାଇବ, ଦିବସବିବାହରେ ସୂର୍ଯ୍ୟାସ୍ତ ହେଲେ ଧ୍ରୁବ ଦର୍ଶନ କରାଇବ ।)

ପବିତ୍ର ପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମନ୍ ସ୍ୱସ୍ଥାନଂ ଗଚ୍ଛ । ଯାନ୍ତୁ ଦେବଗଣାଃ ସର୍ବେ ପୂଜାମାଦାୟ ପାର୍ଥିବୀଂ । ଇଷ୍ଟଭୋଗପ୍ରଦାନାୟ ପୁନରାଗମନାୟ

ଚ । ଘଟପୂଜିତଦେବତାଃ ସ୍ୱସ୍ଥାନଂ ଗଚ୍ଛତ । ବ୍ରାହ୍ମଣଭୋଜନୋତ୍ସର୍ଗଃ । ଅଚ୍ଛିଦ୍ରାବଧାରଣଂ । ସ୍ୱସ୍ତି ପୁଣ୍ୟାହଂମ୍ । ଏବମସ୍ତୁ ବିଜ୍ଞାପୟାମ୍ୟୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ରାଜ୍ଞଃ ପ୍ରଜାନାଂ ଚ ଶାନ୍ତିର୍ଭବତୁ ଅମୁକସଗୋତ୍ରଣ ଶ୍ରୀମତୀ ଅମୁଦେବଶର୍ମଣା ମୟା ଆବୟୋର୍ବରକନ୍ୟୟୋର୍ବିବାହକର୍ମ ଯତ୍କୃତଂ ତସ୍ତୁ କୃତମସ୍ତୁ ଏତନ୍ନିମିତ୍ତଂ ବ୍ରାହ୍ମଣୈରାଶୀର୍ବାଦାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

ଅଥ ବ୍ରାହ୍ମଣସଭାୟାଂ ବରକନ୍ୟାୟୋରାଶୀଃପ୍ରଦାନଂ * । ତତଃ କନ୍ୟାଂ ଅଗ୍ରେ କୃତ୍ୱା ବରଃ ପାଶ୍ଚାଦ୍‌ଗଚ୍ଛତି । ଉପରି ବସ୍ତ୍ରଧାରଣଂ କୃତ୍ୱା ଗୃହଂ ନୟେତ୍ । ବିବାହାଦାରଭ୍ୟ ଜାୟାପତି ତ୍ରିରାତ୍ରମକ୍ଷାରଲବଣାଦିକଂ ପ୍ରାଶୟେତାଂ । ଖଟ୍ୱାଦିବ୍ୟତିରେକେଣ ଶୟୀୟାତାଂ ।

ବ୍ୟାଖ୍ୟା-ତତ୍ପରେ କନ୍ୟାକୁ ଆଗରେ କରି ବରକୁ ପଛରେ କରି ମସ୍ତକ ଉପରେ ଲୁଗା ଧରି ଘରକୁ ନେବ । ବର କନ୍ୟା ତିନିଦିନ ପର୍ଯ୍ୟନ୍ତ କ୍ଷାର ଓ ଲବଣ ଖାଇବେ ନାହିଁ । ଖଟରେ ଶୋଇବେ ନାହିଁ ।

ଇତି ଦିବ୍ୟସିଂହବାଜପେୟିକୃତବିବାହପଦ୍ଧତିଃ ସମାପ୍ତ ।

-୦-

---

*୪୭୨ (ଟି) ଅବିଧବାସୂକ୍ତଂ-ବ୍ରାହ୍ମଣାଃ ପଠେୟୁଃ । (ବ୍ରାହ୍ମଣମାନେ ବିବାହଶେଷରେ ଆଶୀର୍ବାଦ କଲା ସମୟରେ ଏହି ଅବିଧବା ସୂକ୍ତକୁ ପଢ଼ିବେ) ।

ଓଁ ଅବିଧବା ଭୂବି ବର୍ଷଣି ଶତଂ ସାଗ୍ରଂ ତୁ ସୁବ୍ରତା ।
ତେଜସ୍ୱିନୀ ଯଶସ୍ୱିନୀ ଧର୍ମପତ୍ନୀ ପତିବ୍ରତା ।।
ଜନୟେଦ୍ ବହୁପୁତ୍ରାଂଶ୍ଚ ମା ଚ ଦୁଃଖଂ ଲଭେତ୍ କ୍ୱଚିତ୍ ।
ଭର୍ତ୍ତାତେ ସୋମପା ନିତ୍ୟଂ ଭବେଦ୍ଧର୍ମପରାୟଣଃ ।।
ଅଷ୍ଟପୁତ୍ରା ଭବ ତ୍ୱଂ ଚ ସୁଭଗା ଚ ପତିବ୍ରତା ।
ଭର୍ତ୍ତୁଶ୍ଚୈବ ପିତୁର୍ମାତୁରୁଭୟୋର୍ନନ୍ଦିନୀ ସଦା ।।
ଇନ୍ଦ୍ରସ୍ୟ ତୁ ଯଥେନ୍ଦ୍ରାଣୀ ଶ୍ରୀଧରସ୍ୟ ଯଥା ରମା ।
ଶଙ୍କରସ୍ୟ ଯଥା ଗୌରୀ ତଦ୍‌ବତ୍ତ୍ୱମପି ଭର୍ତ୍ତରି ।।
ଅତ୍ରେର୍ଯଥାନସୂୟା ଚ ବଶିଷ୍ଟସ୍ୟାପ୍ୟରୂନ୍ଧତୀ ।
କୌଶିକସ୍ୟ ଯଥା ସତ୍ୟା ତଦବତ୍ତ୍ୱମପି ଭର୍ତ୍ତରି ।।
ଧ୍ରୁବୈଧ୍ରିପୋଷ୍ୟ ମୟି ମହ୍ୟଂ ତ୍ୱାଦାଦ୍ ବୃହସ୍ପତି-
ମୟା ପତ୍ୟା ପ୍ରଜାବତୀ ସଂଜୀବ ଶରଦଃ ଶତଂ ।।

ଇତ୍ୟଅବିଧବାସୂକ୍ତଂ ।

-୦-

 

# ଚତୁର୍ଥୀ କର୍ମ

-୦-

## ୪୭୩-ଚତୁର୍ଥୀ ଦିବସରେ ଭୋଜ୍ୟାତ୍ମକ ବୃଦ୍ଧି ଶ୍ରାଦ୍ଧବିଧି

ବିବାହଙ୍ଗଚତୁର୍ଥୀ ଦିବସେ ଆଭ୍ୟୁଦୟିକଂ ଶ୍ରାଦ୍ଧଂ କର୍ତ୍ତବ୍ୟଂ ।

ତତ୍ରାଦୌବରୁଣପୂଜା । (୨୨୦ ନମ୍ବର ଦେଖ)

ତତଃ ପୁଣ୍ୟାହବାଚନଂ-ପୁଣ୍ୟାହମିତ୍ୟାଦି-ଅମୁକସଗୋତ୍ରେଣ ଶ୍ରୀମତାଅମୁକଦେବଶର୍ମଣା ମୟା ଆବୟୋର୍ବରକନ୍ୟୟୋର୍ବିବାହାଙ୍ଗଚତୁର୍ଥୀ ଦିବସେ ଭୋଜ୍ୟାତ୍ମକାଭ୍ୟୁଦିୟକଶ୍ରାଦ୍ଧକର୍ମାରମ୍ଭଃ କ୍ରୟତେ ଯଦା ତଦା ତାରାବାରଗ୍ରହ କ୍ଷତ୍ରାଣାମମୃତଯୋଗୋଽସ୍ତୁ ସର୍ବେ ଗ୍ରହା ଏକାଦଶସ୍ଥାଃ ଫଳଦା ଭବନ୍ତୁ ଶୁଭଂ ଭବତୁ ।୩ । ତତଃ ସଂକଳ୍ପଃ । ତାମ୍ରପାତ୍ରେ କୁଶଜଳଗନ୍ଧପୁଷ୍ପାକ୍ଷତାନ୍ୟାଦାୟ ଗଙ୍ଗେ ଚ ଯମୁନେଚୈବେତ୍ୟାଦିଥାର୍ଥାନ୍ୟାବାହ୍ୟା ଓ ବିଷ୍ଣୁଃ ୩ ଶୁକ୍ଳାମ୍ବରଧରଂ ବିଷ୍ଣୁମିତ୍ୟାରଭ୍ୟ ଶରଣାଗତମିତ୍ୟନ୍ତଂ ପଠିତ୍ୱା ଓ ବିଷ୍ଣୁଃ ୩ ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟ ଭୂପ୍ରଦେଶେ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ ଭୌମାଦି ଗ୍ରହଯୋଗଲଗ୍ନକରଣମୁହୂର୍ତ୍ତକାଂଶକେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଶର୍ମା ଆବୟୋର୍ବରକନ୍ୟୟୋର୍ବିବାହାଙ୍ଗଚତୁର୍ଥୀଦିବସକର୍ମଣୋଽଙ୍ଗତୟାଭ୍ୟୁଦୟିକେ ଶ୍ରାଦ୍ଧେପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣା ଶକ୍ତୌ ତତ୍‌ପ୍ରତ୍ୟାମ୍ନାୟତ୍ୱେନ ବସୁସତ୍ୟସଂଜ୍ଞାକାନାଂ ବିଶ୍ୱେଷାଂଦେବାନାଂ ଅମୁକସଗୋତ୍ରାଣା-ମସ୍ମନ୍ମାତୃପିତାମହୀପ୍ରପିତାମହୀନାଂ ଅମୁକଦେବୀ ୩ ନାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣମସ୍ମତ୍‌ପିତୃପିତାମହ ପ୍ରପିତାମହାନାଂ ଅମୁକଦେବଶର୍ମ୍ମଣାଂ ନାନ୍ଦୀମୁଖାନାଂ ଅମକୁସଗୋତ୍ରାଣାମସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂ ଅମୁକଦେବଂ ଶର୍ମ୍ମାଣାଂ ନାନ୍ଦୀମୁଖାନାଂ ଗଣପତି ପୁରଃସରଗୌର୍ଯ୍ୟଦ୍ୟଷ୍ଟାଦଶମାତୃ ଗଣପୂଜାବସୋର୍ଦ୍ଧାରାୟୁଷ୍ୟମନ୍ତ୍ରଜପପୂର୍ବକଭୋଜ୍ୟଦାନମହଂ କରିଷ୍ୟେ । ଅସ୍ମିନ୍ ସଂକଳ୍ପିତେ କର୍ମାଣି ସିଦ୍ଧିରସ୍ତୁ । ଯଜ୍ଞାଗ୍ରତ ଇତି ସୂକ୍ତଂ ପଠେତ୍ (୧୨୯ ନମ୍ବରେ ଦେଖ) । ତତୋଽକ୍ଷତପୁଞ୍ଜେ ପୀଠୋପରି ହରିଦ୍ରାଚୂର୍ଣ୍ଣେନ ଗଣପତି ଗୌର୍ଯ୍ୟାଦୀନାଂ ମଣ୍ଡଳଂ କୃତ୍ୱା ଗଣପତିପୁରଃସର ଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣାନ୍‌ପୂଜୟେତ୍ । (୬୮,୬୯ ନମ୍ବରେ ଦେଖ) । ବସୋଽପବିତ୍ରମସୀତି ମନ୍ତ୍ରେଣ ପଞ୍ଚ ବା ସପ୍ତ କୁଡ୍ୟଲଗ୍ନା ଅଚ୍ଛିନ୍ନା ବସୋର୍ଦ୍ଧାରା ଦଦ୍ୟାତ୍ । (୧୩୨ ନମ୍ବରେ ଦେଖ) । ସୋପକରଣଭୋଜ୍ୟେଭ୍ୟୋନମଃ ୩ । ଏତେ ଗନ୍ଧପୁଷ୍ପେ ନମଃ । ଏତଦଧିପତୟେ

ପ୍ରଜାପତୟେ ନମଃ ଇତି ଦ୍ରବ୍ୟପୂଜା । କୁଶଯବଗନ୍ଧପୁଷ୍ପଜଳାନି ଗୃହୀତା ଓଁ ବିଷ୍ଣୁର୍ନମଃ ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟଭୂପ୍ରଦେଶେ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ ଭୌମାଦି ଗ୍ରହଯୋଗଲଗ୍ନକରଣ ମୁହୂର୍ତ୍ତକାଂଶକେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ କଶ୍ୟେପାଦିନାନାଗୋତ୍ରେଭ୍ୟୋବ୍ରହ୍ମଣେ ଭୋନାନାବେଦନାନାଶାଖା-ଶାଖୈକଦେଶଧ୍ୟାୟିଭ୍ୟୋନାନାନାମଶର୍ମଭ୍ୟସ୍ତେ-ଭ୍ୟୋମନସାର୍ଚ୍ଚି ତେଭ୍ୟଃ ଶ୍ରୀବିଷ୍ଣୁସ୍ୱରୂପେଭ୍ୟଃ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଶର୍ମ୍ମା ଆବୋୟର୍ବରକନ୍ୟୟୋର୍ବିବାହାଙ୍ଗଚତୁର୍ଥୀଦିବସକର୍ମଣୋଽଙ୍ଗତୟାଭ୍ୟୁଦୟିକ ଶ୍ରାଦ୍ଧେ ପ୍ରାପ୍ତେ ସଂପ୍ରତି ସାକ୍ଷାତ୍କରଣାଶକ୍ତୌ ତତ୍ପ୍ରତ୍ୟାମ୍ନାୟତ୍ୱେନ ବସୁସତ୍ୟସଂଜ୍ଞକାନାଂ ବିଶ୍ୱେଷାଂ ଦେବାନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣାମସ୍ମନ୍ମାତୃପିତାମହୀନାଂ ଅମୁକଦେବୀ ୩ନାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାମସ୍ମତ୍ପିତୃପିତାମହପ୍ରମିତାମହାନାଂ ଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଅମୁକସଗୋତ୍ରାଣା-ମସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାଂଅମୁକଦେବ ୩ ଶର୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ଭୋଜନଦ୍ୱୟଂ ଇମାନି ସମ୍ମୁୟାଷ୍ଟପରିମିତାନି ଭୋଜ୍ୟାନି ପ୍ରଜାପତିଦୈବତାନି ତେଭ୍ୟୋବ୍ରହ୍ମଣେଭ୍ୟୋ ଦାତୁମହମୁତ୍ସୃଜେ । ଅନ୍ନେ ପ୍ରତିଷ୍ଠିତା ଦେବା ଇତି ପ୍ରାର୍ଥନା । ଭୋଜ୍ୟଦାନକର୍ମାଚ୍ଛିଦ୍ରମସ୍ତୁ ।

-୦-

## ୪୭୪-ଶୁଦ୍ରାଦିଙ୍କର ଚତୁର୍ଥୀଶ୍ରାଦ୍ଧ ବିଧି

ଯଦି କୁଳାଚାରବ୍ୟବସ୍ଥୟା ଶୂଦ୍ରାଦୟଃପିଣ୍ଡଦାନମିଚ୍ଛନ୍ତି ତଦା-ହରିଦ୍ରାଚୂର୍ଣ୍ଣେନ ନବକୋଷ୍ଠିପିଣ୍ଡସ୍ଥାନମଣ୍ଡଳଂ କୁର୍ଯ୍ୟାତ୍ । ପ୍ରଙ୍ମୁଖୋଭୂତ୍ୱା । ବିକୀର୍ଣ୍ଣଂ ନାସ୍ତି । ପିଣ୍ଡସ୍ତରଣଂନାସ୍ତି । ଦୈବତୀର୍ଥେନ ଦଧିବଦରାକ୍ଷତସହିତାନ୍ ପିଣ୍ଡାନ୍ ଦଦ୍ୟାତ୍ । ଶଙ୍ଖେନ ଦୁର୍ବାଗ୍ରେ କ୍ଷୀରଂ ଦଦ୍ୟାତ୍ । ହାରିଦ୍ରଚୂର୍ଣ୍ଣେନ ପିଣ୍ଡମିଶ୍ରଣଂ କୁର୍ଯ୍ୟାତ୍ । ଅମୁକସଗୋତ୍ରେଅସ୍ମନ୍ ମାତରମୁକଦେବ ନାନ୍ଦୀମୁଖି ଏଷପିଣ୍ଡସ୍ତସ୍ୟୈ ସ୍ୱାହାବୃଦ୍ଧିଃ । ଦୁର୍ବାଗ୍ରେ କ୍ଷୀରଂ ସ୍ୱାହା ବୃଦ୍ଧିଃ ଏବଂ ପିତାମହୀପ୍ରପିତାମହ୍ୟୋଃ । ଅମୁକସଗୋତ୍ର ଅସ୍ମତ୍ପିତରମୁକଦେବଶର୍ମ୍ମାନ୍ନାନ୍ଦୀମୁଖ ଏଷପିଣ୍ଡସ୍ତସ୍ମୈ ସ୍ୱାହା ବୃଦ୍ଧିଃ । ଦୂର୍ବାଗ୍ରେକ୍ଷୀରଂ ତସ୍ମୈ ସ୍ୱାହା ବୃଦ୍ଧିଃ । ଏବଂ ପିତାମହପ୍ରପିତାମହୟୋଃ । ଅମୁକସଗୋତ୍ରଅସ୍ମନ୍ମାତାମହ



ଅମୁକଦେବଶର୍ମନ୍ନାନ୍ଦୀମୁଖ ଏଷପିଣ୍ଡସ୍ତସ୍ମୈ ସ୍ୱାହା ବୃଦ୍ଧିଃ । ଦୂର୍ବାଗ୍ରେ କ୍ଷୀରଂ ତସ୍ମୈ ସ୍ୱାହା ବୃଦ୍ଧିଃ । ଏବଂ ପ୍ରମାତାମହବୃଦ୍ଧପ୍ରମାତାମହୟୋଃ । ପିଣ୍ଡୋପରି ଗନ୍ଧପୁଷ୍ପଧୂପଦୀପଂ ଦତ୍ତ୍ୱା ନମସ୍କାରଂ କୁର୍ଯ୍ୟାଦନେନ ମନ୍ତ୍ରେଣ । ଓଁ ନମୋବୋନାନ୍ଦୀମୁଖାଃ ପିତରଃ ଶୁଷ୍ମାୟ । ଓଁ ନମୋ ବୋନାନ୍ଦୀମୁଖାଃ ପିତରସ୍ତପସେ । ଓଁ ନମୋ ବୋ ନାନ୍ଦୀମୁଖାଃ ପିତରୋଜ୍ଜୀବଂ ତସ୍ମୈ । ଓଁ ନମୋ ବୋନାନ୍ଦୀମୁଖାଃ । ପିତରୋଯୋଘାୟ । ମନ୍ୟବେ ସ୍ୱଧାୟେଭ୍ୟୋ ବୋନାନ୍ଦୀମୁଖାଃ ପିତରୋନମଃ । ଏତଦ୍‌ବେ ନାନ୍ଦୀମୁଖାଂପିତରୋବାସଃ । ଇତି ସୂତ୍ରଂ ଦଦ୍ୟାତ୍ । ତତଃପିଣ୍ଡୋପରି ମୁଖବାସାଦିମୁକତାମ୍ବୁଲଂ ଦଦ୍ୟାତ୍ । ଊର୍ଜଂ ବହନ୍ତୀତି ମନ୍ତ୍ରେଣ ଜଳଧାରୟା ବିସର୍ଜୟେତ୍ । ତତଃପିଣ୍ଡମାଘ୍ରାୟ ପିଣ୍ଡ ମୂଭୋଲ୍ୟ ସ୍ଥାନାନ୍ତରେ ସ୍ଥାପୟେତ୍ । ପ ୁ ଣ ୍ୟ । ହ ବ । ଚ ନ ଂ ପ ୁ ଣ ୍ୟ । ହ ମ ି ତ ୍ୟ । ଦି ଆବୟୋର୍ବରକନ୍ୟାୟୋର୍ବିବାହଙ୍ଗଚତୁର୍ଥୀପିଣ୍ଡାରୁକଶ୍ରାଦ୍ଧକର୍ମ ଯକ୍ତଂ ତତ୍‌ସୁକୃତ ମସ୍ତୁ । ତନ୍ନୁମିତାଦି । ଆଶୀର୍ବାଦଃ । ଯଥାଶକ୍ତି ବ୍ରାହ୍ମଣଭୋଜନଂ ।

ଇତି ସାମାନ୍ୟଭ୍ୟୁଦୟିକଶ୍ରାଦ୍ଧବିଧିଃ ।

-୦-

## ୪୭୫-ଚତୁର୍ଥୀ ଦିବସର କର୍ମ

ଆଭ୍ୟୁଦୟିକଶ୍ରାଦ୍ଧରେ କୁଳଚାରବ୍ୟବସ୍ଥା ।
ପିଣ୍ଡନିର୍ବପଣଂ କୁର୍ଯ୍ୟାନ୍ନ ବା କୁର୍ଯ୍ୟାନ୍ନରାଧିପ ।
ବୃଦ୍ଧିଶ୍ରାଦ୍ଧେ ମହାବାହୋ କୁଳଧର୍ମାନବେକ୍ଷ୍ୟ ତୁ ।

(ଭବିଷ୍ୟପୁରାଣେ)

ବ୍ୟାଖ୍ୟା-ଭବିଷ୍ୟ ପୁରାଣରେ କଥିତ କିଛି ଯେ ହେ ମହାବାହୋ ନରାଧିପ ! ବୃଦ୍ଧିଶ୍ରାଦ୍ଧରେ କୁଳଧର୍ମ ଅନୁସାରେ ପିଣ୍ଡଦାନ କରିବ ବା ନ କରିବ ।

ପିଣ୍ଡଦେୟ ଦ୍ରବ୍ୟନିର୍ଣ୍ଣୟ ।

ଦଧିକର୍କନ୍ଧୁମିଶ୍ରାଂଷ୍ଚ ପିଣ୍ଡାନ୍ ଦଦ୍ୟାତ୍ ଯଥାକ୍ରମଂ ।

କର୍କନ୍ଧୁର୍ବଦରୀଫଳଂ ।(ବଶିଷ୍ଠଃ)

ବ୍ୟାଖ୍ୟା-ବୃଦ୍ଧିଶ୍ରାଦ୍ଧରେ ଦଧି, ବରକୋଳି ମିଶ୍ରିତ ପିଣ୍ଡ ଯଥାକ୍ରମରେ ଦେବ ।)

ବିବାହସ୍ୟ ଚତୁର୍ଥଦିବସେ ନିତ୍ୟକର୍ମାନନ୍ତରଂ ଗୃହମଧ୍ୟେ ଶୁଚୌ ଦେଶେ ବରୋବରୁଣପୂଜାଂ କୁର୍ଯ୍ୟାତ୍ । (ଏହାର ବିଧି ୧୨୦ ନମ୍ବରରେ ଦେଖ) ।

ତାମ୍ରପାତ୍ର କୁଶଯବଗନ୍ଧପୁଷ୍ପଗୁବାକସହିତଂ ଜଳଂ ଗୃହୀତ୍ୱା ପୂର୍ବାଭିମୁଖଃ ସଂକଳ୍ପଂ କୁର୍ଯ୍ୟାତ୍ । ତଦ୍‌ଯଥା-ଦେଶକାଳବାକ୍ୟାନନ୍ତରଂ ଆବୟୋର୍ବର-କନ୍ୟାୟୋର୍ବିବାହାଙ୍ଗଚତୁର୍ଥୀ କର୍ମଣି କର୍ତ୍ତବ୍ୟେ ତଦଙ୍ଗତୟା ଅମୁକସଗୋତ୍ରାଣାଂ ଅସ୍ମନ୍ମାତୃ ପିତାମହୀପ୍ରପିତାମହୀନାଂ ଅସ୍ମତ୍ପିତୃପିତାମହପ୍ରପିତାମହାନାଂ ଅମୁକଦେବ ଅମୁକଦେବଅମୁକଦେବାର୍ମଣାଂ ନାନ୍ଦୀମୁଖୀନାଂ ଅମୁକସଗୋତ୍ରାଣାଂ ଅସ୍ମନ୍ମାତାମହପ୍ରମାତାମହ ବୃଦ୍ଧପ୍ରମାତାମହାନାଂ ଅମୁକଦେବଅମୁକଦେବ-ଅମୁକଦେବଶର୍ମଣାଂନାନ୍ଦୀମୁଖୀନାଂ ବସୁସତ୍ୟସଂଜ୍ଞାକାନାଂ ବିଶ୍ୱେଷାଂ ଦେବାନାଂ ଗଣପତି ପୂରସରଗୌର୍ଯ୍ୟାଦ୍ୟଷ୍ଟାଦଶମାତୃଗଣପୂଜା-ବସୋର୍ଦ୍ଧାରାୟୁଷ୍ୟମନ୍ତ୍ରଜପପୂର୍ବକପିଣ୍ଡାତ୍ମକବୃଦ୍ଧିଶ୍ରାଦ୍ଧମହଂ କରିଷ୍ୟେ । ଯଜ୍ଞାଗ୍ରତ ଇତି ପଠିତ୍ୱା ।

(ସଂକଳ୍ପ ବିଧି ୨୪୪ ନମ୍ବର ଦେଖ ।)

ତତଃ ପାଠେ ଗଣପତ୍ୟାଦଷ୍ଟାଦଶମାତୃଗଣାନ୍ ହରିଦ୍ରାଚୂର୍ଣ୍ଣେନ ମଣ୍ଡଳଂ ଲିଖିତ୍ୱା ଆବାହନାଦିତାମ୍ବୁଲାନ୍ତଂ ପୂଜୟେତ୍ । (ପୂଜା ବିଧି ୧୩୧ ନମ୍ବର ଦେଖ ।)

କୁଡ୍ୟଲଗ୍ନା ବସୋର୍ଦ୍ଧାରାଃ ପଞ୍ଚ ବା ସପ୍ତ ଦଦ୍ୟାତ୍ । (ଏହାର ବିଧି ୧୩୨ ନମ୍ବର ଦେଖ ।)

## *୪୭୬-ପିଣ୍ଡାତ୍ମକ ବୃଦ୍ଧି ଶ୍ରାଦ୍ଧ

କର୍ତ୍ତା ଅଷ୍ଟୌ ବ୍ରାହ୍ମଣନାହୂୟ ପ୍ରାଗଗ୍ରକୁଶୋତ୍ତରେଷାସନେଷୁ ଦକ୍ଷିଣୋ ପତ୍ରମାନ୍ ଉପବେଶ୍ୟ ସ୍ୱୟଂ ପ୍ରାଙ୍ମୁଖଉପବିଶ୍ୟ ପ୍ରଥମବିପ୍ରୟୋର୍ଜାନୁନୀ ସ୍ପୃଶନ୍ ଓଁ ସ୍ୱାଗତମ୍ଭଃ ସୁସ୍ୱାଗତଂ ଅଦ୍ୟାଭ୍ୟୁଦୟିକଶ୍ରାଦ୍ଧାଖ୍ୟେ କର୍ମଣି ସତ୍ୟବସୁସଂଜ୍ଞକବୈଶ୍ୱଦେବକୃତ୍ୟେ ଭବନ୍ତୌ ମୟା ନିମନ୍ତ୍ରିତୌ ଇତି ନିମନ୍ତ୍ରୟତ୍ । ନିମନ୍ତ୍ରିତୌ ସ୍ୱ ପ୍ରତିବଚନଂ । ତଦୁତ୍ତରୟୋ (ତତ୍ପରବର୍ତ୍ତି ନୋଃ) ବିପ୍ର ୟୋର୍ଜାନୁନା ସ୍ପୃଶନ୍ ସ୍ୱାଗତମ୍ଭଃ ସୁସ୍ୱାଗତଂ

---

*-୪୭୬ (୧) ଆଭ୍ୟୁଦୟିକରେ ନିଷେଧ ବାକ୍ୟ-ଅତ୍ର ସତ୍ୟବସୁ ବିଶ୍ୱେ ଦେବୌ ତୟୋଃ ସ୍ଥାନେ ଦ୍ୱୌ ବିପ୍ରୌ ମାତ୍ରାଦୀନାଂ ଚ ପ୍ରତ୍ୟେକଂ ଦ୍ୱୌ ଦ୍ୱୌ ଏବଂ ବିଂଶତିର୍ବ୍ରାହ୍ମଣାଃ । ଯଦ୍‌ବା ମାତ୍ରାଦୀନାଂ ତ୍ରୟାଣାଂ ଦ୍ୱୌ ଦ୍ୱୌ ଏବମଷ୍ଟୌ । ଅତ୍ର ନାପସବ୍ୟଂ । ତିଳସ୍ଥାନେ ଯବା ଏବ । ସ୍ୱଧାସ୍ଥାନେ ସ୍ୱାହାଶବ୍ଦଃ । ସବ୍ୟଜାନନିପାତାନାଭାବଃ । ସର୍ବଂ ପ୍ରାଙ୍ମୁଖ କୁର୍ଯ୍ୟାତ୍ ।



ଅଦ୍ୟାଭ୍ୟୁଦୟିକେ ଶ୍ରାଦ୍ଧାଖ୍ୟେ କର୍ମଣି ନାନ୍ଦୀମୁଖୀସ୍ମନ୍ ମାତୃପିତାମହୀପ୍ରପିତାମହୀକୃତ୍ୟେ ଭବନ୍ତୌ ମୟା ନିମନ୍ତ୍ରିତୌ । ଇତି ନିମନ୍ତ୍ରଣଂ । ନିମନ୍ତ୍ରିତୌ ସ୍ୱଃ ଇତି ପ୍ରତ୍ତବଚନଂ । ତଦୁରୟୋ ର୍ବିପ୍ରୟୋର୍ଜନୁନୀ ସ୍ପୃଶନ୍ ସ୍ୱାଗତମ୍ବଃ ସୁସ୍ୱାଗତଂ ଅଦ୍ୟାଭ୍ୟୁଦୟିକେ ଶ୍ରାଦ୍ଧେଖ୍ୟେ କର୍ମଣି ନାନ୍ଦୀମୁଖାସ୍ମତ୍ ପିତୃପିତାମହକୃତ୍ୟେ ଭବନ୍ତୌ ମୟା ନିମନ୍ତ୍ରିତୌ । ଇତି ନିମନ୍ତ୍ରଣଂ । ନିମନ୍ତ୍ରିତୌ ସ୍ୱଃ ଇତି ପ୍ରତିବଚନଂ । ତଦୁତ୍ତରୟୋର୍ବିପ୍ର ୟୋର୍ଜାନୁନୀ ସ୍ପୃଶନ୍ ସ୍ୱାଗତମ୍ବଃ ସୁସ୍ୱାଗତଂ ଆଦ୍ୟଭ୍ୟୁଦୟିକେ

---

ବ୍ୟାଖ୍ୟା-ଆଭ୍ୟୁଦୟିକ ଶ୍ରାଦ୍ଧରେ ଦୁଇ ବିଶ୍ୱେଦେବାଙ୍କ ସ୍ଥାନରେ ଦୁଇ ବ୍ରାହ୍ମଣ ବସାଇ ଆବାହନ କରିବ ଏବଂ ମାତୃତିନିପୁରୁଷ, ପିତୃତିନିପୁରୁଷ ଓ ମାତୃମହତିନିପୁରୁଷ ଏପରି ନଅ ପୁରୁଷଙ୍କ ସ୍ଥାନରେ ପ୍ରତ୍ୟେକରେ ଦୁଇ ୨ଜଣ ଅର୍ଥାତ୍ ୧୮ ଜଣ ବ୍ରାହ୍ମଣ ବସାଇ ଆବାହନ କରିବ । ଅଥବା ମାତୃତିନିପୁରୁଷରେ ଦୁଇଜଣ ପିତୃତିନିପୁରୁଷରେ ଦୁଇଜଣ ମାତାମହତିନିପୁରୁଷରେ ଦୁଇଜଣ ଆଉ ବିଶ୍ୱେଦେବା ସ୍ଥାନରେ ଦୁଇଜଣ ଏରୂପ ଆଠଜଣ ବ୍ରାହ୍ମଣ ବସାଇ ଆବାହନ କରିବ । ଏହି ଆଭ୍ୟୁଦୟିକ ଶ୍ରାଦ୍ଧରେ ଅପସବ୍ୟ ହେବ ନାହିଁ, ସବୁ କାର୍ଯ୍ୟ ସବ୍ୟ ହୋଇ କରିବ । ତିଳସ୍ଥାନରେ ଯବ ବ୍ୟବହାର ଓ ସ୍ୱଧାସ୍ଥାନରେ ସ୍ୱାହା ଶବ୍ଦ ପ୍ରୟୋଗ କରିବ । ଆଉ ପିଣ୍ଡଦାନ ସମୟରେ ବାମଜାନୁ ପକାଇବ ନାହିଁ । ସମସ୍ତ କାର୍ଯ୍ୟ ପୂର୍ବମୁଖ ହୋଇ କରିବ । ମୋଟକ ଓ ବିଷ୍ଟର ପ୍ରଭୃତି ସ୍ଥାନରେ କେବଳ ସଲଖ କୁଶ ବ୍ୟବହାର କରିବ ।

(୨) ଯଥାକୁଳଦେଶାଚାରେଣ ସପିଣ୍ଡକମପିଣ୍ଡକଂ ବା କାର୍ଯ୍ୟଂ-

ଅଗ୍ନୌକରଣମର୍ଘ୍ୟଂ ଚାବାହନଂ ଚାବନେଜନଂ ।
ପିଣ୍ଡଶ୍ରାଦ୍ଧେ ପ୍ରକୁର୍ବୀତ ପିଣ୍ଡହୀନେ ନିବର୍ତ୍ତତେ ।
ପିଣ୍ଡନିର୍ବାପରହିତଂ ଯତ୍ର ଶ୍ରାଦ୍ଧଂ ବିଧୀୟତେ ।
ସ୍ୱଧାବାଚନଲୋପଃସ୍ତି ବିକିରସ୍ତୁ ନ ଲୁପ୍ୟତ୍ୱେ ।
ଅକ୍ଷଯ୍ୟଂ ଦକ୍ଷିଣାସ୍ୱସ୍ତି ସୌମନସ୍ୟଂ ଯଥା ସ୍ଥିତଂ । (ଗଦାଧରଭାଷ୍ୟେ)

ବ୍ୟାଖ୍ୟା-ଦେଶ ଓ କୁଳାଚାର ଅନୁସାରେ ଶ୍ରାଦ୍ଧ ଦୁଇପ୍ରକାର ହୁଏ-ସପିଣ୍ଡକ ଓ ଅପିଣ୍ଡକ । ଯେଉଁ ଶ୍ରାଦ୍ଧରେ ପିଣ୍ଡ ଦିଆଯାଏ ତହିଁରେ ଅଗ୍ନୌକରଣ, ଅର୍ଘ୍ୟଦାନ, ଆବାହନ ଓ ଅବନେଜନ ଏ ସମସ୍ତ କର୍ମ କରାଯାଏ (ଅର୍ଥାତ୍ ମନ୍ତ୍ର ପଢ଼ି ପିଣ୍ଡ ରଖିବା କୁଶ ଉପରେ ଓ ପିଣ୍ଡଉପରେ ଜଳ ସେଚନ କରିବା, ଏ ଉଭୟଙ୍କୁ ଅବନେଜନ କହନ୍ତି) । ଆଉ ଯେଉଁ ଶ୍ରାଦ୍ଧରେ ପିଣ୍ଡ ଦିଆଯାଏ ନାହିଁ ସେଥିରେ ଉପରୋକ୍ତ କର୍ମମାନ ହୁଏ ନାହିଁ ଏବଂ ସ୍ୱାଧଶବ୍ଦ ବ୍ୟବହୃତ ହୁଏ ନାହିଁ କିନ୍ତୁ ବିକୀର୍ଣ୍ଣ ପିଣ୍ଡ ଦେବାକୁ ହେବ, ଆଉ ଅକ୍ଷଯ୍ୟ (ଶ୍ରାଦ୍ଧରେ ଶେଷ ଦେୟ ଘୃତ ମଧୁଯୁକ୍ତ ଜଳ୍), ଦକ୍ଷିଣା, ସ୍ୱସ୍ତି, ସୌମନସ୍ୟ, ଏ ସମସ୍ତ କର୍ମ କରିବାକୁ ହେବ ।

ଶ୍ରାଦ୍ଧେଖ୍ୟେ କର୍ମଣି ନାନ୍ଦୀମୁଖାସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହକୃତ୍ୟେ ଭବନ୍ତୌ ମୟା ନିମନ୍ତ୍ରିତୌ ଇତି ନିମନ୍ତ୍ରଣଂ । ନିମନ୍ତ୍ରିତୌ ସ୍ବଃ ଇତି ପ୍ରତିବଚନଂ । "ଅକ୍ରୋଧନୈଃ ଶୌଚପରୈଃ ସତତଂ ବ୍ରହ୍ମଚାରିଭିଃ ଭବିତବ୍ୟଂଭବଦ୍ଭିଶ୍ଚ ମୟା ଚ ଶ୍ରାଦ୍ଧକର୍ମଣି । ସର୍ବତ୍ର ନିୟମାନ ଶ୍ରାବୟେତ୍ । ସତ୍ୟ ବସୁସଂଜ୍ଞକାବିଶ୍ୱେଦେବା ଏସପାଦାର୍ଘ୍ୟଂବୋନମଃ । ଇତି ଗନ୍ଧାକ୍ଷତାଦିଯୁକ୍ତଂ ପାଦାର୍ଘ୍ୟ ଦତ୍ତ୍ୱା ଅଦ୍ୟେହାମୁକଗୋତ୍ରାଃ ଅସ୍ମନ୍ମାତୃପିତାମହୀପିତାମହ୍ୟଃ ଅମୁକାମୁକଦେବ୍ୟଃ ନାନ୍ଦୀମୁଖ୍ୟଃ ଏପଦ୍ୱାଦାର୍ଘ୍ୟଂ ବୋନମଃ । ଇତି ଗନ୍ଧାକ୍ଷତାଦିଯୁକ୍ତ-ପାଦାର୍ଘ୍ୟଂମାତୃବର୍ଗତ୍ରୟବ୍ରାହ୍ମଣୟୋଶ୍ଚରଣେଷୁ ଦତ୍ତ୍ୱା ଅଦ୍ୟେହାମୁକଗ୍ରୋତ୍ରାଃ ଅସ୍ମତ୍ପିତୃପିତାମହପ୍ରପିତାମହଃ ଅମୁକାମୁକଦେବଶର୍ମ୍ମଣଃ ନାନ୍ଦୀମୁଖଃ ଏତଦ୍ପାଦାର୍ଘ୍ୟଂ ବୋମନଃ । ଇତି ଗନ୍ଧାକ୍ଷତାଦିଯୁକ୍ତପାଦାର୍ଘ୍ୟଂ ପିତାଦିତ୍ରୟବର୍ଗବ୍ରାହ୍ମଣୟୋଶ୍ଚରଣେଷୁ ଦତ୍ତ୍ୱା ଅଦ୍ୟେହାମୁକଗୋତ୍ରାଃ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାଃ ଅମୁକାମୁକଦେବଶର୍ମ୍ମାଣଃ ନାନ୍ଦୀମୁଖାଃ ଏତତ୍ ପାଦାର୍ଘ୍ୟଂ ବୋନମଃ । ଇତି ମାତାମହତ୍ରୟବର୍ଗବ୍ରାହ୍ମଣୟୋଶ୍ଚରଣେଷୁ ଦଦ୍ୟାତ୍ ।

ବ୍ୟାଖ୍ୟା-କର୍ତ୍ତା ଆଠଜଣ ବ୍ରାହ୍ମଣଙ୍କୁ ଆହ୍ୱାନ କରି ପୂର୍ବକୁ ଅଗହୋଇଥିବା କୁଶାସନରେ ପୂର୍ବକୁ ମୁଖ କରି ଉତ୍ତରକୁ ଦକ୍ଷିଣକ୍ରମେ ବସାଇବ । ଆପେ ଉତ୍ତରମୁଖ ହୋଇ ବସିବ । ତତ୍ପରେ ଉପରୋକ୍ତ ମନ୍ତ୍ର ପଢ଼ି ବରଣ କରିବ । ତଦୁତ୍ତାରୁ ଉପରଲିଖିତ "ଅକ୍ରୋଧନୈଃ" ଏହି ମନ୍ତ୍ର ପାଠ କରି ପ୍ରତ୍ୟେକଙ୍କୁ ଶ୍ରବଣ କରାଇବ ଏବଂ ବିଶ୍ୱେଦେବା, ମାତ୍ରାଦିତିନିପୁରୁଷ, ପିତ୍ରାଦିତିନିପୁରୁଷ ଓ ମାତାମହାଦିତିନିପୁରୁଷ ପ୍ରତ୍ୟେକଙ୍କର ନାମ ଗୋତ୍ର ଉଚ୍ଚାରଣ କରି ପ୍ରତ୍ୟେକ ବ୍ରାହ୍ମଣଙ୍କୁ କ୍ରମରେ ଗନ୍ଧାଦିଯୁକ୍ତ ପାଦାର୍ଘ୍ୟ ଦେବ ।

ତତୋବ୍ରାହ୍ମଣାନାଚାମର୍ଯ୍ୟ ସ୍ୱୟମପ୍ୟାଚମ୍ୟ ଶ୍ରାଦ୍ଧଦେଶେ ପ୍ରଥମକଳ୍ପତେଷୁ ଆସନେଷୁ "ଇଦମାସନମାସ୍ୟତାଂ" ଇତ୍ୟୁକ୍ତ୍ୱା ଶ୍ରାଦ୍ଧସ୍ଥାନେ ଯବବିକିରଣଂ ଦୀପସ୍ଥାପନଂ । ପ୍ରଣବ ବ୍ୟାହୃତି ପୂର୍ବିକାୟା ଗାୟତ୍ର୍ୟାଃ ତ୍ରିର୍ଜପଃ । ପାତେ, ଦୁର୍ବାଦଧି କୁଶଯବଜଳାନି ନିକ୍ଷିପ୍ୟ ବାମହସ୍ତେ ଧୃତ୍ୱା ତଦୁପରି ଦକ୍ଷିଣହସ୍ତଂ ଦତ୍ତ୍ୱା ଓଁ ମଧୁ ୩ ମଧୁବାତାଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ । ମାଧ୍ୱୀର୍ନ୍ନଃ ସନ୍ତ୍ୱୋଷଧୀଃ ।୧ । ମଧୁ ନକ୍ତମୁତୋଷସୋମଧୁମତ୍ପାର୍ଥି ବଂରଜଃ । ମଧୁଦ୍ୟୌରସ୍ତୁ ନଃ ପିତା ।୨ । ମଧୁମାନ୍ନୋବନସ୍ପତିର୍ମଧୁ ମାଂ ଅସ୍ତୁ ସୂର୍ଯ୍ୟଃ । ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।୩ । ଇତ୍ୟାଦି ଋକ୍ ତ୍ରୟଂ ପଠିତ୍ୱା "ଓଁ ଦେବାଭ୍ୟଃ ପିତୃଭ୍ୟଶ୍ଚ ମହାଯୋଗିଭ୍ୟ ଏବ ଚ । ନମଃ



ସ୍ୱାହାହୈ ସ୍ୱାଧାୟୈ ନିତ୍ୟମେବ ନମୋନମଃ ।" ଇତି ତିର୍ଜପେତ୍ । ତେନ ଶ୍ରାଦ୍ଧଦ୍ରବ୍ୟପ୍ରୋକ୍ଷଣଂ ।

**ବ୍ୟାଖ୍ୟା**-ତତ୍ପରେ ବରଣି ହୋଇଥିବା ବ୍ରାହ୍ମଣମାନଙ୍କୁ ଆଚମନ କରାଇ ଓ ନିଜେ ଆଚମନ କରି ଆପଣମାନେ ଏହି ୨ ଆସନରେ ବସନ୍ତୁ । ଏହା କହି ଶ୍ରାଦ୍ଧସ୍ଥାନରେ ଯବ ବୁଣିଦେଇ ଦୀପସ୍ଥାପନ କରି ଓ ପ୍ରଣବବ୍ୟାହୃତି ପୂର୍ବକ ଗାୟତ୍ରୀମନ୍ତ୍ର ତିନିଥର ଜପିବ । ତତ୍ପରେ ପାତ୍ରିରେ ଦୁର୍ବା, ଦଧି, କୁଶ, ଯବ ଓ ଜଳ ରଖି ବାମହସ୍ତରେ ଧରି ତାହା ଉପରେ ଦକ୍ଷିଣହସ୍ତ ଘୋଡ଼ାଇ ଉପରଲିଖିତ ମଧୁବାତାଦି ତିନିକାଣ୍ଡି ମନ୍ତ୍ର ପଢ଼ି "ଦେବତାଭ୍ୟଃ" ଏହି ମନ୍ତ୍ରକୁ ତିନିବାର ଜପିବ । ସେହି ଜଳକୁ ନେଇ ଶ୍ରାଦ୍ଧଦ୍ରବ୍ୟ ଉପରେ ସିଞ୍ଚିଦେବ ।

ବସୁସତ୍ୟସଂଜ୍ଞକବିଶ୍ୱେଦେବାନାନ୍ଦୀମୁଖାଃ ଇଦଂ ବୋନମଃ । ପ୍ରାଗଗ୍ରଂ ଋଜୁ କୁଶତ୍ରୟଂ ସଯବଜଳଂ ଦକ୍ଷିଣତଃ ଆସନୋପରି ଦତ୍ତ୍ୱା ଅମୁକସଗୋତ୍ରାଃ ଅସସ୍ମନ୍ମାତୃପିତାମହୀ-ପ୍ରପିତାମହ୍ୟଃ ଅମୁକାମୁକଦେବ୍ୟଃ ନାନ୍ଦୀମୁଖଃ ଇଦମାସନଂ ବୋନମଃ । ଇତି ମାତୃବର୍ଗବିପ୍ରପ୍ରଦ୍ୱୟାସନୋପରି ବିଭଜ୍ୟ ଦତ୍ତ୍ୱା ଅମୁକସଗୋତ୍ରାଃ ଅସ୍ମତ୍ପିତୃପିତାହପ୍ରପିତାମହାଃ ଅମୁକାମୁକଦେବଶର୍ମାଣଃ ନାନ୍ଦୀମୁଖାଃ ଇଦମାସନଂ ବୋନମଃ । ଇତି ପିତୃବର୍ଗାବ୍ରାହ୍ମଣଦ୍ୱୟାସନୋପରି ବିଭାଜ୍ୟ ଦତ୍ତ୍ୱା ଅମୁକସଗୋତ୍ରାଃ ଅସ୍ମନ୍ମାତାମହପ୍ରମାତାମହବୃଦ୍ଧପ୍ରମାତାମହାଃ ଅମୁକାମୁକଦେବଶର୍ମାଣଃ ନାନ୍ଦୀମୁଖାଃ ଇଦମାସନଂ ବୋନମଃ । ଇତି ମାତାମହବର୍ଗବ୍ରାହ୍ମଣଦ୍ୱୟାସନୋପରି ପୁର୍ବବଦାସନଂ ଦଦ୍ୟାତ୍ ।

ତତଃ ଆବାହନଂ । ବିଶ୍ୱେଦେବାନାବାହୟିଷ୍ୟେ "ଆବାହୟ" ଇତି ପ୍ରତିବଚନଂ । ଓଁ ବିଶ୍ୱେଦେବାସ ଆଗତ ଶୃଣୁତାମଇମଂ ହବଂ । ଏବଂ ବିହର୍ନିଷୀଦତ । ଓଁ ବିଶ୍ୱେଦେବାଃ ଶୃଣୁତୋମ ହବଂ ମେ ଯେ ଅନ୍ତରିକ୍ଷୋୟ ଉପଦ୍ୟବିଷ୍ଠ । ଯେ ଅଗ୍ନିର୍ଜିହ୍ୱା ଉତବାୟଜତ୍ରା ଆସଦ୍ୟାସ୍ମିନ୍ ବର୍ହିଷି ମାଦୟଧ୍ୱଂ । ଓଁ ଆଗଚ୍ଛନ୍ତୁ ମହାଭାଗା ବିଶ୍ୱେଦେବା ବରପ୍ରଦାଃ । ଯେ ଯତ୍ର ବିହିତାଃ ଶ୍ରାଦ୍ଧେ ସାବଧାନା ଭବନ୍ତୁ ତେ ଇତି ପଠେତ୍ । ନାନ୍ଦୀମୁଖା ମାତୃରାବାହୟିଷ୍ୟେ । ଇତ୍ୟୁକ୍ତ୍ୱା ଓଁ ଉଶନ୍ତସ୍ତ୍ୱା ନିଧୀମହ୍ୟୁଶନ୍ତଃ ସମିଧୀମହି । ଉଷ୍ଣନ୍ନୁଶତ ଆବହଁ ପିତୃନ୍ ହବିଷେ ଅତ୍ତବେ । ଇତି ମାତୃରାବାହ୍ୟ । ଓଁ ଆୟନ୍ତୁ ନଃ ପିତରଃ ସୋମ୍ୟସୋଽଗ୍ନିଷ୍ୱାତ୍ତାଃ ପଥିଭିର୍ଦ୍ଦେବଯାନୈଃ । ଅସ୍ମିନ୍ ଯଜ୍ଞେସ୍ୱଧୟା ମଦନ୍ତୋଽଧିବ୍ରୁବନ୍ତୁ ତେବନ୍ତ୍ୱସ୍ମାନ୍ ଇତି ପଠେତ୍ । ଏବଂ ପିତୃନ୍ ମାତାମହାନାବାହ୍ୟ-

**ବ୍ୟାଖ୍ୟା**-ତଦୁତ୍ତାରୁ ଶ୍ରାଦ୍ଧକର୍ତ୍ତା ନିଜ ଆସନରେ ବସି ଶ୍ରାଦ୍ଧବ୍ରାହ୍ମଣମାନଙ୍କୁ ଆସନ ପାଦାସନ ଦେଇ ଦୁଇ ବିଶ୍ୱେଦେବା, ମାତୃତିନିପୁରୁଷ, ପିତୃତିନିପୁରୁଷ ଓ

ମାତାମହତିନିପୁରୁଷଙ୍କୁ କ୍ରମରେ ଆବାହାନମନ୍ତ୍ର ପଢ଼ି ସେହି ସେହି ବ୍ରାହ୍ମଣମାନଙ୍କଠାରେ ଆବାହନ କରିବ ।

ଅର୍ଘ୍ୟକରଣଂ । ତତୋଦେବପୂର୍ବକଂ ସର୍ବେଷୁ ଅର୍ଘ୍ୟପାତ୍ରେଷୁ "ଓଁ ପବିତ୍ରେସ୍ଥୋ ବୈଷ୍ଣବ୍ୟୌ ସବିତୁର୍ବା ପ୍ରସବଉପୁ ନାମି । ଅଚ୍ଛିଦ୍ରେଣ ପବିତ୍ରେଣ ସୂର୍ଯ୍ୟସ୍ୟ ରଶ୍ମିଭିଃ ।" ଇତି ମନ୍ତ୍ରେଣ ପବିତ୍ରାଣି ଦତ୍ତ୍ୱା ଓଁ ଶନ୍ନୋଦେବୀରଭିଷ୍ଟୟ ଆପୋଭବନ୍ତୁପୀତୟେ । ଶଂଯୋରଭିସ୍ରବନ୍ତୁନଃ ।" ଇତି ସର୍ବେଷୁ ଅର୍ଘ୍ୟପାତ୍ରେଷୁ ଜଳଂଦଦ୍ୟାତ୍ । ତତୋଦେବାର୍ଘ୍ୟପାତ୍ରେ । "ଓଁ ଯବୋଽସିୟବୟାସ୍ମଦ୍‌ବୋଷୋୟବୟାରାତିଃ । ଦିବେତ୍ୱାନ୍ତରିକ୍ଷାୟ ତ୍ୱା ପୃଥିବ୍ୟୈ ତ୍ୱା" ଇତି ଯବାନ୍ ବିକୀର୍ଯ୍ୟତତଃ ମାତ୍ରାଦିପାତ୍ରେଷୁ "ଓଁ ଯବୋଽସ ସୋମଦୈବତ୍ୟୋଗୋସବୋଦେବନିର୍ମିତଃ । ପ୍ରତ୍ନମିଭିଃ ପୃକ୍ତଃ ପ୍ରପୁଷ୍ୟା ନାନ୍ଦୀମୁଖାଲ୍ଲୋକାନ୍ ପ୍ରୀଣାହି ନଃ ସ୍ୱାହା ।" ଇତି ମନ୍ତ୍ରେଣଯବାନ୍ କ୍ଷିପେତ୍ । ତତଃପ୍ରତ୍ୟେକଂଗନ୍ଧପୁଷ୍ପେ ତୁଷ୍ଣୀଂ ଦଦ୍ୟାତ୍ । ତତଃ ପ୍ରଥମଦେବପାତ୍ରଂ ବାମହସ୍ତେ ଧୃତ୍ୱାତତତ୍ରସ୍ଥଂପବିତ୍ରଂ ବ୍ରାହ୍ମଣସମୀପେ ନିଧାୟ ତଦୂପରି କିଞ୍ଚିଦୂଦକାନ୍ତରଂ ଦତ୍ତ୍ୱା "ଓଁ ଯାଦିବ୍ୟା ଆପଃ ପୟସାସମ୍ଭୂବୂର୍ଯ୍ୟା ଅନ୍ତରିକ୍ଷଂ ଉତ ପାର୍ଥିବୀର୍ଯ୍ୟାଃ । ହିରଣ୍ୟା ବର୍ଣ୍ଣାୟକିୟାସ୍ତାନ ଆପଃଶିବା ଶନଂସ୍ୟୋନଃ ସୁହବାଭବନ୍ତୁ ।" ଇତିପଠିତ୍ୱାକୁଶତ୍ରୟଯବଜଳାନ୍ୟାଦାୟ "ଓଁ ବସୁସଂଜ୍ଞକାବିଶ୍ୱେଦେବାନାନ୍ଦୀମୁଖା ଏଷବୋହସ୍ତାର୍ଘୋ୍ୟ ନମଃ" ଏବଂ ସତ୍ୟସଂଜ୍ଞକ ବିଶ୍ୱେଭ୍ୟଶ୍ଚ ହସ୍ତାର୍ଘ୍ୟଂ ଦଦ୍ୟାତ୍ । ତତୋମାତୃରର୍ଘପାତ୍ରମାଦାୟ ପୂର୍ବବଦ୍ଧୃତ୍ୱ । "ଯାଦିବ୍ୟା" ଇତ୍ୟାଦି ପଠିତ୍ୱା କୁଶାଦୀନ୍ୟାଦାୟ ସର୍ବଂପୂର୍ବବତ୍ କୃତ୍ୱା କୁଶଦୀନ୍ୟାଦାୟ "ଓଁ ଅଦ୍ୟାମୁକଗୋତ୍ର ପିତରମୁକଶର୍ମନ୍ନାନ୍ଦୀମୁଖ ଏଷତେ ହସ୍ତାର୍ଘୋନମଃ ।" ଏବଂ ପିତାମହପ୍ରମିତମହୟୋରପି ଦଦ୍ୟାତ୍ । ତତୋମାତାମହାର୍ଘପାତ୍ରମାଦାୟ ସର୍ବଂ ପୂର୍ବବତ୍ କୃତ୍ୱାକୁଶାଦୀନ୍ୟାଦାୟ "ଓଁ ଅଦ୍ୟାମୁକଗୋତ୍ର ମାତାମହାମୂକଶର୍ମନ୍ନାନ୍ଦୀମୁଖ ଏଷତେ ହସ୍ତାର୍ଘୋ ନମଃ" ଏବଂ ପ୍ରମାତାମହବୃଦ୍ଧପ୍ରମାତାମହୟୋରପି ଦଦ୍ୟାତ୍ । ତତୋଽବଶିଷ୍ଟଜଳପବିତ୍ରଯୁତଂ ପ୍ରଥମ ଦେବାର୍ଘପାତ୍ରମାଦାୟ "ଓଁ ବିଶ୍ୱେଭ୍ୟୋଦବେଭ୍ୟଃ ସ୍ଥାନମସୀ" ତି ମନ୍ତ୍ରେଣ ଦେବାସନଦକ୍ଷିଣଭାଗେ ଉତ୍ତାନଂ ସ୍ଥାପୟେତ୍ । ଏବମପରଦେବାର୍ଘପାତ୍ରଂ ତତ୍ତଦାସନଦକ୍ଷିଣଭାଗେ ଉତ୍ତାନଂ ସ୍ଥାପୟତ୍ । ତତଃ ପିତାମହୀପ୍ରପିମହୀପାତ୍ରଦ୍ୱୟସ୍ଥିତଂ ପବିତ୍ରାଦି ମାତ୍ରର୍ଘପାତ୍ରେ ନିଧାୟ ମାତ୍ରର୍ଘପାତ୍ରଂ ପିତାମହ୍ୟର୍ଘ ପାତ୍ରୋପରି ତତ୍ପାତ୍ରଂ ପ୍ରପିତାମହ୍ୟର୍ଘପାତ୍ରୋପରି ନିଧାୟଦକ୍ଷିଣକରେଣାଦାୟ "ଓଁ ମାତୃଭ୍ୟ ସ୍ଥାନମ" ସୀତି ମାତ୍ର୍ୟସନବାମ ଭାଗେ



ନ୍ୟୁବ୍‌ଜୀ କୁର୍ଯ୍ୟାତ୍ । ଏବମେବପିତ୍ରାଦ୍ୟର୍ଘ ପାତ୍ରାଣାଂ ମେଳନଂକୃତ୍ୱା ପିତାସନବାମଭାଗେ ଓଁ ପିତୃଭ୍ୟଃ ସ୍ଥାନମସୀ” ତି ନ୍ୟୁବ୍‌ଜୀକୁର୍ଯ୍ୟାତ୍ । ଏବମେବ ମାତାମହାଦ୍ୟର୍ଘପାତ୍ରାଣାଂ ମେଳନଂ କୃତ୍ୱା ମାତାମହାସନବାମଭାଗେ “ଓଁ ମାତାମହପ୍ରମାତାମହବୃଦ୍ଧପ୍ରମାତାମହେଭ୍ୟ ସ୍ଥାନମସୀ” ତି ନ୍ୟୁବ୍‌ଜୀକୁର୍ଯ୍ୟାତ୍ ।

ବ୍ୟାଖ୍ୟା-ତତ୍ପରେ ଦୁଇ ବିଶ୍ୱେଦେବାଙ୍କର ଦୁଇ ଅର୍ଘ୍ୟପାତ୍ର, ମାତୃ ତିନିପୁରୁଷଙ୍କର ତିନି ଅର୍ଘ୍ୟପାତ୍ର, ପିତୃତିନିପୁରୁଷଙ୍କର ତିନି ଓ ମାତାମହତିନିପୁରୁଷଙ୍କର ତିନି ଏରୂପ ଏଗାର ଅର୍ଘ୍ୟପାତ୍ର, କ୍ରମେ ପ୍ରତ୍ୟେକର ପାଖରେ ରଖିବ । ତତ୍ପରେ ପ୍ରଥମେ ବିଶ୍ୱଦେବା, ତଦୁତ୍ତାରୁ ମାତୃ, ପିତୃ ଓ ମାତାମହାଦିପାତ୍ରରେ କ୍ରମେ ‘ପବିତ୍ରେସ୍ଥୋ’ “ଏହି ମନ୍ତ୍ର ପଢ଼ି* ପବିତ୍ର (କୁଶ) ପକାଇବ ଓ ‘ଶନ୍ନୋଦେବୀ’ ଏହି ମନ୍ତ୍ର ପଢ଼ି ସମସ୍ତ ଅର୍ଘ୍ୟପାତ୍ରରେ ସେହିକ୍ରମେ ଜଳ ଦେବ । ତତ୍ପରେ ବିଶ୍ୱଦେବା ପାତ୍ରରେ “ଯବୋଽସିଯବାୟା” ଏହି ମନ୍ତ୍ର ପଢ଼ି ଯବ ପକାଇବ । ମାତୃ ପିତୃ ଓ ମାତାମହାଦିପାତ୍ରରେ “ଯବୋଽସି ସୋମଦୈବତ୍ୟୋ” ଏହି ମନ୍ତ୍ର ପଢ଼ି ଯବ ପକାଇବ । ତଦନନ୍ତର ପ୍ରଥମ ବିଶ୍ୱେଦେବାପାତ୍ରକୁ ବାମହସ୍ତରେ ଧରି ତହିଁରେ ଥିବା ପବିତ୍ର (କୁଶ)କୁ ଶ୍ରାଦ୍ଧବ୍ରାହ୍ମଣସମ୍ମୁଖରେ ରଖି ସେହି କୁଶ ଉପରେ କିଞ୍ଚିତ ଅନ୍ୟ ଜଳ ଦେବ । ତଦୁତ୍ତାରୁ “ଯାଦିବ୍ୟା” ଏହି ମନ୍ତ୍ର ପଢ଼ି ତିନୋଟି କୁଶ ଓ ବାମହସ୍ତସ୍ଥିତ ଅର୍ଘ୍ୟପାତ୍ରରୁ କିଞ୍ଚିତ ଯବଜଳ ଦକ୍ଷିଣହସ୍ତରେ ନେଇ ଉପରୋକ୍ତ “ବସୁସଂଜ୍ଞକା” ମନ୍ତ୍ର ପଢ଼ି ବ୍ରାହ୍ମଣହସ୍ତରେ ଦେବ । ଦ୍ୱିତୀୟ ଅର୍ଘ୍ୟପାତ୍ର ଜଳକୁ ସେହିପରି ପୂର୍ବୋକ୍ତ “ସତ୍ୟ ସଂଜ୍ଞାକା” ମନ୍ତ୍ର ପଢ଼ି ଦ୍ୱିତୀୟ ବ୍ରାହ୍ମଣହସ୍ତରେ ଦେବ । ମାତୃ, ପିତୃ ଓ ମାତାମହାଦିବ୍ରାହ୍ମଣମାନଙ୍କୁ ସେହିପରି ଉପରୋକ୍ତ ମନ୍ତ୍ରମାନ ପଢ଼ି କ୍ରମରେ ଅର୍ଘ୍ୟଜଳ ଦେବ । ତତ୍ପରେ ପ୍ରଥମରେ ଦେଇଥିବା ପବିତ୍ରମାନଙ୍କୁ ଆଣି ସ୍ୱ ସ୍ୱ ପାତ୍ରରେ ରଖିବ । ତତ୍ପରେ ପବିତ୍ର ଓ ଅବଶିଷ୍ଟ ଜଳସହିତ ପ୍ରଥମ ବିଶ୍ୱେଦେବାର ଅର୍ଘ୍ୟପାତ୍ରକୁ ହସ୍ତରେ ଧରି ପ୍ରଥମବ୍ରାହ୍ମଣର ଦକ୍ଷିଣଭାଗରେ ମନ୍ତ୍ର ପଢ଼ି ଓଲଟାଇ ରଖିବ । ସେହିପରି ମନ୍ତ୍ର ପଢି ଦ୍ୱିତୀୟ ଅର୍ଘ ପ୍ରାତକୁ ଦ୍ୱିତୀୟ ବ୍ରାହ୍ମଣର ଦକ୍ଷିଣଆଡ଼େ ଓଲଟାଇ ରଖିବ । ତତ୍ପରେ ପିତାମହୀ ଓ ପ୍ରପିତାମହୀରଅର୍ଘ୍ୟପାତ୍ରରେ ଥିବା ପବିତ୍ରକୁ ମାତାର ଅର୍ଘ୍ୟପାତ୍ରରେ ରଖିବ । ମାତାର ଅର୍ଘ୍ୟପାତ୍ରକୁ ପିତାମହୀର ଅର୍ଘ୍ୟପାତ୍ରରେ

---

*ଦେବପାତ୍ରେ ଦ୍ୱେ ପବିତ୍ରେ ପିତୃପାତ୍ରେ ତ୍ରିଣି, ତ୍ରିଣି ଭବନ୍ତି । ତଦୁକ୍ତଂ ଚତୁର୍ବିଂଶତିମତେ-

ଦ୍ୱେ ଦ୍ୱେ ଶଳାକେ ଦେବାନାଂ ତିସ୍ରସ୍ତିସ୍ରସ୍ତୁ ପାର୍ବଣେ ।
ଏକୋଦ୍ଦିଷ୍ଟେ ଶଳାକୈକା ଶ୍ରାଦ୍ଧେଷ୍ୱର୍ଘେଷ୍ୱପ୍ସୁ ନିକ୍ଷିପେତ୍ ।

ରଖିବ । ସେହି ଦୁଇପାତ୍ରକୁ ପ୍ରପିତାମହୀ ଅର୍ଘ୍ୟ ପାତ୍ରରେ ରଖିବ । ତପୂରେ ସେ ସମସ୍ତପାତ୍ରକୁ ଦକ୍ଷିଣହସ୍ତରେ ଧରି "ମାତୃଭ୍ୟ ସ୍ଥାନମସି" ଏହା କହି ମାତୃପକ୍ଷ ବ୍ରାହ୍ମଣର ଆସନର ବାମଭାଗରେ ଓଲଟାଇ ରଖିବ । ଉପରୋକ୍ତ କ୍ରମରେ ପିତା ପିତାମହ ଓ ପ୍ରପିତାମହର ଅର୍ଘ୍ୟପାତ୍ରକୁ ପିତୃସ୍ଥାନୀୟ ବ୍ରାହ୍ମଣଆସନର ବାମଭାଗରେ "ପିତୃଭ୍ୟଃ ସ୍ଥାନମସି" କହି ଓଲଟାଇ ରଖିବ । ଏହିପରି ମଧ୍ୟ ମାତାମହାଦି ଅର୍ଘ୍ୟପାତ୍ରକୁ ଦକ୍ଷିଣହସ୍ତରେ ଧରି ମାତାମହସ୍ଥାନୀୟ ବ୍ରାହ୍ମଣଆସନର ବାମଭାଗରେ "ମାତାମହପ୍ରମାତାମହବୃଦ୍ଧପ୍ରମାତାମହେଭ୍ୟଃ ସ୍ଥାନମସି" କହି ଓଲଟାଇ ରଖିବ ।

ତତୋଗନ୍ଧାଦିଦାନଂ । ତତ୍ର କ୍ରମଃ । ଓଁ ବସୁସତ୍ୟସଂଜ୍ଞକାବିଶ୍ୱେଦେବାନାନ୍ଦୀମୁଖା ଏତାନି ଗନ୍ଧପୁଷ୍ପଧୂପଦୀପତାମ୍ବୁଳଯଜ୍ଞୋପବୀତବାସାଂସି ବୋନମଃ । ଓଁ ଅଦ୍ୟାମୁକଗୋତ୍ରେ ମାତରମୁକଦେବୀ ନାନ୍ଦୀମୁଖି ଏତାନି ଗନ୍ଧପୁଷ୍ପଧୂପଦୀପାତାମ୍ବୁଳଯଜ୍ଞୋପବୀତବାସ୍ୟାଂସି ତେ ନମଃ । ଏବଂ ପିତାମହୀପ୍ରପିତାମହୀଭ୍ୟାମପି ଗନ୍ଧାଦି ଦଦ୍ୟାତ୍ । ତତଃ ଅଦ୍ୟାମୂକଗୋତ୍ର ପିତରମୁକଶର୍ମ୍ମନ୍ନାନ୍ଦୀମୁଖ ଏତାନି ଗନ୍ଧପୁଷ୍ପଧୂପଦୀପତାମ୍ବୁଳଯଜ୍ଞୋପବୀତବାସାଂସି ତେ ନମଃ ଏବଂ ପିତାମହପ୍ରପିତାମହାଭ୍ୟାମପି ଗନ୍ଧାଦି ଦଦ୍ୟାତ୍ । ତତଃ ଅଦ୍ୟାର୍ମୁକଗୋତ୍ର ମାତାମହାମୁକଶର୍ମ୍ମନ୍ନାନ୍ଦୀମୁଖି ଏତାନି ଗନ୍ଧପୁଷ୍ପଧୂପ-ଦୀପତାମ୍ବୁଳଯଜ୍ଞୋପବୀତାବାସାଂସି ତେ ନମଃ । ଏବଂ ପ୍ରମାତାମହବୃଦ୍ଧପ୍ରମାତାମହାଭ୍ୟାମପି ଗନ୍ଧାଦି ଦଦ୍ୟାତ୍ ।

**ବ୍ୟାଖ୍ୟା**–ତପୂରେ ଦୁଇ ବିଶ୍ୱେଦେବା ବ୍ରାହ୍ମଣଙ୍କୁ କ୍ରମରେ ଉପରଲିଖିତ ବାକ୍ୟ ପଢ଼ି ଗନ୍ଧ ପୁଷ୍ପ ଧୂପ ଦୀପ ତାମ୍ବୁଳଯଜ୍ଞୋପବୀତ ଓ ବସ୍ତ୍ର ଦେବ । ଏହି କ୍ରମରେ ମାତୃସ୍ଥାନୀୟବ୍ରାହ୍ମଣଦ୍ୱୟ ଓ ପିତୃସ୍ଥାନୀୟ ବ୍ରାହ୍ମଣଦ୍ୱୟ ଏବଂ ମାତାମହସ୍ଥାନୀୟ ବ୍ରାହ୍ମଣଦ୍ୱୟଙ୍କୁ ଉପଲିଖିତ ସ୍ୱ ୨ ମନ୍ତ୍ର ପଢ଼ି ପ୍ରତ୍ୟେକଙ୍କୁ ଗନ୍ଧ ପୁଷ୍ପ ଧୂପ ଦୀପ ତାମ୍ବୁଳ, ଯଜ୍ଞୋପବୀତ ଓ ବସ୍ତ୍ର ଦେବ ।

ତତୋଜଳେନ ସର୍ବାସନାନି ଭୋଜନପାତ୍ର ସହିତାନି ଚତୁଷ୍କୋଣମଣ୍ଡଳେନ୍ ବେଷ୍ଟୟେତ୍ । ତତଃ ସଜଳେ ପୁଟକାଦୌ ହସ୍ତେନୈବ ସଘୃତମନ୍ତ୍ରଂ "ଓଁ ଅଗ୍ନୟେ କବ୍ୟବାହନାୟ ସ୍ୱାହା" "ଓଁ ସୋମାୟପିତୃମତେ ସ୍ୱାହା" ଇତ୍ୟାହୁତିଦ୍ୱୟଂ ଜୁହୁୟାତ୍ । ତତୋହୁତଶେଷମନ୍ନଂ ଦେବପୂର୍ବକପାତ୍ରେଷୁକିଞ୍ଚିଦ୍ଦତ୍ୱା ପିଣ୍ଡାର୍ଥଂ ଚ କିଞ୍ଚିଦବଶେଷୟେତ୍ । ତତୋଽନ୍ୟେଦନ୍ନଂ ଯଥାସମ୍ଭବଂ ସର୍ବତ୍ର ପରିବେଷ୍ୟ ଘୃତଂ ଜଳଂ ଚ ତତ୍ରୋପନୀୟ ପାତ୍ରମାଲଭେତ । ତତ୍ର କ୍ରମଃ । ଉତ୍ତାନପାଣିଭ୍ୟାଂ ପ୍ରଥମଂ ଦେବପାତ୍ରଂ ସ୍ପୃଷ୍ଟ୍ୱା ଓଁ ପୃଥିବୀ ତେ ପାତ୍ରଂ ଦ୍ୟୌରପିଧାନଂ ବ୍ରାହ୍ମଣସ୍ୟ ଅମୃତେ



ଅମୃତଂ ଜୁହୋମି ସ୍ୱାହା ।" ଇତି ପଠିତ୍ୱା "ଓଁ ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦଂ । ସମୂଢ଼ମସ୍ୟପାଂଶୁ ସୁରେ" ଇଦଂ ବିଷ୍ଣୋ ହବ୍ୟଂ ରକ୍ଷ ପତି ପଠିତ୍ୱା "ଓଁ ଇଦମନ୍ନ" ମିତ୍ୟନ୍ନେ "ଓଁ ଇମାଆପଃ" ଇତି ଜଳେ ଇଦମାଜ୍ୟମିତି ଘୃତେ ଇଦଂ ହବିରିତି ପୁରରନ୍ନ ଇତି ଦକ୍ଷିଣାଙ୍ଗୁଷ୍ଠମାରୋପ୍ୟ "ଓଁ ଯବୋଽସି" ଇତି ମନ୍ତ୍ରଂ ପଠିତ୍ୱା ଯବାନ୍ ବିକୀର୍ଯ୍ୟ କୁଶାଦୀନ୍ୟାଦାୟ "ଓଁ ବସୁସତ୍ୟସଂଜ୍ଞକାବିଶ୍ୱେଦେବା ନାନ୍ଦୀମୁଖା ଇଦମନ୍ନଂ ଘୃତାଦପକରଣସହିତଂ ପରିବେଷ୍ୟମାଣମମୃତରୂପଂ ବୋନମଃ । ଇତ୍ୟୁତ ସୃଜେତ୍ । ପୃଥିବୀ ତେ ପାତ୍ର ମିତ୍ୟାଦିନାଂ ସର୍ବେକ୍ଷାମବୃତ୍ତିଃ । ଏବମେବ ମାତ୍ରାଦିପାତ୍ରଦ୍ୱୟମାଲଭ୍ୟ ଅମୁକସଗୋତ୍ରାଃ ଅସ୍ମନ୍ମାତୃପିତାମହୀପ୍ରପିତାମହ୍ୟଃ ଅମୁକାମୁକଦେବ୍ୟଃ ଇଦମନ୍ନଃ ଘୃତାଦ୍ୟୁପକରଣସିହତମମୃତରୂପଂ ବୋ ନମଃ । ଏତମେବ ପାତ୍ରାଦିପାତ୍ରୟୋଃ ମାତାମହାଦିପାତ୍ରୟୋରପି ଉତ୍ସର୍ଗଂ କୁର୍ଯ୍ୟାତ୍ ।

**ବ୍ୟାଖ୍ୟା**-ତତ୍ପରେ ଭୋଜନପାତ୍ର ସହିତ ସମସ୍ତ ଆସନକୁ ଜଳଦ୍ୱାରା ଚତୁଷ୍କୋଣ ମଣ୍ଡଳାକାରରେ ବେଷ୍ଟନ କରିବ । ଏହା ଉତ୍ତାରୁ ପିଣ୍ଡପାତ୍ରରେ ଅନ୍ନ ପରିବେଷଣ କରି ତହିଁରୁ ଘୃତ ସହିତ ଅନ୍ନ ଦୁଇଗୁଳା କରିବ ଏବଂ ଜଳସହିତ ଗୋଟିଏ ଅର୍ଘ୍ୟପାତ୍ର ରଖି ତହିଁରେ ଉପରଲିଖିତ ଦୁଇଗୋଟି ମନ୍ତ୍ର ପଢ଼ି ଉକ୍ତ ଦୁଇଗୁଳାକୁ ପ୍ରତ୍ୟେକ ମନ୍ତ୍ର ଶେଷରେ ଗୋଟିଏ ୨ ଆହୁତି ଦେବ । ଏଥି ଉତ୍ତାରୁ ଏହି ଅଗ୍ନୌକରଣର ଅବଶିଷ୍ଟ ଅନ୍ନରୁ କିଛି ନେଇ ବିଶ୍ୱେଦେବାଙ୍କ ଉତ୍ସର୍ଗପତ୍ର ଓ ମାତ୍ରାଦି ସମସ୍ତଙ୍କ ଉତ୍ସର୍ଗପତ୍ରରେ ଦେଇ ପିଣ୍ଡନିମିତ୍ତ ଅବଶେଷ କିଛି ସେହି ପିଣ୍ଡପାତ୍ରରେ ରଖିବ । ତାହାପରେ ହାଣ୍ଡିରେ ଥିବା ଅନ୍ନବ୍ୟଞ୍ଜନାଦି ସମସ୍ତ ଘୃତ ସହିତ ଶକ୍ତି ଅନୁସାରେ ପରିବେଷଣ କରିବ । ତତ୍ପରେ ଦୁଇ ହାତକୁ ଉତ୍ତାନ (ଚିତ୍) କରି ପ୍ରଥମରେ ଦେବପାତ୍ରକୁ ସ୍ପର୍ଶ କରି "ଓଁ ପୃଥିବୀ ତେ" ଏହି ମନ୍ତ୍ର ପଢ଼ିବ । "ଓଁ ଯବୋଽସି" ଏହି ମନ୍ତ୍ର ପଢ଼ି ଯବ ବୁଣିଦେବ । ତତ୍ପରେ ଦକ୍ଷିଣହସ୍ତରେ କୁଶ, ଜଳ, ଗନ୍ଧ ଓ ପୁଷ୍ପ ଧରି ଉପରଲିଖିତ ବାକ୍ୟ ପଢ଼ି ଉତ୍ସର୍ଗ କରିବ । ଏହିକ୍ରମରେ ପ୍ରତ୍ୟେକ ମାତ୍ରାଦି, ପିତ୍ରାଦି ଓ ମାତାମହାଦି ପାତ୍ରମାନଙ୍କୁ ସ୍ୱ ୨ ବାକ୍ୟ ପଢ଼ି ଉତ୍ସର୍ଗ କରିବ ।

ଗାୟତ୍ରୀଂ ତ୍ରିର୍ଜପ୍ତା ଓଁ ମଧୁ ମଧ୍ୱୀତି ଜପେତ୍ । ମଧୁବାତା ଇତ୍ୟାଦି ଋକ୍ତ୍ରୟଂ ଜପେତ୍ * ଉଦୀରତାମାଦିପିତୃମନ୍ତ୍ରାନ୍ ପୁରୁଷସୁକ୍ତାଦୀବି ଚ ପଠିତ୍ୱା ପିଣ୍ଡଗଠନଂ ।

---

*-ଓଁ ଉଦୀରତାମବରଉତ୍ପରାସ ଉନ୍ମଧ୍ୟମାଃ ପିତରଃ ସୋମ୍ୟାସଃ । ଆସୁଂ ଯଈୟୁରବୃକାଽଋତଜ୍ଞସ୍ତେନୋଽବନ୍ତୁ ପିତରୋ ହବେଷୁ ।୧ ।

ତତଃ ପ୍ରାଗଗ୍ରକୁଶତ୍ରୟଂ ଭୂମାବାସ୍ତୀର୍ଯ୍ୟ ଜଳେନ ପ୍ରୋକ୍ଷ୍ୟ ଜଳପ୍ରୋକ୍ଷିତସଯବଘୃତମନ୍ନଂ "ଅନଗ୍ନିଦଗ୍ଧା ଯେ ଜୀବା ଯେ ପ୍ରଦଗ୍ଧାଃ କୂଳେ ମମ । ଭୂମୌ ଦତ୍ତେନ୍ ତୃପ୍ୟନ୍ତୁ ତୃପ୍ତାଯାନ୍ତୁ ପରାଂ ଗତି" ମିତିମନ୍ତ୍ରେଣ ବିକିରେତ୍ ।

ବ୍ୟାଖ୍ୟା-ତତ୍ପରେ ତିନିଥର ଗାୟତ୍ରୀ ଜପ କରି "ଓଁ ମଧୁ" ଏହା ତିନିଥର ଜପ କରି ମଧୁବାତାଦି ତିନିକାଣ୍ଡି ମନ୍ତ୍ର ପଢ଼ିବ । ତଦୁତ୍ତାରୁ ଓଁ ଉଦୀରତାଦି ପିତୃମନ୍ତ୍ର ଓ ପୁରୁଷସୁକ୍ତ ପଢ଼ି ପିଣ୍ଡନିର୍ମାଣ କରିବ । ତତ୍ପରେ ଭୂମିରେ ପୂର୍ବକୁ ଅଗକରି ତିନିଗୋଟି କୁଶ ବିଛାଇ ତହିଁରେ ଜଳ ପକାଇବ । ତତ୍ପରେ ଘୃତଯବମିଶ୍ରିତ ଗୋଟିଏ ଅନ୍ନପିଣ୍ଡ ଉପରଲିଖିତ ମନ୍ତ୍ର ପଢ଼ି ଭୂମିଉପରେ ରଖିବ । ଏହାକୁ ବିକୀର୍ଣ୍ଣ ପିଣ୍ଡ କହନ୍ତି ।

ତତଃ ଆଚମ୍ୟଂ ହରିଂ ସ୍ମୃତ୍ୱା ଗାୟତ୍ରୀଂ ତ୍ରିର୍ଜପେତ୍ । ଚତୁରସ୍ରାଂ ପିଣ୍ଡଯୋଗ୍ୟାଂ ଭୂମିଂ ପରିଷ୍କୃତ୍ୟ ଉତ୍ତରୋତ୍ତରକ୍ରମେଣ ସ୍ଥାନତ୍ରୟେ ପ୍ରାଦେଶମାତ୍ରଂ ପରିମାୟ ନବକୋଷ୍ଠଂ କୃତ୍ୱା ପ୍ରାଗଗ୍ରାଂ ରେଖାଂ ଦର୍ଭପିଞ୍ଜୁଳୀମୁଳେନ "ଓଁ ଅପହତା ଅସୁରା ରକ୍ଷାଂସି ବେଦିଷଦ" ଇତି ରେଖାତ୍ରୟଂ କୁର୍ଯ୍ୟାତ୍ । ତତଃ ପ୍ରତ୍ୟେକରେଖାତ୍ରୟୋପରି ଓଁ ଯେ ରୂପାଣି ପ୍ରତିମୁଞ୍ଚମାନା ଅସୁରାଃ ସନ୍ତଃ ସ୍ୱଧୟାଚରନ୍ତି । ପରାପୁରୋନିପୁରୋୟେ ଭବନ୍ତ୍ୟଗ୍ନିଷ୍ଟାଂ ଲ୍ଲୋକାନ୍ ପ୍ରଣୁଦାତ୍ୟସ୍ମାତ୍ ଇତି ମନ୍ତ୍ରେଣ ଅଙ୍ଗରାନ୍ ଭ୍ରାମୟେତ୍ । ତଦୁପରି ପ୍ରତ୍ୟେକଂକୁଶତ୍ରୟମାସ୍ତୀର୍ଯ୍ୟପ୍ରତ୍ୟେକ ଅବନେଜନଂ ଦଦ୍ୟାତ୍ । ତତ୍ର କ୍ରମଃ । ଯବଜଳଗନ୍ଧପୁଷ୍ପେ ନବପାତ୍ରାଣିପୁରୟିତ୍ୱା କୁଶଦୀନ୍ୟାଦାୟ ଅଦ୍ୟାମୁକଗୋତ୍ରେ ମାତରମୁକଦେବୀ ନାନ୍ଦୀମୁଖି ପିଣ୍ଡସ୍ଥାନେ ଅତ୍ରାବନେଜନେନିଷ୍ୱତେ ନମଃ । ଇତି ସର୍ବଦକ୍ଷିଣ କୁଶତ୍ରୟମୂଳେ ମାତ୍ରେଽବନେଜନଂ ଦଦ୍ୟାତ୍ । କିଞ୍ଚିଜ୍ଜଳମବକ୍ଷେତୟଃ ଏବଂ ପାତ୍ରାନ୍ତମାଦାୟ ତତ୍କୁଶ ମଧ୍ୟେ ପିତାମହ୍ୟୈ ଅବନେଜନଂ ଦଦ୍ୟାତ୍ । ତକ୍ କୁଶତ୍ରୟାଗ୍ରେ ପ୍ରପିତାମହ୍ୟୈ ଅବନେଜନଂ ଦଦ୍ୟାତ୍ । ତତଶ୍ଚାପରପାତ୍ରାମାଦାୟ କୁଶାଦୀ ଶ୍ଚାଦାୟ ଓଁ ଅଦ୍ୟାମୁକଗୋତ୍ର ପିତରମୁକଶର୍ମନ୍ନାନ୍ଦୀମୁଖ ପିଣ୍ଡସ୍ଥାନେଽତ୍ରାବନେଜନେନିକ୍ଷ୍ୱ ତେ ନମଃ । ଇତି ମଧ୍ୟସ୍ଥିତ କୁଶତ୍ରୟମୂଳେ ପିତ୍ରେଽବନେଜନଂଦଦ୍ୟାତ୍ । କିଞ୍ଚିଜ୍ଜଳମବଶେଷୟେତ୍ । ଏବଂ ତତ୍ତକୁଶତ୍ରୟମଧ୍ୟାଗ୍ରୟୋଃ ପିତାମହପ୍ରପିତାମହୟୋରବନେଜନଦାନଂ । ତତଃ

---

ଓଁ ଅଙ୍ଗୀରସୋନଃ ପତରୋନବଗ୍ୱା ଅଥର୍ବାଣୋଭୃଗବଃ ସୋମ୍ୟାସଃ । ତେଷାଂ ବୟଙ୍ଗ ସୁମତୌ ଯଜ୍ଞିୟାନାମପି ଭଦ୍ରେ ସୌମନସେ ସ୍ୟାମ ।୨ ।

ଓଁ ଆୟନ୍ତୁ ନଃ ପିତରଃ ସୋମ୍ୟାସୋଽଗ୍ନିଷ୍ୱାତ୍ତାଃ ପଥିଭିର୍ଦେବୟାନୈଃ । ଅସ୍ମିନ୍ୟଜ୍ଞେ ସ୍ୱଧୟା ମଦନ୍ତୋଽଧିବ୍ରୁବନ୍ତୁ ବନ୍ତ୍ୱସ୍ମାନ୍ ।୩ ।



ସପ୍ତମପାତ୍ର ମାଦାୟ କୁଶାଦୀଁ ଷ୍ଠାଦାୟ ଓ ଅଦ୍ୟମୁକଗୋତ୍ର ମାତାମହ ଅମୁକଶର୍ମନ୍ନାନ୍ଦୀମୁଖ ପିଣ୍ଡସ୍ଥାନେ ଅତ୍ରାବନେଜନନିକ୍ଷ୍ୱତେ ନମଃ । ଇତ୍ୟପରକୁଶ ତ୍ରୟମୂଳେ ମାତାମହାୟ ଅବନେଜନଂ ଦଦ୍ୟାତ୍ । ଏବଂ ପ୍ରମାତାମହବୃଦ୍ଧପ୍ରମାତାମହୟୋରପି ।

ବ୍ୟାଖ୍ୟା-ତତ୍ପରେ ବିଷ୍ଣୁସ୍ମରଣ କରି ଗାୟତ୍ରୀ ତିନିଥର ଜପିବ ଓ ପିଣ୍ଡଦାନ ନିମିତ୍ତ ଗୋଟିଏ ଚତୁରସ୍ର ମଣ୍ଡଳ କରିବ । ତାହାମଧ୍ୟରେ ପ୍ରାଦେଶପରିମିତି ନଅଗୋଟି କୋଠି କରିବ । ତତ୍ପରେ ସେ ସ୍ଥାନରେ "ଅପହତା" ଏହି ମନ୍ତ୍ର ପଢ଼ି କୁଶମୂଳରେ ପୁର୍ବକୁ ଅଗ କରି ତିନିଗୋଟି ରେଖା କାଟିବ । ତତ୍ପରେ ସେହି ତିନିରେଖା ଉପରେ ପ୍ରତ୍ୟେକ ରେଖାରେ "ଯେରୁପାଣି" ମନ୍ତ୍ର ପଢ଼ି ଅଗ୍ନି ଧରି ବୁଲାଇବ ଓ ସେହି ରେଖାତ୍ରୟ ଉପରେ ପ୍ରତ୍ୟେକ ରେଖାରେ ତିନି ତିନିଟା କୁଶ ପକାଇ ସେହି କୁଶ ଉପରେ ପ୍ରତ୍ୟେକ ପୁରୁଷଙ୍କ ନାମ ଗୋତ୍ର ଉଚ୍ଚାର କରି ଅବନେଜନ (ଟିକେ ୨ ଜଳ) ଦେବ ।

ତତୋଯବବଦରଘୃତମିଶ୍ରାନ୍ନେନ ପିଣ୍ଡନିର୍ମାୟ ଏକପିଣ୍ଡଂ କୁଶାଦୀଷ୍ଠାଦାୟ ଅଦ୍ୟାମୁକଗୋତ୍ରେ ମାତରମୁକଦେବୀ ନାନ୍ଦୀମୁଖୀ ଏଷପିଣ୍ଡସ୍ତେ ନମଃ । ଇତି ତଦବନେଜନସ୍ଥାନେ ପିଣ୍ଡଂ ଦଦ୍ୟାତ୍ । ଏବମେବ ପିତାମହୀପ୍ରମିତାମହୀଭ୍ୟାଂ ସ୍ୱୀୟସ୍ୱୀୟାବନେଜନସ୍ଥାନେ ପିଣ୍ଡଂ ଦଦ୍ୟାତ୍ । ତତଶ୍ଚତୁର୍ଥପିଣ୍ଡମାଦାୟ ଓଁ ଅଦ୍ୟାମୁକଗୋତ୍ର ପିତରମୁକଶର୍ମନ୍ନାନ୍ଦୀମୁଖ ଏଷପିଣ୍ଡସ୍ତେ ନମଃ ଇତି ପିତ୍ରବନେଜନ ସ୍ଥାନେ ପିଣ୍ଡଂ ଦଦ୍ୟାତ୍ । ଏବଂ ପିତାମହାପ୍ରପିତାମହୟୋଃ । ତତଃ ସପ୍ତମପିଣ୍ଡମାଦାୟ ଓଁ ଅଦ୍ୟାମୁକଗୋତ୍ର ମାତାମହାମୁକଶର୍ମନ୍ନାନ୍ଦୀମୁଖ ଏଷପିଣ୍ଡସ୍ତେ ନମଃ । ଇତିମାତାମହାବନେଜନସ୍ଥାନେ ମାତାମହାୟ ପିଣ୍ଡଂ ଦଦ୍ୟାତ୍ । ଏବମେବ ପ୍ରମାତାମହବୃଦ୍ଧପ୍ରମାତାମହୟୋଃ ।

ବ୍ୟାଖ୍ୟା-ତତ୍ପରେ ଯବ, ଦଧି ବରକୋଳି ଓ ଘୃତମିଶ୍ରିତ ଅନ୍ନରେ ପିଣ୍ଡ ନିର୍ମାଣ କରି କୁଶଉପରେ ଜଳ ଦେଇଥିବା ସ୍ଥାନମାନଙ୍କରେ ପ୍ରତ୍ୟେକ ପୁରୁଷଙ୍କ ନାମଗୋତ୍ର ଉଚ୍ଚାରଣ କରି ଗୋଟିଏ ୨ ପିଣ୍ଡ ଅର୍ଥାତ୍ ନଅ ପୁରୁଷଙ୍କୁ ନଅ କୋଠିରେ ନଅଟି ପିଣ୍ଡ ଦେବ ।

ତତୋ ଦର୍ଭମୂଳେ କରଂ ପ୍ରୋକ୍ଷ୍ୟ ଆଚମ୍ୟ ହରିଂ ସ୍ମୃତ୍ୱା "ଓଁ ଅତ୍ର ମାତରୋମାଦୟଧ୍ୱାଂ" ଯଥାଭାଗମାବୃଷାୟଧ୍ୱଂ ଇତି ପଠିତ୍ୱା ଉଦଙ୍ମୁଖୀଭୂୟ ଶ୍ୱାସଂ

ନିୟମ୍ୟ ତେନୈବ ଯଥାସୁଖଂ ପରାବର୍ତ୍ତୟନ୍ 'ଅମୀମଦନ୍ତମାତରୋଯଥାଭାଗମାବୃଷାୟିଷତ" । ଇତି ଜପେତ୍ଃ ଏବଂ "ଅତ୍ରପିତରୋମାଦୟଧ୍ୱଂ ଯଥାଭାଗମାବୃଷାୟଧ୍ୱଂ" ଇତି ଜପ୍ତ୍ୱାପୂର୍ବବତ୍ କୃତ୍ୱା "ଅମୀମଦନ୍ତ ପିତରୋ ଯଥା ଭାଗମାବୃଷାୟିଷତ" । ଏବମେବ ମାତାମହାଦିପକ୍ଷେ ମନ୍ତ୍ରଜପଃ ।

**ବ୍ୟାଖ୍ୟା**-ତତ୍ପରେ କୁଶମୂଳରେ ହାତକୁ ପୋଛି ଉତ୍ତମରୂପେ ଧୋଇ ଆଚମନ କରିବ । ତତ୍ପରେ ବିଷ୍ଣୁସ୍ମରଣ କରି "ଅତ୍ରମାତରୋମାଦୟଧ୍ୱଂ" ଏହି ମନ୍ତ୍ର ପଢ଼ି ଉତ୍ତରମୁଖ ହୋଇ ନିଃଶ୍ୱାସ ରୁଦ୍ଧ କରି ମାତୃ ତିନିପୁରୁଷର ପିଣ୍ଡାବଶେଷ ଅନ୍ନକୁ ଏକତ୍ର କରିବାବେଳେ "ଅମୀମଦନ୍ତ" ଏହି ମନ୍ତ୍ର ଜପିବ । ଏହିପରି ପିତୃତିନିପୁରୁଷର ପିଣ୍ଡାବଶେଷ ଅନ୍ନକୁ ଏକତ୍ର କରିବାବେଳେ "ଅତ୍ରପିତରୋମାଦୟଧ୍ୱଂ" "ଅମୀମଦନ୍ତପିତରୋ" ଇତ୍ୟାଦି ମନ୍ତ୍ର ପଢ଼ିବ ଓ ମାତାମହାଦିତିନିପୁରୁଷଙ୍କର ପିଣ୍ଡର ଅବଶେଷ ଅନ୍ନ ଏକତ୍ର କଲାବେଳେ ଉପରୋକ୍ତ ମନ୍ତ୍ର ପଢ଼ିବ ।

ତତୋଽବନେଜନାବଶିଷ୍ଟଜଲେନ ପ୍ରତ୍ୟବନେଜନଂ ଦଦ୍ୟାତ୍ । ତତ୍ରକ୍ରମଃ । ଓଁ ଅଦ୍ୟାମୁକଗୋତ୍ରେ ମାତରମୁକଦେବି ନାନ୍ଦୀମୁଖ୍ ପିଣ୍ଡଂପ୍ରତ୍ୟବନେଜନଂ ଅବନେନିକ୍ଷ୍ୱତେ ନମଃ । ଇତି ତତ୍ପିଣ୍ଡୋପରି ଦଦ୍ୟାତ୍ । ଏବଂ ପିତାମହୀପ୍ରପିତାମହୀଭ୍ୟାଂ । ତଥା-ଓଁ ଅଦ୍ୟାମୁକଗୋତ୍ର ପିତରମୁକଦେବଶର୍ମନ୍ନାନ୍ଦୀମୁଖୀ ପିଣ୍ଡଂ ପ୍ରତ୍ୟବନେଜନଂ ଅବନେନିକ୍ଷ୍ୱତେ ନମଃ । ଇତି ପିଣ୍ଡୋପରି ପ୍ରତ୍ୟେବନେ ଜଲଂ ଦଦ୍ୟାତ୍ । ଏବମେବ ତତ୍ପିଣ୍ଡୋପରି ପିଣ୍ଡଂପ୍ରପିତାମହାଭ୍ୟାଂ ଦଦ୍ୟାତ୍ । ଓ ଅଦ୍ୟମୁକଗୋତ୍ର ମାତାମହାମୁଶର୍ମନନାନ୍ଦୀମୁଖୀ ପିଣ୍ଡଂପ୍ରତ୍ୟବନେଜନଂ ଅବନେନିକ୍ଷ୍ୱତେ ନମଃ । ଇତି ପିଣ୍ଡଂପ୍ରତ୍ୟେବନେଜନଂଦଦ୍ୟାତ୍ ଏବଂ ପ୍ରମାତାମହବୃଦ୍ଧପ୍ରମାତାମହାଭ୍ୟାଂ । ତତୋନୀବୀଂ ବିସ୍ରସ୍ୟ ଆଚମ୍ୟ ହରିଂ ସ୍ମୃତ୍ୱା ସୂତ୍ରାଣ୍ୟାଦାୟ ଓଁ ନମୋବୋମାତରୋରସାୟ ନମୋବୋମାତରଃ ଶୋଷାୟ ନମୋବୋମାତରୋଜୀବାୟନମୋବୋମାତରଃ ସ୍ୱଧାୟୈ ନମୋବୋମାତରୋଘୋରାୟ ନମୋବୋମାତରୋମନ୍ୟବେ ନମୋବୋମାତରୋମ ତରୋନମୋବୋଗୃହାନ୍ନୋ ମାତରୋ ଦତ୍ତ ସତୋବୋମାତରୋଦେଷ୍ମ ଏତଦ୍‌ବୋମାତରୋବାସଃ । ଇତି ମାତୃଣାଂ ପିଣ୍ଡତ୍ରୟୋପରି ସୂତ୍ରଂ ଦଦ୍ୟାତ୍ । ତତଃ ଓଁ ନମୋବଃ ପିତରୋରସାୟ ନମୋବଃ ପିତରଃ ଶୋଷାୟ ନମୋବଃ ପିତରୋଜୀବାୟ ନମୋବଃ ପିତରଃ ସ୍ୱଧାୟୈ ନନୋବଃ ପିରରୋଘୋରାୟ ନମୋବଃ ପିତରୋମନ୍ୟବେ ନମୋବଃ ପିତରଃ ପିତରୋନବୋବଃ ଗୃହାନ୍ନଃ ପିତରୋଦତ୍ତ ସତୋବଃ ପିତରୋଦେଷ୍ମ ଏତଦ୍‌ବଃ ପିତରୋ ବାସଃ । ଇତ୍ୟନେନ



ପିତ୍ରାଦିପିଣ୍ଡତ୍ରୟୋପରି ସୂତ୍ରଂ ଦଦ୍ୟାତ୍ । ମାତାମହାଦିପିଣ୍ଡତ୍ରୟେଽପ୍ୟେବଂ । ତତଃ କୁଶତ୍ରୟଯବଜଲାନ୍ୟାଦାୟ ଓଁ ଅଦ୍ୟାମୁକଗୋତ୍ରେ ମାତରମୁକଦେବୀ ନାନ୍ଦୀମୁଖୀ ପିଣ୍ଡେ ଏତତ୍ତେ ବାସୋ ନମଃ । ଇତି ସୂତ୍ରଂ ଉତ୍ସୃଜେତ୍ । ଏବମେବ ପିତାମହୀପ୍ରପିତାମହୀଭ୍ୟାଂ । ଓଁ ଅଦ୍ୟାମୁକଗୋତ୍ର ପିତରମୁକଶର୍ମନ୍ନାନ୍ଦୀମୁଖ ପିଣ୍ଡେ ଏତତ୍ତେ ବାସୋନମଃ । ଇତି ସୂତ୍ରଂ ଉତ୍ସୃଜେତ୍ । ଏବମେବ ପିତାମହପ୍ରପିତତାମହାଭ୍ୟାଂ । ଓଁ ଅଦ୍ୟାମୁକଗୋତ୍ର ମାତାମହାମୁକଶର୍ମନ୍ନାନ୍ଦୀମୁଖୀ ପିଣ୍ଡେ ଏତତ୍ତେ ବାସୋନମଃ । ଇତି ସୂତ୍ରମୁତ୍ସୃଜେତ୍ । ଏବଂ ପ୍ରମାତାମହବୃଦ୍ଧପ୍ରମାତାମହାଭ୍ୟାଂ । ତତୋ ଗନ୍ଧପୁଷ୍ପଧୂପଦୀପତାମ୍ବୂଲାଦିଭିଃ ପ୍ରତ୍ୟେକପିଣ୍ଡାନର୍ଭ୍ୟର୍ଚ୍ଚ୍ୟ "ଓଁ ଶିବାଆପଃ ସନ୍ତୁ" ଇତି ଜଲଂ "ଓଁ ସୌମନସ୍ୟଂ ଅସ୍ତୁ" ଇତି ପୁଷ୍ପଂ "ଓଁ ଅକ୍ଷତଂ ଚାରିଷ୍ଟଂ ଅସ୍ତୁ" ଇତି ତଣ୍ଡୁଲାନ୍ ପ୍ରତ୍ୟେକଂ ପାତ୍ରେଷୁ ନିକ୍ଷିପ୍ୟ କୁଷାଦୀନ୍ୟାଦାୟ ଓଁ ଅଦ୍ୟାମୁକଗୋତ୍ରାୟା ମାତୁରମୁକଦେବ୍ୟାନାନ୍ଦୀମୁଖୀ ଆଭ୍ୟୁଦୟିକ ଶ୍ରାଦ୍ଧେ ଦତ୍ତୈତଦନ୍ନପାନାଦିଭିର୍ମାତା ନାନ୍ଦୀମୁଖି ପ୍ରୀୟତାଂ ଇତି ଅକ୍ଷୟୋଜ୍ୟଦକଂ ଉତ୍ସୃଜେତ୍ । ଏବଂ ପିତା ମହ୍ୟାଃ ପ୍ରପିତାମହ୍ୟାଶ୍ଚାକ୍ଷୟୋଦକ ଦାନଂ । ତଥାଦ୍ୟାମୁକଗୋତ୍ରସ୍ୟ ପିତୁରମୁକଶର୍ମଣୋନାନ୍ଦୀମୁଖସ୍ୟାଭ୍ୟୁଦୟିକଶ୍ରାଦ୍ଧେ ଦତ୍ତୈତଦନ୍ନପାନାଦିଭିଃ ପିତା ନାନ୍ଦୀମୁଖଃ ପ୍ରିୟତାଂ ଇତି ପିତ୍ରେ ଦଦ୍ୟାତ୍ ଏବଂ ପିତାମହସ୍ୟପ୍ରପିତାମହସ୍ୟ ଚ । ତତଃ ଓଁ ଅଦ୍ୟାମୁକଗୋତ୍ରସ୍ୟ ମାତାମହସ୍ୟ ଅମୁକଶର୍ମଣୋ ନାନ୍ଦୀ ମୁଖସ୍ୟାଭ୍ୟୁଦୟିକଶ୍ରାଦ୍ଧେ ଦତ୍ତେତଦନ୍ନପାନାଦିଭି ମାତାମହୋନାନ୍ଦୀମୁଖଃ ପ୍ରୀୟତାଂ । ଏବଂ ପ୍ରମାତାମହସ୍ୟ ବୃଦ୍ଧପ୍ରମାତମହସ୍ୟଚ । ତତଃ ଓଁ ଅଘୋରାମାତରଃ ସନ୍ତୁ ଇତି ମାତୃପିଣ୍ଡତ୍ରୟୋପରି ପୂର୍ବାଗ୍ରାଂ ଜଲଧାରାଂ ଦଦ୍ୟାତ୍ । ଓଁ ଅଘୋରାଃ ପିତରଃ । ସନ୍ତୁ ଇତି ପତ୍ରାଦିପିଣ୍ଡତ୍ରୟମାତାମହାଦିପିଣ୍ଡତ୍ରୟୋପରି ପୂର୍ବାଗ୍ରାଂ ଜଲଧାରାଂ ଦଦ୍ୟାତ୍ । ତତଃ ଓଁ ଗୋତ୍ରୋନୋ ବର୍ଦ୍ଧତା ଦାତା ରୋନୋଽଭିବର୍ଦ୍ଧନ୍ତାଂ ଦେବାଃ ସନ୍ତିତିରେବର । ଶ୍ରଦ୍ଧା ଚ ନୋମାବ୍ୟଗଦ୍‌ବହୁ ଦେୟଂ ଚ ନୋଽସ୍ତୁ । ଅନ୍ନଂ ଚ ନୋ ବହୁ ଭବେଦତିଥୀଂଶ୍ଚ ଲଭେମହି । ଯାଚିତାରଶ୍ଚ ନଃ ସନ୍ତୁ ମା ଚ ଯାଚିସ୍ମ କଞ୍ଚନ ଏତାଃ ସତ୍ୟା ଆଶିଷ ସନ୍ତୁ । ଇତ୍ୟାଶିଷଃ ପ୍ରାର୍ଥୟେତ୍ ।

ବ୍ୟାଖ୍ୟା-ତତ୍ପରେ ଅବନେଜନର ଅବଶିଷ୍ଟ ଜଳକୁ ଆଣି ପ୍ରତ୍ୟେକ ପୁରୁଷଙ୍କ ନାମ ଗୋତ୍ର ଉଚ୍ଚାରଣ କରି ପ୍ରତ୍ୟବନେଜନ (ପିଣ୍ଡ ଉପରେ ଟିକେ ଟିକେ) ଜଳ ଦେବ । ତତ୍ପରେ କର୍ତ୍ତା ଖୋସଣା ଅଜ୍ଞ ଖସେଇଦେଇ ଆଚମନ ଓ ବିଷ୍ଣୁସ୍ମରଣ କରି ପ୍ରତ୍ୟେକ ପିଣ୍ଡ ଉପରେ "ନମୋବଃ" ଇତ୍ୟାଦି ମନ୍ତ୍ର ପଢ଼ି ସୂତ୍ର ଦେବ । ବସ୍ତ୍ର ଦେବାକୁ ହେଲେ ପ୍ରତ୍ୟେକ ପୁରୁଷଙ୍କର ନାମ ଗୋତ୍ର ଉଚ୍ଚାରଣ କରି ଉତ୍ସର୍ଗ କରିବ । ତତ୍ପରେ "ଅଘୋରା" ଇତ୍ୟାଦି ମନ୍ତ୍ର ପଢ଼ି ସର୍ବ ପିଣ୍ଡ ଉପରେ ପୂର୍ବରୁ

ଆରମ୍ଭି ଉପରକୁ ଜଳଧାରା ଦେବ "ଗୋତ୍ରୋନୋ" ଇତ୍ୟାଦି ପ୍ରାର୍ଥନାମନ୍ତ୍ର ପଢ଼ି ଆଶୀର୍ବାଦ କରିବ ।

ତତଃ ସପବିତ୍ରକୁଶତ୍ରୟାଣି ପ୍ରତ୍ୟେକଂ ମାତ୍ରାଦିପିଣ୍ଡତ୍ରୟ ପିତ୍ରାଦିପିଣ୍ଡତ୍ରୟେ ମାତାମହାଦିପିଣ୍ଡତ୍ରୟେ ଚ ଧୃତ୍ୱା ଓଁ ଊର୍ଜଂ ବହନ୍ତୀରମୃତଂ ଘୃତଂ ପୟଃ କୀଲାଲଂ ପରିସୂତ୍ରଂ ସ୍ୱଧାସ୍ଥ ତର୍ପୟତ ମେ ମାତୃରିତି ମାତ୍ରାଦିପିଣ୍ଡୋପରି ଦକ୍ଷିଣାଗ୍ରାଂ ଜଳଧାରାଂ ଦଦ୍ୟାତ୍ । ତତସ୍ତୈବ ଓଁ ଊର୍ଜଂ ବହନ୍ତୀ" ଇତ୍ୟାଦି ପଠିତ୍ୱା ପିତ୍ରାଦିପିଣ୍ଡଷଟ୍‌କୋପରି ଜଳଧାରାଂ ଦଦ୍ୟାତ୍ । ମାତୃରିତିସ୍ଥାନେ ପିତୃତିନି ପରିବର୍ତ୍ତୟେତ୍ । ତତଃ ପିଣ୍ଡାନାଘ୍ରାୟ ଉତ୍‌ଥାପ୍ୟ ପିଣ୍ଡାଧାରକୁଶାନ୍ନୁଲମୁକଂ ଚ ବହ୍ନୌ କ୍ଷିପେତ୍ । ଅର୍ଘ୍ୟପାତ୍ରାଣି ଉତ୍ତାନୀକୃତ୍ୟ ଦକ୍ଷିଣାଂଦଦ୍ୟାତ୍ । ଦକ୍ଷିଣାଦ୍ରବ୍ୟଂ ଚ ଫଳମୂଳେ ଫଳଂ ମୂଳଂ ବା ପ୍ରତ୍ୟେକଂ । ତତ୍ର କ୍ରମଃ । ଓଁ ଅଦ୍ୟାମୁକଗୋତ୍ରାଣାଂମାତୃପିତାମହୀପ୍ରପିତାମହୀନାମମୁକାମୁକଦେବୀନାଂ-ନାନ୍ଦୀମୁଖୀନାମାଭ୍ୟୁଦୟିକଶ୍ରାଦ୍ଧସମ୍ବନ୍ଧିନାଂବିଶ୍ୱେଷାଂ ଦେବାନାଂସ୍ଥାନେ ନିଯୁକ୍ତାଭ୍ୟାଂ ବ୍ରହ୍ମଣାଭ୍ୟାଂ ଫଳମୂଳଦକ୍ଷିଣାଂ ବନସ୍ପତିଦୈବତାଂ ଦାତୁମହମୁସ୍ତୃଜେ ଇତି ତାନି ଦଦ୍ୟାତ୍ । ଓଁ ଅଦ୍ୟାମୁକଗୋତ୍ରାଣାଂ ପିତୃପିତାମହପ୍ରପିତାମହାନମମୁକା-ମୁକଦେବଶର୍ମ୍ମଣାଂ ନାନ୍ଦୀମୁଖୀନାଂ ସ୍ଥାନେ ନିଯୁକ୍ତାଭ୍ୟାଂ ବ୍ରାହ୍ମଣାଭ୍ୟାଂ ଫଳମୂଳଦକ୍ଷିଣଂ ବନସ୍ପତି ଦୈବତାଂ ଦାତୁମହମୃସ୍ତୃଜେ । ଓଁ ଅଦ୍ୟାମୃକଗୋତ୍ରାଣାଂ ମାତାମହପ୍ରମାତାମହବୃଦ୍ଧପ୍ରମାତାମହାନାମମୁକାମୁକଦେବର୍ଶମଣାଂନାନ୍ଦୀମୁଖୀନାଂ ସ୍ଥାନେନିଯୁକ୍ତଭ୍ୟାଂ ବ୍ରାହ୍ମଣାଭ୍ୟାଂ ଫଳମୂଳଦକ୍ଷିଣାଂ ବନସ୍ପତିଦୈବତାଂ ଦାତୁମହମୁସ୍ତୃଜେ । ଓଁ ବିଶ୍ୱେଦେବାଃ ପ୍ରୀୟନ୍ତାଂ ଇତି ଦେବବିସର୍ଜନଂ । ବାଜେ ବାଜେ ବତ ବାଜି ନୋନୋଧନେଷୁ ବିପ୍ରା ଅମୃତାରତଜ୍ଞାଃ । ଅସ୍ୟ ମଧ୍ୱଃ ପିବତ ମାଦୟଧ୍ୱଂ ତୃପ୍ତାୟାତଃ ପଥିଭିର୍ଦେବୟାନୈଃ । ଇତିମାତ୍ରାଦିପିତ୍ରାଦିମାତାମହାଦୀନାଂ ବିସର୍ଜନଂ । ତତୋ "ଦେବତାଭ୍ୟଃ" ଇତି ତ୍ରିର୍ଜପଃ । ବ୍ରାହ୍ମଣଭୋଜନୋତ୍ସର୍ଗଃ । ପୁଣ୍ୟାହବାଚନଂ । ଦୀପନିର୍ବାପଣଂ । ଆଚମନଂ । ପ୍ରମାଦାତ୍ କୁର୍ବତାଂ କର୍ମ ପ୍ରାଚ୍ୟବେତାଧ୍ୱରେଷୁ ମତ୍ । ସ୍ମରଣାଦେବ ତଦ୍‌ବିଷ୍ଣୋଃ ସମ୍ପୂର୍ଣ୍ଣଂ ସ୍ୟାଦିତି ସ୍ମୃତିଃ । ଯସ୍ୟ ସ୍ମୃତ୍ୟା ଚ ନାମୋକ୍ତ୍ୟା ଜପଯଜ୍ଞତ୍ରୟାଦିଷୁ । ନୂନଂ ସମ୍ପୂର୍ଣ୍ଣତାଂ ଯାନ୍ତି ସଦ୍ୟୋବନ୍ଦେ ତମଚ୍ୟୁତଂ । ଏତତ୍‌କର୍ମ ଶ୍ରୀକୃଷ୍ଣର୍ପଣମସ୍ତୁ । ଶ୍ରାଦ୍ଧୀୟବସ୍ତୁପ୍ରତିପତ୍ତିଃ ।

ବ୍ୟାଖ୍ୟା–ତତ୍ପରେ ସପବିତ୍ର କୁଶତ୍ରୟ ଧରି "ଊର୍ଜଂ ବହନ୍ତୀ' ଏହି ମନ୍ତ୍ର ପଢ଼ି ପିଣ୍ଡ ଉପରେ ଜଳଧାରା ଦେବ, ମାତୃସ୍ଥାନରେ "ମାତୃଃ" ପିତୃମାତା । ମହାଦିସ୍ଥାନରେ



"ପିତୃନ୍" ବ୍ୟବହାର କରିବ । ତତ୍ପରେ ପିଣ୍ଡମାନଙ୍କୁ "ଆଘ୍ରାଣ କରି" ଉଠେଇ ନେଇ ପିଣ୍ଡପାତ୍ରରେ ରଖିବ ଏବଂ ପିଣ୍ଡସ୍ଥାନକୁଶ ଓ ଅଗ୍ନୌକରଣପିଣ୍ଡକୁ ନେଇ ଅଗ୍ନିମଧ୍ୟରେ ପକାଇବ । ତତ୍ପରେ ଦକ୍ଷିଣାବାକ୍ୟ ପଢ଼ି ପ୍ରତ୍ୟେକବ୍ରାହ୍ମଣଙ୍କୁ ଦକ୍ଷିଣା ଦେବ ଓ ବିସର୍ଜନ ମନ୍ତ୍ର ପଢ଼ି ବିସର୍ଜନ କରିବ । ତତ୍ପରେ "ଦେବତାଭ୍ୟଃ" ମନ୍ତ୍ରକୁ ତିନିଥର ଜପି ବ୍ରାହ୍ମଣଭୋଜନନୋତ୍ସର୍ଗ, ପୁଣ୍ୟାହବାଚନ, ଦୀପନିର୍ବାପଣ ଓ ଆଚମନରେ ବିଷ୍ଣୁ ସ୍ମରଣ କରିବ ଏବଂ ତାଙ୍କଠାରେ କର୍ମ ସମର୍ପଣ କରିବ । ଏହିପରି ଆଭ୍ୟୁଦୟିକା ଶ୍ରାଦ୍ଧବିଧି ।

ଇତ୍ୟାଭ୍ୟୁଦୟିକଶ୍ରାଦ୍ଧ ପଦ୍ଧତିଃ ।

## ୪୭୭-ଚତୁର୍ଥୀଦିନର ରାତ୍ର କର୍ମ

ତତୋରାତ୍ରୌ ଛାୟାମଣ୍ଡପମଧ୍ୟେ ତଣ୍ଡୁଲେନଂ ନଗରଂ କୃତ୍ୱା ତନ୍ମଧ୍ୟେ ପୂର୍ବସ୍ଥାପିତଂ ବୃଷଭାଙ୍କିତଂ ଦୃଷଦ୍ଦୁପଲଂ ବା ନିଧାୟ ତଦୁପରି ଚନ୍ଦ୍ରାତପଂ ବଦ୍ଧ୍ୱାପୂର୍ବବଦ୍ ଗଣେଶାଦୀନ୍ ଗନ୍ଧାଦିପଞ୍ଚୋପଚାରୈଃସଂପୂଜ୍ୟ ଦୂର୍ବାବଦରାକ୍ଷତାଦିନା ପୁଷ୍ପାଞ୍ଜଳିଂ ଦତ୍ତ୍ୱା ପ୍ରାର୍ଥୟେତ୍ । (୧୧୮ ନମ୍ବର ବରୁଣପୂଜା ଦେଖ ।)

**ବ୍ୟାଖ୍ୟା**-ବିବାହର ଚତୁର୍ଥଦିନ ରାତ୍ରିରେ ଛାୟାମଣ୍ଡପ ମଧ୍ୟରେ ତଣ୍ଡୁଳଦ୍ୱାରା ଗୋଟିଏ ନଗର କରି ଓ ତାହାମଧ୍ୟରେ ପୂର୍ବରୁ ଆସାଦିତ ବୃଷ ଅଙ୍କିତ ପଥର ବା ଶିଳାକୁ ସ୍ଥାପନ କରି ତାହାଉପରେ ଚାନ୍ଦୁଆ ଟାଙ୍ଗିବ ।

ତତଃ ପୁଣ୍ୟାହବାଚନଂ । ମମାବୟୋର୍ବରକନ୍ୟୟୋର୍ବିବାହାଙ୍ଗଚତୁର୍ଥରାତ୍ରୌ ନଗରସ୍ନାକର୍ମାରମ୍ଭଃ କ୍ରିୟତେ ଯଦ୍ୟେତ୍ୟାଦି । (୧୫୬ ନମ୍ବର ଦେଖ) ।

ତତଃ ପୂର୍ବବଦ୍‌ବସ୍ତ୍ରାଭିମନ୍ତ୍ରଣଂ । ପରିଧାସ୍ୟୈ ଇତି । ଯଶସାମାଦ୍ୟାବା ଇତି । (୩୫୬,୩୫୭ ନମ୍ବର ପୂର୍ଣ୍ଣମନ୍ତ୍ର ଦେଖ) ତତଃ କନ୍ୟାବସ୍ତ୍ରଂ ଜରାଂଗଚ୍ଛେତି (୪୨୯ ନମ୍ବର ପୂର୍ଣ୍ଣମନ୍ତ୍ର ଦେଖ) । ତତଃ ପୁଷ୍ପମାଳାଦ୍ୱୟଂ-ଯାଆହର । ଯଦ୍ୟସୋଽସ୍ୱରସାଂ । ୩୫୭,୩୫୮ ନମ୍ବର ପୂର୍ଣ୍ଣମନ୍ତ୍ର ଦେଖ) ।

## ୪୭୮-ନଗର ସ୍ନାନ

ତତସ୍ତଣ୍ଡୁଳନଗରମଧ୍ୟେ କନ୍ୟାସହିତୋବରଉପବିଶତି । ତତ୍ରୈବ ଚତୁର୍ଦ୍ଦିକ୍ଷୁ ଚତ୍ୱାରୋବ୍ରାହ୍ମଣାସ୍ତଣ୍ଡୁଳପୂରିତଚତୁଃକଲସାନ୍ ଗୃହୀତ୍ୱା ବରକନ୍ୟାୟୋରୁପରି ଅଭିବର୍ଷଣ କୁର୍ଯ୍ୟୁଃ ।

**ବ୍ୟାଖ୍ୟା**-ସେହି ତଣ୍ଡୁଳନଗର ମଧ୍ୟରେ ଶିଳାଉପରେ ବରକନ୍ୟାଙ୍କୁ ବସାଇବ ଓ ତାହାଙ୍କର ଚତୁର୍ଦ୍ଦିଗରେ ଚାରିଜଣ ବ୍ରାହ୍ମଣ ତଣ୍ଡୁଳପୂର୍ଣ୍ଣ ଚାରିଗୋଟି କଳସ ଧରି ଠିଆହୋଇ ତଳଲିଖିତ ମନ୍ତ୍ର ପଢ଼ି ବରକନ୍ୟାଙ୍କ ଉପରେ ତଣ୍ଡୁଳ ବର୍ଷଣ କରିବେ ।

ମନ୍ତ୍ରୋଯଥା-ଓଁ ଗଙ୍ଗାଦିନଦ୍ୟଃ ସରିତଃ ସମୁଦ୍ରାସ୍ତୀର୍ଥାନି ତୋୟୈର୍ବହୁଭିର୍ଜଳୈନାସ୍ନାନେ ସମାୟାନ୍ତୁ ସଦା ନୃଯୁଗ୍ମେ । ମୁଞ୍ଚନ୍ତୁ ମେଘାଃ କୁସୁମସ୍ୟ ବୃଷ୍ଟିଂ । ଗନ୍ଧର୍ବଯକ୍ଷୋରଗକିନ୍ନରାଦ୍ୟା ଦିକ୍‌କୁଞ୍ଜରାଯେ ଚିରଜୀବିନଶ୍ଚ । ସ୍ନାନେ ସମାୟାନ୍ତୁ ମହର୍ଷିସଂଘାମୁଞ୍ଚନ୍ତୁ ମେଘାଃ କୁସୁମସ୍ୟ ବୃଷ୍ଟିଂ । ଗ୍ରହାଶ୍ଚ ତାରାଃ କରଣାମୁହୂର୍ତ୍ତାଯୋଗାଶ୍ଚାଲଗ୍ନାସ୍ତିଥୟଶ୍ଚ ବାରାଃ ଏତେଽଭିଷେତେ ବରକନ୍ୟାୟୋଶ୍ଚ ମୁଞ୍ଚନ୍ତୁ ମେଘାଃ କୁସୁମସ୍ୟ ବୃଷ୍ଟିଂ ତ୍ରିବାରପଠନାନ୍ତରଂ ବରକନ୍ୟାୟୋରାଶୀର୍ଦାନଂ । (ଏହି ମନ୍ତ୍ର ତିନିଥର ପଢ଼ି ତଣ୍ଡୁଳ ସ୍ନାନ କରାଇ ବରକନ୍ୟାଙ୍କୁ ଆଶୀର୍ବାଦ କରିବ) । ତତୋଯୁବାସୁବାସାମିତି ମନ୍ତ୍ରେଣ ବରକନ୍ୟୟୋଃ ଶିରସି ପୁଷ୍ପମୁକୁଟବନ୍ଧନଂ । ସିନ୍ଦୂରକଜ୍ଜଳଧାରଣଂ । ତତ୍ପରେ ଯୁବାସୁବାସା ମନ୍ତ୍ର ପଢ଼ି ବରକନ୍ୟାଙ୍କ ମସ୍ତକରେ ପୁଷ୍ପମୁକୁଟ (କାଠିମୁକୁଟ) ବାନ୍ଧିଦେବ ଓ ସିନ୍ଦୂର କଜ୍ଜଳ ଲଗାଇବେ ।

## ୪୭୯-ଚତୁର୍ଥୀ ହୋମ

ତତ ପଞ୍ଚଭୂସଂସ୍କାରେଣ ଲୌକିକାଗ୍ନେ ସ୍ଥାପନଂ । ଯୋଜକନାମାଗ୍ନେରାବାହନଂ । (୨୨୨ ନମ୍ବର ଦେଖ) ।

ତତୋବ୍ରହ୍ମାବରଣଂ । ନାମଗୋତ୍ରେଉଚ୍ଚାର୍ଯ୍ୟ ସମାବୟୋର୍ବରକନ୍ୟୟୋ-ର୍ବିବାହାଙ୍ଗଚତୁର୍ଥରାତ୍ରୌ ହୋମକର୍ମଣି "କୃତାକୃତାବେକ୍ଷକତ୍ୱେନ ବ୍ରାହ୍ମଣଂ ତ୍ୱାମହଂ ବୃଣେ ଏବଂ ଆଚାର୍ଯ୍ୟ ବରଣଂ ।

(୧୪୮ ନମ୍ବର ଦେଖ) ।

ତତଃ କୃଶାଣ୍ଡିବିଧିଃ । (୧୫୫ ନମ୍ବର ଦେଖ) ଅତ୍ର ବିଶେଷଶ୍ଚରୁଃ । ତତଃ ଆଘାରାବାଜ୍ୟଭାଗୌ ଦତ୍ତ୍ୱା ପୁଣ୍ୟାହବାଚନଂ । ମାମାବୟୋର୍ବର-କନ୍ୟୟୋର୍ବିବାହାଙ୍ଗଚତୁର୍ଥୀରାତ୍ରୌ ହୋମକର୍ମରାମଃ କ୍ରିୟତେ ଯଦେତ୍ୟାଦି । ତତଃ ଆଜ୍ୟେନ ଶ୍ରୁବେଣ ହୋମଃ । ମନ୍ତ୍ରୋଯଥା-

ଓଁ ଅଗ୍ନିପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି । ବ୍ରାହ୍ମଣସ୍ତ୍ୱା ନାଥ କାମ ଉପଧାବାମି ଯାସ୍ୟୈ ପତିଘ୍ନୀ ତନୁସ୍ତାମସ୍ୟୈନାଶୟ ସ୍ୱାହା । ଇଦମଗ୍ନୟେ । ଓଁ ବାୟୋ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି । ବ୍ରାହ୍ମଣସ୍ତ୍ୱନାଥ କାମ ଉପଧାବାମି ଯାସ୍ୟୈ ପ୍ରଜାଘ୍ନୀ ତନୂସ୍ତାମସ୍ୟୈ ନାଶୟ ସ୍ୱାହା । ଇଦଂ ବାୟବେ । ଓଁ ସୂର୍ଯ୍ୟ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବାନଂ ପ୍ରାୟଶ୍ଚିତ୍ତିରସି । ବ୍ରାହ୍ମଣସ୍ତ୍ୱା ନାଥ କାମ ଉପଧାବାସି ଯାସ୍ୟୈ ପଶୁଘ୍ନୀତନୂସ୍ତାମସ୍ୟୈ ନାଶୟ ସ୍ୱାହା । ଇଦଂ ସୂର୍ଯ୍ୟାୟ । ଓଁ ଚନ୍ଦ୍ରପ୍ରାୟଶ୍ଚିତ୍ତେତ୍ୱଂ ଦେବାନାଂ ପ୍ରାୟଶ୍ଚିତ୍ତିରସି । ବ୍ରାହ୍ମଣସ୍ତ୍ୱା ନାଥ କାମ ଉପଧାବାମି ଯାସ୍ୟୈ ଗୃହଘ୍ନୀ



ତନୂସ୍ତାମସ୍ୟୈ ନାଶୟ ସ୍ୱାହା । ଇଦଂ ଚନ୍ଦ୍ରାୟ । ଓଁ ଗନ୍ଧର୍ବ ପ୍ରାୟଶ୍ଚିତ୍ତେ ତ୍ୱଂ ଦେବନାଂ ପ୍ରାୟଶ୍ଚିତ୍ତିରସି ବ୍ରାହ୍ମଣସ୍ତ୍ୱାନାଥ କାମ ଉପଧାବାମି ଯାସ୍ୟୈ ଯଶୋଘ୍ନୀ ତନୂସ୍ତାମସ୍ୟୈ ନାଶୟ ସ୍ୱାହା । ଇଦଂ ଗନ୍ଧର୍ବାୟ । ଓ ତତ୍‌ଶ୍ଚରୁହୋମଂ କୁର୍ଯ୍ୟାତ୍ । ଓଁ ପ୍ରଜାପତୟେ ସ୍ୱାହା । ଇଦଂ ପ୍ରଜାପତେୟ । ଓଁ ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା । ଇଦମଗ୍ନୟେ ସ୍ୱିଷ୍ଟକୃତେ । ଆହୂତୀନାଂ ସଂସ୍ରବ ପ୍ରଣୀତୋତ୍ତରେ ଉଦକପାତ୍ରେ ପ୍ରକ୍ଷିପେତ୍ । ତତୋଭୂରାଦିପ୍ରାଜପତ୍ୟାନ୍ତାନବାହୁ ତୟଃ । ତତୋହୁତଶେଷଂବଧୂଂ ବରଃ ପ୍ରାଶୟତେ୍ । ଓଁ ସୂମିତ୍ରିୟାନ ଆପ ଓଷଧୟଃ ସନ୍ତୁ ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ । ମୋଽସ୍ମାଂ ଦ୍ୱେଷ୍ଟି ୟଂ ଚ ବୟଂ ଦ୍ୱିଷ୍ମଃ । ଇତି'ମନ୍ତ୍ରେଣ ମାର୍ଜନଂ । ତତଉଦକପାତ୍ରସ୍ଥସଂସ୍ରବଂ ବଧୂମୂର୍ଦ୍ଧ୍ନି ସିଞ୍ଚେନ୍ ମନ୍ତ୍ରେଣ । ଓଁ ଯା ତେ ପତିଘ୍ନୀ ପ୍ରଜାଘ୍ନୀ । ପଶୁଘ୍ନୀ ଯଶୋଘ୍ନୀ ନିନ୍ଦିତା ତନୂଜାରଘ୍ନୀ ତତଏନାଂ କରୋମି । ସା ଜୀର୍ଯ୍ୟ ତ୍ୱଂ ମୟାସହ ଅମୁକଦେବୀତି ବଧୂନାମଗ୍ରହଣଂ ବରଃ । ତତଶ୍ଚରୁଶେଷଂ ବଧୂଂ ପ୍ରାଶୟେଦ୍‌ବରୋମନ୍ତ୍ରେଣ-ତଦ୍‌ଯଥା-ଓଁ ପ୍ରାଣୈସ୍ତେ ପ୍ରାଣାନ୍ ସଂଦଧାମସ୍ଥିଭିରସ୍ଥୀନି ମାଂସୈର୍ମାସାନି ତ୍ୱଚା ତ୍ୱଚଂ । ତତଃ ଶାନ୍ତିକରଣଂ । ଦକ୍ଷିଣାଦାନଂ । ପବିତ୍ରପ୍ରତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବିସର୍ଜନଂ । ପୁଣ୍ୟାହବାଚନଂ । ତଦ୍‌ଯଥା-ମମାବୟୋର୍ବରକନ୍ୟାୟୋ-ବିବାହାଙ୍ଗଶ୍ଚତୁର୍ଥରାତ୍ରୌ ହୋମକର୍ମ ଯତ୍କୃତଂ ତସ୍ୱକୃତମସ୍ତୁ ଭଗବତଃ ଶ୍ରୀବାସୁଦେବସ୍ୟ ପ୍ରସାଦାତ୍ ସର୍ବଂ ପରିପୂର୍ଣ୍ଣମଚ୍ଛିଦ୍ରମସ୍ତୁ । ତିଳକାଞ୍ଜନଦାନଂ । ତିଳକଗ୍ରହଣଂ ଆଶୀର୍ଗ୍ରହଣଂ । ସପ୍ତବର୍ତ୍ତିନ୍ୟା ସଭର୍ତ୍ତୃକାଃସ୍ତ୍ରିୟୋ ବନ୍ଦାପନାଂ କୁର୍ଯ୍ୟୁଃ ।

ବ୍ୟାଖ୍ୟା- "ଓ ଅଗ୍ନେ ପ୍ରାୟଶ୍ଚିତ୍ତେ" ଏହି ମନ୍ତ୍ରଠାରୁ ଆରମ୍ଭ କରି "ଓଁ ଗନ୍ଧର୍ବ ପ୍ରାୟଶ୍ଚିତେ" ଏହି ମନ୍ତ୍ର ପର୍ଯ୍ୟନ୍ତ ପାଞ୍ଚକାଣ୍ଡି ମନ୍ତ୍ର ପଢ଼ି ଅଗ୍ନିରେ ପାଞ୍ଚଆହୁତି ଦେବ । ତତ୍ପରେ "ଓଁ ପ୍ରଜାପତି" ଓ "ଓଁ ସ୍ୱିଷ୍ଟକୃତ୍" ଏହି ଦୁଇ ମନ୍ତ୍ର ପଢ଼ି ଚରୁଦ୍ୱାରା ଅଗ୍ନିରେ ଦୁଇ ଆହୁତି ଦେବ । ତଦନନ୍ତର ଆହୁତିର ସଂଗ୍ରହ (ଅବଶେଷ) ପ୍ରଣୀତାର ଉତ୍ତର ଦିଗରେ ଗୋଟିଏ ଜଳପାତ୍ରରେ ରଖିବ । ତତ୍ପରେ "ଭୂ" ଠାରୁ ଆରମ୍ଭି "ପ୍ରଜାପତି" ପର୍ଯ୍ୟନ୍ତ ମନ୍ତ୍ର ପଢ଼ି ଘୃତଦ୍ୱାରା ଅଗ୍ନିରେ ନଅ ଆହୁତି ଦେବ । ତଦୁତ୍ତାରୁ ହୁତଶେଷକୁ ବର, କନ୍ୟାକୁ ପାଶନ ଅର୍ଥାତ୍ ଖୋଇଦେବ । "ଓଁ ସୁମିତ୍ରିୟା ନ ଆପ" ଏହି ମନ୍ତ୍ର ପଢ଼ି ବର କୁଶଜଳରେ କନ୍ୟାକୁ ମାର୍ଜନ କରାଇବ । ତଦନନ୍ତର ଉଦକପାତ୍ରସ୍ଥିତ ସଂସ୍ରବ ଜଳକୁ ବର "ଓଁ ଯାତେ ପତିଘ୍ନୀ" ଏହି ମନ୍ତ୍ର ପଢ଼ି କନ୍ୟାର ମସ୍ତକରେ ସେଚନ କରିବ । ତତ୍ପରେ ବର ବିବାହରେ ଦିଆ ହୋଇଥିବା କନ୍ୟାର "ଅମୁକଦେବୀ" ଏହି ନାମ ଧରି କନ୍ୟାକୁ ସମ୍ବୋଧନ କରିବ । ତଦନନ୍ତର ବର "ଓଁ ପ୍ରାଣୈସ୍ତେ" ଏହି ମନ୍ତ୍ର ପଢ଼ି ଚରୁଶେଷକୁ କନ୍ୟାକୁ ଖୋଇଦେବ । ଏଥିଉତ୍ତାରୁ ତିଳକାଞ୍ଜନ ଦାନ, ଅଗ୍ନିର ଶାନ୍ତିକରଣ ଓ ଦକ୍ଷିଣା ଦାନ

କରିବ ଏବଂ ପବିତ୍ର, ପ୍ରଣୀତା ଓ ବ୍ରହ୍ମାଗ୍ନି ବିସର୍ଜନ କରି ପୁଣ୍ୟାହବାଚନ କରିବ ଓ ତିଳକଗ୍ରହଣ ଏବଂ ଆଶୀର୍ବାଦ ଗ୍ରହଣ କରି କର୍ମ ସମାପ୍ତ କରିବ । ତତ୍ପରେ ସଧବା ସ୍ତ୍ରୀମାନେ ସାତଦୀପଦ୍ୱାରା ବରକନ୍ୟାଙ୍କୁ ବନ୍ଦପନା କରି ଘରକୁ ନେବେ । ଇତି ଚତୁର୍ଥୀ କର୍ମ ସମାପ୍ତଂ ।

-୦-

## ୪୮୦-ସପ୍ତମଙ୍ଗଳା କର୍ମ

ଅଥ ସପ୍ତମଙ୍ଗଳାଦିବସକୃତ୍ୟଂ । ଆଦୌ ବରୁଣପୂଜା । (୧୧୮ ନମ୍ବର ଦେଖ) ଅଭିମନ୍ତ୍ରିତବସ୍ତ୍ର ପରିଧାନଂ । (ମନ୍ତ୍ର ୩୫୬ ନମ୍ବର ଦେଖ) ତତଃ ପୁଣ୍ୟାହବାଚନଂ । ମମାବୟୋର୍ବରକନ୍ୟୟୋର୍ବିବାହାଙ୍ଗସପ୍ତମଙ୍ଗଳାଦିବସାଧିକରଣ-କୌତୁକସୂତ୍ରମୋଚନକର୍ମାରମ୍ଭଃ କ୍ରିୟତେ ଯଦା ତଦା ତାରାବାରଗ୍ରହନକ୍ଷତ୍ରାଣାମିତ୍ୟାଦି । (୧୫୬ ନମ୍ବର ଦେଖ) ତତଃ "ଆଶୁଃ ଶିଶାନଃ" ଇତ୍ୟନୁବାକ୍ୟଂ ପଠିତ୍ୱା (୪୨୬ ନମ୍ବର ଦେଖ) କୌତୁକସୂତ୍ରଂ ମୋଚୟେତ୍ । ତତଃ ପୁଣ୍ୟାହବାଚନଂ । କୌତୁକସୂତ୍ରମୋଚନକର୍ମ ଯତ୍କୃତଂ ତତ୍ ସୁକୃତମସ୍ତୁ । ତତଆଶୀର୍ଗ୍ରହଣଂ (ମନ୍ତ୍ର ୩୬୬ (ଖ) ନମ୍ବର ଦେଖ) ଦେବତାବିସର୍ଜନଂ । (୨୦୯ ନମ୍ବର ଦେଖ) ତତଃ ସପ୍ତବର୍ତ୍ତିନ୍ୟା ସଭର୍ତ୍ତୃକାଃ ସ୍ତ୍ରିୟୋବନ୍ଦାପନାଂ କୁର୍ଯ୍ୟୁଃ ।

ବ୍ୟାଖ୍ୟା-ସପ୍ତମଙ୍ଗଳାଦିନ ବେଦୀ ଉପରେ କନ୍ୟା ସହିତ ବର ବସି ପ୍ରଥମରେ ବରୁଣପୂଜା କରିବ । ବସ୍ତ୍ର ଅଭିମନ୍ତ୍ରଣ କରି ବରକନ୍ୟା ଉଭୟ ବସ୍ତ୍ର ପିନ୍ଧିବେ । ବର ପୁଣ୍ୟାହବାଚନ କରିବ । ତତ୍ପରେ ଆଚାର୍ଯ୍ୟ "ଆଶୁଃ ଶିଶାନଃ" ଏହିଠାରୁ ଆରମ୍ଭି "ମର୍ମାଣି ତେ" ଏହି ପର୍ଯ୍ୟନ୍ତ ଷୋଳକାଣ୍ଡି ମନ୍ତ୍ର ପଢ଼ି ବରକନ୍ୟାଙ୍କ ହାତରୁ କୌତୁକସୂତ୍ରଫିଟାଇବେ । ତଦୁତ୍ତାରୁ ବର ପୁଣ୍ୟହବାଚନ କରିବ ଓ ବରକନ୍ୟା ଉଭୟ ଆଶୀର୍ବାଦ ଗ୍ରହଣ କରିବେ ଏବଂ ବର ଦେବତାଙ୍କୁ ବିସର୍ଜନ କରିବ । ତଦନନ୍ତର ସଧବା ସ୍ତ୍ରୀମାନେ ସାତଦୀପଦ୍ୱାରା ବରକନ୍ୟାଙ୍କୁ ବନ୍ଦାପନା କରି ଘରକୁ ନେବେ ।

ଇତି ସପ୍ତମଙ୍ଗଳାଦିବସକୃତ୍ୟଂ ।

-୦-



## ୪୮୧-ଚନ୍ଦ୍ର ବନ୍ଦାପନାକୃତ୍ୟ

ଆଦୌ ବରୁଣପୂଜା । (୧୧୮ ନମ୍ବର ଦେଖ) ତଦନନ୍ତରମଭିମନ୍ତ୍ରିତ ବସ୍ତ୍ରଧାରଣଂ । (୩୫୬ ନମ୍ବର ଦେଖ) ତତଃ ପୀଠୋପରି ନୀବାରଚୂର୍ଣ୍ଣେନ ଚନ୍ଦ୍ରଂ ଲିଖିତ୍ୱା ତଦୁପରି ରଜତନିର୍ମିତଚନ୍ଦ୍ରଂ ସ୍ଥାପୟିତ୍ୱା ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । ମମାବୟୋର୍ବରକନ୍ୟୟୋର୍ବିବାହାଙ୍ଗଚନ୍ଦ୍ରବନ୍ଦାପନାକର୍ମାରମ୍ଭଃକ୍ରିୟତେ ଯଦେତ୍ୟାଦି । (୧୫୬ ନମ୍ବର ଦେଖ) ତତଃ ପୂଜାମାରଭେତ । ତତୋଦୁର୍ବାକ୍ଷତପୁଷ୍ପଂ ଗୃହୀତ୍ୱାବାହୟେନ୍ମନ୍ତ୍ରେଣ । ମନ୍ତ୍ରଃ-ଓଁ ଚନ୍ଦ୍ରଂତ୍ୱା ଚନ୍ଦ୍ରେଣ କ୍ରୀଣାମି ଶୁକ୍ରଂ ଶୁକ୍ରେଣାମୃତମମୃତେନ । ସଗ୍ମେତେ ଗୋରସ୍ମେତେ ଚନ୍ଦ୍ରାଣୀ ସ୍ୱାହା । ଇତି ମନ୍ତ୍ରୋଦୁର୍ବାକ୍ଷତଂ ଦତ୍ତ୍ୱାବାହୟେତ୍ । ରୋହିଣୀ ସହିତ ବୃଷଚନ୍ଦ୍ର ଇହାଗଚ୍ଛ ଇହତିଷ୍ଠ ଅତ୍ରାଧିଷ୍ଠାନଂ କୁରୁ ମମ ପୂଜାଂ ଗୃହାଣ । ତତଃପୂର୍ବୋକ୍ତମନ୍ତ୍ରେଣ ପଞ୍ଚୋପଚାରୈଃପୂଜୟେତ୍ । ତତୋବଧୂବରୌ ଚତୁର୍ହସ୍ତ ମେକୀକୃତ୍ୟ ସପ୍ତବର୍ତ୍ତିକୟା ବନ୍ଦାପନାଂ କୁର୍ଯ୍ୟାତ୍ଂ, ଦୁର୍ବାଯୁକ୍ତକ୍ଷୀରପୂରିତଶଙ୍ଖଂ ଚ ଗୃହୀତ୍ୱା ପୂର୍ବୋକ୍ତମନ୍ତ୍ରେଣ ରୋହିଣୀସହିତବୃଷଚନ୍ଦ୍ରାୟ ଏଷୋଽର୍ଘ୍ୟଃ ସ୍ୱାହା ଇତ୍ୟର୍ଘ୍ୟ ଦଦ୍ୟାତାଂ । ତତଃ ପୁଣ୍ୟାହବାଚନଂ । ବିବାହାଙ୍ଗଚନ୍ଦ୍ର ବନ୍ଦାପନାକର୍ମ ଯତ୍କୃତଂ ତଦସ୍ତୁକୃତମସ୍ତୁ । ଆର୍ଶୀଗ୍ରହଣଂ । ଦେବତା ବିସର୍ଜନ । ଦକ୍ଷିଣାଦାନଂ । ବ୍ରାହ୍ମଣଭୋଜନଂ । ତତଃ ପ୍ରାର୍ଥନା-ଓଁ କ୍ଷୀରୋଦାର୍ଣ୍ଣବସମ୍ଭୂତ ଅତ୍ରିଗୋତ୍ରସମୁଦ୍ଭବ । ରୋହିଣୀସହ ଭୋ ଚନ୍ଦ୍ରଗୃହାଣାର୍ଘ୍ୟଂ ନମସ୍ତୁତେ ।

ବ୍ୟାଖ୍ୟା-ବିବାହର ଅଷ୍ଟମଙ୍ଗଳାପରେ ଶୁକ୍ଳପକ୍ଷ ତୃତୀୟାରେ ବର କନ୍ୟା ଉଭୟ ଚନ୍ଦ୍ରବନ୍ଦାପନା କରିବେ । ବିବାହବେଦୀଉପରେ ବର କନ୍ୟା ଉଭୟ ବସି ବର ବରୁଣ ପୂଜା କରିବ । ତତ୍ପରେ ବର କନ୍ୟା ଉଭୟ ଅଭିମନ୍ତ୍ରିତ ବସ୍ତ୍ର ପିନ୍ଧିବେ । ଏଥିଉତ୍ତାରୁ ଆଚାର୍ଯ୍ୟ ପୀଢ଼ାଉପରେ ବାଲୁଙ୍ଗାଧାନର ଚାଉଳଚୂନାଦ୍ୱାର ଗୋଟିଏ ଚନ୍ଦ୍ର ଅଙ୍କିତ କରି ତାହା ଉପରେ ଗୋଟିଏ ରୂପାର ଚନ୍ଦ୍ର ସ୍ଥାପନ କରିବେ । ତଦୁତ୍ତାରୁ ବର ପୂଣ୍ୟ ହବାଚନ କରି ଚନ୍ଦ୍ରଙ୍କର ପୂଜା ଆରମ୍ଭ କରିବ ଏବଂ ଦୁବ, ଅକ୍ଷତ ଓ ପୁଷ୍ପ ଧରି "ଓଁ ଚନ୍ଦ୍ରଂ ତ୍ୱା" ଏହି ଉପରୋକ୍ତ ମନ୍ତ୍ର ପଢ଼ି ଚନ୍ଦ୍ର ଉପରେ ଦେଇ ଉପରୋକ୍ତ "ରୋହିଣୀସହିତ ବୃଷ" ଇତ୍ୟାଦି ମନ୍ତ୍ର ପଢ଼ି ଆବାହନ କରିବ । ତତ୍ପରେ ବର ପୂର୍ବୋକ୍ତ ଚନ୍ଦ୍ରଂ ତ୍ୱା" । ଏହି ମନ୍ତ୍ରରେ ଚନ୍ଦ୍ରଙ୍କୁ ପଞ୍ଚପୋଚାରର (ଗନ୍ଧ, ପୁଷ୍ପ, ଧୂପ, ଦୀପ ନୈବେଦ୍ୟ) ଦେଇ ପୂଜା କରିବ । ତଦୁତ୍ତାରୁ ବର କନ୍ୟା ଉଭୟ ଚତୁର୍ହସ୍ତ ହୋଇ ସାତଦୀପଦ୍ୱାରା ଚନ୍ଦ୍ର ଚନ୍ଦାପନା କରିବେ ଏବଂ କ୍ଷୀର ଓ ଦୂବପୂର୍ଣ୍ଣ ଶଙ୍ଖକୁ ଚତୁର୍ହସ୍ତ ହୋଇ ଧରି ପୂର୍ବୋକ୍ତ "ଚନ୍ଦ୍ରଂ ତ୍ୱା" ଏହି ମନ୍ତ୍ର ପଢ଼ି ଓ

ରୋହିଣୀସହିତ ବୃଷ ଚନ୍ଦ୍ରାୟ ଏଷୋଽର୍ଘ୍ୟଃ ସ୍ୱାହା” ଏହା ପଢ଼ି ଅର୍ଘ୍ୟ ଦେବେ । ତତ୍ପରେ ବର ପୂଣ୍ୟାହବଚାନ କରିବ । ଆଉ ବରକନ୍ୟା ଉଭୟ ଆଶୀର୍ବାଦ ଗ୍ରହଣ କରିବେ । ତଦନନ୍ତର ଦେବତାବିସର୍ଜନ, ଦକ୍ଷିଣା ଦାନ ଓ ବ୍ରାହ୍ମଣଭୋଜନୋତ୍ସର୍ଗ କରି ପୂର୍ବୋକ୍ତ “କ୍ଷୀରୋଦାର୍ଣ୍ଣବସମ୍ଭୂତ” ଇତ୍ୟାଦି ମନ୍ତ୍ର ପଢ଼ି ପ୍ରାର୍ଥନା କରିବେ ।

ଇତି ଚନ୍ଦ୍ର ବନ୍ଦାପନାବିଧି ।

## ୪୮୨-ବର୍ଷବୃଦ୍ଧି କର୍ମ

ତଦ୍ଦିନେ ଆଦୌ ବରୁଣପୂଜା । ତଦନନ୍ତରଂ ନୂତନବସ୍ତ୍ର ଧାରଣଂ । ତତଃ ପୁଣ୍ୟାହବଚାନାଂମମାବୟୋର୍ବରକନ୍ୟୟୋର୍ବସ୍ତ୍ରଗ୍ରନ୍ଥି ମୋଚନକର୍ମାରମ୍ଭଃକ୍ରିୟତେ ଯଦେତ୍ୟାଦି । ଓଁ ଆଶୁଃଶିଶାନ ଇତ୍ୟାନୁବାକ୍ୟଂପଠିତ୍ୱା ବସ୍ତ୍ରଗ୍ରନ୍ଥିଂମୋଚୟେତ୍ । ତତଃପୁଣ୍ୟାହବାଚନଂ । ବିବାହାଙ୍ଗବସ୍ତ୍ରଗ୍ରନ୍ଥି ମୋଚନ କର୍ମ ଯତ୍‌କୃତଂ ତତ୍ ସୁକୃତମସ୍ତୁ । ତତଂ ଆଶୀର୍ଗ୍ରହଣଂ । ଦକ୍ଷିଣାଦାନଂ । ଦେବତାବିସର୍ଜନଂ । ବ୍ରାହ୍ମଣଭୋଜନଂ ।

ବ୍ୟାଖ୍ୟା-ବର୍ଷବୃଦ୍ଧି ଦିବସରେ କନ୍ୟାସହିତ ବର ବରୁଣପୂଜା କରି ଅଭିମନ୍ତ୍ରିତ ନୂତନ ବସ୍ତ୍ର ପିନ୍ଧି ପୂଣ୍ୟାହବଚାନ କରିବ । ତତ୍ପରେ ଆଚାର୍ଯ୍ୟ ବିବାହଦିନ ବରକନ୍ୟାଙ୍କ ଉତ୍ତରୀୟ ବସ୍ତ୍ରରେ ପଡ଼ିଥିବା ଗ୍ରନ୍ଥିକୁ ଓଁ ଆଶୁଃଶିଶାନଃ” ଏହି ଅନୁବାଦ ପଢ଼ି ଫିଟାଇଦେବ । ତଦୁତ୍ତାରୁ ବର ପୁଣ୍ୟାହଚାଚନ ଆଶୀର୍ବାଦଗ୍ରହଣ, ଦକ୍ଷିଣାଦାନ ଓ ଦେବତା ବିସର୍ଜନ କରିବ ।

ଇତି ବର୍ଷବୃଦ୍ଧି କର୍ମ ।

## ୪୮୩-ଜାମାତୃଗୃହେ ଭୋଜନ ନିଷେଧ

ଅପ୍ରଜାୟାଂ ତୁ କନ୍ୟାୟାଂ ନ ଭୁଞ୍ଜୀତ କଦାଚନ ।
ଦୌହିତ୍ରସ୍ୟ ମୁଖଂ ଦୃଷ୍ଟ୍ୱା କିମର୍ଥମନୁଶୋଚସି ॥

(ଭବିଷ୍ୟେ)

ବିଷ୍ଣୁଂ ଜାମାତରଂ ମନ୍ୟେ ତସ୍ୟ କୋପଂ ନ କାରୟେତ୍ ।
ଅପ୍ରଜାୟାଂ ତୁ କନ୍ୟାୟାଂ ନାଶ୍ନୀୟାତ୍ତସ୍ୟ ବୈଗୃହେ ।
ଯଦି ଭୂଞ୍ଜୀତ ମୋହାଦ୍‌ବା ପୂୟାଶୀ ନରକଂ ବ୍ରଜେତ୍ ॥

(ଆଦିତ୍ୟପୂରାଣେ)



ବ୍ୟାଖ୍ୟା-କନ୍ୟାପିତା ପୁତ୍ରସନ୍ତାନ ପ୍ରସବ କରି ନ ଥିବା କନ୍ୟାର ଗୃହରେ କଦାଚ ଭୋଜନ କରିବ ନାହିଁ । ଦୌହିତ୍ର (ନାତି)ର ମୁଖ ଦର୍ଶନ କଲା ଉତ୍ତାରୁ ଭୋଜନରେ ଦୋଷ ହୁଏ ନାହିଁ । ଆଦିତ୍ୟପୁରାଣରେ ଲେଖାଅଛି-ଜାମାତାକୁ ବିଷ୍ଣୁତୁଲ୍ୟ ମଣିବ, କଦାପି ତାହାର ମନରେ କ୍ରୋଧ ଜାତ କରାଇବ ନାହିଁ । ଯଦି ମୋହବଶରୁ ଅପ୍ରସୂତା କନ୍ୟା ଗୃହରେ ଭୋଜନ କରିବ ତେବେ ପୂଜ୍‌ ଭକ୍ଷଣ କରି ନରକରେ ପତିତ ହେବ ।

## ୪୮୪-ଏକ ଦିବସରେ ପିତୃଗୃହ ଓ ଶ୍ୱଶୁରଗୃହରେ କନ୍ୟାର ଭୋଜନ କରିବାର ନିଷେଧବାକ୍ୟ

ଭୁଙ୍‌କ୍ତ୍ୱା ପିତୃଗୃହେ କନ୍ୟା ଭୁଙ୍‌କ୍ତେ ସ୍ୱାମୀଗୃହେ ଯଦି ।
ଦୌର୍ଭାଗ୍ୟଂ ଜାୟତେ ତସ୍ୟାଃ ଶପନ୍ତି କୁଳନାୟିକାଃ ।

ବ୍ୟାଖ୍ୟା-କନ୍ୟା ଏକଦିବସରେ ବାପଘରେ ଓ ସ୍ୱାମୀଘରେ ଖାଇଲେ ସେ ଅଭାଗା ହୁଏ । କୁଳସ୍ତ୍ରୀମାନେ ତାହାକୁ ଅଭିଶାପ ଦିଅନ୍ତି ।
ବିବାହସମ୍ପର୍କୀୟ କର୍ମ ସମାପ୍ତଂ ।

-୦-

# ପରିଶିଷ୍ଟ

## ୧-ଦତ୍ତକପୁତ୍ରଗ୍ରହଣ ବିଧି

ଅପୁତ୍ରେଣ ସୁତଃ କାର୍ଯ୍ୟୋଯାଦୃକ୍ ତାଦୃକ ପ୍ରଯତ୍ନତଃ ।

ପିଣ୍ଡୋଦକକ୍ରିୟାହେତୋର୍ନାମସଂକୀର୍ତ୍ତନାୟ ଚ । (ମନୁଃ)

ବ୍ୟାଖ୍ୟା-ଅପୁତ୍ରିକ ବ୍ୟକ୍ତି ଆପଣାର ଶ୍ରାଦ୍ଧତର୍ପଣାଦି କର୍ମ ଓ ନାମରକ୍ଷା ନିମିତ୍ତ ଯତ୍ନପୂର୍ବକ ଯେକୌଣସି ପ୍ରକାରେ ଦତ୍ତକ (ପୋଷ୍ୟ ପୁତ୍ର ଗ୍ରହଣ କରିବ) ।

ସପିଣ୍ଡାପତ୍ୟକଂ ଚୈବ ସଗୋତ୍ରଜମଥାପି ବା ।

ଅପୁତ୍ରକୋଦ୍ୱିକୋଯସ୍ମାତ୍ ପୁତ୍ରତ୍ୱେ ପରିକଳ୍ପୟେତ୍ ॥

ସମାନଗୋତ୍ରଜାଭାବେ ପାଳୟେଦନ୍ୟଗୋତ୍ରଜଂ ।

ଦୌହିତ୍ରଂ ଭାଗିନେୟଂ ଚ ମାତୃଷ୍ୱସୃସୁତଂ ବିନା ॥

(ବିଶ୍ୱକୋଷେ)

ବ୍ୟାଖ୍ୟା-ଅପୁତ୍ରିକ ଦ୍ୱିଜ ସପିଣ୍ଡାଦିରୁ କିମ୍ବା ସଗୋତ୍ରରୁ ଅଥବା ଅନ୍ୟ ଗୋତ୍ରରୁ ପୋଷ୍ୟପୁତ୍ର ଗ୍ରହଣ କରିବ । କିନ୍ତୁ ଦୌହିତ୍ର (ଝିଅର ପୁଅ), ଭାଗିନେୟ (ଭଉଣୀର ପୁଅ) ଓ ମାତୃଷ୍ୱସୃପୁତ୍ର (ମାଉସୀପୁଅ) ଏମାନଙ୍କୁ କରିବ ନାହିଁ ।

ସର୍ବେଷାମେବ ବର୍ଣ୍ଣାନାଂ ଜାତିଷ୍ୱେବ ନ ଚାନ୍ୟତଃ ।

ଦୌହିତ୍ରେଭାଗିନେୟଶ୍ଚ ଶୂଦ୍ରୈସ୍ତୁକ୍ରିୟତେ ସୁତଃ ॥

(ଦତ୍ତକମୀମାଂସାୟାଂ)

ବ୍ୟାଖ୍ୟା-ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏମାନେ ଆପଣା ଆପଣା ବର୍ଣ୍ଣରୁ ପୋଷ୍ୟପୁତ୍ର ଗ୍ରହଣ କରିବେ । ଅର୍ଥାତ୍ ବ୍ରାହ୍ମଣ ବ୍ରାହ୍ମଣଜାତିରୁ, କ୍ଷତ୍ରିୟ କ୍ଷତ୍ରିୟଜାତିରୁ, ବୈଶ୍ର ବୈଶ୍ୟଜାତିରୁ ଓ ଶୂଦ୍ର ଶୂଦ୍ରଜାତିରୁ ପୋଷ୍ୟପୁତ୍ର ଗ୍ରହଣ କରିବେ, ଏଥିରୁ ଅନ୍ୟଥା କରିବେ ନାହିଁ । ଶୂଦ୍ର ଦୌହିତ୍ର ଓ ଭାଗିନେୟଙ୍କୁ ପୋଷ୍ୟପୁତ୍ର କରିପାରିବ, କିନ୍ତୁ ଦ୍ୱିଜାତିମାନେ କରିପାରିବେ ନାହିଁ ।

 

ପିତୃଗୋତ୍ରେଣ ପୁତ୍ରଃ ସଂସ୍କୃତଃ ପୃଥିବୀପତେ
ଆଚୂଡ଼ାନ୍ତଂ ନ ପୁତ୍ରଃ ସ ପୁତ୍ରତାଂ ଯାତି ଚାନ୍ୟତଃ ।
*ଚୂଡ଼ୋପାନସଂସ୍କାରାନିଜଗୋତ୍ରେଣ ବୈ କୃତାଃ ।
ଦତ୍ତାଦ୍ୟାସ୍ତନୟାସ୍ତେ ସ୍ୟୁରନ୍ୟଥା ଦାସଉଚ୍ୟତେ ॥

(କାଳିକା ପୁରାଣେ)

ବ୍ୟାଖ୍ୟା-ହେ ରାଜନ୍! ଯେ ପୁତ୍ରର ନିଜ ପିତୃଗୋତ୍ରରେ ମୁଣ୍ଡନ ପର୍ଯ୍ୟନ୍ତ ସଂସ୍କାରକ୍ରିୟା ହୋଇଅଛି, ସେ ପୁତ୍ର ଅନ୍ୟର ଦତ୍ତକାଦି ପୁତ୍ର ହୋଇ ନ ପାରେ । ଯେଉଁ ଲୋକ ପୁତ୍ର ଗ୍ରହଣ କରିବ ସେ ତାହାର ନିଜ ଗୋତ୍ରରେ ସେହି ପୁତ୍ରର ଚୂଡ଼ା ଓ ଉପନୟନାଦି ସଂସ୍କାର କରିବ, ନ କଲେ ସେ ପୁତ୍ର ନ ହୋଇ ଦାସ ହେବ ।

ଉର୍ଦ୍ଧ୍ୱଂତୁ ପଞ୍ଚାମଦ୍‌ବର୍ଷାନ୍ନ ଦତ୍ତାଦ୍ୟାଃ ସୁତାନୃପ ।
ଗୃହୀତ୍ୱା ପଞ୍ଚବର୍ଷୀୟଂ ପୁତ୍ରେଷ୍ଟିଂ ପ୍ରଥମଂ ଚରେତ୍ ॥ (ହେମାଦ୍ରୌ)

ବ୍ୟାଖ୍ୟା-ହେ ନୃପ ! ପଞ୍ଚମବର୍ଷରୁ ଉର୍ଦ୍ଧ୍ୱ ବୟସ୍କ ପୁତ୍ର ଦତ୍ତକାଦି ପୁତ୍ର ହୋଇ ନ ପାରେ । ପାଞ୍ଚବର୍ଷ ମଧ୍ୟରେ ପୁତ୍ରେଷ୍ଟି କରି ପୁତ୍ରଗ୍ରହଣ କରିବ ।

ନୈକପୁତ୍ରେଣ କର୍ତ୍ତବ୍ୟଂ ପୁତ୍ରଦାନଂ କଦାଚନ ।
ବହୁପୁତ୍ରେଣ କର୍ତ୍ତବ୍ୟଂ ପୁତ୍ରଦାନଂ ପ୍ରଯତ୍ନତଃ ॥

ଦ୍ୱିପୁତ୍ରସ୍ୟାପି ପୁତ୍ରଦାନେ ଅପରପୁତ୍ରନାଶେ ବଂଶବିଚ୍ଛେଦମାଶଙ୍କ୍ୟାହ ବହୁପୁତ୍ରେଣତି । (ଦତ୍ତକାମୀସଂସାୟାଂ)

ନତ୍ୱେକଂ ପୁତ୍ରଂ ଦଦ୍ୟାତ୍ ପ୍ରତିଗୃହ୍ଣୀୟାଦ୍‌ବା ନ ସ୍ତ୍ରୀ ପୁତ୍ରଂ ଦଦ୍ୟାତ୍ ପ୍ରତିଗୃହଣୀୟାଦବା ଭର୍ତ୍ତୃରନୁଜ୍ଞୟା ସ୍ତ୍ରୀୟାଅପି ପ୍ରତିଗ୍ରହଃ କାର୍ଯ୍ୟଃ । (ବଶିଷ୍ଠଃ)

ବ୍ୟାଖ୍ୟା-ଯାହାର ଏକ ବା ଦୁଇପୁତ୍ର ଥିବ ସେ ତାହାକୁ କଦାପି ଦାନ କରିପାରିବ ନାହିଁ କି ଗ୍ରହୀତା ଗ୍ରହଣ କରିପାରିବ ନାହିଁ । ଯାହାର ଅନେକଗୁଡ଼ିଏ ପୁତ୍ର ଥିବେ ସେ ଦାନ କରିପାରିବ; କାରଣ ଦୁଇ ପୁତ୍ର ଥିଲେ ଯଦି ଗୋଟିଏ ପୁତ୍ର ନଷ୍ଟ ହୁଏ ତେବେ ଅନ୍ୟ ପୁତ୍ରଦ୍ୱାରା ତାହାର ବଂଶରକ୍ଷା ହେବ, ଯଦି ଏକପୁତ୍ର ରଖି ଅନ୍ୟଟିକୁ ଦାନ କରେ ତେବେ ନିଜରକ୍ଷିତ ପୁତ୍ର ନଷ୍ଟ ହେଲେ ତାହାର ନିଜବଂଶ ଲୋପ ହେବ । ସ୍ୱାମୀର ବିନା ଅନୁଜ୍ଞାରେ ସ୍ତ୍ରୀ, ପୁତ୍ର ଦେଇ କିମ୍ବା ଗ୍ରହଣ କରି ନ ପାରେ; କିନ୍ତୁ ସ୍ୱାମୀର ଆଜ୍ଞା ହେଲେ ସ୍ତ୍ରୀ ପୁତ୍ର ଗ୍ରହଣ କରିପାରିବ ।

---

* ଚୂଡ଼ୋପନାୟସଂସ୍କାର ଇତି ନିର୍ଣ୍ଣୟସିନ୍ଧୁଃ ।

ଓଁ ପୁନସ୍ତ୍ୱାଦିତ୍ୟା ରୁଦ୍ରା ସମିନ୍ଧତାଂ ପୁନର୍ବ୍ରହ୍ମାଣୋ ବସୁନୀଥ ଯଜ୍ଞୈଃ । ଘୃତେନଂ ତ୍ୱଂ ତନ୍‌ବଂ ବର୍ଦ୍ଧୟସ୍ୱ ସତ୍ୟାଃ ସନ୍ତୁ ଯଜମାନସ୍ୟ କାମାଃ ।

ପୁଣ୍ୟାହଂ ୩ ଏବମସ୍ତୁ ବିଜ୍ଞାପୟାମୁଚ୍ୟତାଂ ଗୋବ୍ରାହ୍ମଣେଭ୍ୟଃ ଶୁଭଂ ଭବତୁ ତତୋ ରାଜ୍ଞଃ ପ୍ରଜାନାଂ ଚ ଶାନ୍ତିର୍ଭବତୁ ଅସ୍ୟାଂ ବେଳାୟାଂ ଅୟମାରମ୍ଭଃ ଶୁଭାୟ ଭବତୁ । ତତୋବରୁଣପୂଜା ଘଟସ୍ଥାପନଂଚ । (ମୂଳକର୍ମକାଣ୍ଡର ୧୦୧ ନମ୍ବରଠାରୁ ୧୨୫ ନମ୍ବର ପର୍ଯ୍ୟନ୍ତ ଦେଖ) ତତଃ ସଙ୍କଳ୍ପଃ । ତାମ୍ରପାତ୍ରେ ଗନ୍ଧପୁଷ୍ପକ୍ରମୁକାକ୍ଷତତୁଳସୀଜଳାନି ଗୃହୀତ୍ୱା ବାମହସ୍ତେ ଧୃତ୍ୱା ତଦୁପରି ଦକ୍ଷିଣହସ୍ତଂ ଦତ୍ତ୍ୱା ବିଷ୍ଣୁଂସ୍ମୃତ୍ୱା ତୀର୍ଥାନାବାହୟେତ୍ ।

ତଦ୍‌ଯଥା-

ଓଁ ଗଙ୍ଗାଦ୍ୟାଃ ସରିତୋଽତ୍ରାଛତ୍ । ଓଁ ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ । ନର୍ମଦେ ସିନ୍ଧୁ କାବେରି ଜଳେଽସ୍ମିନ୍‌ସନ୍ନିଧିଂ କୁରୁଂ । କୁରୁକ୍ଷେତ୍ର ଗୟାଗଙ୍ଗା ପ୍ରଭାସପୁଷ୍କରାଣି ଚ । ଏତାନି ପୁଣ୍ୟତୀର୍ଥାନି ସଙ୍କଳ୍ପକାଳେ ଭବନ୍ତିହ । ଓଁ ବିଷ୍ଣୁ ୩ ଶୁକ୍ଳାମ୍ବରଧର ବିଷ୍ଣୁ ଶଶିବର୍ଣ୍ଣଂ ଚତୁର୍ଭୁଜଂ । ପ୍ରସନ୍ନବଦନଂ ଧ୍ୟାୟେ ସର୍ବବିଘ୍ନୋପଶାନ୍ତୟେ । ସ୍ମୃତେ ସକଳ କଲ୍ୟାଣ ଭାଜନଂ ଯତ୍ର ଜାୟତେ । ପୁରୁଷ ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିଂ । ଶଙ୍ଖଚକ୍ର ଗଦାପାଣେ ଦ୍ୱାରିକାନିଳୟାଚ୍ୟୁତ । ଗୋବିନ୍ଦ ପୁଣ୍ଡରିକାକ୍ଷ ରକ୍ଷ ମାଂ ଶରଣାଗତଂ ଓଁ ବିଷ୍ଣୁ ୩ ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟଭୂପ୍ରଦେଶେ ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକରାଶିସ୍ଥିତେ ଶ୍ରୀଭାସ୍କରେ ଅମୁକରାଶିସ୍ଥିତେ ଶ୍ରୀ ଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ ଭୌମାଦିଗ୍ରହଯୋଗଲଗ୍ନକରଣମୁହୂର୍ତ୍ତାଂଶକେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକ ଦେବଶର୍ମ୍ମା ଅମୁକସଗୋତ୍ରସ୍ୟାସ୍ମତ୍‌ପୁତ୍ରସ୍ୟାମୁକାନାମଧେୟସ୍ୟ ଇହଜନ୍ମନ୍ୟବିସ୍ମରଣପୂର୍ବକ ବିଦ୍ୟାରମ୍ଭକର୍ମାହଂ କରିଷ୍ୟାମୀତି ପଠିତ୍ୱା ତଜ୍ଜଳମୈଶାନ୍ୟାଂଦିଶିକ୍ଷିପ୍ତ୍ୱାପାତ୍ରଂ ନ୍ୟୁବ୍‌ଜୀକୃତ୍ୟ ତଦୁପରି କ୍ରମୁକଂ ସ୍ଥାପୟିତ୍ୱା ।

**ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦସୁପ୍ତସ୍ୟ ତଥୈବୈତି ।**
**ଦୂରଂ ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ॥**
**ଇତି ସଂକଳ୍ପସୂକ୍ତଂ ପଠିତ୍ୱା ବ୍ରାହ୍ମଣହସ୍ତେ କ୍ରମୁକଂ ଦଦ୍ୟାତ୍ ।**
**ବ୍ରାହ୍ମଣଃ ସଙ୍କଳ୍ପିତକର୍ମଣଃ ସିଦ୍ଧିରସ୍ତୁ ଇତି ବଦେତ୍ ॥**

ବ୍ୟାଖ୍ୟା -ପ୍ରଥମରେ ବାଳକର ପିତା ତାମ୍ରପାତ୍ରରେ ଗନ୍ଧ, ପୁଷ୍ପ, ଅକ୍ଷତ ବସ୍ତ୍ର ଓ ନଡ଼ିଆ ଗୁଆ ରଖି ତାହାକୁ ହସ୍ତରେ ଧରି ଉପରୋକ୍ତ "ଓଁ ବିଷ୍ଣୁ କର୍ତ୍ତବ୍ୟେଽସ୍ମିନ୍"



ଇତ୍ୟାଦି ବାକ୍ୟ ପଢ଼ି ପ୍ରତ୍ୟେକ ନିମନ୍ତ୍ରିତ ବ୍ରାହ୍ମଣମାନଙ୍କ ହସ୍ତରେ ଦେବ । ବ୍ରାହ୍ମଣମାନେ ସେହି ଅକ୍ଷତକୁ ଉପରୋକ୍ତ "ଓଁ ସ୍ୱସ୍ତ୍ୟାଦି" ମନ୍ତ୍ରଦ୍ୱାରା ଅଭିମନ୍ତ୍ରିତ କରି କର୍ତ୍ତାହସ୍ତରେ ଦେବେ । କର୍ତ୍ତା ତାହାକୁ ତାମ୍ରପାତ୍ରରେ ରଖି ଉପରୋକ୍ତ ପୁଣ୍ୟାହବାଚନବାକ୍ୟ ପଢ଼ି ପାତ୍ରରୁ ନେଇ ଅକ୍ଷତକୁ ତିନିଥର ଭୂମିରେ ବୁଣିଦେବ । ତତ୍ପରେ କର୍ତ୍ତା ଘଟସ୍ଥାପନ ଓ ବରୁଣପୂଜା କରି ତାମ୍ର ପାତ୍ରରେ ଗନ୍ଧ, ପୁଷ୍ପ, ଗୁଆ, ଅକ୍ଷତ, ତୁଳସୀ, କୁଶ ଓ ଜଳ ରଖି ତାହାକୁ ବାମହସ୍ତରେ ଧରି ଦକ୍ଷିଣହସ୍ତକୁ ତା ଉପରେ ଘୋଡ଼ାଇ ଦେଇ ଉପରଲିଖିତ "ଓଁ ଗଙ୍ଗାଦ୍ୟାଃ ସରିତଃ" ଇତ୍ୟାଦି ବାକ୍ୟ ପଢ଼ି ତୀର୍ଥମାନଙ୍କୁ ଆବାହନ କରିବ ଓ ସେହି ଜଳକୁ ଐଶାନ୍ୟକୋଣରେ ପକାଇ ଦେଇ ପାତ୍ରକୁ ଓଲଟାଇ ତା' ଉପରେ ଗୁଆ ରଖି ଦେବ । ବ୍ରାହ୍ମଣ "ସଂକଳ୍ପିତ କର୍ମର ସିଦ୍ଧି ହେଉ" ଏହା କହିବେ ।

ତତଃକର୍ତ୍ତା ଆସନ ଶୁଦ୍ଧି ଭୂତଶୁଦ୍ଧି ସାମାନ୍ୟାର୍ଘ୍ୟାଦିକଂ ବିଧାୟ ଗଣେଶମଣ୍ଡଳେ ଗଣପତିମାବାହୟେତ୍ ଋଷିଚ୍ଛନ୍ଦୋଯଥା-

ଓଁ ଗଣାନାନ୍ତ୍ୱେତି ମନ୍ତ୍ରସ୍ୟ । ବ୍ରହ୍ମାଋଷି । ଗାୟତ୍ରୀଛନ୍ଦଃ । ଶ୍ରୀଗଣେଶ୍ୱରୋଦେବତା । ଗଣପତିପୂଜାୟାଂ ବିନିଯୋଗଃ ।

ମନ୍ତ୍ରୋଯଥା-ଓଁ ଗଣାନାନ୍ତ୍ୱା ଗଣପତିଂହବାମହେ ପ୍ରିୟାଣାନ୍ତ୍ୱି । ପ୍ରିୟପତିଂ ହବାମହେ ନିଧୀପତିଂ ହବାମହେ ବସୋ ମମ" ଇତି ମନ୍ତ୍ର ପଠିତ୍ୱା ଓଁ ଗଣେପତୟେ ନମଃ ଗଣପତିମାବାହୟାମି ଗଣପତେଽତ୍ରାଗଚ୍ଛ ଇହାଗଚ୍ଛ ଇହତିଷ୍ଠ ଇହସନ୍ନିହିତୋଭବ । ଅତ୍ରାଧିଷ୍ଠାନଂ କୁରୁ ମମ ପୂଜାଂ ଗୃହାଣ ଇତ୍ୟାବାହ୍ୟ ଆବାହନାଦିଦଶମୁଦ୍ରାଃ ପ୍ରଦର୍ଶୟେତ୍ । ତଦ୍ୟଥା-ଆବାହନଂ ସଂସ୍ଥାପନଂ ସନ୍ନିଧାନଂ, ସନ୍ନିରୋଧନ, ସକଳୀକରଣଂ, (ଦେବତାଙ୍ଗେ ଷଡ଼ଙ୍ଗସ୍ୟ ନ୍ୟାସଃ ସ୍ୟାତ ସକଳାକୃତିଃ) ଅବଗୁଣ୍ଠନଂ, ଧେନୁମୁଦ୍ରା-ଅମୃତିକରଣଂ ମହାମୁଦ୍ରା-ପରମୀ କରଣଞ୍ଚେତି । ତତଃ ଷୋଡ଼ଶୋପଚାରେର୍ଦଶୋପଚାରୈର୍ବ । ପଞ୍ଚୋପଚାରୈର୍ଗଣେଶପୂଜନଂ । ପଞ୍ଚୋପଚାରପୂଜା ଯଥା-ଓଁ ଗଣେଶାୟ ଗନ୍ଧୋ ନମଃ, ଗଣେଶାୟ ପୁଷ୍ପଂ ବୌଷଟ, ଗଣେଶାୟ ମାଲ୍ୟପୁଷ୍ପଂ ବୌଷଟ୍, ଗଣେଶାୟ ଧୂପଃ ସ୍ୱାହା, ଗଣେଶାୟ ଦୀପଃ ସ୍ୱାହା, ଗଣେଶାୟ ଧୂପଦୀପାର୍ଥମାଚମନୀୟଂ ସ୍ୱାଧା, ଗଣେଶାୟ ନୈବଦ୍ୟେଂ ସ୍ୱାହା, ନୈବେଦ୍ୟାର୍ଥମାଚମନୀୟଂ ସ୍ୱଧା । ଓଁ ପ୍ରାଣାୟ ସ୍ୱାହା ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ

ସ୍ୱାହା, କ୍ରମୁକଂ ନମଃ, କ୍ରମୁକାର୍ଥମାଚମନୀୟଂ ସ୍ୱଧା । ଐଶାନ୍ୟେ କୁଣ୍ଡୋଦରାୟ ଚଣ୍ଡନୈବେଦ୍ୟଂ ସ୍ୱାହା, ଚଣ୍ଡନୈବେଦ୍ୟାର୍ଥମାଚମନୀୟଂ ସ୍ୱଧା । "ଓଁ ଆୟୁର୍ଦ୍ଦେହି ଯଶୋଦେହି ଶ୍ରିୟଂ ଦେହି ତ୍ୱମେବ ଚ । ପୁତ୍ରଂ ପୌତ୍ରଂ ପ୍ରପୌତ୍ରଂ ଚ ଦେହି ମେ ଗଣନାୟକ" ଇତି ପ୍ରାର୍ଥନାଂ କୃତ୍ୱା ଗଣେଶାୟ ଦୁର୍ବାଦଦରାକ୍ଷତପୁଷ୍ପାଣି ବୌଷଟ୍ । ତତଃ ଶାଳଗ୍ରାମଂ ସ୍ଥାପୟିତ୍ୱା ବିଷ୍ଣୁମାବାହୟେତ୍ । ତଦ୍‌ଯଥା- "ଓଁ ତଦ୍‌ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ । ଦିବୀବ ଚକ୍ଷୁରାତତଂ" ଇତି ମନ୍ତ୍ରଂ ପଠିତ୍ୱା "ଓଁ ବିଷ୍ଣବେ ନମଃ" ଇତି ମନ୍ତ୍ରଣେ ଯଥାଶକ୍ତ୍ୟୁପଚାରୈଃ ସଂପୂଜ୍ୟ "ଓଁ ଭକ୍ତିହୀନଂ କ୍ରିୟାହୀନଂ ମନ୍ତ୍ରହୀନଂ ସୁରେଶ୍ୱର । ଯତ୍‌ପୂଜିତଂ ମାୟା ଦେବ ପରିପୂର୍ଣ୍ଣ ତଦସ୍ତୁ ମେ' ଇତି ପ୍ରାର୍ଥୟେତ୍ । ତତ୍ର ଚ ମହାଲକ୍ଷ୍ମୀଂ ପୂଜୟେତ୍ । ତଦ୍‌ଯଥା- "ଓଁ ଶ୍ରୀଷ୍ଟତେ ଲକ୍ଷ୍ମୀଶ୍ଚପତ୍ନ୍ୟା ଅହୋରାତ୍ରେ ପାର୍ଶ୍ୱେନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇଷ୍ଣନ୍ନିଷାଣାମୁମ୍ମଇଷାଣ ସର୍ବଲୋକମ୍ମଇଷାଣ' ଇତି ମନ୍ତ୍ରେଣପଞ୍ଚୋପଚାରୈଃପୂଜୟେତ୍ । ତତଃ ପ୍ରାର୍ଥନା- "ନମସ୍ତେ ସର୍ବଦେବାନାଂ ବରଦାସି ହରିପ୍ରିୟେ । ଯା ଗତି ସ୍ତ୍ୱତ୍‌ପ୍ରପନ୍ନାନଂସାମେଭୂୟାତ୍ତ୍ୱଦର୍ଚ୍ଚନାତ୍" ତତୋଗ୍ରହମଣ୍ଡଳେସ୍ୱସ୍ୱମନ୍ତ୍ରୈର୍ନବଗ୍ରହାନ୍ ପଞ୍ଚୋପଚାରୈ ସଂପୂଜ୍ୟ ପ୍ରାର୍ଥୟେତ୍ (ମୂଳ ୧୪୩ ନମ୍ବର ଦେଖ) । ତତୋମଣ୍ଡଳେ ଦିକ୍‌ପାଳାନ୍ ସ୍ୱସ୍ୱମନ୍ତ୍ରେଣ ପଞ୍ଚୋପଚାରୈଃ ସଂପୂଜ୍ୟ ପ୍ରାର୍ଥୟେତ୍ । (ମୂଳ ୧୪୪ ନମ୍ବର ଦେଖ) ।

ବ୍ୟାଖ୍ୟା-ତତ୍ପରେ କର୍ତ୍ତା ଆସନଶୁଦ୍ଧି, ଭୂତଶୁଦ୍ଧି; ସାମାନ୍ୟାର୍ଘ୍ୟସଂସ୍କାର ପ୍ରଭୃତି କରି (ମୂଳ ୧୨୪-ଟିପ୍‌ପଣୀ ଦେଖ) ଉପରୋକ୍ତ "ଗଣାନାନ୍ତ୍ୱା" ମନ୍ତ୍ରର ଋଷିଛନ୍ଦ କରି ସେହି ମନ୍ତ୍ର ପଢ଼ି ଗଣେଶମଣ୍ଡଳରେ ଗଣପତିଙ୍କର ଆବାହନ କରିବ ଓ ଆବାହନାଦି ଦଶମୁଦ୍ରା ଦେଖାଇବ । (ମୁଦ୍ରାଲକ୍ଷଣ ମୂଳ ୧୧୮ ନମ୍ବର ୧ ଟିପ୍‌ପଣୀ ଦେଖ) ତଦୁତ୍ତାରୁ ପଞ୍ଚ ଉପଚାର ଦେଇ ଗଣେଶଙ୍କ ପୂଜା କରି ଉପରୋକ୍ତ "ଆୟୁର୍ଦ୍ଦେହି" ମନ୍ତ୍ର ପଢ଼ି ପ୍ରାର୍ଥନା କରି ଦୁର୍ବା, ବଦରାକ୍ଷତ ଓ ପୁଷ୍ପ ଦେବ ଏବଂ ଆସନ ଉପରେ ଶାଳଗ୍ରାମ ସ୍ଥାପନ କରି (ଆସନ ନିୟମ ମୂଳ ୯୧ ନମ୍ବର ଦେଖ) ଉପରୋକ୍ତ "ଓଁ ତଦ୍‌ବିଷ୍ଣୋଃ" ଏହି ମନ୍ତ୍ର ପଢ଼ି ବିଷ୍ଣୁଙ୍କର ଆବାହନ କରିବ ଓ ଉପରୋକ୍ତ "ଓଁ ବିଷ୍ଣବେ ନମଃ" ଏହି ମନ୍ତ୍ରରେ ବିଷ୍ଣୁଙ୍କୁ ପଞ୍ଚଉପଚାର ଦେଇ ପୂଜା କରି ଉପରୋକ୍ତ "ଭକ୍ତିହୀନଂ" ଏହି ମନ୍ତ୍ରରେ ବିଷ୍ଣୁଙ୍କର ପ୍ରାର୍ଥନା କରିବ । ତତ୍ପରେ ଉପରୋକ୍ତ "ଓଁ ଶ୍ରୀଷ୍ଟତେ" ମନ୍ତ୍ର ପଢ଼ି ପଞ୍ଚ ଉପଚାର ଦେଇ ମହାଲକ୍ଷ୍ମୀଙ୍କର ପୂଜା କରିବ ଏବଂ ଉପରୋକ୍ତ "ନମସ୍ତେ ମନ୍ତ୍ର ପଢ଼ି ପ୍ରାର୍ଥନା କରିବ । ଆଉ ଗ୍ରହମଣ୍ଡଳରେ ଗ୍ରହମାନଙ୍କର ସ୍ୱସ୍ୱ ମନ୍ତ୍ର ପଢ଼ି ପଞ୍ଚଉପଚାର ଦେଇ ପୂଜା କରି



ପ୍ରାର୍ଥନା କରିବ । ତଦୁତ୍ତାରୁ ଦିକ୍‌ପାଳମଣ୍ଡଳରେ ଦିକ୍‌ପାଳମାନଙ୍କୁ ସ୍ୱ ସ୍ୱ ମନ୍ତ୍ରରେ ପଞ୍ଚଉପଚାର ଦେଇ ପୂଜା କରି ପ୍ରାର୍ଥନା କରିବ ।

ତତଃ ସରସ୍ୱତୀଂ ପୂଜୟେତ୍ । ଋଷିଚ୍ଛନ୍ଦୋଯଥା-ଓଁ ପାବକାନ ଇତ୍ୟସ୍ୟ ମନ୍ତ୍ରସ୍ୟ । ବ୍ରହ୍ମା ଋଷିଃ । ଗାୟତ୍ରୀଚ୍ଛନ୍ଦଃ । ସରସ୍ୱତୀ ଦେବତା ପୂଜାୟାଂ ବିନିଯୋଗଃ । ଓଁ ପାବକାନଃ ସରସ୍ୱତୀ ବାଜେଭିର୍ବାଜିନୀବତି । ଯଜ୍ଞଂ ବଷ୍ଟୁଧିୟାବସୁଃ । ଓଁ ସରସ୍ୱତ୍ୟୈ ନମଃ ସରସ୍ୱତୀମାବାହୟା ମିସରସ୍ୱତୀ ଅତ୍ରାଗଚ୍ଛଇହାଗଚ୍ଛ ଇହତିଷ୍ଠ ଇହସନ୍ନିହିତା ଭବ ଅତ୍ରାଧିଷ୍ଠାନଂ କୁରୁ ମମ ପୂଜାଂ ଗୃହାଣ । ଆବହନାଦିଦଶମୁଦ୍ରାଃ ପ୍ରଦର୍ଶୟେତ୍ । ମୂଳ ନଂ ୧୧୮-୧ଟି ଦେଖ) ତତଃ ପଞ୍ଚୋପଚାରୈଃ ପୂଜୟେତ୍ । ପ୍ରାର୍ଥନା-ଓଁ ଭଦ୍ରକାଲ୍ୟୈ ନମୋ ନିତ୍ୟଂ ସରସ୍ୱତ୍ୟୈ ନମୋନମଃ । ବେଦବେଦାନ୍ତବେଦାଙ୍ଗବିଦ୍ୟାସ୍ଥାନେଭ୍ୟ ଏବ ଚ । ତତଃ "ଓଁ ରୁଦ୍ରାୟ ନମଃ" ଇତି ମନ୍ତ୍ରେଣ ରୁଦ୍ରଂ ପୂଜୟେତ୍ । ସୂତ୍ରକାରେ ଭ୍ୟୋ ନମଃ" ଇତି ସୂତ୍ରକାରାନ "ସ୍ୱବିଦ୍ୟାୟୈ ନମଃ" ଇତି ସ୍ୱବିଦ୍ୟାଂପୂଜୟେତ୍ । କେଷାଂଚିନ୍ମତେ ବର୍ଦ୍ଧନୀଘଟଂ ସଂସ୍ଥାପ୍ୟ ତତ୍ର ଲକ୍ଷ୍ମୀନାରାୟଣାଦିଦେବାନାଂ ପୂଜନଂ । ତତୋବାଳକଃ ଶିଳାଖଣ୍ଡଂ ସଂସ୍ଥାପ୍ୟ ତତ୍ର "ଓଁ ବକ୍ରତୁଣ୍ଡାୟ ନମଃ" ଇତି ମନ୍ତ୍ରେଣ ପାଦ୍ୟଗନ୍ଧପୁଷ୍ପାଦିଭିଃ ସଂପୂଜ୍ୟ ବିଘ୍ନୋତ୍ସାରଥଂ ଓଁ ନମୋଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୋଃ ମମ ବିଘ୍ନଂ ନିହତ୍ୟାଶୁ ସର୍ବସିଦ୍ଧିପ୍ରଦୋଭବ । ଇତି ମନ୍ତ୍ରଂ ପଠିତ୍ୱା ଅଷ୍ଟୋତ୍ତରଶତସଂଖ୍ୟକନାରିକେଳଂ ଭଙ୍କ୍ତ୍ୱା "ଇମଂ ବଳିଂ ବକ୍ରତୁଣ୍ଡାୟ ଗୃହ୍ଣ ଗୃହ୍ଣ ହୁଁ ଫଟ୍ ସ୍ୱାହା" ଇତି ମନ୍ତ୍ରେଣ ଭଗ୍ନ ନାରିକେଳବଳିମୁତ୍ସୃଜ୍ୟ ପ୍ରଣମେତ୍ । ନାରୀକେଳାଭାବେ ଚତୁଃପଞ୍ଚାଶତ୍, ଅଷ୍ଟାବିଂଶତିଃ, ଅଷ୍ଟୌବା । ତତୋହସ୍ତେପୁଷ୍ପାଞ୍ଜଳିଂ ଗୃହୀତ୍ୱା "ଓଁ ଏକଦନ୍ତଂ ମହାକାୟଂ କପିଳଂ ଗଜକର୍ଣ୍ଣକଂ । ଲମ୍ବୋଦରଂ ଚ ବିକଟଂ ବିଘ୍ନନାଶଂ ବିନାୟକଂ" ଇତି ମନ୍ତ୍ରେଣ ଗଣେଶାୟ ପୁଷ୍ପାଞ୍ଜଳି ଦତ୍ତ୍ୱା" ଯା କୁନ୍ଦେନ୍ଦୁ ତୁଷାରହାରଧବଳା ଯା ଶ୍ୱେତପଦ୍ମାସନା ଯା ବୀଣାବରଦଣ୍ଡମଣ୍ଡିତକରା ଯା ଶୁକ୍ଳବସ୍ତ୍ରାନ୍ୱିତା । ଯା ବ୍ରହ୍ମାଚ୍ୟୁତଶଙ୍କରପ୍ରଭୃତିଭିର୍ଦେବୈଃ ସଦା ବନ୍ଦିତା । ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଶେଷଜାଡ୍ୟାପହା । ଇତି ପଠିତ୍ୱା ସରସ୍ୱତ୍ୟୈ ପୁଷ୍ପାଞ୍ଜଳିଂ ଦତ୍ତ୍ୱା ଲଗ୍ନାଦିଦୋଷନିବାରଣାର୍ଥଂ ତିଳକାଞ୍ଚନଂ ବ୍ରାହ୍ମଣାୟ ଦଦ୍ୟାତ୍ । ତଦ୍‌ଯଥା-ଗନ୍ଧପୁଷ୍ପାକ୍ଷତୈଃ ବ୍ରାହ୍ମଣଂ ସଂପୂଜ୍ୟ ଦ୍ରବ୍ୟପୂଜା କୃତ୍ୱା ଓଁ ବିଷ୍ଣୁର୍ନମ ଇତ୍ୟାରଭ୍ୟ ଏବଂବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥାବିତ୍ୟନ୍ତଂ ପଠିତ୍ୱା ଅମୁକସଗୋତ୍ରାୟ ଅମୁକାବେଦାନ୍ତର୍ଗତ ଅମୁକଶାଖାଶାଖୈକଦେଶାଧ୍ୟାୟିନେ ଅମୁକଦେବଶର୍ମଣେ ବ୍ରାହ୍ମଣାୟାର୍ଚ୍ଚିତାୟ ଅମୁକସଗୋତ୍ରଃ ଶ୍ରୀଅମୁକନାମଧେୟଃ

ବିଦ୍ୟାରମ୍ଭ ସମୟେ ଲଗ୍ନାଦିଦୋଷବ୍ୟପୋହନାର୍ଥମିଦଂତିଳକାଞ୍ଚନଗନ୍ଧା ବ୍ୟର୍ଚ୍ଚିତଂଅଗ୍ନି ଦୈବତକଂ ସଦକ୍ଷିଣଂ ତୁଭ୍ୟମହଂ ସଂପ୍ରଦଦେ । ତତଃ ପ୍ରାର୍ଥନା-ଓଁ ହିଣ୍ୟଗର୍ଭଗର୍ଭସ୍ଥ ହେମବୀଜଂ ବିଭାବସୋଃ ଅନନ୍ତ ପୁଣ୍ୟଫଳଦମତଃ ଶାନ୍ତିଂ ପ୍ରୟଛତୁ । ତତୋ ନୂତନକଠିନୀଂ ଗୃହୀତ୍ୱା ଆଚାର୍ଯ୍ୟସମୀପଂ ପୁଣ୍ୟାହବାଚନଂକୁର୍ଯ୍ୟାତ୍ । ପୁଣ୍ୟାହମିତ୍ୟାଦି । ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମ୍ମଣା ମୟା ଅସ୍ୟ ବାଳକସ୍ୟ ବିଦ୍ୟାପଠନାରମ୍ଭଃ କ୍ରିୟତେ ଯଦ୍ୟେତ୍ୟାଦି । ତତଃ ପାଠୟେତ୍ । ବ୍ରହ୍ମା ବିଷ୍ଣୁଃ ମହେଶଃ ଇତି ବୃତ୍ତମଣ୍ଡଳତ୍ରୟେଣ ବ୍ରହ୍ମାବିଷ୍ଣୁ ଶିବାନାଂ ନାମାନ୍ୟୁଚ୍ଚାର୍ଯ୍ୟ ଅକାରାଦିକାରାନ୍ତାନ୍ ବର୍ଣ୍ଣାନ୍ ଲେଖୟେତ୍ । ତତଃ ପୁଣ୍ୟାହବାଚନଂ । ତତୋବାଳକଃ ଗୁରବେ ଦକ୍ଷିଣାଂ ଦଦ୍ୟାତ୍ । ଓଁ ବିଷ୍ଣୁର୍ନମ ଅଦ୍ୟେହେତ୍ୟାଦି ପୂର୍ବୋକ୍ତ ଏବଂବିଧବିଶେଷଣବିଶିଷ୍ଟାୟାଂ ପୁଣ୍ୟତିଥୌ ଅମୁକସଗୋତ୍ରୋଽମୁକନାମଧେୟଃ ବିଦ୍ୟାଲାଭକାମନାୟା କୃତୈତଦ୍ଗଣେଶାଦିଦେବତାପୂଜନକର୍ମଣଃ ସାଙ୍ଗତାସିଦ୍ଧ୍ୟର୍ଥଂଦକ୍ଷିଣାମିମାଂଯଥାଶକ୍ତିପରିମିତାଂରଜତଖଣ୍ଡାଦିକାଂ-ଯଥାସମ୍ଭବଗୋତ୍ରନାମ୍ନେ ବ୍ରାହ୍ମଣାୟାହଂ ଦଦେ । ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁଦେବ ମହେଶ୍ୱରଃ । ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରୁବେ ନମଃ । ଇତି ଗୁରୁଂ ପ୍ରଣମ୍ୟ ବ୍ରାହ୍ମଣ ଭୋଜନୋତ୍ସର୍ଗ କୁର୍ଯ୍ୟାତ୍ । ତତୋଽଚ୍ଛିଦ୍ରାବଧାରଣଂ ପୁଣ୍ୟାହବାଚନଂ ଆଶୀର୍ଗ୍ରହଣ । ତତ୍ପରଦିନେ ପ୍ରତ୍ୟାରମ୍ଭ ।

ବ୍ୟାଖ୍ୟା-ତତ୍ପରେ ଉପରୋକ୍ତ "ଓଁ ପାବକାନଃ" ଏହି ମନ୍ତ୍ରର ଋଷିଛନ୍ଦ କରି, ସେହି ମନ୍ତ୍ରରେ ଶ୍ରୀ ସରସ୍ୱତୀଦେବୀଙ୍କୁ ଆବାହନ କରି ଓ ପଞ୍ଚଉପଚାର ଦେଇ ପୂଜା କରିବ । ତଦୁତ୍ତାରୁ ରୁଦ୍ର, ସୂତ୍ରକାର ଓ ସୁବିଦ୍ୟା ଏମାନଙ୍କୁ ଉପରୋକ୍ତ ସ୍ୱ ସ୍ୱ ମନ୍ତ୍ରରେ ପୂଜା କରିବ । କାହାରି ୨ ମତରେ ବର୍ଦ୍ଧନୀଘଟସ୍ଥାପନ କରି ତହିଁରେ ଶ୍ରୀ ଲକ୍ଷ୍ମୀନାରାୟଣାଦି ଦେବତାମାନଙ୍କୁ ପୂଜା କରିବ । ତତ୍ପରେ ବାଳକ ଶିଳପୋତା ରଖି ଉପରୋକ୍ତ "ଓଁ ବକ୍ରତୁଣ୍ଡାୟ ନମଃ" ଏହି ମନ୍ତ୍ରରେ ତାହାକୁ ପାଦ୍ୟଗନ୍ଧପୁଷ୍ପାଦି ଦେଇ ପୂଜା କରି ବିଘ୍ନନିବାରଣ ନିମିତ୍ତ ଉପରୋକ୍ତ "ଓଁ ନମୋଗଣେଶ" ଏହି ମନ୍ତ୍ର ପଢ଼ି ଶହେ ଆଠ ନଡ଼ିଆ ଭାଙ୍ଗିବ ଓ ଉପରୋକ୍ତ "ଇମଂ ବଳିଂ" ଏହି ମନ୍ତ୍ର ପଢ଼ି ଭଙ୍ଗା ନଡ଼ିଆକୁ ଉତ୍ସର୍ଗ କରି ଏବଂ ଗଣେଶଙ୍କୁ ବଳିଦାନ କରି ନମସ୍କାର କରିବ । ଶହେ ଆଠ ନଡ଼ିଆର ଅଭାବ ପକ୍ଷରେ ଚଉବନ, ଅଠାଇଶ ବା ଆଠଗୋଟା ଭାଙ୍ଗିବ । ତଦୁତ୍ତାରୁ ପୁଷ୍ପାଞ୍ଜଳି ଧରି ଉପରୋକ୍ତ "ଓଁ ଏକଦନ୍ତଂ" ଏହି ମନ୍ତ୍ର ପଢ଼ି ଗଣେଶଙ୍କୁ ପୁଷ୍ପାଞ୍ଜଳି ଦେବ ଉପରୋକ୍ତ "ଯା କୁନ୍ଦେନ୍ଦୁ



ତୁଷାରହାରଧବଳା" ଏହି ମନ୍ତ୍ର ପଢ଼ି ଶ୍ରୀ ସରସ୍ୱତୀ ଦେବୀଙ୍କୁ ପୁଷ୍ପାଞ୍ଜଳି ଦେଇ ଲଗ୍ନାଦିଦୋଷ ନିବାରଣ ନିମିତ୍ତ ବ୍ରାହ୍ମଣଙ୍କୁ ତିଳକାଞ୍ଚନ ଦାନ କରି ଉପରୋକ୍ତ "ଓଁ ହିରଣ୍ୟଗର୍ଭସ୍ଥ" ଏହି ମନ୍ତ୍ରରେ ପ୍ରାର୍ଥନା କରିବ । ତପ୍ରେ ବାଳକ ନୂଆ ଖଡ଼ି ଧରି ଗୁରୁଙ୍କ ନିକଟକୁ ଯାଇ ନମସ୍କାର କରି ପଶ୍ଚିମକୁ ମୁଖ କରି ଆସନରେ ବସିବ । ଗୁରୁ ପୂର୍ବମୁଖ ହୋଇ ଆସନରେ ବସି ପୁଣ୍ୟାହବାଚନ କରିବେ ଏବଂ ବ୍ରହ୍ମା, ବିଷ୍ଣୁ ଓ ମହେଶ ଏହା କହି ପ୍ରଥମେ ତିନିଗୋଟି ଠ କାଟି ତଦୁତ୍ତାରୁ ଆକାରଠାରୁ ଆରମ୍ଭି କ୍ଷକାର ପର୍ଯ୍ୟନ୍ତ ବର୍ଣ୍ଣମାନଙ୍କୁ ଲେଖାଇ ପୁଣ୍ୟାହବାଚନ କରିବେ । ତପ୍ରେ ବାଳକ ଗୁରୁଙ୍କୁ ଦକ୍ଷିଣା ଦେଇ ଉପରୋକ୍ତ "ଗୁରୁବ୍ରହ୍ମା" ଏହା ପଢ଼ି ପ୍ରାର୍ଥନା କରିବ ଏବଂ ନମସ୍କାର କରିବ । ତଦନନ୍ତର ବ୍ରାହ୍ମଣଭୋଜନୋତ୍ସର୍ଗ, ଅଚ୍ଛିଦ୍ରାବଧାରଣ, ପୁଣ୍ୟାହବାଚନ ଓ ଆଶୀର୍ବାଦଗ୍ରହଣ କରି କର୍ମ ସମାପ୍ତ କରିବ । ତପ୍ରେ ଦିବସରେ ପଢ଼ିଥିବା ପାଠର ପ୍ରତ୍ୟାରମ୍ଭ କରିବ ।

ଇତି ବିଦ୍ୟାରମ୍ଭ କର୍ମ ସମାପ୍ତଂ ।

-୦-

## ୫-ଶାଖୋଟକ (ଶାହାଡ଼ା) ବିବାହ ବିଧି

(ପ୍ରଥମ ଓ ଦ୍ୱିତୀୟ ସ୍ତ୍ରୀ ନଷ୍ଟ ହେଲେ ତୃତୀୟଥରକୁ ପ୍ରଥମେ ଶାହାଡ଼ାବୃକ୍ଷର ସହିତ ବିବାହ କରି ଦାରଗ୍ରହଣ କରିବ) ।

କନ୍ୟାପିତା ପ୍ରଥମେତୋବରୁଣପୂଜାଂ କୁର୍ଯ୍ୟାତ୍ । (ମୂଳ-୨୨୦ ନମ୍ବର ଦେଖ) ତତୋବାଗ୍‌ଦାନବିଧିଃ । (ମୂଳ-୪୨୧ ନମ୍ବର ଦେଖ) ଶାଖୋଟକନାମ୍ନୀଂ କନ୍ୟାପିତା ବିଶେଷଃ । ଗନ୍ଧାଧିବାସଃ । (ମୂଳ-୨୩୪ ନମ୍ବର ଦେଖ) ବହିଃଶାଳା ରୋପଣଂ । ହରଦ୍ରାଧିବାସଃ । (ମୂଳ ୨୩୯- ନମ୍ବର ଦେଖ) (ମୂଳମାତୃପୂଜା । ବସୋର୍ଦ୍ଧାରା ଭୋଜ୍ୟୋତ୍ସର୍ଗଃ (ମୂଳ-୧୩୫ ନମ୍ବରଠାରୁ ୧୩୮ ନମ୍ବର ପର୍ଯ୍ୟନ୍ତ ଦେଖ) "ଜରାଂ ଗଚ୍ଛେତି" ମନ୍ତ୍ରେଣ କନ୍ୟା ବସ୍ତ୍ର ପରିଧାନଂ । ମୁକୁଟବନ୍ଧନଂ "ଯୁବା ସୁବସା" ଇତି ମନ୍ତ୍ରେଣ (ମୂଳ-୪୨୯,୪୩୦ ନମ୍ବର ଦେଖ) ବରବରଣଂ । ମହାବାକ୍ୟଂ କୃତ୍ୱାବନସ୍ପତିଗୋତ୍ରସ୍ୟଶାଖୋପଶାଖପ୍ରବରସ୍ୟ ଦ୍ରୁମନାମ୍ନଃ ପ୍ରପୌତ୍ରୀଂ ମହାଦ୍ରୁମନାମ୍ନଃ ପୌତ୍ରୀଂ ସୁଦ୍ରୁମନାମ୍ନଃ ପୁତ୍ରୀଂ ଶାଖୋଟକନାମ୍ନୀଂ କନ୍ୟାଂ ତୁଭ୍ୟମହଂ ସଂପ୍ରଦଦେ । ମୂଳ-୪୨୨ ନମ୍ବର ଦେଖ) ନୀରାଜନଂ ହସ୍ତଗ୍ରନ୍ଥି ବନ୍ଧନଂ । ଗ୍ରନ୍ଥିମୋଚନଂ । (ମୂଳ-୪୪୩, ୪୪୭ ନମ୍ବର ଦେଖ) ବ୍ରହ୍ମାବରଣଂ । ମୂଳ-୧୪୯ ନମ୍ବର ଦେଖ) କୁଶକଣ୍ଡିକା । (ମୂଳ-୧୫୫ ନମ୍ବର ଦେଖ)

ଭୂରାଦିସ୍ୱିଷ୍ଟକୃଦନ୍ତାଦଶାହୁତୟୋହୋତବ୍ୟାଃ । (ମୂଳ ୧୯୫ ନମ୍ବର ଦେଖ) ପୁଣ୍ୟାହବାଚନଂ । ପୁଣ୍ୟାହମିତ୍ୟାଦି ଗୋତ୍ରନାମୋଚ୍ଚାରଣାନନ୍ତରଂ ଆବୟୋର୍ବରକନ୍ୟାୟୋବିବାହାଙ୍ଗହୋମକର୍ମ ଯତ୍‌କୃତଂ ତତ୍ ସୁକୃତମସ୍ତୁ । ଦକ୍ଷିଣାଦାନଂ (ମୂଳ-୪୭୧ ନମ୍ବର ଦେଖ) ତିଳକାଞ୍ଚନଦାନଂ । ମୂଳ-୪୫୩ ନମ୍ବର ଦେଖ) ଆଶୀର୍ବାଦ । (ମୂଳ-୩୬୬ ନମ୍ବର ଦେଖ)

ଇତି ଶାଖୋଟକବିବାହବିଧିଃ ।

-o-

## ୬-ତୁଳସୀ ବିବାହ

## ତୁଳସୀ ବିବାହର ଶୁଭଦିନ ନିର୍ଣ୍ଣୟ

ସୌମ୍ୟାୟନେ ପ୍ରକର୍ତ୍ତବ୍ୟଂ ଗୁରୁଶୁକ୍ରୋଦୟେ ତଥା ।
ଅଥବା କାର୍ତ୍ତିକେ ମାସି ଭୀଷ୍ମ ପଞ୍ଚଦିନେଽଥବା ।
ବୈବାହିକେଷୁ ଋକ୍ଷେଷୁ ପୂର୍ଣ୍ଣିମାୟାଂ ବିଶେଷତଃ । (ବିଷ୍ଣୁଯାମଳେ)
ବୈଶାଖକାର୍ତ୍ତିକମାଘେଷୁ ଶୁଭେ ଦିନେ କୁର୍ଯ୍ୟାତ୍ ।
ବିଶେଷତଃ ଉର୍ଜଶୁକ୍ଳଚତୁର୍ଦ୍ଦଶ୍ୟାଂ ଚ । (ପଦ୍ମପୁରାଣେ)

ବ୍ୟାଖ୍ୟା-ବିଷ୍ଣୁଯାମଳମତରେ ଉତ୍ତର ଅୟନରେ, ଗୁରୁ ଶୁକ୍ରଙ୍କର ଉଦୟକାଳରେ, ଅଥବା କାର୍ତ୍ତିକାମାସରେ କିମ୍ବା ଭୀଷ୍ମପଞ୍ଚଦିନ ଅର୍ଥାତ୍ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମାପର୍ଯ୍ୟନ୍ତ ଏହି ପାଞ୍ଚଦିନରେ, ବିବାହୋକ୍ତ ନକ୍ଷତ୍ରମାନଙ୍କରେ, ବିଶେଷତଃ ପୂର୍ଣ୍ଣିମାତିଥିରେ ତୁଳସୀ ବିବାହ କରିବ । ପଦ୍ମପୁରାଣମତରେ ବୈଶାଖ, କାର୍ତ୍ତିକ ଓ ମାଘମାସରେ, ଶୁଭଦିନରେ, ବିଶେଷତଃ କାର୍ତ୍ତିକ ଶୁକ୍ଳଚତୁର୍ଦ୍ଦଶୀରେ ତୁଳସୀବିବାହ କରିବ ।

## ତୁଳସୀ ବିବାହକାରିକା

ଆଦାବେବାଥ ତୁଳସୀଂ ବନେ ବା ସ୍ୱଗୃହେଽପିବା
ମାସମାତ୍ରେଣ ସଂବର୍ଦ୍ଧ୍ୟ ତତୋ ଯଜନମାରଭେତ୍ ॥
ମଣ୍ଡପଂ କାରୟେତ୍ତତ୍ର କୁଣ୍ଡଂ ବେଦୀ ବିବାହବତ୍ ।
ବ୍ରାହ୍ମଣଂ ଦେଶିକଞ୍ଚୈ ବ ଚତୁରଷ୍ଟ ତଥର୍ତ୍ତିଜଃ ॥



ଗ୍ରହଯଜ୍ଞଂ ପୁରସ୍କୃତ୍ୟ ମାତୃଣାଂ ଯଜନଂ ତଥା ।
କୃତ୍ୱା ନାନ୍ଦୀମୁଖଂ ଶ୍ରାଦ୍ଧଂ ସୌବର୍ଣ୍ଣଂ ସ୍ଥାପୟେଦ୍ଧରିଂ ।
କୃତ୍ୱା ତୁ ରୌପ୍ୟତୁଳସୀଂ ଲଗ୍ନେହ୍ୟସ୍ତମିତେ ରବୌ ।
(ଗୋଧୂଳିକଲଗ୍ନେ ଇତ୍ୟର୍ଥଃ)
ସଂପୂଜ୍ୟାଲଙ୍କୃତାଂ ତାଂ ଚ ପ୍ରଦଦ୍ୟାଦ୍ ବିଧିତୋ ହରେଃ ।
(ହରେରିତି ଆର୍ଷଃ ହରୟେ ଇତ୍ୟର୍ଥଃ)
ସମଶ୍ରୁତେନ ମନ୍ତ୍ରେଣ ବସ୍ତ୍ରଯୁଗ୍ମେ ନ ବେଷ୍ଟୟେତ୍ ।
ତଦାବଧ୍ନେତି ମନ୍ତ୍ରେଣ କଙ୍କଣଂ ପାଣିପଲ୍ଲବେ ।
ଆଜଂ ଦଦାଦିତି ମନ୍ତ୍ରେଣ କରଗ୍ରହୋବିଧୀୟତେ ।
କର୍ତ୍ତବ୍ୟଶ୍ଚ ତତୋହୋମୋବିଶେଷାଦ୍‌ବିଧିପୂର୍ବକଂ ।
ଆଚାର୍ଯ୍ୟୋବେଦିକାକୁଣ୍ଡେ ଜହୁୟାଚ୍ଚ ନବାହୁତୀଃ ॥
(ଓଁ ନମୋ ଭଗବତେ ବାସୁଦେବାୟ ସ୍ୱାହା,
ଓଁ ନମୋନାରାୟଣାୟ ସ୍ୱାହେତି ବା)
ଯଜମାନଃ ସପତ୍ନୀକଃ ସହାମାତୈଶ୍ଚ ଗୋତ୍ରଜୈଃ ।
ପ୍ରଦକ୍ଷିଣାଃ ପ୍ରକୁର୍ବୀତ ଚତସ୍ରୋବିଷ୍ଣୁନା ସହ ॥
(ବିଷ୍ଣୁ ସହିତ ତୁଳସ୍ୟା ଇତ୍ୟର୍ଥଃ)
ପଠେୟୁଃ ଶାନ୍ତିକାଧ୍ୟାୟାଂସ୍ତଥା ବୈଷ୍ଣବସଂସ୍ତବାନ୍ ।
ଗାୟେୟୁର୍ମଙ୍ଗଳଂ ନାର୍ଯ୍ୟୋଭେରୀତୂର୍ଯ୍ୟାଦିନିଃସ୍ୱନୈଃ ।
ଗାଂ ପୀଠଂ ଚ ତଥା ଶଯ୍ୟାମାଚାର୍ଯ୍ୟାୟ ନିବେଦୟେତ୍ ।
ଋତ୍ୱିଗ୍‌ଭ୍ୟୋଦକ୍ଷିଣାଂ ଦଦ୍ୟାତ୍ ସଦନ୍ନୈର୍ଭୋଜୟେଦ୍ଦ୍ୱିଜାନ୍
ଏବଂ ପ୍ରତିଷ୍ଠିତାଂ ଦେବୀଂ ବିଷ୍ଣବେ ଯଃ ସମର୍ପୟେତ୍ ।
ଆଜନ୍ମୋପାର୍ଜିତାତ୍ ପାପାନ୍ ମୁଚ୍ୟତେ ନାତ୍ର ସଂଶୟଃ ॥
(ବିଷ୍ଣୁଯାମଳେ)

ବ୍ୟାଖ୍ୟା–ତୁଳସୀବୃକ୍ଷ ବନରେ ଥାଉ କିମ୍ବା ଗୃହରେ ଥାଉ ତାକୁ ମାସେ ପର୍ଯ୍ୟନ୍ତ ଜଳ ଦେଇ ଯତ୍ନରେ ବଢ଼ାଇବ । ତତ୍ପରେ ସେହି ତୁଳସୀକୁ ପୂଜା କରି ସେହି ସ୍ଥାନରେ ବିବାହବିଧି ଅନୁସାରେ ବେଦୀ, କୁଣ୍ଡ ଓ ମଣ୍ଡପ ନିର୍ମାଣ କରିବ । (ମୂଳ–୫୭, ୫୦, ୫୬ ନମ୍ବର ଦେଖ) ଏମଂ ମନ୍ତ୍ର ଜାଣିଥିବା ବ୍ରାହ୍ମଣଙ୍କୁ ଆଚାର୍ଯ୍ୟ ଓ ଆଉ ଚାରିଜଣ ବ୍ରାହ୍ମଣଙ୍କୁ ଋତ୍ୱିକ୍ ବରଣ କରିବ । ତତ୍ପରେ କର୍ତ୍ତା

ଗ୍ରହପୂଜା, ଅଷ୍ଟାଦଶମାତୃଗଣପୂଜା, ବସୋର୍ଦ୍ଧାରା ଓ ନାନ୍ଦୀମୁଖଶ୍ରାଦ୍ଧ ବିବାହବିଧି ଅନୁସାରେ କରି (ମୂଳ-୧୪୨, ୧୩୧, ୧୩୨, ୨୭୭ ନମ୍ବର ଦେଖ) ସୁବର୍ଣ୍ଣର ବିଷ୍ଣୁ ପ୍ରତିମା ଆଉ ରୂପାର ତୁଳସୀ ପ୍ରତିମା ନିର୍ମାଣ କରି ବେଦୀ ଉପରେ ରଖିବ । ତଦୁତ୍ତାରୁ ତୁଳସୀଦେବୀଙ୍କୁ ଅଳଂକୃତ ଓ ପୂଜା କରି ଗୋଧୂଳି ସମୟରେ ବିବାହବିଧି ଅନୁସାରେ ବିଷ୍ଣୁଙ୍କୁ ପ୍ରଦାନ କରିବ । ତତ୍ପରେ "ଓଁ ସମଶ୍ଚୁତେନ" ଏହି ମନ୍ତ୍ର ପଢ଼ି ପ୍ରତିମା ଓ ତୁଳସୀବୃକ୍ଷକୁ ବସ୍ତ୍ର ଯୁଗ୍ମଦ୍ୱାରା ବେଷ୍ଟନ କରି "ଓଁ ଯଦାବଧ୍ନ" ଏହି ମନ୍ତ୍ର ପଢ଼ି ତୁଳସୀପ୍ରତିମା ହସ୍ତରେ କଙ୍କଣ ପିନ୍ଧାଇ "ଓଁ ଆଜଂ ଦଦାତ୍" ଏହି ମନ୍ତ୍ର ପଢ଼ି ତୁଳସୀପ୍ରତିମା ହସ୍ତକୁ ବିଷ୍ଣୁ ପ୍ରତିମା ହସ୍ତରେ ଦେବ ଓ ଆଚାର୍ଯ୍ୟ ବେଦୀସ୍ଥିତ କୁଣ୍ଡରେ ବିବାହବିଧି ଅନୁସାରେ ହୋମ କରି ତତ୍ପରେ "ଓଁ ନମୋଭଗବତେ ବାସୁଦେବାୟ ସ୍ୱାହା" କିମ୍ବା "ଓଁ ନମୋ ନାରାୟଣ ସ୍ୱାହା" ଏହି ମନ୍ତ୍ର ନଅଥର ପଢ଼ି ନଅ ଆହୁତି ଦେବ । ତଦନନ୍ତର ସପତ୍ନୀକ ଯଜମାନଅମାତ୍ୟ ଓ ବନ୍ଧୁ ବାନ୍ଧବ ସହିତ ଏକତ୍ରିତ ହୋଇ ବିଷ୍ଣୁଙ୍କ ସହିତ ତୁଳସୀଦେବୀଙ୍କୁ ଚାରିଥର ପ୍ରଦକ୍ଷିଣ କରିବା ସମୟରେ ଶାନ୍ତିକ ଅଧ୍ୟାୟ ଓ ବିଷ୍ଣୁସ୍ତବ ପ୍ରଭୃତି ପାଠ କରୁଥିବେ; ବିବାହ ସମୟରେ ଭେରୀ ତୂରୀ ପ୍ରଭୃତି ବାଦ୍ୟ ବଜାଇବେ ଏବଂ ସ୍ତ୍ରୀମାନେ ମଙ୍ଗଳ ଗାନ କରିବେ । ତତ୍ପରେ କର୍ତ୍ତା ଗୋରୁ, ଆସନ ଓ ଶଯ୍ୟା ଆଚାର୍ଯ୍ୟଙ୍କୁ ପ୍ରଦାନ କରି ଋତ୍ୱିକ୍‌ମାନଙ୍କୁ ଦକ୍ଷିଣା ଦେଇ ବ୍ରାହ୍ମଣମାନଙ୍କୁ ଉତ୍ତମରୂପେ ଭୋଜନ କରାଇବେ । ଏହିରୂପେ ପ୍ରତିଷ୍ଠିତ ତୁଳସୀଦେବୀଙ୍କୁ ଯେ ବିଷ୍ଣୁଙ୍କ ହସ୍ତରେ ପ୍ରଦାନ କରେ ସେ ଆଜନ୍ମ ପାପରୁ ନିଶ୍ଚୟ ମୁକ୍ତ ହୁଏ ।

## ତୁଳସୀ ବିବାହ ପଦ୍ଧତି

ବିବାହ ପୂର୍ବଦିନ ସପତ୍ନୀକୋଯଜମାନୋବ୍ରହ୍ମାଚାର୍ଯ୍ୟସହିତଉପବାସାଦି ନିୟମଂ କୃତ୍ୱା ଶ୍ରୀକୃଷ୍ଣଚନ୍ଦ୍ରାୟ ନିମନ୍ତ୍ରଣଂ ଦତ୍ତ୍ୱା ପଞ୍ଚୋପଚାରୈଃ ସାୟଂକାଳେ ପୂଜୟିତ୍ୱା ମାଲ୍ୟଂ ଚନ୍ଦନଂ ଓ ଗୃହୀତ୍ୱା ପଠେତ୍-

**ଆଗମ୍ୟତାଂ କୃଷ୍ଣଦେବ ସୁତିଥୌ ଶୁଭମୁତ୍ତମଂ**
**ଦଦାମି କନ୍ୟକାଦାନାଂ ଶୁଭେନାଗମନଂ କୁରୁ ॥**

**ଇତି ଶ୍ରୀକୃଷ୍ଣଚନ୍ଦ୍ରାୟ ଚନ୍ଦନମାଲ୍ୟେ ଦଦ୍ୟାତ୍ ।**

ବ୍ୟାଖ୍ୟା-ବିବାହରେ ପୂର୍ବଦିବରେ ଯଜମାନ ସସ୍ତ୍ରୀକ ହୋଇ ବ୍ରହ୍ମା ଓ ଆଚାର୍ଯ୍ୟଙ୍କ ସହିତ ଉପବାସାଦି ନିୟମରେ ରହି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ନିମନ୍ତ୍ରଣ କରି ଆଣି



ସାୟଂକାଳରେ ପଞ୍ଚଉପଚାରେ ଦେଇ ପୂଜା କରି ହସ୍ତରେ ମାଲ୍ୟ ଓ ଚନ୍ଦନ ଧରି ଉପରୋକ୍ତ "ଆଗମ୍ୟତା" ଇତ୍ୟାଦି ମନ୍ତ୍ର ପଢ଼ି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ତାହା ସମର୍ପଣ କରିବେ ।

## ବିଷ୍ଣୁ ଧର୍ମୋକ୍ତତୁଳସୀ ପୂଜା ବିଧି

ତୁଳସୀମଙ୍ଗଣେ ବେଦିକାୟାଂ ରୋପୟିତ୍ୱା ପୂଜୟେତ୍ । ଦେଶକାଲଗୋତ୍ରନାମାଦ୍ୟୁଚ୍ଚାର୍ଯ୍ୟ ଅଭୀଷ୍ଟସିଦ୍ଧ୍ୟର୍ଥଂ ତୁଳସୀପୂଜାଂ ଇତି ସଂକଳ୍ପଃ । ତତଃ କଲସଂ ସଂପୂଜ୍ୟ ଧ୍ୟାୟେତ୍-

ଧ୍ୟାୟାମି ତୁଳସୀଂ ଦେବୀଂ ଶ୍ୟାମାଂ କମଲଲୋଚନାଂ ।
ପ୍ରସନ୍ନାଂ ପଦ୍ମ କହ୍ଲାରବରାଭୟଚତୁର୍ଭୁଜାଂ ॥
କିରୀଟହରକେୟୁରକୁଣ୍ଡଳାଦିବିଭୂଷିତାଂ ।
ଧବଳାଂକୁଶସଂଯୁକ୍ତାଂ ପଦ୍ମାସନନିଷେଦୂଷୀଂ ॥ ଇତି ଧ୍ୟାନଂ ।

ଭଗବତ୍ୟୈ ତୁଳସ୍ୟୈ ନମଃ ଆବାହନଂ । ବିଷ୍ଣୁ ବଲ୍ଲଭାୟୈ ନମଃ ଆସନଂ ସର୍ବଦେବମୟୈ ନମଃ ପାଦ୍ୟଂ । ସର୍ବତୀର୍ଥମୟୈ ନମଃ ଅର୍ଘ୍ୟଂ । ଦୈତ୍ୟାନ୍ତକୃତ୍ପ୍ରିୟାୟୈ ନମଃ ଆଚମନୀୟଂ । ସର୍ବଲୋକହିତାୟୈ ନମଃ ସ୍ନାନଂ । ଲକ୍ଷ୍ମୀସହୋଦରାୟୈ ନମଃ ବସ୍ତ୍ରଂ । ମହାଦେବ୍ୟୈ ନମଃ ଗନ୍ଧଂ । ରମାବାସାୟୈ ନମଃ ପୁଷ୍ପଂ । ଅରୀଷ୍ଟଦାୟୈ ନମଃ ଧୂପଂ । ପାପହାରିଣ୍ୟୈ ନମଃ ଦୀପଂ । ଭଗବତ୍ୟୈ ନମଃ ନୈବେଦ୍ୟଂ । ଅମୃତସମ୍ଭୁତାୟୈ ନମଃ ନୀରାଜନଂ । ସୁଦକ୍ଷିଣାୟୈ ନମଃ ପ୍ରଦକ୍ଷିଣଂ । ପରମେଶ୍ୱରୟୈ ନମଃ ନମସ୍କାରଂ । ଅଭୀଷ୍ଟଦାୟୈ ନମଃ ପ୍ରାର୍ଥନା କୁର୍ଯ୍ୟାତ୍ ।

## ତୁଳସୀ ମନ୍ତ୍ର ଓ ମନ୍ତ୍ରୋଧାର

ତତତୁଳସୀମନ୍ତ୍ରମଷ୍ଟୋତ୍ତରଶତଂ ଯଥାଶକ୍ତି ବା ଜପେତ୍ ।
ତୁଳସୀ ମନ୍ତ୍ରୋ ଯଥା-ଶ୍ରୀ ହ୍ରୀଁ କ୍ଲୀଂ ଐଁ ବୃନ୍ଦାବତ୍ୟୈ ସ୍ୱାହା ।
ତୁଳସୀ ମନ୍ତ୍ରୋଦ୍ଧାରୋ ଯଥା-

ଲକ୍ଷ୍ମୀର୍ମାୟାକାମବାଣୀବୀଜପୂର୍ବଂ ଦଶାକ୍ଷରଂ ।
ବୃନ୍ଦାବତୀଂ ଚତୁର୍ଥ୍ୟନ୍ତାଂ ବହ୍ନିଜାୟାନ୍ୱିତାଂ ବଦେତ୍ । (ବ୍ରହ୍ମବୈବର୍ତ୍ତେ)

ତୁଳସୀ ପ୍ରାର୍ଥନା ଯଥା-

ତୁଳସୀ ଶ୍ରୀସଖିଶୁଭେ ପାପହାରିଣି ପୁଣ୍ୟଦେ ।
ନମସ୍ତେ ନାରଦନୁତେ ନାରାୟଣମନଃପ୍ରିୟେ ।

## ତୁଳସୀ କବଚ

ତତଃ ସ୍କାନ୍ଦୋକ୍ତଂ ତୁଳସୀକବଚଂ ପଠେତ୍ । ଓଁ ଅସ୍ୟ ଶ୍ରୀ ତୁଳସୀକବଚସ୍ୟ, ବିଷ୍ଣୁଋଷିଃ, ଅନୁଷ୍ଟୁପ୍ଛନ୍ଦଃ, ତୁଳସୀ ଦେବତା, ଅଭୀଷ୍ଟସିଦ୍ଧ୍ୟର୍ଥେ ଜପେ ବିନିଯୋଗଃ ।

ତୁଳସୀ ମେ ଶିରଃ ପାତୁ ଭାଲଂ ପଙ୍କଜଧାରିଣୀ ।
ଦୃଶୌ ମେ ପଦ୍ମନୟନା ଶ୍ରୀସଖୀ ଶ୍ରବଣେ ମମ ॥
ଘ୍ରାଣଂ ସୁଗନ୍ଧା ମେ ପାତୁ ମୁଖଂ ଚ ସୁମୁଖୀ ମମ ।
ଜିହ୍ବାଂ ମେ ପାତୁ ସୁଭଦା କଣ୍ଠଂ ବିଦ୍ୟାମୟୀ ମମ॥
ସ୍କନ୍ଧୌ କହ୍ଲାରିଣୀ ପାତୁ ଭୂଜୌ ମେ ପାପହାରିଣୀ ।
କରୌ ପଦ୍ମକରା ପାତୁହୃଦୟଂ ବିଷ୍ଣୁ ବଲ୍ଲଭା ॥
ପୁଣ୍ୟଦା ମଧ୍ୟମଂ ପାତୁ ନାଭିଂ ସୌଭାଗ୍ୟଦାୟିନୀ ।
କଟିଂ କୁଣ୍ଡଳିନୀ ପାତୁ ଉରୁ ନାରଦବନ୍ଦିତା ॥
ଜନନୀ ଜାନୁନୀ ପାତୁ ଜଙ୍ଘେ ସକଳବନ୍ଦିତା ।
ନାରାୟଣପ୍ରିୟା ପାତୁ ସର୍ବାଙ୍ଗଂ ସର୍ବରକ୍ଷିକା ॥
ସଙ୍କଟେ ବିଷମେ ଦୁର୍ଗେ ଭୟେ ବାଦେ ମହାହବେ ।
ନିଶ୍ୟହ୍ନି ସନ୍ଧ୍ୟାୟୋଃ ପାତୁ ତୁଳସୀ ସର୍ବତଃ ସଦା ॥
ଇତୀଦଂ ପରମଂ ଗୁହ୍ୟଂ ତୁଳସ୍ୟାଃ କବଚଂ ମୁଦା ।
ତୁଳସୀକାନନେ ତିଷ୍ଠନ୍ନାସୀନୋବା ଜପେଦିଦଂ ॥
ସର୍ବାନ୍ କାମାନବାପ୍ନୋତି ବିଷ୍ଣୁ ସାୟୁଜ୍ୟମୃଚ୍ଛତି ॥

ଇତି ତୁଳସୀକବଚଂ

ବ୍ୟାଖ୍ୟା-ଅଗଣାମଧ୍ୟରେ ଗୋଟିଏ ଚାରିକୋଣିଆ ବେଦୀ କରି ତାମଧ୍ୟରେ ତୁଳସୀବୃକ୍ଷ ରୋପଣ କରି ଏକମାସ ପର୍ଯ୍ୟନ୍ତ ପ୍ରତ୍ୟହ ପୂଜା କରିବ, ଯଥା-ପ୍ରଥମରେ ସଂକଳ୍ପ, ଦ୍ୱିତୀୟରେ କଳସପୂଜା, ତତ୍ପରେ ଉପରୋକ୍ତ "ଧ୍ୟାୟାମି" ଇତ୍ୟାଦି ମନ୍ତ୍ର ପଢ଼ି ଧ୍ୟାନ କରିବ "ଓଁ ଭଗବତ୍ୟୈ ତୁଳସୈ ନମଃ" ଏହିଠାରୁ ଆରମ୍ଭି "ଅଭୀଷ୍ଟଦାୟୈ ନମଃ" ଏହି ପର୍ଯ୍ୟନ୍ତ କ୍ରମରେ ଷୋଳଉପଚାର ଦେଇ ପୂଜା କରିବ । ତତ୍ପରେ ଉପରୋକ୍ତ ତୁଳସୀଦେବୀଙ୍କ ମନ୍ତ୍ର ଶହେ ଆଠବାର ବା ଯଥାଶକ୍ତି ଜପ କରିବ ଏବଂ ଉପରୋକ୍ତ "ତୁଳସୀ ଶ୍ରୀସଖି" ଏହି ମନ୍ତ୍ର ପଢ଼ି ପ୍ରାର୍ଥନା କରି ତୁଳସୀକବଚ ପାଠ କରିବ ।



ବିବାହ ଦିବସେ ଯଥୋକ୍ତମଣ୍ଡପଂ କୃତ୍ୱା ତନ୍ମଧ୍ୟେ ମାସେନ ପୂର୍ବମାରୋପିତାୟା ବର୍ଦ୍ଧିତାୟାଶ୍ଚ ତୁଳସ୍ୟାଃ ପୁରତୋ ବିବାହବେଦୀଂ ନିର୍ମାୟ ସୌବର୍ଣ୍ଣକୃଷ୍ଣସ୍ୟବିବାହବେଦ୍ୟାଗମନସମୟେ ମଣ୍ଡପ ସମୀପେ ବରଣମାଳାଂ ଗଳେ ଦଦ୍ୟାତ୍ ଯା ଆହରଜ୍ଜମଦଗ୍ନିରିତି ମନ୍ତ୍ରେଣ । ତତୋ ବିବାହମଣ୍ଡପେ ତୁଳସୀପିତୃତ୍ୱେନଂ ଯଜମାନ ଆସନାଦିଭୂତଶୁଦ୍ଧି ମାତୃକାନ୍ୟାସାନ୍ କୃତ୍ୱା ସାମାନ୍ୟାର୍ଘ୍ୟଂ ବିଧାୟ ବରୁଣପୂଜାଂ କୁର୍ଯ୍ୟାତ୍ । ତତଃ ସ୍ୱସ୍ତିବାଚନଂ । ବିଷ୍ଣୁଃ କର୍ତ୍ତବ୍ୟେଽସ୍ମିନ୍ ତୁଳସୀକୃଷ୍ଣଚନ୍ଦ୍ରୟୋବିହାକର୍ମଣି ସ୍ୱସ୍ତ୍ୟାଦି ଭବନ୍ତୋ ବ୍ରୁବନ୍ତୁ । ତତଃପୁଣ୍ୟାହବାଚନଂ ପୁଣ୍ୟାହମିତ୍ୟାଦି । ଅମୁକସଗୋତ୍ରେଣ ଶ୍ରୀମତୀ ଅମୁକଦେବଶର୍ମ୍ମଣାମୟା ଧର୍ମାର୍ଥକାମମୋକ୍ଷପୁରୁଷାର୍ଥଚତୁଷ୍ଟୟପ୍ରାପ୍ତୟେ ପଦ୍ମପୁରାଣୋକ୍ତବିଧିନା ସାଧିବାସତୁଳସୀକୃଷ୍ଣଚନ୍ଦ୍ର ବିବାହକର୍ମାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

**ବ୍ୟାଖ୍ୟା**-ମାସକପୂର୍ବରୁ ଲଗାହୋଇ ଅତି ଯତ୍ନରେ ବଢ଼ିଥିବା ତୁଳସୀ ବୃକ୍ଷର ଉପରେ ବିବାହଦିନ ଗୋଟିଏ ମଣ୍ଡପ (ମୂଳ ୫୬ ନମ୍ବର ଦେଖ) କରି ତାହା ମଧ୍ୟରେ ତୁଳସୀବୃକ୍ଷର କୃଷ୍ଣମୂର୍ତ୍ତିଙ୍କୁ ବେଦୀ ଉପରକୁ ଅଣାଇବ । ତାଙ୍କ ଆସିବା ସମୟରେ ମଣ୍ଡପ ସମୀପରେ "ଓଁ ଯା ଆହରଜ୍ଜମନଗ୍ନିଃ" ଏହି ଯନ୍ତ୍ର (ମୂଳ ୪୧୮ (୯) ନଂ ଦେଖ) ପଢ଼ି ତାଙ୍କ ଗଳାରେ ବରଣମାଳା ଦେବ । ତତ୍ପରେ ଯଜମାନ ତୁଳସୀର ପିତାସ୍ୱରୂପ ହୋଇ ବିବାହମଣ୍ଡପରେ ବସି ଆସନଶୁଦ୍ଧି, ଭୂତଶୁଦ୍ଧି, ମାତୃକାନ୍ୟାସ, ସାମାନ୍ୟର୍ଘସଂସ୍କାର ଓ ବରୁଣପୂଜା କରି ଉପରୋକ୍ତ ବାକ୍ୟ ପଢ଼ି ସ୍ୱସ୍ତିବାଚନ ଏବଂ ପୁଣ୍ୟାହବାଚନ କରିବ ।

ତତଃ ସଂକଳ୍ପଃ । ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନମୁକଦେବଶର୍ମ୍ମା । ମମାଖିଳବିବିଧପାତକୋପଶମନପୂର୍ବକାଭୀଷ୍ଟସିଦ୍ଧୟେ ତୁଳସୀବିବାହଂ କରିଷ୍ୟେ । ଇତି ସଂକଳ୍ପ୍ୟ ଗ୍ରହଯଜ୍ଞଂ ଚ କୃତ୍ୱା ଆଚାର୍ଯ୍ୟମୃତ୍ୱି ଜୋ ବୃତ୍ୱା ପୁଣ୍ୟାହବାଚନଂ କୁର୍ଯ୍ୟାତ୍ । ଅମୁକଶର୍ମ୍ମଣା ମୟା ପଦ୍ମପୂରାଣୋକ୍ତବିଧିନା ବନସ୍ପତିଗୋତ୍ରାୟାସ୍ତୁଳସୀଦେବ୍ୟାଃ କାଶ୍ୟପଗୋତ୍ରାୟ ଚତୁର୍ବେଦାଧ୍ୟାୟିନେ ଶ୍ରୀକୃଷ୍ଣଚନ୍ଦ୍ର ବର୍ମ୍ମଣେ ସତ୍ୟବାକ୍ପ୍ରଦାନାରମ୍ଭଃ କ୍ରିୟତେ ଯଦେତ୍ୟାଦି ।

**ବ୍ୟାଖ୍ୟା**-ତତ୍ପରେ ଯଜମାନ ଉପରୋକ୍ତ ବାକ୍ୟ ପଢ଼ି ସଂକଳ୍ପ କରିବ ଓ ଗ୍ରହମାନଙ୍କୁ ପୂଜା କରି ଆଚାର୍ଯ୍ୟ ଏବଂ ଋତ୍ୱିକ୍‌ମାନଙ୍କୁ ବରଣ କରି ଉପରୋକ୍ତ ବାକ୍ୟ ପଢ଼ି ବାଗ୍‌ଦାନକର୍ମର ପୁଣ୍ୟାହବାଚନ କରିବ ।

ତତୋବରସ୍ୟ ପାଦପ୍ରକ୍ଷାଳନଂ । ବସ୍ତ୍ରଦ୍ୱୟନାରିକେଳଫଳଗୁବାକ-ଯଜ୍ଞୋପବୀତ-ଚନ୍ଦନମାଲ୍ୟାନୀ ଗୃହୀତ୍ୱା ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍‌ଅମୁକଦେବଶର୍ମ୍ମାକାଶ୍ୟପଗୋତ୍ରଂ ଚତୁର୍ବେଦାଧ୍ୟାୟିନଂ ଶ୍ରୀକୃଷ୍ଣଚନ୍ଦ୍ର ବର୍ମ୍ମାଣଂ ଦେବମର୍ଚ୍ଚିତଂ ବନସ୍ପତି ଗୋତ୍ରାଂ ସାବିତ୍ରୀଲକ୍ଷ୍ମୀପାର୍ବତ୍ୟାମ୍ନିକାଂ ତୁଳସୀବଲ୍ଲୀଂ କନ୍ୟାଂ ବାଚାଦାତୁମନେନ ଗନ୍ଧପୁଷ୍ପାକ୍ଷତାନାରିକେଳଯଜ୍ଞୋପବୀତସହିତବାସୋ-ଯୁଗଳେନ ବରତ୍ୱେନ ତ୍ୱାମହଂ ବୃଣେ । ତତଃ ପ୍ରାଣାପାନୌ ମେ ତର୍ପୟେତ୍ୟାଦି । ତତୋବସ୍ତ୍ରାଦିନା ସଂବେଷ୍ଟୟେତ୍ ।

**ବ୍ୟାଖ୍ୟା**-ତଦନନ୍ତର ଯଜମାନ ବରର ପାଦ ଧୋଇଦେଇ ଯୋଡ଼ିଏ ଲୁଗା, ଗୋଟିଏ ନଡ଼ିଆ, ଗୋଟିଏ ଗୁଆ, ସଙ୍ଗାଡ଼ିଏ ପଇତା, ଚନ୍ଦନ ଓ ମାଲ୍ୟପୁଷ୍ପ ହାତରେ ଧରି ଦେଶ କାଳ ବାକ୍ୟ ଉଚ୍ଚାରଣ କଲା ଉତ୍ତାରୁ ଉପରୋକ୍ତ ବାକ୍ୟ ପଢ଼ି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ହାତରେ ଛୁଆଇଁ ଦେଇ ତଳେ ରଖି ଗୋଟିଏ ଗୋଟିଏ ପଦାର୍ଥ ମନ୍ତ୍ର ପଢ଼ି ତାଙ୍କୁ ସମର୍ପଣ କରିବ । (ସମୁଦାୟ ମନ୍ତ୍ର ମୂଳ ୪୧୮ ନମ୍ବର ଦେଖ) ।

ତତଃ ଶଙ୍ଖେ ଜଳଗନ୍ଧାତ୍‌ଦୁର୍ବାସହିତଂ ଗୁବାକଦ୍ୱୟଂ ନିଧାୟ ଧୃତ୍ୱା ମହାବାକ୍ୟଂ କୃତ୍ୱା କାଶ୍ୟପଗୋତ୍ରାୟ ଚତୁର୍ବେଧ୍ୟାୟିନେ ଶ୍ରୀକୃଷ୍ଣଚନ୍ଦ୍ର ବର୍ମ୍ମଣେ ବରାୟାର୍ଚ୍ଚିତାୟ ଅମୁକସଗୋତ୍ରଃ ଶ୍ରୀମାନଅମୁକଦେବଶର୍ମ୍ମା ବନସ୍ପତିଗୋତ୍ରାଂ ସାବିତ୍ରୀଲକ୍ଷ୍ମୀପାର୍ବତ୍ୟାମ୍ନିକାଂ ତୁଳସୀବଲ୍ଲୀନାମ୍ନୀ । କନ୍ୟାଂଗୃହ୍ୟୋକ୍ତବେଦବିଧିନା ତୁଭ୍ୟଂ ଦାସ୍ୟାମୀତି ସତ୍ୟାଂ ବାଚଂ ପ୍ରତିଜାନେ । ତତଃ ପୁଣ୍ୟାହବାଚନଂ । ବାଗ୍‌ଦାନକର୍ମ ଯକୃତଂ ତତ୍ ସୁକୃତମସ୍ତୁ ଯନ୍ନ୍ୟୁନମିତ୍ୟାଦି ।

**ବ୍ୟାଖ୍ୟା**-ତତ୍ପରେ ଯଜମାନ ଶଙ୍ଖରେ ଜଳ ପୂରାଇ ତହିଁରେ ଚନ୍ଦନ, ଅକ୍ଷତ, ଦୁର୍ବା ଓ ଦୁଇଗୋଟି ଗୁଆ ପକାଇ ତାହାକୁ ହାତରେ ଧରି ମହାବାକ୍ୟ (ମୂଳ ୪୨୨ ନମ୍ବର ଦେଖ) କରି ଉପରୋକ୍ତ ବାକ୍ୟ ପଢ଼ି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ହସ୍ତରେ ସମର୍ପଣ କରିବ ଓ ବାଗ୍‌ଦାନକର୍ମର ପୁଣ୍ୟାହବାଚନ ଅଚ୍ଛିଦ୍ରାବଧାରଣ କରିବ ।

ପୁନରପି ବରୁଣପୂଜାଂ କୃତ୍ୱା ପୁଣ୍ୟାହବାଚନଂକୁର୍ଯ୍ୟାତ୍ । ଅମୁକସଗୋତ୍ରେଣ-ଶ୍ରୀମତାଅମୁଦେବଶର୍ମ୍ମାଣମୟା ତୁଳସୀବିବାହକର୍ମଣୋଽଙ୍ଗତୟାଗନ୍ଧାଧି-ବାସବହିଃଶାଳା-ରୋପଣହରିଦ୍ରାଧିବାସାଭ୍ୟୁଦୟିକକୌତୁକସୂତ୍ରକର୍ମାରମ୍ଭଃକ୍ରିୟତେ ଯଦେତ୍ୟାଦି । ଅତ୍ର ବିଶେଷଃ-ବେଦ୍ୟାଂ ସର୍ବତୋଭଦ୍ରମଣ୍ଡଳେ ଓଁ ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦଂ । ସମୂଳହମସ୍ୟପାଙ୍ଗଂ ସୁରେ ସ୍ୱାହା” ଇତି



ମନ୍ତ୍ରେଣ ହୈମଂ ବିଷ୍ଣୁଂ "ଓଁ ତୁଳସୀ ଶ୍ରୀସଖି ଶୁଭେ ପାପହାରିଣି ପୁଣ୍ୟଦେ । ନମସ୍ତେନାରଦନୁତେ-ନାରାୟଣମନଃପ୍ରିୟେ" ଇତି ମନ୍ତ୍ରେଣ ରୌପ୍ୟମୟଂ ତୁଳସୀଂ ଚ ସଂସ୍ଥାପ୍ୟ ସଂପୂଜ୍ୟ ଚ ବସ୍ତ୍ରଭୂଷଣାଦିନା ଭୂଷୟିତ୍ୱା "ଓଁ ବାସୁଦେବାୟ ନମଃ" ଓଁ ଶୂରାୟ ନମଃ, ଓଁ ଦେବକୈ ନମଃ, ଓଁ ମାରିଷାୟୈ ନମଃ, ଓଁ ସୁରେଶାୟୈ ନମଃ, ଓଁ ପ୍ରସେନାୟୈ ନମଃ, ଓଁ ପୁନର୍ବସବେ ନମଃ, ଓଁ ସୁଦ୍ରୁମାୟ ନମଃ, ଓଁ ମହାଗୁଦ୍ରାୟ ନମଃ, ଓଁ ଆଦିଦ୍ରୁମାୟ ନମଃ, ଓଁ ସାବିତ୍ର୍ୟୈ ନମଃ, ଓଁ ଗୌର୍ଯ୍ୟୈନମଃ, ଓଁ ହିମାଳୟାୟ ନମଃ, ଓଁ କଶ୍ୟପାୟ ନମଃ, ଓଁ ମରୀଚାୟୈ ନମଃ, ଇତ୍ୟଷ୍ଟାଦଶଦେବାନ୍ ପଞ୍ଚୋପଚାରୈଃ ପୂଜୟେତ୍ । ଅଧିବାସପୂର୍ବକାଭ୍ୟୁୟିକଶ୍ରାଦ୍ଧଂ କୃତ୍ୱା ବରକନ୍ୟାୟୋର୍ହସ୍ତେ କୌତୁକସୂତ୍ରଂ ବଧ୍ନୀୟାତ୍ । ପୁଣ୍ୟାହବାଚନଂ କୌତୁକସୂତ୍ରକର୍ମ ଯତ୍କୃତଂ ତତ୍ ସୁକୃତମସ୍ତୁ ।

ବ୍ୟାଖ୍ୟା-ଯଜମାନ ପୁନର୍ବାର ବରୁଣପୂଜା କରି ଉପରୋକ୍ତ ବାକ୍ୟ ପଢ଼ି ଅଧିବାସକର୍ମର ପୁଣ୍ୟାହବାଚନ କରିବ, ତତ୍ପରେ ବେଦୀଉପରେ ସର୍ବତୋଭଦ୍ରମଣ୍ଡଳ (ମୂଳ ୭୨ ନମ୍ବର ଦେଖ) ଲେଖି ଉପରୋକ୍ତ "ଓଁ ଇଦଂ ବିଷ୍ଣୁଃ" ଏହି ମନ୍ତ୍ର ପଢ଼ି ସେହି ମଣ୍ଡଳ ଉପରେ ସୁବର୍ଣ୍ଣର ପ୍ରତିମାମାନଙ୍କୁ ଏବଂ ଉପରୋକ୍ତ "ଓଁ ତୁଳସୀ ଶ୍ରୀସଖି ଶୁଭେ" ଏହି ମନ୍ତ୍ର ପଢ଼ି ରୂପାର ତୁଳସୀ ପ୍ରତିମାମାନଙ୍କୁ ସ୍ଥାପନ କରି ଓ ଉଭୟଙ୍କୁ ପୂଜା କରି ବସ୍ତ୍ର ଆଉ ଅଳଙ୍କାରମାନ ପିନ୍ଧାଇଦେବ । ତଦୁତ୍ତାରୁ ବସୁଦେବ, ଶୂର, ଦେବକୀ, ମାରିଷା, ସୁରେଶା, ପ୍ରସେନା, ପୁନର୍ବସୁ, ସୁଦ୍ରୁମ, ମହାଦ୍ରୁମ, ଆଦିଦ୍ରୁମ, ସାବିତ୍ରୀ, ଲକ୍ଷ୍ମୀ, ଗୌରୀ, ହିମାଳୟ କଶ୍ୟପ ଓ ମରୀଚି ଏହି ଅଠରଟି ଦେବତାଙ୍କୁ ଉପରୋକ୍ତ ପ୍ରତ୍ୟେକଙ୍କ ଚତୁର୍ଥ୍ୟନ୍ତ ମନ୍ତ୍ରରେ ବେଦୀଉପରେ ଆବାହନ କରି ପଞ୍ଚଉପଚାର ଦେଇ ପୂଜା କରିବ । ତଦନନ୍ତର ଅଧିବାସ କର୍ମ (ମୂଳ ୨୩୪ ନମ୍ବର ଦେଖ) ଓ ଆଭ୍ୟୁଦୟିକ ଶ୍ରାଦ୍ଧ (ମୂଳ ୧୩୦-୧୩୮ ନମ୍ବରମାନ ଦେଖ) କରି ବରକନ୍ୟାଙ୍କ ହସ୍ତରେ କୌତୁକସୂତ୍ର (ମୂଳ ୪୨୫-୪୨୭ ନମ୍ବର ଦେଖ) ବାନ୍ଧିଦେବ । ତତ୍ପରେ ପୁଣ୍ୟାହବାଚନ ଓ ଅଧିବାସକର୍ମର ଅଚ୍ଛିଦ୍ରାବଧାରଣ କରିବ ।

ତତଃ କନ୍ୟାବସ୍ତ୍ରାଭିମନ୍ତ୍ରଣଂ । ଦ୍ୱିତୀୟବରଣଂ । ପୂର୍ବବତ୍ ବରତ୍ୱେନ ତ୍ୱାମହଂ ବୃଣେ ଇତି ବିଶେଷଂ । ମଙ୍ଗଳାଷ୍ଟକଂ ବ୍ରାହ୍ମଣାଃ ପଠେୟୁଃ ।

ଓଁ ଯଦାବଧ୍ନନ୍ଦାକ୍ଷାୟଣାହିରଣ୍ୟଙ୍ଗଂ ଶତାନୀକାୟ ସୁମନସ୍ୟମାନାଃ ।
ତନ୍ମ ଆବଧ୍ନାମି ଶତଶାରଦାୟୁଷ୍ମାଞ୍ଜରଦଷ୍ଟିର୍ଯ୍ୟଥାସଂ ॥

ଇତି ମନ୍ତ୍ରେଣ ତୁଳସୀଦେବ୍ୟାହସ୍ତେ କଙ୍କଣଂ ଦତ୍ତ୍ୱା ପଞ୍ଚଭିରଳଙ୍କାରୈରଳଙ୍କୃତ୍ୟ ଅଗ୍ନିଂ ସ୍ଥାପୟିତ୍ୱା । ମହାବାକ୍ୟଂ କୃତ୍ୱା ଅମୂକସଗୋତ୍ରଃ ଶ୍ରୀମାନଅମୁକଦେବଶର୍ମା କାସ୍ୟପସଗୋତ୍ରସ୍ୟ କାଶ୍ୟପାବାସ୍ୱାରନୈଧ୍ରୁବପ୍ରବରସ୍ୟ ହୃଦିକବର୍ମ୍ମଣଃ ପ୍ରପୌତ୍ରାୟ କାଶ୍ୟପସଗୋତ୍ରସ୍ୟ କାଶ୍ୟପାବସ୍ୱାର ନୈଧ୍ରୁବପ୍ରବରସ୍ୟଶୂରବର୍ମ୍ମଣଃ ପୌତ୍ରାୟ କାଶ୍ୟପସଗୋତ୍ରସ୍ୟ କାଶ୍ୟପାବସ୍ୱାରନୈଧ୍ରୁବପ୍ରରସ୍ୟବସୁଦେବଶର୍ମ୍ମଣଃ ପୁତ୍ରାୟ ଏବଂ ତ୍ରିବାରମୁଚ୍ଚାର୍ଯ୍ୟ ବନସ୍ପତିଗୋତ୍ରସ୍ୟ ଶାଖାପ୍ରଶାଖାପ୍ରବରସ୍ୟ ଆଦିଦ୍ରୁମନାମ୍ନଃ ପ୍ରପୌତୀଂ ବନସ୍ପତିଗୋତ୍ରସ୍ୟଶାଖାପ୍ରଶାଖା ପ୍ରବରସ୍ୟ ମହାଦ୍ରୁମନାମ୍ନଃ ପୌତ୍ରୀଂ ବନସ୍ପତି ଗୋତ୍ରସ୍ୟ ଶାଖାପ୍ରଶାଖା ପ୍ରବରସ୍ୟ ସୁଦ୍ରୁମନାମ୍ନଃ ପୁତ୍ରୀଂ ଏବଂ ତ୍ରିବାରମୁଚ୍ଚାର୍ଯ୍ୟକାଶ୍ୟପସଗୋତ୍ରାୟକାଶ୍ୟପାବସ୍ୱାରନନୈଧ୍ରୁବପ୍ରବରାୟ ଚତୁର୍ବେଦାଧ୍ୟାୟିନେ ଶ୍ରୀକୃଷ୍ଣଚନ୍ଦ୍ର ବର୍ମ୍ମଣେ ବରାୟାର୍ଚ୍ଚିତାୟ ବନସ୍ପତିଗୋତ୍ରାଂ ଶାଖାପ୍ରଶାଖାପ୍ରବରାଂ ସାବିତ୍ରୀଲକ୍ଷ୍ମୀପାର୍ବତ୍ୟାତ୍ମିକାଂ ଶ୍ରୀତୁଳସୀଦେବୀନାମ୍ନୀଂକନ୍ୟାଂ ଯଥାବସ୍ଥିତାଳଙ୍କୃତାଂ ଧର୍ମାର୍ଥକାମମୋକ୍ଷପୁରୁଷାର୍ଥଚତୁଷ୍ଟୟପ୍ରାପ୍ତି ପୂର୍ବକଶ୍ରୀବାସୁଦେବସ୍ୟ ପ୍ରୀତୟେ ତୁଭ୍ୟମହଂ ସଂପ୍ରଦଦେ । "ଓଁ ଆଜଂ ଦଦ୍ୟାତ୍" ଇତି ମନ୍ତ୍ରେଣ କରଗ୍ରହଣଂ କାରୟିତ୍ୱା ସମର୍ପୟେତ୍ । ତତଆଚାର୍ଯ୍ୟଃ ହସ୍ତଗ୍ରନ୍ଥିବନ୍ଧନଂ ମୁକୁଟବନ୍ଧନଂ ବସ୍ତ୍ରଦ୍ୱୟଗ୍ରନ୍ଥି ବନ୍ଧନଂ ଚ କୁର୍ଯ୍ୟାତ୍ । ତତଃକର୍ତ୍ତା ବରାୟଦକ୍ଷିଣାଂ ଦଦ୍ୟାତ୍ । କଟୋପରିନିବେଶନଂ, ତ୍ୱଂ ଗୌରୀତିପଠନନଂ । ତତ ଆଚାର୍ଯ୍ୟଃ କୁଶଣ୍ଡିବିଧିଂ କୃତ୍ୱା ଆଘାରାବାଜ୍ୟଭାଗୌ ଦତ୍ତ୍ୱା ଭୂରାଦିହୋମଂ କୃତ୍ୱାବିବାହବିଧିବଦ୍ଧୋନଂ କୁର୍ଯ୍ୟାତ୍ । ଗଣପତ୍ୟାଦିପଞ୍ଚଦେବତାଗ୍ରହ-ଦିକ୍ପାଳହୋମଃ । ପୂର୍ବୋକ୍ତାଷ୍ଟାଦଶଦେବତାଭ୍ୟଃ ସ୍ୱନାମଚତୁର୍ଥ୍ୟନ୍ତ-ମନ୍ତ୍ରେଣାହୁତୀର୍ଦଦ୍ୟାତ୍ । 'ଓଁ ନମୋଭଗବତେ ବାସୁଦେବାୟ ସ୍ୱାହା ।' ଅଥବା "ଓଁ ନମୋନାରାୟଣାୟ ସ୍ୱାହା" ଇତି ମନ୍ତ୍ରେଣ ନବାହୁତୀର୍ଦତ୍ତ୍ୱା ଲାଜାହୋମ କୁର୍ଯ୍ୟାତ୍ । ତତଃ ସ୍ୱିଷ୍ଟକୃଦ୍ଧୋମଃ । ପୂର୍ଣ୍ଣାହୁତିହୋମଃ । ସପ୍ତପଦୀକରଣକର୍ତ୍ତନଂ । ଶିଳାରୋହଣଂ । ପବିତ୍ରପତିପତ୍ତିଃ । ପ୍ରଣୀତାବିମୋକଃ । ବ୍ରହ୍ମାଗ୍ନିବସିର୍ଜନଂ । ଶାନ୍ତିକରଣଂ । ଦକ୍ଷିଣାଦାନଂ । ଗୋଭୂତିଳବସ୍ତ୍ରାଦିଦାନଂ । ବରକନ୍ୟୟୋ ପଞ୍ଚୋପଚାରୈର୍ନାନା-ବିଧଦ୍ରବ୍ୟୈଃ ପୂଜନଂ ବନ୍ଦାପନାଂ ଚ କୃତ୍ୱା ପ୍ରାର୍ଥୟେତ୍ ।

ନମସ୍ତେ ବ୍ୟକ୍ତରୂପାୟ ବିବାହେନ ଜଗଦ୍‌ଗୁରୋ ।
ସର୍ବପାପଂ ନିହତ୍ୟାଶୁ ମୋକ୍ଷଂ ଦେହି ଜନାର୍ଦ୍ଦନ ।

ତତୋଯଜମାନଃ ସପତ୍ନୀକଃ ସପରିବାର ସାମାତ୍ୟଃ ସବାନ୍ଧବଶ୍ଚ ଚତସ୍ରଃ ପ୍ରଦକ୍ଷିଣାଃ କୃତ୍ୱା ଶାନ୍ତିପାଠାଦି ପଠିତ୍ୱା ତୁର୍ଯ୍ୟାଦିଘୋଷପୂର୍ବକଂ ଯଥାବିଭବଂ ବିଷ୍ଣୁଂ



ତଳସାଞ୍ଚ ସଂପୂଜ୍ୟ ଦୀନାନାଥାନ୍ ସନ୍ତୋଷ୍ୟ ଋତ୍ୱିଗ୍‌ଭ୍ୟୋଦକ୍ଷିଣାଂ ଦତ୍ତ୍ୱା ବ୍ରାହ୍ମଣାନ୍ ଭୋଜୟେତ୍ ।

## ଶାନ୍ତିମନ୍ତ୍ର ଯଥା-

ଓଁ ଋଚଂ ବାଚଂ ପ୍ରପଦ୍ୟେ ମନୋ ଯଜୁଃ ପ୍ରପଦ୍ୟେ ସାମ ପ୍ରାଣଂ ପ୍ରପଦ୍ୟେ ଚକ୍ଷୁଃ ଶ୍ରୋତଂ ପ୍ରପଦ୍ୟେ ବାଗୋଜଃ ମହୌଜୋମୟି ପ୍ରାଣାପାନୌ ।୧ ।

ଓଁ ଯନ୍ମେ ଛିଦ୍ରଂ ଚକ୍ଷୁଷୋ ହୃଦୟସ୍ୟ ମନସୋ ବାତି ତୃଣଂ ବୃହସ୍ପତିର୍ମେ ତଦ୍ଦଧାତୁ ଶନ୍ନୋଭବତୁ ଭୁବନସ୍ୟ ଯସ୍ପତି ।୨ ।

ଓଁ ଭୂର୍ଭୂବଃ ସ୍ୱସ୍ତସ୍ୱିତୁର୍ବଣ୍ୟେଂ ଭର୍ଗୋଦେବସ୍ୟ ଧୀମହି ଧିୟୋୟୋନଃ ପ୍ରଚୋଦୟାତ୍ ।୩ ।

ଓଁ କୟାନଶ୍ଚିତ୍ର ଆଭୁବ ଦୂତୀ ସଦା ବୃଧଃ ସଖା । କୟା ଶଚିଷ୍ଠୟା ବୃତା ।୪ ।

ଓଁ କସ୍ତ୍ୱାସତ୍ୟୋ ମଦାନାଂ ମଛଂହିଷ୍ଠୋ ମତ୍ସଦନ୍ଧସଃ । ଦୃଢ଼ାଚିଦାରୁଜେ ବସୁ ।୫ ।

ଓଁ ଆଭୀଷୁଣଃ ସଖୀନାମବିତା ଜରିତୃଣାଂ । ଶତମ୍ଭବାସ୍ୟୁତିଭିଃ ।୬ ।

ଓଁ କୟାତ୍ୱନ୍ନ ଉତ୍ୟାଭିପ୍ରେମନ୍ଦସେ ବୃଷନ୍ । କୟା ସ୍ତୋତୃଭ୍ୟ ଆଭର ।୭ ।

ଓଁ ଇନ୍ଦ୍ରୋ ବିଶ୍ୱସ୍ୟ ରାଜତି । ଶନ୍ନୋ ଅସ୍ତୁଦ୍ୱିପଦେ ଶଂ ଚତୁଷ୍ପଦେ ।୮ ।

ଓଁ ଶନ୍ନୋ ମିତ୍ରଃ ଶଂ ବରୁଣଃ ଶନ୍ନୋ ଭବତ୍ୱର୍ଯମା । ଶନ୍ନଇନ୍ଦ୍ରୋ ବୃହସ୍ପତିଃ ଶନ୍ନୋ ବିଷ୍ଣୁ ରୁରୁକ୍ରମଃ ।୯ ।

ଓଁ ଶନ୍ନୋ ବାତଃ ପବତାଙ୍କ ଶନ୍ନସ୍ତପତୁ ସୂର୍ଯ୍ୟଃ । ଶନ୍ନଃ କନିକ୍ରଦଦ୍ଦେବଂ ପର୍ଜନ୍ୟୋଅଭିବର୍ଷତୁ ।୧୦ ।

ଓଁ ଅହାନି ଶଂ ଭବନ୍ତୁ ନଃ ଶଛଂ ରାତ୍ରୀଃ ପ୍ରତିଧୀୟତାଂ । ଶନ୍ନଇନ୍ଦ୍ରାଗ୍ନୀ ଭବତାମବୋଭିଃ ଶନ୍ନ ଇନ୍ଦ୍ରାବରୁଣା ରାତହବ୍ୟା । ଶନ୍ନ ଇନ୍ଦ୍ରାପୂଷଣା ବାଜସାତୌ ଶମିନ୍ଦ୍ରାସୋମାସୁବିତାୟଂ ଶଂ ଯୋଃ ।୧୧ ।

ଓଁ ଶନ୍ନୋ ଦେବୀରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ । ଶଂ ଯୋରଭିସ୍ରବନ୍ତୁ ନଃ ।୧୨ ।

ଓଁ ସ୍ୟୋନାପୃଥିବିନୋ ଭଦାନ୍ନୃକ୍ଷରାନିବେଶନୀ । ଯଚ୍ଛାନଃ ଶର୍ମ ସ ପ୍ରଥାଃ ।୧୩ ।

ଓଁ ଆପୋହିଷ୍ଠା ମୟୋଭୂବସ୍ତାନ ଉର୍ଜେ ଦଧାତନ । ମହେରଣାୟ ଚକ୍ଷୁସେ ।୧୪ ।

ଓଁ ଯୋବଃ ଶିବତମୋରସସ୍ତସ୍ୟ ଭାଜୟତେ ହନଃ ଉଶତୀରିବ ମାତରଃ ।୧୫ ।

ଓଁ ତସ୍ମାଅରଙ୍ଗମାମବ୍ୟେ ଯସ୍ୟ କ୍ଷୟାୟ ଜନ୍ୱଥ । ଆପୋଜନୟଥା ଚ ନଃ ।୧୬ ।

ଓଁ ଦ୍ୟୌଃ ଶାନ୍ତିରନ୍ତରିକ୍ଷଂ ଶାନ୍ତିଃ ପୃଥିବୀ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତିର୍ବିଶ୍ୱେଦେବା ଶାନ୍ତିଃ ସର୍ବଙ୍ଗଂଶାନ୍ତିଃ ଶାନ୍ତିରେବ ଶାନ୍ତିଃ ସାମାଶାନ୍ତିରେଧି ।୧୭ ।

ଓଁ ଦୃତେ ଦୃଂହ ମା ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାଂ । ମିତ୍ରସ୍ୟାହଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ । ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ।୧୮ ।

ଓଁ ଦୃତେ ଦୃଂହ ମାଜ୍ୟୋକ୍ତେ ସନ୍ଦୃଶି ଜୀବ୍ୟାସଂ ଜ୍ୟୋକ୍ତେ ସନ୍ଦୃଶି ଜୀବ୍ୟାସଂ ।୧୯ ।

ଓଁ ନମସ୍ତେ ହରସେ ଶୋଚିଷେ ନମସ୍ତେ ଅସ୍ତ୍ୱର୍ଚ୍ଚିଷେ । ଅନ୍ୟାଚଂସ୍ତେ ଅସ୍ମତ୍ତପନ୍ତୁ ହେତୟଃ । ପାବକୋ ଅସ୍ମଭ୍ୟଂ ଶିବୋ ଭବ ।୨୦ ।

ଓଁ ନମସ୍ତେ ଅସ୍ତୁ ବିଦ୍ୟୁତେ ନମସ୍ତେ ସ୍ତନୟିତ୍ନବେ । ନମସ୍ତେ ଭଗବନ୍ନସ୍ତୁ ଯତଃ ସମୀହସେ । ୨୧ ।

ଓଁ ଯତୋ ଯତଃ ସମୀହସେ ତତୋ ନୋ ଅଭୟଂ କୁରୁ । ଶନ୍ନଃ କୁରୁ ପ୍ରଜାଭ୍ୟୋଅଭୟନଃ ପଶୁଭ୍ୟଃ ।୨୨ ।

ଓଁ ସୁମିତ୍ରିୟା ନ ଆପଃ ଓଷଧୟଃ ସନ୍ତୁ ଦୁର୍ମିତ୍ରିୟାସ୍ତସ୍ମୈସନ୍ତୁ ଯୋଽସ୍ମାନ୍ଦ୍ୱେଷି ୟଞ୍ଚ ବୟଂ ଦ୍ୱିଷ୍ମ ।୨୩ ।

ଓଁ ତଚ୍ଚକ୍ଷୁ ର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ । ପଶ୍ୟେମ ଶରଦଃ ଶତଂ ଜୀବେମ ଶରଦଃ ଶତଂ ଶୃଣୁୟାମ ଶରଦଃ ଶତଂ ପ୍ରବ୍ରବାମ ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂ ଭୂୟଞ୍ଚ ଶରଦଃ ଶତାତ୍ ।୨୪ ।

## ଇତି ଶାନ୍ତିମନ୍ତ୍ରାଃ-

ବ୍ୟାଖ୍ୟା-ତତ୍ପରେ ତୁଳସୀଦେବୀଙ୍କୁ ବସ୍ତ୍ର ଅଭିମନ୍ତ୍ରଣ କରି ପିନ୍ଧାଇଦେବ ଏବଂ ତାଙ୍କର ପ୍ରଥମବରଣ କରି ଦ୍ୱିତୀୟବରଣ କରିବ । (ମୂଳ ମନୁଷ୍ୟବିବାହବିଧି ୪୨୦ ନମ୍ବର ଦେଖ) ଓ ବ୍ରାହ୍ମଣମାନେ ମଙ୍ଗଳାଷ୍ଟକ ପଢ଼ିବେ (ମୂଳ ୪୧୯ ନମ୍ବର ଦେଖ) । ତଦୁତ୍ତାରୁ ଉପରୋକ୍ତ "ଓଁ ଯଦାବଧ୍ନଂ" ଏହି ମନ୍ତ୍ର ପଢ଼ି ତୁଳସୀଦେବୀଙ୍କ ହସ୍ତରେ କଙ୍କଣ ପିନ୍ଧାଇ ଓ ତାହାଙ୍କୁ ଅନ୍ୟ ପାଞ୍ଚଗୋଟି ଅଳଙ୍କାରରେ



ଅଳଙ୍କୃତ କରି ଅଗ୍ନିସ୍ଥାପନ (ମୂଳ ୧୪୬ ନମ୍ବର ଦେଖ) କରି ମହାବାକ୍ୟ (ମୂଳ ୪୨୨ ନମ୍ବର ଦେଖ) ପଢ଼ି ଉପରୋକ୍ତ ବାକ୍ୟ ଓ ବିଧି ଅନୁସାରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଗୋତ୍ର ଓ ପ୍ରବର ସହିତ ପ୍ରପିତାମହ, ପିତାମହ ଓ ପିତାଙ୍କ ନାମ ତିନିବାର ଉଚ୍ଚାରଣ କରିବ । ସେହିପରି ମଧ୍ୟ ତୁଳସୀଦେବୀଙ୍କ ଗୋତ୍ର ଓ ପ୍ରବର ସହିତ ପ୍ରପିତାମହ, ପିତାମହ ଓ ପିତାଙ୍କ ନାମ ତିନିବାର ଉଚ୍ଚାରଣ କରିବ । ଏହାପରେ ପୁନର୍ବାର ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଗୋତ୍ର, ପ୍ରବର ଓ ନାମ ଥରେ ଉଚ୍ଚାରଣ କରି ତୁଳସୀଦେବୀଙ୍କର ନାମ, ଗୋତ୍ର ଓ ପ୍ରବର ଥରେ ଉଚ୍ଚାରଣ କରିବ । ତଦୁତ୍ତାରୁ ଯଜମାନ ଶଙ୍ଖଜଳ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ହସ୍ତରେ ଦେଇ ଉପରୋକ୍ତ "ଓଁ ଆଜଂ ଦଦାତ୍" ଏହି ମନ୍ତ୍ର ପଢ଼ି ତୁଳସୀଦେବୀଙ୍କ ହସ୍ତକୁ ଶ୍ରୀକୃଷ୍ଣଙ୍କ ହସ୍ତରେ ଦେବ । ଅନନ୍ତର ଆଚାର୍ଯ୍ୟ ତୁଳସୀଦେବୀ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ହସ୍ତଗ୍ରନ୍ଥି ବନ୍ଧନ, ମୁକୁଟବନ୍ଧନ ଓ ବସ୍ତ୍ରଦ୍ୱୟର ଗ୍ରନ୍ଥିବନ୍ଧନ ପ୍ରଭୃତି ବିବାହକର୍ମ ମନୁଷ୍ୟ ବିବାହବିଧି ଅନୁସାରେ କରିବେ । ତତ୍ପରେ, କର୍ତ୍ତା ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ କନ୍ୟାଦାନଦକ୍ଷିଣା ଦେଇ କଟ ମସିଣା ଉପରେ ବସାଇ ଉପରୋକ୍ତ "ଓଁ ଧ୍ୱଂ ଗୌରିଂ" ଏହି ମନ୍ତ୍ର ପଢ଼ିବ । ତଦୁତ୍ତାରୁ ଆଚାର୍ଯ୍ୟକୁଶାଣ୍ଡି (ମୂଳ ୧୫୫ ନମ୍ବର ଦେଖ) କରି ଆଘାର ଓ ଆଜ୍ୟଭାଗ ଅଗ୍ନିରେ ଦେଇ ଭୂରାଦି ହୋମ ଓ ମନୁଷ୍ୟ ବିବାହରେ ଲେଖା ହୋଇଥିବା ସମସ୍ତ ହୋମ କରି (ମୂଳ ୪୫୭-୪୬୦ ନମ୍ବର ଦେଖ) ଗଣପତ୍ୟାଦି ପଞ୍ଚଦେବତା, ଗ୍ରହ, ଦିକ୍‌ପାଳ ଓ ଉପରୋକ୍ତ ବସୁଦେବ ପ୍ରଭୃତି ଅଷ୍ଟାଦଶ ଦେବତା ଏମାନଙ୍କୁ ସ୍ୱନାମ ଚତୁର୍ଥ୍ୟନ୍ତ ମନ୍ତ୍ରରେ ଆହୁତି ଦେଇ ଉପରୋକ୍ତ "ଓଁ ନମୋଭଗବତେ ବାସୁଦେବାୟ ସ୍ୱାହା" କିମ୍ବା "ଓଁ ନମୋନାରାୟଣ ସ୍ୱାହା" ଏହି ମନ୍ତ୍ରରେ ନଅଗୋଟି ଆହୁତି ଦେଇ ମନୁଷ୍ୟବିବାହବିଧି ଅନୁସାରେ ଲାଜାହୋମ କରିବ ଓ ସ୍ୱିଷ୍ଟିକୃତ୍ ହୋମ, ପୂର୍ଣ୍ଣାହୁତି ହୋମ, ସପ୍ତପଦୀ ଶିଳାରୋହଣ ପ୍ରଭୃତି କର୍ମ କରିସାରି ପବିତ୍ରର ପ୍ରତିପତ୍ତି, ପ୍ରଣୀତାର ବିମୋକ, ବ୍ରହ୍ମାଗ୍ନିବିସର୍ଜନ, ଶାନ୍ତିକରଣ, ଦକ୍ଷିଣାଦାନ, ଗୋଭୂମି, ତିଳ, ବସ୍ତ୍ର ପ୍ରଭୃତି ବିଷ୍ଣୁପ୍ରୀତ୍ୟର୍ଥରେ ବ୍ରାହ୍ମଣଙ୍କୁ ଦେବ । ତଦୁତ୍ତାରୁ ତୁଳସୀଦେବୀ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ପାଞ୍ଚ ଉପଚାର (ଗନ୍ଧ, ପୁଷ୍ପ, ଧୂପ ଓ ନୈବେଦ୍ୟ) ଓ ନାନାବିଧ ଦ୍ରବ୍ୟ ଦେଇ ପୂଜା ଏବଂ ବନ୍ଦପନା କରି ଉପରୋକ୍ତ "ଓଁ ନମସ୍ତେ ବ୍ୟକ୍ତରୂପାୟ" ଏହି ମନ୍ତ୍ର ପଢ଼ି ପ୍ରାର୍ଥନା କରିବ । ଉପରୋକ୍ତ "ଓଁ ନମସ୍ତେ ବାକ୍ତରୂପାୟ" ଏହି ମନ୍ତ୍ର ପଢ଼ି ପ୍ରାର୍ଥନା କରିବ । ତଦନନ୍ତର ଯଜମାନ ସସ୍ତ୍ରୀକହୋଇ ପରିବାର ଅମାତ୍ୟ, ବନ୍ଧୁ ବାନ୍ଧବ ଓ ଗୀତବାଦ୍ୟାଦି ସହିତ ତୁଳସୀ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଚାରିଥର ପ୍ରଦକ୍ଷିଣ କରିବା ସମୟରେ

ଉପରୋକ୍ତ ଶାନ୍ତିମନ୍ତ୍ର ପାଠ କରୁଥିବେ । ତତ୍ପରେ ଯଥାଶକ୍ତି ତୁଳସୀ ଓ କୃଷ୍ଣଚନ୍ଦ୍ରଙ୍କ ପୂଜା କରି ଦରିଦ୍ର ଅନାଥମାନଙ୍କୁ ଦାନଦ୍ୱାରା ତୃପ୍ତି କରି ରତିମାନଙ୍କୁ ଦକ୍ଷିଣା ଦେଇ ଯଥାଶକ୍ତି ବ୍ରାହ୍ମଣଭୋଜନ କରାଇବ ।୦ ।

ଇତି ତୁଳସୀବିବାହ ବିଧିଃ ।

## ୭-ବଟ୍ ଓ ଅଶ୍ୱତ୍ଥ ବିବାହ ବିଧି

**ସ୍ଥାପନାଦଷ୍ଟମେ ବର୍ଷେ ଦ୍ୱାଦଶୈକାଦଶେଽପି ବା । (ଶୌନକଃ)**

**ବ୍ୟାଖ୍ୟା**-ବଟ ଓ ଅଶ୍ୱତ୍ଥ ବୃକ୍ଷ ଲଗାଇବା ଦିନଠାରୁ ଆଠବର୍ଷରେ, ଏଗାରବର୍ଷରେ କିମ୍ବା ବାରବର୍ଷରେ ଉଭୟ ବୃକ୍ଷର ପ୍ରତିଷ୍ଠା ଓ ବିବାହ କରାଯାଏ ।

## ବଟାଶ୍ୱତ୍ଥବୃକ୍ଷାରୋପଣ କାଳନିର୍ଣ୍ଣୟ

ଉଦଗୟନେ ସୁମୁହୂର୍ତ୍ତେ ସ୍ଥିରଲଗ୍ନେ କର୍ତ୍ତୁଃ ଚନ୍ଦ୍ରତାରାନୁକୂଳେ ଦିନେ ରମ୍ୟପ୍ରଦେଶେ ନାଭିମାତ୍ରଗର୍ତ୍ତେ ବଟାଶ୍ୱତ୍ଥପାଦପରୋପଣଂ କାର୍ଯ୍ୟଂ । (ବ୍ରତୋଦ୍ୟାପନକୌମୁଦ୍ୟାଂ)

**ବ୍ୟାଖ୍ୟା**-ଉତ୍ତରାୟଣରେ, ଶୁଭମୁହୂର୍ତ୍ତରେ, ସ୍ଥିରଲଗ୍ନରେ, ତାର ଚନ୍ଦ୍ରଶୁଦ୍ଧିରେ, ରମ୍ୟସ୍ଥାନରେ ଓ ନାଭିପରିମାଣ ଗର୍ତ୍ତମଧ୍ୟରେ ବଟ୍ ଆଉ ଅଶ୍ୱତ୍ଥ ଏହି ଉଭୟ ବୃକ୍ଷାରୋପଣ କରିବ ।

## ବଟ ଓ ଅଶ୍ୱତ୍ଥ ବୃକ୍ଷର ପ୍ରତିଷ୍ଠା ଏବଂ ବିବାହକାଳ ନିର୍ଣ୍ଣୟ

ଉତ୍ତରାୟଣେ ଗୁରୁଶୁକ୍ରୋଦୟେ ମାଘଫାଲଗୁନବୈଶାଖେଷୁ ଶୁକ୍ଳପକ୍ଷେ ଶୁଭେ ଋକ୍ଷେ ସୁବାରତିଥିଲଗ୍ନକେ ସ୍କନ୍ଧପର୍ଣ୍ଣାଙ୍କୁରାନ୍ୱିତୟୋର୍ବିଦ୍ୟୁତା ଦାବାଗ୍ନିନାବାନଭିହତୟୋବଟାଶ୍ୱତ୍ଥୟୋଃ ପ୍ରତିଷ୍ଠାପୂର୍ବକଂ ବିବାହଂ କୁର୍ଯ୍ୟାତ୍ । (ବ୍ରତୋଦ୍ୟାପନକୌମୁଦ୍ୟାଂ)

**ବ୍ୟାଖ୍ୟା**-ଉତ୍ତରାୟଣରେ, ଗୁରୁଶୁକ୍ରଙ୍କର ଉଦୟରେ, ମାଘ, ଫାଲଗୁନ ଓ ବୈଶାଖମାସରେ, ଶୁକ୍ଳପକ୍ଷରେ, ଶୁଭନକ୍ଷତ୍ରରେ, ଶୁଭବାର, ଶୁଭତିଥି ଓ ଶୁଭଲଗ୍ନରେ, ସ୍କନ୍ଧ ପତ୍ରାଙ୍କୁରଯୁକ୍ତ ଏବଂ ବିଜୁଳି ବା ବନାଗ୍ନିଦ୍ୱାରା ପୋଡି ଯାଇ ନ ଥିବା ଅଶ୍ୱତ୍ଥ ଓ ବଟବୃକ୍ଷର ପ୍ରତିଷ୍ଠା କରି ଭିନ୍ନ ଭିନ୍ନ ସହ ବିବାହ କରିବ ।



ତତ୍ରାଦୌ କନକକୁଣ୍ଡଳେ କନକସୂତ୍ରେ କନକମୌଞ୍ଜୀ ହୋମଦ୍ରବ୍ୟାଣି ସର୍ବସମ୍ଭାରାନ୍ ଯଥାସମ୍ଭବଂ ସଂଭୃତ୍ୟ ଚତୁରସ୍ରାଂ ବେଦିକାଂ ବିଧାୟ ବଟାଶ୍ୱତ୍‌ଥ ମୂଳେ ବେଦିକା ବର୍ତ୍ତୁଳଂ ବା ଚତୁରସ୍ରଂ ଆଲବାଳଂ କୃତ୍ୱା ତତ୍ର ତୁଳସୀଂ ପ୍ଲକ୍ଷଶାଖାଂ ଶମୀଂ ଦୂର୍ବାଂ ଚ ରୋପୟିତ୍ୱା ବେଦିକାୟାଂ ଚତୁରସ୍ରଂ ସମନ୍ତାଚ୍ଚତୁର୍ଦ୍ୱାରଂ ଚତୁର୍ହସ୍ତମଧିକଂ ବା ମଣ୍ଡପଂ କୃତ୍ୱାଜ୍ୟୋତିର୍ବିଦାଦିଷ୍ଟେ ମୁହୂର୍ତ୍ତେ ସଙ୍କଳ୍ପଂ କୁର୍ଯ୍ୟାତ୍ । ତଦ୍‌ଯଥା-ଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନମୁକଦେବାଶର୍ମ୍ମା (ଅମୁକକର୍ମ୍ମା ବା ଅମୁକଗୁପ୍ତାଃ) ନିଖିଳପାପକ୍ଷୟାଭୀଷ୍ଟସିଦ୍ଧି ପୂର୍ବକ ଆତ୍ମାନାସହୈକବିଂଶତିପୁରୁଷାନୁଦ୍ଧର୍ତ୍ତୁକାମଃ ଶ୍ରୀପରମେଶ୍ୱରପ୍ରୀତ୍ୟର୍ଥଂ ବଟାଶ୍ୱତ୍‌ଥୟୋଃ ପ୍ରତିଷ୍ଠାପୂର୍ବକବିବାହଂ କରିଷ୍ୟେ ତଦଙ୍ଗୀଭୂତଂ ଗଣେଶାଦି ଦେବତାପୂଜନଂ ପୁଣ୍ୟାହବଚାନଂ ମାତୃକାପୂଜନଂ ନାନ୍ଦୀଶ୍ରାଦ୍ଧମାଚାର୍ଯ୍ୟାଦିବରଣଂ ଚ କରିଷ୍ୟେ ଇତି ସଙ୍କଳ୍ପଃ ।

**ବ୍ୟାଖ୍ୟା**-ପ୍ରଥମେ ଦୁଇଗୋଟି ସୁନାର କୁଣ୍ଡଳ, ଦୁଇଗୋଟି ସୁନାର ସୂତା, ଦୁଇଗୋଟି ସୁନାର ମେଖଳା, ହୋମସାମଗ୍ରୀ ଆଉ କର୍ମର ସମସ୍ତ ସାମଗ୍ରୀମାନ ଶକ୍ତି ଅନୁସାରେ ସଂଗ୍ରହ କରି ବଟ ଓ ଅଶ୍ୱତ୍ଥବୃକ୍ଷର ମୂଳ ନିକଟରେ ଗୋଟିଏ ଚାରିକୋଣିଆ ଆଲବାଳ (ମନ୍ଦା) କରିବ । ତତ୍ପରେ ଅଶ୍ୱତ୍ଥ ମନ୍ଦା ମଧ୍ୟରେ ତୁଳସୀ ଓ ଶମୀ ଡାଳ ପୋତିବ ଏବଂ ବଟ ମନ୍ଦା ମଧ୍ୟରେ ଅଶ୍ୱତ୍‌ଥ ଡାଳ ଓ ଦୁବ ପୋତିବ । ତଦନନ୍ତର ବେଦୀ ଉପରେ ଚାରିହାତ କିମ୍ବା ତିହଁରୁ ଅଧିକ ଗୋଟିଏ ଚାରିକୋଣିଆ ମଣ୍ଡପ କରିବ, ତାହାର ଚାରିଦିଗରେ ଚାରିଗୋଟିଦ୍ୱାର ହେବ । ତଦୁତ୍ତାରୁ ଜ୍ୟୋତିର୍ବିଦମାନଙ୍କଦ୍ୱାରା ସ୍ଥିର ହୋଇଥିବା ଶୁଭ ମୁହୂର୍ତ୍ତରେ ଉପରୋକ୍ତ ବାକ୍ୟ ପଢ଼ି ସଂକଳ୍ପ କରିବ । (ସଂକଳ୍ପ ବିଧି ମୂଳ-୧୨୮,୧୨୯ ନମ୍ବର ଦେଖ) ।

ତତଃ ପ୍ରାଗାଦିଦ୍ୱାରଚତୁଷ୍ଟୟେ ଆମ୍ରୋଦୁମ୍ବରପ୍ଲକ୍ଷାଶୋକପଲ୍ଲବକୃତାନି ଚତ୍ୱାରି ତୋରଣାନି ବଦ୍ଧ୍ୱା ଶ୍ୱେତକୃଷ୍ଣ ହରିତ୍‌ପୀତବର୍ଣ୍ଣାଶ୍ଚ ଦ୍ୱାରୋଧ୍ୱଜାଃ ପତାକାଶ୍ଚ । ବଟାଶ୍ୱତ୍ଥଶିରସି ସର୍ବବର୍ଣ୍ଣୋଧ୍ୱଜଃ କାର୍ଯ୍ୟାଃ । ତତଃ ସର୍ତ୍ତ୍ୱିକ୍ ସପତ୍ନୀକୋଯଜମାନଃ ପୂର୍ଣ୍ଣକୁମ୍ଭହସ୍ତଃ ।

**"ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।**
**ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂସସ୍ତନୂଭିର୍ବ୍ୟଶେ ମହି ଦେବହିତଂ ଯଦାୟୁ ॥"**

ଇତି ମନ୍ତ୍ରେଣ ମଙ୍ଗଳତୂର୍ଯ୍ୟ ଘୋଷେଣ ସହ ବଟାଶ୍ୱତ୍‌ଥ ପ୍ରାଦକ୍ଷିଣ୍ୟେନ ମଣ୍ଡପପଶ୍ଚିମଦ୍ୱାରମାଗତଃ "ଓଁ ଭୂରସିଭୂମିରସ୍ୟ ଦିତିରସି ବିଶ୍ୱଧାୟା ବିଶ୍ୱସ୍ୟ

ଭୂବନସ୍ୟ ଧର୍ତ୍ତ୍ରୀଂ । ପୃଥିବୀଂ ଯଚ୍ଛ ପୃଥିବୀଂ ଦୃଂହ ପୃଥିବୀଂ ମାହିଂସୀଃ” । ଇତି ମନ୍ତ୍ରେଣଧରାଂ ସମ୍ପୂଜ୍ୟ ମଣ୍ଡପଂ ପ୍ରବିଶ୍ୟ କଲସଂନିଧାୟ ନିର୍ଋତିବରୁଣୟୋର୍ମଧ୍ୟେ ଉପବିଶେତ୍ ।

**ବ୍ୟାଖ୍ୟା**-ତଦନନ୍ତର ମଣ୍ଡପର ଚାରିଦ୍ୱାରରେ ଆମ୍ବ, ଉଦୁମ୍ବର, ଜରିଅଶ୍ୱତ୍ଥ ଓ ଅଶୋକପତ୍ରରେ ତୋରଣ କରି ବାନ୍ଧିବ ଏବଂ ଧଳା, କଳା, ହଳଦିଆ ଓ ଶାଗୁଆ ବର୍ଣ୍ଣରେ ଚାରିଗୋଟି ଧ୍ୱଜା ଓ ଚାରିଗୋଟି ପତାକା ନିର୍ମାଣ କରି ଚାରିଦ୍ୱାରରେ ପୋତିବ, ବଟ ଓ ଅଶ୍ୱତ୍ଥଗଛର ଅଗରେ ସବୁ ରଙ୍ଗରପତାକା ବାନ୍ଧିବ । ତତ୍ପରେ ପୁରୋହିତ ଓ ପତ୍ନୀସହିତ ଯଜମାନ ହାତରେ ପୂର୍ଣ୍ଣକୁମ୍ଭ ଧରି ଉପରୋକ୍ତ "ଓଁ ଭଦ୍ରଂ କର୍ଣ୍ଣେଭିଃ” ଏହି ମନ୍ତ୍ର ପଢ଼ି ମଙ୍ଗଳସୂଚକଗୀତାବାଦ୍ୟାଦି ସହିତ ବଟ ଓ ଅଶ୍ୱତ୍ଥବୃକ୍ଷକୁ ପ୍ରଦକ୍ଷିଣକରିମଣ୍ଡପରପଶ୍ଚିମଦ୍ୱାରରେ ପ୍ରବେଶ କରିବ । ତଦୁତ୍ତାରୁ କଳସକୁ ରଖି ନୈର୍ଋତ କୋଣ ଓ ପଶ୍ଚିମ ଦିଗମଧ୍ୟରେ ପୂର୍ବକୁ ମୁଖ କରି ବସିବ ।

ତତଃ ସ୍ୱଗୃହ୍ୟୋକ୍ତବେଦବିଧିନା ଆଚାର୍ଯ୍ୟାଦୀନ୍ ବୃଣୁୟାତ୍ । ତଦ୍‌ଯଥା-ଅସ୍ମିନ୍ କର୍ମଣି ଆଚାର୍ଯ୍ୟତ୍ୱେନ ତ୍ୱାମହଂ ବୃଣେ ବୃତୋଽସ୍ମୀତ୍ୟାଚାର୍ଯ୍ୟଃ ଏବଂ ବ୍ରାହ୍ମଣଂ, ସଦସ୍ୟଂ, ଉପଦ୍ରଷ୍ଟାରଂ ବୃତ୍ୱାସର୍ବାନ୍‌ମଧୁପର୍କାଦିନ୍‌ସଂପୂଜ୍ୟପ୍ରାର୍ଥୟେତ୍ । ଅସ୍ୟ ଯାଗସ୍ୟ ନିଷ୍ପତ୍ତୌ ଭବନ୍ତୋଽଭ୍ୟର୍ଥିତା ମୟା । ସୁପ୍ରସନ୍ନୈଶ୍ଚ କର୍ତ୍ତବ୍ୟଂ କର୍ମେଦଂ ବିଧିପୂର୍ବକଂ ।

**ବ୍ୟାଖ୍ୟା**-ତତ୍ପରେ ନିଜ ନିଜ ଗୃହ୍ୟସୂତ୍ରୋକ୍ତ ବେଦବିଧି ଅନୁସାରେ ଆଚାର୍ଯ୍ୟ ବ୍ରହ୍ମା, ସଦସ୍ୟ ଓ ଉପଦ୍ରଷ୍ଟା ଏମାନଙ୍କୁ ବସ୍ତ୍ର କୁଣ୍ଡଳାଦି ଦେଇ ବରଣ କରି ଓ ମଧୁପର୍କାଦିଦ୍ୱାରା ପୂଜା କରି ଉପରୋକ୍ତ ପ୍ରାର୍ଥନା ମନ୍ତ୍ର ପଢ଼ି ସମସ୍ତଙ୍କୁ ପ୍ରାର୍ଥନା କରିବ । (ସମୁଦାୟ ବିଧି ମୂଳ-୧୪୮ ନମ୍ବରଠାରୁ ୧୫୩ ନମ୍ବର ପର୍ଯ୍ୟନ୍ତ ଦେଖ) ।

ତତଃ ଆଚାର୍ଯ୍ୟଃ ଶରୀରଶୁଦ୍ଧ୍ୟର୍ଥଂ ଆସନ ଶୁଦ୍ଧ୍ୟାଦିକଂ ବିଧାୟଶୋଧିତପଞ୍ଚଗବ୍ୟେନ କୁଶୈଃ ସର୍ବତ୍ର ପ୍ରେକ୍ଷଣଂ କୃତ୍ୱା ବେଦିକୋପରି ଅକ୍ଷତପୁଞ୍ଜମଧ୍ୟେ ସୌବର୍ଣ୍ଣବିଷ୍ଣୁପ୍ରତିମାଂ ଓଁ ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦଂ । ସମୂଳହମସ୍ୟ ପାଂଶୁରେ” । ଇତି ମନ୍ତ୍ରେଣ ସଂସ୍ଥାପ୍ୟ ତଦ୍‌ବାମତୋରୁକ୍ମିଣୀଂ ତଦ୍ଦକ୍ଷିଣେ ସତ୍ୟଭାମାଂ ସ୍ଥାପୟିତ୍ୱା ତତଃ ସରସ୍ୱତୀମାବାହ୍ୟ ବଟାଶ୍ୱତ୍ଥୟୋରଷ୍ଟଦିକ୍ଷୁ ଅଷ୍ଟୌ କଲସାନ୍ ସ୍ଥାପନପ୍ରକାରେଣ ସଂସ୍ଥାପ୍ୟପୂର୍ବକଲସେ "ଓଁ ଅପୋହିଷ୍ଠା ମୟୋ ଭୂବସ୍ତାନ ଉର୍ଜେ ଦଧାତନ । ମହେରଣାୟ ଚକ୍ଷୁସେ ।୧ ।



ଯୋ ବାଃ ଶିବତମୋ ରସସ୍ତସ୍ୟ ଭାଜୟତ୍‌ତେ ହନଃ । ଉଶତୀରିବ ମାତରଃ ।୨ । ତସ୍ମାଅରଂଗମାମବୋ ଯସ୍ୟ କ୍ଷୟାୟ ଜିନ୍ୱଥ । ଆପୋଜନୟଥା ଚନଃ ।୩। ଇତିମନ୍ତ୍ରୈଃ ଶୁଦ୍ଧୋଦକଂ । ଦ୍ୱିତୀୟ (ଆଗ୍ନେୟ) କଲସେ- "ଓଁ ଆନୋଭଦ୍ରାଃକ୍ରତବୋଜନ୍ତୁବିଶ୍ୱତୋଽଦବଧାସୋ ଅପରୀତା ସଉଭିଦଃ । ଦେବାନୋ ଯଥା ସଦମିଦ୍‌ବୃଧେଅସନ୍ନପ୍ରାୟୁବୋ ରକ୍ଷିତାରୋଦିବେଦିବେ ।" ଇତି ମନ୍ତ୍ରେଣ ଗନ୍ଧୋଦକଂ । ତୃତୀୟ (ଦକ୍ଷିଣ) କଲସେ- "ଓଁ ସ୍ୱସ୍ତିନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତିନଃପୂଷା ବିଶ୍ୱଦେବାଃ । ସ୍ୱସ୍ତି ନସ୍ତାର୍ଯ୍ୟୋଽରିଷ୍ଟନେମିଃ ସ୍ୱସ୍ତିନୋବୃହସ୍ପତିର୍ଦଧାତୁ" ଇତି ମନ୍ତ୍ରେଣ କ୍ଷୀରୋଦକଂ । ଚତୁର୍ଥ (ନୈଋର୍ତ) କଲସେ- "ଓଁ ଶନ୍ନୋ ଦେବୀରଭିଷ୍ଟୟ ଆପୋ ଭବନ୍ତୁ ପୀତୟେ ଶଂଯୋରଭିସ୍ରବନ୍ତୁ ନଃ ।" ଇତି ମନ୍ତ୍ରେଣ ପଞ୍ଚଗବ୍ୟଂ । ପଞ୍ଚମ (ପଶ୍ଚିମ) କଲସେ- ଓଁ ଏତତ୍ତେ ରୁଦ୍ରବସନ୍ତେନ ପରୋମୁଜବତୋତୀହି । ଅବତତଧନ୍ୱାପିନାକା ବସଃ କୃତ୍ତିବାସା ଅହିଁଙ୍ଗଂଶନ୍ନଃ ଶିବୋତୀହି" । ଇତି ମନ୍ତ୍ରେଣ ହରିଦ୍ରୋଦକଂ । ଷଷ୍ଠ (ବାୟୁକୋଣ) କଲସେ- "ଓଁ ସମୁଦ୍ରଃ ସ୍ରୋତ୍ୟାନାମଧିପତିଃ ସମାବତୃସ୍ମିନ୍ ବ୍ରହ୍ମଣ୍ୟସ୍ମିନ କ୍ଷତ୍ରେଽସ୍ୟାମାଶିଷ୍ୟସ୍ୟାଂ ପୁରୋଧାୟାମସ୍ମିନ୍‌କର୍ମଣ୍ୟ ସ୍ୟାଂ ଦେବହୂତ୍ୟାଂ" ସର୍ବୋଷଧ୍ୟୁଦଂକ, ସପ୍ତମ (ଉତ୍ତର) କଲସେ "ଓଁ ଯା ଦିବ୍ୟ ଆପଃ ପୟସା ସମ୍ବଭୂବୁର୍ଯା ଅନ୍ତରିକ୍ଷା ଉତପାର୍ଥିବୀର୍ଯାଃ । ହିରଣ୍ୟବର୍ଣ୍ଣାୟଜ୍ଞୀୟା ସ୍ତାନ ଆପଃ ଶିବାଃ ଶଙ୍ଗଂସ୍ୟୋନାଃ ସୁହବାଭବନ୍ତୁ" ଇତି ମନ୍ତ୍ରେଣ କୁଶୋଦକଂ, ଅଷ୍ଟମ (ଐଶାନ୍ୟ) କଲସେ "ଓଁ ଶନ୍ନ ଆପୋଧନ୍ନନ୍ୟାଃ ଶନ୍ନଃ ସନ୍ତ୍ୱକୁପ୍ୟାଃ ଶନ୍ନଃ ସମୁଦ୍ରିୟା ଆପଃ ଶମୁନଃସନ୍ତୁକୁପ୍ୟାଃ" ଇତି ମନ୍ତ୍ରେଣ ଗଙ୍ଗୋଦକଂ ପ୍ରପୂର୍ଯ୍ୟ ପୂର୍ବାଦିକ୍ରମେଣ ଇନ୍ଦ୍ରାଦୀଂସ୍ତତ୍ତନ୍‌ମନ୍ତ୍ରୈରାବାହ୍ୟ । ସଂପୂଜୟେତ୍ ।

(ସମ୍ପୂର୍ଣ୍ଣ ମନ୍ତ୍ରମୂଳ-୧୨୬ ନମ୍ବର ଦେଖ)

**ବ୍ୟାଖ୍ୟା**-ତତ୍ପରେ ଆଚାର୍ଯ୍ୟ ଦେହଶୁଦ୍ଧି ନିମିତ୍ତ ଆସନଶୁଦ୍ଧି, ଭୂତଶୁଦ୍ଧି, ପ୍ରଣବ, ମାତୃକା ଓ ଅର୍ଘ୍ୟସଂସ୍କାରାଦି କରି କୁଶଦ୍ୱାରା ଶୋଧିତ ପଞ୍ଚଗବ୍ୟ ସବୁ ଦ୍ରବ୍ୟରେ ଏବଂ ଆପଣା ଦେହରେ ସିଞ୍ଚିଦେବ । ତଦୁତ୍ତାରୁ ବେଦୀ ଉପରେ ଅରୁଆଚାଉଳ କୁଢ଼ାଇ ତାହାର ମଧ୍ୟଭାଗରେ ଉପରୋକ୍ତ 'ଓଁ ଇଦଂ ବିଷ୍ଣୁର୍ବିଚକ୍ରମେ' ଏହି ମନ୍ତ୍ର ପଢ଼ି ସୁବର୍ଣ୍ଣର ବିଷ୍ଣୁପ୍ରତିମା ସ୍ଥାପନ କରିବ ଏବଂ ତାଙ୍କର ବାମଭାଗରେ ରୁକ୍ମିଣୀଦେବୀଙ୍କୁ ଆବାହନ କରିବ । ତଦନନ୍ତର ବଟ ଓ ଅଶ୍ୱତ୍ଥବୃକ୍ଷର ଆଠଦିଗରେ କଲସ ବିଧି ଅନୁସାରେ ସ୍ଥାପନ କରିବ । (ମୂଳ ୧୦୧ ନମ୍ବରଠାରୁ ୧୧୭

ନମ୍ବର ପର୍ଯ୍ୟନ୍ତ ଦେଖ) ତଦୁତ୍ତାରୁ ଉପରୋକ୍ତ "ଓଁ ଆପୋହିଷ୍ଠା" ଏହି ମନ୍ତ୍ର ପଢ଼ି ପୂର୍ବକଳସରେ ଶୁଦ୍ଧଜଳ ପୂର୍ଣ୍ଣ କରିବ । ସେହିପରି ଉପରୋକ୍ତ "ଓଁ ଆନୋଭଦ୍ରାଃ" ଏହି ମନ୍ତ୍ର ପଢ଼ି ଆଗ୍ନେୟକଳସରେ ଚନ୍ଦନଜଳ, ଉପରୋକ୍ତ "ଓଁ ସ୍ୱସ୍ତିନ ଇନ୍ଦ୍ରୋ" ଏହି ମନ୍ତ୍ର ପଢ଼ି ଦକ୍ଷିଣ କଳସରେ କ୍ଷୀରୋଦକ, ଉପରୋକ୍ତ "ଓଁ ଶନ୍ନୋ ଦେବୀ" ଏହି ମନ୍ତ୍ର ପଢ଼ି ନୈର୍ଋତ କଳସରେ ପଞ୍ଚଗବ୍ୟ, ଉପରୋକ୍ତ "ଓଁ ଏତତ୍ତେ ରୂଦ୍ରା" ଏହି ମନ୍ତ୍ର ପଢ଼ି ପଶ୍ଚିମ କଳସରେ ହରିଦ୍ରାଜଳ, ଉପରୋକ୍ତ "ଓଁ ସମୁଦ୍ରୋ" ଏହି ମନ୍ତ୍ର ପଢ଼ି ବାୟବ୍ୟକଳସରେ ସର୍ବୌଷଧିଜଳ, ଉପରୋକ୍ତ "ଓଁ ଯା ଦିବ୍ୟା" ଏହି ମନ୍ତ୍ର ପଢ଼ି ଉତ୍ତରକଳସରେ କୁଶୋଦକ, ଉପରୋକ୍ତ "ଓଁ ଅନ୍ନ ଆପୋ" ଏହି ମନ୍ତ୍ର ପଢ଼ି ଐଶାନ୍ୟକଳସରେ ଗଙ୍ଗୋଦକ କ୍ରମେ ପୂର୍ଣ୍ଣ କରିବ । ତତ୍ପରେ ପୂର୍ବକଳସଠାରୁ ଆରମ୍ଭି ଈଶାନକଳସ ପର୍ଯ୍ୟନ୍ତ ସ୍ୱ ସ୍ୱ ମନ୍ତ୍ରରେ ଇନ୍ଦ୍ରାଦି ଅଷ୍ଟ ଦିକ୍‌ପାଳମାନଙ୍କୁ ଆବାହନ କରି ପୂଜା କରିବ ।

ତତଃ ଆଚାର୍ଯ୍ୟଃ ଅଶ୍ୱତ୍ଥସ୍ୟ ହରିଦ୍ରାତୈଳରୋପଣାଦି ଲୌକିକଂ ବିଧାୟ ପୁରୁଷସୂକ୍ତେନ ପଞ୍ଚାମୃତଭିଷେକଞ୍ଚ କୃତ୍ୱା କଷାୟବସ୍ତ୍ରଯୁଗ୍ମେନାଚ୍ଛାଦୟେତ୍ ଇତ୍ୟଧିବାସଃ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ଲୌକିକ ବ୍ୟବହାରମତେ ଅଶ୍ୱତ୍ଥବୃକ୍ଷରେ ହଳଦୀ ତେଲ ଲଗାଇ ଦେଇ ପୁରୁଷସୂକ୍ତ ମନ୍ତ୍ର ପଢ଼ି ପଞ୍ଚାମୃତରେ ସ୍ନାନ କରାଇ ଦେଇ ଗୋଟିଏ ଗେରୁଆ ଲୁଗା ପିନ୍ଧାଇ ଦେବ, ଆଉ ଗୋଟିଏ ଗେରୁଆ ଲୁଗା ଘୋଡ଼ାଇ ଦେବ ।

## ପୁରୁଷସୂକ୍ତମନ୍ତ୍ରୋ ଯଥା-

ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ । ସ ଭୂମିଂ ସର୍ବତସ୍ପୃଷ୍ଟ୍ୱାତ୍ୟତିଷ୍ଠଦ୍ଦଶାଙ୍ଗୁଳଂ ।୧ ।

ପୁରୁଷ ଏବେଦଂ ସର୍ବଂ ଯଦ୍ଭୂତଂ ଯଚ୍ଚଭାବ୍ୟଂ । ଉତାମୃତତ୍ୱସ୍ୟେଶାନୋ ଯଦନ୍ନେନାତି ରୋହତି ।୨ ।

ଏତା ବାନସ୍ୟ ମହିମାତୋ ଜ୍ୟାୟାଂଶ୍ଚ ପୁରୁଷଃ । ପାଦୋଽସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟାମୃତଂ ଦିବି ।୩ ।

ତ୍ରିପାଦୂର୍ଦ୍ଧ୍ୱ ଉଦୈତ୍ପୁରୁଷଃ ପାଦୋଽସ୍ୟେହାଭବତ୍ପୁନଃ । ତତୋ ବିଷ୍ୱଙ୍‌ବ୍ୟକ୍ରମତ୍ସାଶନାନଶନେ ଅଭି ।୪ ।



ତତୋ ବିରାଡ଼ଜାୟତ ବିରାଜୋ ଅଧିପୁରୁଷଃ । ସ ଜାତୋଽତ୍ୟରିଚ୍ୟତ ପଶ୍ଚାଦ୍ଭୂମିମଥୋ ପୁରଃ ।୫ ।

ତସ୍ମାଦ୍‌ଯଜ୍ଞାତ୍ସର୍ବହୁତଃ ସଂଭୃତଂ ପୃଷଦାଜ୍ୟଂ । ପଶୁଁଙ୍ଗ ସ୍ତାଂଶ୍ଚକ୍ରେ ବାୟବ୍ୟାନାରଣ୍ୟ ଗ୍ରାମ୍ୟଶ୍ଚ ଯେ ।୬ ।

ତସ୍ମାଦ୍‌ଯଜ୍ଞାତ୍ସର୍ବହୁତଃ ଋଚଃ ସାମାନି ଜଜ୍ଞିରେ । ଛନ୍ଦାଙ୍ଗଂସି ଜଜ୍ଞିରେ ତସ୍ମାଦ୍‌ଯଜୁସ୍ତସ୍ମାଦଜାୟତ ।୭ ।

ତସ୍ମାଦଶ୍ୱା ଅଜାୟନ୍ତ ଯେକେ ଚୋଭୟାଦତଃ । ଗାବୋ ହ ଜଜ୍ଞିରେ ତସ୍ମାତ୍ତସ୍ମାଜ୍ଜାତାଅଜାବୟଃ ।୮ ।

ତଂ ଯଜ୍ଞଂ ବର୍ହିଷି ପ୍ରୌକ୍ଷନ୍ନପୁରୁଷଂ ଜାତମଗ୍ରତଃ । ତେନ ଦେବା ଅୟଜନ୍ତ ସାଧ୍ୟା ଋଷୟଶ୍ଚ ଯେ ।୯ ।

ଯତ୍‌ପୁରୁଷଂ ବ୍ୟଦଧୂଃ କତିଧାବ୍ୟକଳ୍ପୟନ୍ । ମୁଖଂ କିମସ୍ୟାସୀତ୍ କିଂବାହ କିମୁରୁ ପାଦା ଉଚ୍ୟତେ । କୌ ପାଦା ଉଚ୍ୟେତେ ଇତି ଋଗ୍‌ବେଦୀୟପାଠଃ ।୧୦ ।

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍‌ବାହୂ ରାଜନ୍ୟଃ କୃତଃ । ଉରୁ ତଦସ୍ୟ ଯଦ୍ଦବୈଶ୍ୟଃ ପଦ୍ଭ୍ୟାଙ୍ଗଂ ଶୂଦ୍ରୋ ଅଜାୟତ ।୧୧ ।

ଚନ୍ଦ୍ରମା ମନସୋ ଜାତଶ୍ଚ କ୍ଷୋଃ ସୂର୍ଯ୍ୟୋ ଅଜାୟତ । ଶ୍ରୋତାଦ୍ଵାୟୁଶ୍ଚ ପ୍ରାଣଶ୍ଚ ମୁଖାଦଗ୍ନିରଜାୟତ ।୧୨ ।

ନାଭ୍ୟା ଆସୀଦନ୍ତରିକ୍ଷଂ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତ୍ତତ । ପଦ୍ଭ୍ୟାଂ ଭୂମିର୍ଦ୍ଦିଶଃ ଶ୍ରୋତ୍ରାତ୍ତଥା ଲୋକାଂ ଅକଳ୍ପୟନ୍ ।୧୩ ।

ଯତ୍‌ପୁରୁଷେଣ ହବିଷା । ଦେବା ଯଜ୍ଞମତନ୍ୱତ । ବସନ୍ତୋଽସ୍ୟାସୀଦାଜ୍ୟଂ ଗ୍ରୀଷ୍ମ ଇଧ୍ମଃ ଶରଦ୍ଧବିଃ ।୧୪ ।

ସପ୍ତାସ୍ୟାସନ୍ ପରିଧୟସ୍ତ୍ରିଃ ସପ୍ତ ସମିଧଃ କୃତାଃ । ଦେବା ଯଦ୍‌ଯଜ୍ଞଂ ତନ୍ୱାନା ଅବଧ୍ନନ୍ ପୁରୁଷଂ ପଶୁଂ ।୧୫ ।

ଯଜ୍ଞେନ ଯଜ୍ଞମୟଜନ୍ତ ଦେବାସ୍ତାନି ଧର୍ମାଣି ପ୍ରଥମାନ୍ୟାସନ୍ । ତେହ ନାକଂ ମହିମାନଃ ସଚନ୍ତ ଯତ୍ର ପୂର୍ବେ ସାଧ୍ୟାଃ ସନ୍ତି ଦେବାଃ ।୧୬ ।

ଅଦ୍ଭ୍ୟଃ ସମ୍ଭୃତଃ ପୃଥିବ୍ୟୈ ରସାଚ୍ଚ ବିଶ୍ୱକର୍ମଣଃ ସମବର୍ତ୍ତତାଗ୍ରେ । ତସ୍ୟ ତ୍ୱଷ୍ଟାବିଦଧଦ୍ରୂପମେତି ତନ୍ମର୍ତ୍ତ୍ୟସ୍ୟ ଦେବତ୍ୱ ମାଜାନମଗ୍ରେ ।୧୭ ।

ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାତି ମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।୧୮ ।

ପ୍ରଜାପତିଶ୍ଚ ରତି ଗର୍ଭେ ଅନ୍ତରଜାୟମାନୋ ବହୁଧା ବିଜାୟତେ । ତସ୍ୟ ଯୋନିଂ ପରିପଶ୍ୟନ୍ତି ଧୀରାସ୍ତସ୍ମିନ୍ ହସ୍ଥୁର୍ଭୁ ବନାନି ବିଶ୍ୱା ।୧୯ ।

ଯୋ ଦେବେଭ୍ୟ ଆତପତି ଯୋ ଦେବନାଂ ପୁରୋହିତଃ । ପୂର୍ବୋ ଯୋ ଦେବେଭ୍ୟୋ ଜାତୋ ନମୋ ରୁଚାୟ ବ୍ରାହ୍ମୟେ ।୨୦ ।

ରୁତଂ ବ୍ରାହ୍ମଂ ଜନୟନ୍ତୋ ଦେବା ଅଗ୍ରେ ତଦବ୍ରୁବନ୍ । ଯସ୍ତ୍ୱୈବଂ ବ୍ରାହ୍ମଣୋ ବିଦ୍ୟାତ୍ତସ୍ୟା ଦେବା ଅସନ୍ବଶେ ।୨୧ ।

ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତଂ । ଇଷନ୍ନିଷାଣାମୁମ୍ମଇଷାଣ ସର୍ବଲୋକମ୍ମଇଷାଣ ।

ତତ ଆଚାର୍ଯ୍ୟୋବଟସ୍ୟ ପଶ୍ଚିମେ ଚତୁରସ୍ରବେଦିକାଂ ନିର୍ମାୟ ତତ୍ର ସର୍ବତୋଭଦ୍ରମଣ୍ଡଳେ ବ୍ରହ୍ମାଦିଦେବତା ଆବାହୟେତ୍ । ତଦ୍ୟଥା-ବେଦିକୋପରି ଅକ୍ଷତପୁଞ୍ଜେ କଳସତ୍ରୟଂ ଏକଂ ବା ସ୍ଥାପୟେତ୍ । ମଧ୍ୟମକୁମ୍ଭେ "ଓଁ ବ୍ରହ୍ମଜଜ୍ଞାନଂ ପ୍ରଥମଂ ପୁରସ୍ତାଦ୍ୱିସୀମତଃ ସୁରୁଚୋ ବେନଆବହ । ସ ବୃଦ୍ଧ୍ୟା ଉପମା ଅସ୍ୟ ବିଷ୍ଠାଃ ସତଶ୍ଚ ଯୋନିମସତଶ୍ଚ ବିବାହ" ଇତି ମନ୍ତ୍ରେଣ ବ୍ରହ୍ମାଣଂ, ତଦ୍ଦକ୍ଷିଣେ "ଓଁ ଇଦଂ ବିଷ୍ଣୁର୍ବିଚକ୍ରମେତ୍ରେଧାନିଦଧେପଦଂ । ସମୂଳହମସ୍ୟାପାଙ୍ଗ ସୁରେ" ଇତି ମନ୍ତ୍ରେଣ ବିଷ୍ଣୁଂ, ଉତ୍ତରେ "ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟି ବର୍ଦ୍ଧନଂ । ଉର୍ବାରୁକମିବ ବନ୍ଧାନାନ୍ମୃ ତ୍ୟୋର୍ମୁକ୍ଷୀୟମାମୃତାତ୍" ଇତି ମନ୍ତ୍ରେଣ ରୁଦ୍ରମାବାହ୍ୟ ସମ୍ପୂଜ୍ୟ ଚ । ମଣ୍ଡଳସ୍ୟାଗ୍ନେୟାଦିକୋଣେଷୁ । ଓଁ ଗଣାନାନ୍ତ୍ୱାଗଣପତିଂ ହବାମହେପ୍ରିୟାଣାନ୍ତ୍ୱା ପ୍ରିୟପତିଂହବାମହେନିଧୀନାଂ ତ୍ୱା ନିଧିପତିଂ ହବାମହେ ବସୋ ମମ" ଇତି ମନ୍ତ୍ରେଣ ଗଣପତିଂ, "ଓଁ ଅମ୍ବେ ଅମ୍ବିକେ ଅମ୍ବାଲିକେ ନମାନୟତି କଶ୍ଚନ । ସସସ୍ତ୍ୟାଃଶ୍ୱକଃ ସୁଭଦ୍ରିକାଙ୍କାମ୍ପୀଲବାସିନୀଂ" ଇତି ମନ୍ତ୍ରେଣ ଦୁର୍ଗାଂ, "ଓଁ ଅନାଧୃଷ୍ଟା ପୁରସ୍ତାଦଗ୍ନେରାଧିପତ୍ୟଆୟୁର୍ମେଦାଃ ପୁତ୍ରବତୀ ଦକ୍ଷିଣତ ଇନ୍ଦ୍ରସ୍ୟାଧିପତ୍ୟେପ୍ରଜାଂ ମେଦାଃ ସୁଷଦା ପଶ୍ଚାଦେବସ୍ୟ ସବିତୁରାଧିପତ୍ୟେ ଚକ୍ଷୁର୍ମେଦାଆଶ୍ରୁତିରୁତ୍ତରତୋ ଧାତୃରାଧିପତ୍ୟେ ରାୟସ୍ପୋଷଂ ମେଦାଃ" ଇତି ମନ୍ତ୍ରେଣ ମାତୃଃ "ନହିସ୍ପର୍ଶମବିଦନ୍ନନ୍ୟମସ୍ମାଦ୍ୱୈଶ୍ୱାନରାପୁର ଏତାର ମଗ୍ନେଃ ଏମେନମବୃଧନ୍ନମୃତା ଅମର୍ତ୍ତ୍ୟଂ ବୈଶ୍ୱାନରଂ କ୍ଷୈତଜିତ୍ୟାୟ ଦେବାଃ । ଇତି ମନ୍ତ୍ରେଣ କ୍ଷେତ୍ରପାଳମାବାହ୍ୟ ପୂଜୟେତ୍ । ପୂର୍ବାଦ୍ୟଷ୍ଟସୁ କଳେସେଷୁ ପଞ୍ଚଗବ୍ୟଂ, ସପ୍ତମୃଦଃ ପଞ୍ଚପଲ୍ଲବାନ୍,



ଚନ୍ଦନଂ ପଞ୍ଚରତ୍ନାନି, କ୍ଷୀରଂ ସର୍ବୌଷଧିଃ, ଗଙ୍ଗୋଦକମେବଂ କ୍ଷିପ୍ତ୍ୱା ଶୁଦ୍ଧେଜଳେନାପୂର୍ଯ୍ୟ ପୂର୍ଣ୍ଣପାତ୍ରଂ ନିଧାୟ ଲୋକେଶାଂଶ୍ଚ ତତ୍ତନ୍ମନ୍ତ୍ରୈଃ ସଂପୂଜ୍ୟ ହରିଦ୍ରା ତୈଳରୋପଣାଦି ବଟସ୍ୟ କୃତ୍ୱା କଳସୋଦକେନ ସ୍ନାପୟିତ୍ୱା କଷାୟବସ୍ତ୍ରଯୁଗ୍ମେନାଚ୍ଛାଦୟେତ୍ । ଇତ୍ୟଧିବାସନଂ ।

ବ୍ୟାଖ୍ୟା-ତତ୍ପରେ ଆଚାର୍ଯ୍ୟ ବଟଗଛରେ ପଶ୍ଚିମଦିଗରେ ଗୋଟିଏ ଚାରିକୋଣିଆ ବେଦୀ କରିବେ । (ମୂଳ-୫୬ ନମ୍ବର ଦେଖ) ସେହି ବେଦୀ ଉପରେ ଗୋଟିଏ ସର୍ବତୋଭଦ୍ରମଣ୍ଡଳ (ମୂଳ-୭୨ ନମ୍ବର ଦେଖ) ଲେଖି ତହିଁରେ ବ୍ରହ୍ମାପ୍ରଭୃତି ଦେବତାମାନଙ୍କୁ ଆବାହନ କରିବେ । ଯଥା-ବେଦୀ ମଧ୍ୟରେ ଅକ୍ଷତ ପୁଞ୍ଜ ଉପରେ ତିନିଗୋଟି କଳସ ଅଥବା ଗୋଟିଏ କଳସ ସ୍ଥାପନ କରିବ । ତଦୁତ୍ତାରୁ ମଧ୍ୟକୁମ୍ଭରେ ଉପରୋକ୍ତ "ଓଁ ବ୍ରହ୍ମଜଜ୍ଞାନଂ" ହି ମନ୍ତ୍ର ପଢ଼ି ବ୍ରହ୍ମାଙ୍କୁ ଆବାହନ କରି ପୂଜା କରିବ । ସେହି ମଧ୍ୟକୁମ୍ଭର ଦକ୍ଷିଣକୁମ୍ଭରେ ଉପରୋକ୍ତ "ଓଁ ଇଦଂ ବିଷ୍ଣୁଃ" ଏହି ମନ୍ତ୍ର ପଢ଼ି ବିଷ୍ଣୁଙ୍କୁ ଆବାହନ କରି ପୂଜା କରିବ ଓ ସେହି ମଧ୍ୟକୁମ୍ଭ ଉତ୍ତର କଳସରେ ଉପରୋକ୍ତ "ଓଁ ତ୍ର୍ୟମ୍ବକଂ" ଏହି ମନ୍ତ୍ର ପଢ଼ି ରୁଦ୍ରଙ୍କୁ ଆବାହନ କରି ପୂଜା କରିବ । ଯେବେ ଗୋଟିଏ କଳସ କରାଯାଏ ତେବେ ତାହା ମଧ୍ୟରେ ବ୍ରହ୍ମା ଉର୍ଦ୍ଧ୍ୱରେ ରୁଦ୍ର, ଅଧୋଭାଗରେ ବିଷ୍ଣୁଙ୍କୁ ପୂଜା କରିବ । ତତ୍ପରେ ସର୍ବତୋଭଦ୍ରମଣ୍ଡଳର ଆଗ୍ନେୟ କୋଣରେ ଉପରୋକ୍ତ "ଓଁ ଗଣାନାଂ ତ୍ୱାଂ" ଏହି ମନ୍ତ୍ର ପଢ଼ି ଗଣେଶଙ୍କୁ ଆବାହନ କରି ପୂଜା କରିବ । ନୈର୍ଋତକୋଣରେ ଉପରୋକ୍ତ "ଅମ୍ବେ ଅମ୍ବିକେ" ଏହି ମନ୍ତ୍ର ପଢ଼ି ଦୁର୍ଗାଙ୍କୁ ଆବାହନ କରି ପୂଜା କରିବ ଓ ବାୟୁକୋଣରେ ଉପରୋକ୍ତ "ଓଁ ଅନାଧୃଷ୍ଟା" ଏହି ମନ୍ତ୍ର ପଢ଼ି ମାତୃଗଣଙ୍କୁ ଆବାହନ କରି ପୂଜା କରିବ । ଈଶାନକୋଣରେ ଉପରୋକ୍ତ "ଓଁ ନହିସ୍ପସଂ" ଏହି ମନ୍ତ୍ର ପଢ଼ି କ୍ଷେତ୍ରପାଳଙ୍କୁ ଆବାହନ କରି ପୂଜା କରିବ । ତଦୁତ୍ତାରୁ ପୂର୍ବରୁ ସ୍ଥାପିତ ପୂର୍ବାଦି ଆଠଗୋଟି କଳସରେ ପଞ୍ଚଗବ୍ୟ, ସପ୍ତମୃତ୍ତିକା, ପଞ୍ଚପଲ୍ଲବ, ଚନ୍ଦନ, ପଞ୍ଚରତ୍ନ, କ୍ଷୀର, ସର୍ବୌଷଧି ଏବଂ ଗଙ୍ଗାଜଳ ଏହି ଦ୍ରବ୍ୟମାନ ପକାଇ ଶୁଦ୍ଧଜଳଦ୍ୱାରା ପୂର୍ଣ୍ଣ କରି କ୍ରମରେ ଦିକ୍‌ପାଳମାନଙ୍କୁ ସ୍ୱ ସ୍ୱ ମନ୍ତ୍ରରେ ଆବାହନ କରି ପୂଜା କରିବ । (ପୂର୍ଣ୍ଣମନ୍ତ୍ର ୧୬୬ ନମ୍ବର ଦେଖ) ତଦନନ୍ତର ବଟଗଛକୁ ହଳଦୀତେଲ ଲଗାଇଲେ ଉପରୋକ୍ତ ଆଠଗୋଟି କଳସର ଜଳଦ୍ୱାରା ସ୍ନାନ କରାଇ ଖଣ୍ଡିଏ ଗେରୁଆ ଲୁଗା ପିନ୍ଧାଇ ଦେବ, ଆଉ ଖଣ୍ଡିଏ ଗେରୁଆ ଉତ୍ତରୀ ଘୋଡ଼ାଇ ଦେବ ।

ତତଃ ପୂର୍ବାଦିଦିକ୍ଷୁ ଚତ୍ୱାରି ସ୍ଥଣ୍ଡିଳାନି ବିଧାୟ ତେଷୁ ହୋମାର୍ଥଂ ଚତୁର ଆଚାର୍ଯ୍ୟାନ୍ ବୃତ୍ୱା ତେ ଚ ସୁଗୃହ୍ୟବିଧିନାଗ୍ନିନ୍ ସ୍ଥାପୟେୟୁଃ । ଚକ୍ର ପୂର୍ବସ୍ଥଣ୍ଡିଳ

ଆଦିତ୍ୟାଦିନବଗ୍ରହାନମୁବସଙ୍ଖୟା ଆକାଦିସମିଚ୍ଚର୍ବାଜ୍ୟଦ୍ରବ୍ୟୈରଧିଦେବତାଃ ପ୍ରତ୍ୟଧିଦେବତାଶ୍ଚାମୁକସଙ୍ଖ୍ୟୟା ତୈରେବ ଦ୍ରବ୍ୟୈସ୍ତଥା "ଓଁ ଆନୋ ଭଦ୍ରେତି" ମନ୍ତ୍ରେଣ ବିଶ୍ୱାନ୍ ଦେବାନ୍ ଚରୁଦ୍ରବ୍ୟେଣାଷ୍ଟୋତ୍ତରଶତସଙ୍ଖ୍ୟୟା ତଥା ବାସୁଦେବାଦିପୀଠଦେବତାଃ ଅଶ୍ୱତ୍ଥସମିଚ୍ଚର୍ବାଦିଦ୍ରବ୍ୟୈଃ ଅଷ୍ଟୋତ୍ତର ଶତସଂଖ୍ୟୟା ବ୍ରହ୍ମାଦିଦେବତା ଲୋକପାଲାଂଶ୍ଚୈକୈକୟାଜ୍ୟାହୁତ୍ୟା ଯକ୍ଷ୍ୟେ । ଅଥ ଦକ୍ଷିଣ ସ୍ଥଣ୍ଡିଳେ ଗଣପତିଂ ତିଳାଜ୍ୟଦ୍ରବେଣାଷ୍ଟୋତ୍ତର ଶତସଙ୍ଖ୍ୟୟା ଯକ୍ଷ୍ୟେ । ପଶ୍ଚିମସ୍ଥଣ୍ଡିଳେ ଅଷ୍ଟୌ ଲୋକେଶାନ୍ ବାସ୍ତୁଂଚ ଶମୀସମିଦ୍ଭିରଷ୍ଟୋତ୍ତରଶତାଷ୍ଟାବିଂଶତିସଙ୍ଖ୍ୟୟା ବା ଯକ୍ଷ୍ୟେ । ଉତ୍ତରସ୍ଥଣ୍ଡିଳେ ନାରାୟଣଂ ପୌରୁଷେଣ ଯଜୁଃ ପ୍ରତ୍ୟୃଚଂ ଆଜ୍ୟଦ୍ରବ୍ୟେଣାଷ୍ଟୋତ୍ତରଶତସଙ୍ଖ୍ୟାୟା ଯକ୍ଷ୍ୟେ । ଅଥବା ପଶ୍ଚିମେ ସ୍ଥଣ୍ଡିଳେ ଅଶ୍ୱତ୍ଥସ୍ୟ ପୁଂସବନାଦିସମାବର୍ତ୍ତନାନ୍ତାନ୍ ସଂସ୍କାରାନ୍ ବ୍ୟାହୃତିଦ୍ୱାରା କରିଷ୍ୟେ ଇତି ସଙ୍କଳ୍ପ୍ୟ ଅତ୍ର ପ୍ରଧାନମଗ୍ନିଂ ବାୟୁଂ ସୂର୍ଯ୍ୟଂ ପ୍ରଜାପତିଂ ଆଜ୍ୟଦ୍ରବ୍ୟେଣ ପତିସଂସ୍କାର ଚତୁଶ୍ଚତଃସଙ୍ଖ୍ୟକାହୁତିଭିର୍ଯକ୍ଷ୍ୟେ । ପ୍ରତିସଂସ୍କାରହୋମାନ୍ତେ "ଓଁ ଆରାତ୍ତେ ଅଗ୍ନିରସ୍ତ୍ୱାରାତ୍ପରଶୁରସ୍ତୁ ତେ ନିବାତେତ୍ୱାଭିବର୍ଷତୁ । ସ୍ୱସ୍ତି ତେଽସ୍ତୁ ବନସ୍ପତେ ସ୍ୱସ୍ତିମେଽସ୍ତୁ ବନସ୍ପତେ" । ଇତି ମନ୍ତ୍ରେଣ ଅଶ୍ୱତ୍ଥଂ ସ୍ପୃଶେତ୍ । ଏବମୁପନୟନପର୍ଯ୍ୟନ୍ତଂ କୃତ୍ୱା ଯଜମାନୋଽଶ୍ୱତ୍ଥାନ୍ତରାଳେ ପଟଂ ଧୃତ୍ୱା ମଙ୍ଗଳାଷ୍ଟକପାଠପୁରଃସରଂ କୌପୀନଂ ଯଜ୍ଞୋପବୀତଂ କନକମୟୀଂ ଦର୍ଭମୟୀଂ ବା ମେଖଳାଂ ଦଣ୍ଡଞ୍ଚ ତତ୍ତନ୍ମନ୍ତ୍ରୈର୍ଧୃତ୍ୱା ସପ୍ରଣବାଂ ସବ୍ୟାହୃତିକାଂ ସଶିରସ୍କାଂ ଗାୟତ୍ରୀମପୁଦେଶପ୍ପଠେତ୍ ଇତ୍ୟୁପନୟନଂ ।

ବ୍ୟାଖ୍ୟା-ତତ୍ପରେ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଏହି ଚାରି ଦିଗରେ ଚାରିଗୋଟି ସ୍ଥଣ୍ଡିଳ ନିର୍ମାଣ କରି ସେହି ସ୍ଥଣ୍ଡିଳମାନଙ୍କରେ ହୋମନିମିତ୍ତ ଚାରିଜଣ ଆଚାର୍ଯ୍ୟ ବରଣ କରିବ । (ମୂଳ-୧୪୮ ନମ୍ବର ଦେଖ)ସେମାନେ ନିଜ ନିଜ ବେଦର ଗୃହ୍ୟସୂତ୍ରବିଧି ଅନୁସାରେ ଅଗ୍ନିସ୍ଥାପନ କରିବେ । (ଅଗ୍ନିସ୍ଥାପନବିଧି (ମୂଳ-୧୪୬ ନମ୍ବର ଦେଖ) ତଦୁତ୍ତାରୁ ପୂର୍ବଦିଗ ସ୍ଥଣ୍ଡିଳରେ ଯେତେ ସଂଖ୍ୟକ ଆହୁତି ସଂକଳ୍ପ କରିଥିବ ସେହି ପରିମାଣରେ ଅଧିଦୈବତ ଓ ପ୍ରତ୍ୟଧିଦୈବତ ସହିତ ଆଦିତ୍ୟାଦି ନବଗ୍ରହଙ୍କର ସ୍ୱ ସ୍ୱ ମନ୍ତ୍ରରେ ନିଙ୍କେ ନିଜେ ସମିଧ, ଚରୁ ଘୃତଦ୍ୱାରା ହୋମ କରିବ । (ମୂଳ-୧୬୫ ନମ୍ବର ଦେଖ) । "ଓଁ ଆନୋ ଭଦ୍ରା" ଏହି ମନ୍ତ୍ର ପଢ଼ି ବିଶ୍ୱେଦେବାଙ୍କୁ ଚରୁରେ ଶହେ ଆଠ ଆହୁତି ଦେବ ଓ ବାସୁଦେବ ପ୍ରଭୃତି ପୀଠଦେବତାମାନଙ୍କୁ ଉପରୋକ୍ତ ସ୍ୱ ସ୍ୱ ମନ୍ତ୍ରରେ ଅଶ୍ୱତ୍ଥ ସମିଧ, ଚରୁ ଓ ଘୃତରେ ଶହେ ଆଠ ଆହୁତି ଦେବ । ବ୍ରହ୍ମାଦି ଦେବତା ଓ ଦିକ୍‌ପାଳମାନଙ୍କୁ ସ୍ୱ ସ୍ୱ ମନ୍ତ୍ର ପଢ଼ି କେବଳ ଘୃତରେ ଏକ ଏକ ଆହୁତି ଦେବ । (ମୂଳ ୧୬୬ ନମ୍ବର ଦେଖ)



ତଦନନ୍ତର ଦକ୍ଷିଣଦିଗ ସ୍ଥଣ୍ଡିଳରେ ଗଣପତିଙ୍କୁ ସ୍ୱ ମନ୍ତ୍ରରେ ତିଳ ଓ ଘୃତରେ ଶହେ ଆଠ ଆହୁତି ଦେବ । ଅନନ୍ତର ପଶ୍ଚିମଦିଗ ସ୍ଥଣ୍ଡିଳରେ ଅଷ୍ଟଦିକ୍‌ପାଳ ଓ ବାସ୍ତୁ ଦେବଙ୍କୁ ସ୍ୱ ସ୍ୱ ମନ୍ତ୍ର ପଢ଼ି ଶମୀ ସମିଧରେ ଶହେ ଆଠ କମ୍ବା ଅଠାଇଶ ଆହୁତି ଦେବ । ତତ୍ପରେ ଉତ୍ତର ଦିଗ ସ୍ଥଣ୍ଡିଳରେ ନାରାୟଣଙ୍କୁ ଯଜୁର୍ବେଦୀୟ ଉପରୋକ୍ତ ପୁରୁଷସୂକ୍ତ ମନ୍ତ୍ର ପଢ଼ି ଘୃତରେ ଶହେ ଆଠ ଆହୁତି ଦେବ । ଆଉ ପଶ୍ଚିମଦିଗ ସ୍ଥଣ୍ଡିଳରେ "ବ୍ୟାହୃତି ମନ୍ତ୍ର ପଢ଼ି ଅଶ୍ୱତ୍‌ଥର ପୁଂସବନଠାରୁ ଆରମ୍ଭି ସମାବର୍ତ୍ତନ ପର୍ଯ୍ୟନ୍ତ ଦଶଗୋଟି ସଂସ୍କାରହୋମ ବ୍ରହ୍ମଚାରୀ ପରି କରିବ" ଏ ରୂପ ସଂକଳ୍ପ କରି ପ୍ରଧାନ ଦେବତା ଅଗ୍ନି, ବାୟୁ, ସୂର୍ଯ୍ୟ ଓ ପ୍ରଜାପତି ଏହି ଚାରି ଦେବତାଙ୍କୁ ଘୃତରେ ପ୍ରତିସଂସ୍କାର କର୍ମଶେଷରେ ଚାରି ୨ ଆହୁତି ଦେବ । ପ୍ରତିସଂସ୍କାର ହୋମଶେଷରେ ଉପରୋକ୍ତ "ଓଁ ଆରାତ୍ତେ" ଏହି ମନ୍ତ୍ର ପଢ଼ି ଅଶ୍ୱତ୍‌ଥ ବୃକ୍ଷକୁ ସ୍ପର୍ଶ କରୁଥିବ । ଏହିପରି ଉପନୟନ ଶେଷ ପର୍ଯ୍ୟନ୍ତ କରି ଯଜମାନ ବଟ ଓ ଅଶ୍ୱତ୍‌ଥ ବୃକ୍ଷର ମଧ୍ୟରେ ବସ୍ତ୍ର ଧରି ମଙ୍ଗଳାଷ୍ଟକ (ମୂଳ ୪୧୯ ନମ୍ବର ଦେଖ) ପଢ଼ି କୌପୀନ, ଯଜ୍ଞୋପବୀତ, ସୁନାର ବା କୁଶର ମେଖଳା ଓ ଦଣ୍ଡ ଏମାନଙ୍କୁ ସ୍ୱ ସ୍ୱ ମନ୍ତ୍ରରେ ଅଶ୍ୱତ୍‌ଥ ବୃକ୍ଷକୁ ଅର୍ପଣ କରି (ସମୁଦାୟ ମନ୍ତ୍ର ମୂଳ ୩୧୮ ନମ୍ବର ଦେଖ) ପ୍ରଣବ, ବ୍ୟାହୃତି ଓ ଚୂଡ଼ା ସହିତ ଗାୟତ୍ରୀକୁ ସାବିତ୍ରୀପ୍ରଦାନ ଅନୁସାରେ ପାଠ କରିବ ।

ତତଃସମାବର୍ତ୍ତନାନ୍ତଂ କର୍ମକୃତ୍ୱାକନକକୁଣ୍ଡଳେ ଅଳଙ୍କାରାଂଶ୍ଚ ଦତ୍ତ୍ୱା "ଆୟୁସ୍ୟଂ ବର୍ଚ୍ଚସ୍ୟ" ମିତି ପଠିତ୍ୱା ମୌଞ୍ଜୀବିସର୍ଜନାନ୍ତଂକୃତ୍ୱା ସ୍ୱିଷ୍ଟକୃଦାଦିହୋମଂ ସମାପୟେତ୍ ।

ବ୍ୟାଖ୍ୟା-ତତ୍ପରେ ସମାବର୍ତ୍ତନ ପର୍ଯ୍ୟନ୍ତ କର୍ମ ଶେଷ କରି ସୁବର୍ଣ୍ଣ କୁଣ୍ଡଳାଦି ଅଳଙ୍କାରମାନ ଅଶ୍ୱତ୍‌ଥ ବୃକ୍ଷକୁ ପିନ୍ଧାଇଦେଇ "ଓଁ ଆୟୁଷ୍ୟଂ ବର୍ଚ୍ଚସ୍ୟ" (ମୂଳ ୩୬୬ (ଖ) ନମ୍ବର ଦେଖ) ଏହି ମନ୍ତ୍ର ପଢ଼ି ମେଖଳା ବିସର୍ଜନପର୍ଯ୍ୟନ୍ତ ସମସ୍ତ କର୍ମ କରି ସ୍ୱିଷ୍ଟିକୃତ୍ ହୋମ କରି ଅଶ୍ୱତ୍‌ଥର ଦଶ ସଂସ୍କାରକର୍ମ ଶେଷ କରିବ ।

ଅଥ ବିବାହଃ-ତତ୍ରାଦୌ ଅଶ୍ୱତ୍‌ଥସ୍ୟାଳବାଳେ ଶତକୁମ୍ଭମିତଂ ଶୁଦ୍ଧଜଳଂକ୍ଷିପ୍ତ୍ୱା ଦୁଗ୍ଧମଧୁ ଘୃତକୁମ୍ଭୈଶ୍ଚ ସିକ୍ତ୍ୱା ବସ୍ତ୍ରଯୁଗ୍ମେନ ଅଶ୍ୱତ୍‌ଥତୁଳଶାଖା ବେଷ୍ଟୟିତ୍ୱା ତୁଳସ୍ୟୈ କଞ୍ଚୁକୀଂ ବସ୍ତ୍ରଂ କର୍ଣ୍ଣଭୂଷଣଂ ମୌକ୍ତିକଂ କର୍ଣ୍ଣପାଦଭୂଷଣାନି ଚ ଦଦ୍ୟାତ୍ । ତତୋବଟଂ ଦୂର୍ବାଂ ଚ ଦୁଗଧାଦିନା ସିକ୍ତ୍ୱା ବସ୍ତ୍ରଯୁଗ୍ମେନ ସଂବେଷ୍ଟ୍ୟ ବସ୍ତ୍ରଂ କଞ୍ଚୁକୀମାଭରଣାଦି ପୂର୍ବବଦ୍ଦଦ୍ୟାତ୍ । ତତଃ ସଙ୍କଳ୍ପଃ । ତଦ୍‌ଯଥାଦେଶକାଳବାକ୍ୟାନନ୍ତରଂ ଅମୁକସଗୋତ୍ରଃ ଶ୍ରୀମାନ୍‌ମୁକଶର୍ମ୍ମା ଅମୁକବର୍ମା

ଅମୁକଗୁପ୍ତା ବା ମମ ସକଳପାପକ୍ଷୟକୁଳକୋଟିସମୁଦ୍ଧରଣୈହିକା-ମୁଷ୍ମିକନିରବଧିସୁଖପ୍ରାପ୍ତିକପୂର୍ବ ବ୍ରହ୍ମପଦପ୍ରାପ୍ତ୍ୟର୍ଥଂ ବଟାଶ୍ୱତ୍ଥୟୋର୍ବିବାହବିଧିଂ କରିଷ୍ୟେ ଇତି ସଂକଳ୍ପ୍ୟ ସ୍ଥଣ୍ଡିଲେ ଯୋଜକନାମାଗ୍ନିଂ ସଂସ୍ଥାପ୍ୟ ମହାବ୍ୟାହୃତିଭିସ୍ତିଳାଜ୍ୟଦ୍ରବ୍ୟେଣାଷ୍ଟୋତ୍ତରଶତସଙ୍ଖ୍ୟୟା ଯକ୍ଷ୍ୟେ । ମହାବ୍ୟାହୃତୟୋ, ଯଥା-ଓ ଭୂରଗ୍ନୟେ ଚ ପୃଥିବ୍ୟୈଚ ମହତେ ଚ ସ୍ୱାହା ଭୂବୋ ବାୟବ୍ୟେ ଚାନ୍ତିରିକ୍ଷାୟ ମହତେ ଚ ସ୍ୱାହା ସ୍ୱାରାଦିତ୍ୟାୟ ଚ ଦିବେ ଚ ମହତେ ଚ ସ୍ୱାହା ଭୂର୍ଭୁବଃ ସ୍ୱଶ୍ଚନ୍ଦ୍ରମସେ ମହତେ ଚ ସ୍ୱାହା । ତତଃ "ଓଁ ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଦରଦଷ୍ଟିର୍ଯଥା ସଃ । ଭଗୋ ଅର୍ଯମା ଦେବଃ ସବିତା ପୁରନ୍ଧିର୍ମହ୍ୟଂ ତ୍ୱାଦୁର୍ଗାର୍ହପତ୍ୟାୟ ଦେବାଃ ଇତି" ମନ୍ତ୍ରଂ ପଠିତ୍ୱା ଅଶ୍ୱତ୍ଥତୁଳସ୍ୟୋର୍ବଟଦୂର୍ବୟୋଃ ପଲ୍ଲବମୟାନ୍ ହସ୍ତାନ୍ ଯୋଜୟେତ୍ । ତତୋ ନମସ୍କାରଃ-

ଅଶ୍ୱତ୍ଥ ତ୍ୱଂ ଜଗନ୍ନାଥଃ ପୁରାଦେବୈର୍ବିନିର୍ମିତଃ
ପାପାତ୍ ସନ୍ତ୍ରାହି ନୋ ଦେବ ପୁଣ୍ୟଂ ଦେହି ମହାଫଳଂ ॥
କ୍ଷୀରୋଦଧିସମୁଦ୍ଭୁତେ ତୁଳସି ହରିବଲ୍ଲଭେ ।
ଅଶ୍ୱତ୍ଥୋଦ୍ୱାପନଂ ପୁଣ୍ୟ ମହ୍ୟଂ ଦେହି ଶ୍ରିୟୈ ନମଃ ॥
ଆଦିତୋ ବ୍ରହ୍ମରୂପାୟ ମଧ୍ୟତୋ ବିଷ୍ଣୁରୂପିଣେ ।
ଅଗ୍ରତୋ ରୁଦ୍ରରୂପାୟ ବଟବୃକ୍ଷାୟ ତେ ନମଃ ॥
ଅକାରମୂଳରୂପାୟ ଉକାରସ୍କନ୍ଧଶାଖିନେ ।
ମକାରଫଳପୁଷ୍ପାୟ ବଟବୃକ୍ଷାୟ ତେ ନମଃ ॥
ତ୍ୱଂ ଦୂର୍ବେଽମୃତନାମାସି ପୂଜିତାସି ସୁରାସୁରୈଃ ।
ସୌଭାଗ୍ୟସନ୍ତତିଂ ଦତ୍ତ୍ୱା ସର୍ବକାର୍ଯ୍ୟକାରୀ ଭବ ॥
ଯଥା ଶାଖାପ୍ରଶାଭିର୍ବିସ୍ତୃତାନି ମହୀତଳେ ।
ଯଥା ମମାପି ସନ୍ତାନଂ ଦେହି ତ୍ୱମଜରାମରଂ ॥

ତତ ଆଚାର୍ଯ୍ୟଃ କ୍ଷେତ୍ରପାଳବଳିଂ ଦତ୍ତ୍ୱା ପୂର୍ଣ୍ଣାହୁତିଂ ହୁତ୍ୱା କର୍ମ ସମାପୟେୟୁଃ । ତତୋ ଯଜମାନଃ ପୀଠପୂଜାଂ ବିଧାୟ କୃତସ୍ୟାସ୍ୟ ବଟାଶ୍ୱତ୍ଥବିବାହସ୍ୟ ସାଙ୍ଗତାସିଦ୍ଧୟେ ଆଚାର୍ଯ୍ୟାଦିଭ୍ୟୋ ଦକ୍ଷିଣାପ୍ରଦାନମହଂ କରିଷ୍ୟେ ଇତି ସଂକଳ୍ପ୍ୟ ପୂଜାପୂର୍ବଦକ୍ଷିଣାଂ ଦତ୍ତ୍ୱା ପୁଣ୍ୟାହଂ ବାଚୟିତ୍ୱା ବଟାଶ୍ୱତ୍ଥବିବାହକର୍ମ ଯତ୍କୃତଂ ତତ୍ ସୁକୃତମସ୍ତୁ । ତତ ଆଚାର୍ଯ୍ୟାଦୟଃ ପୂର୍ବସ୍ଥାପିତାଷ୍ଟକଳସୋଦକେନ ଦୂର୍ବାପଲ୍ଲବୈ ସପତ୍ନୀକଂ ଯଜମାନଭିଷିଞ୍ଚେୟୁଃ ସହସ୍ରାକ୍ଷମନ୍ତ୍ରୈଃ "ରାନୋଭଦ୍ରେ" ତି ମନ୍ତ୍ରେଣ



ଚ । (ମୂଳ ୧୯୬ ନମ୍ବର ଦେଖ) ତତୋ ଯଜମାନସ୍ତିଳକାଦି ଗୃହୀତ୍ୱା "ଯାନ୍ତୁ ଦେବଗଣାଃ ସର୍ବେ ପୂଜାମାଦାୟ ପାର୍ଥିବୀଂ । ଇଷ୍ଟଭୋଗପ୍ରଦାନାୟ ପୁନରାଗମନାୟ ଚ ।" ଇତି ପୂଜିତଦେବତା ବିସର୍ଜନଂ କୃତ୍ୱା ସୋପକରଣଂ ପୀଠମାଚାର୍ଯ୍ୟାୟ ଦତ୍ତ୍ୱା ସମ୍ପୂର୍ଣ୍ଣତାସିଦ୍ଧୟେ ଗାଂ ଚ ଦତ୍ତ୍ୱା ବୃତବ୍ରାହ୍ମଣାନ୍ ସନ୍ତୋଷ୍ୟ କର୍ମୋଶ୍ୱରାର୍ପଣଂ କୃତ୍ୱା ଶତାଧିକାନ୍ ବ୍ରାହ୍ମଣାନ୍ ସମ୍ଭୋଜ୍ୟ ତେଷାମଶିଷୋ ଗୃହୀତ୍ୱା ଇଷ୍ଟଜନୈଃ ସହ ଭୁଞ୍ଜୀତ । ଏବଂ ଯଃ କୁରୁତେ ତସ୍ୟ ବର୍ଦ୍ଧତେ ହି ସ୍ତରାୟୁଷଂ । କୁଳକୋଟୀଃ ସମୁଦ୍ଧୃତ୍ୟ ବିଷ୍ଣୁଲୋକେ ମହୀୟେତ ।

ବ୍ୟାଖ୍ୟା-ପ୍ରଥମେ ଅଶ୍ୱତ୍ଥବୃକ୍ଷର ଆଳବାଳ (ମନ୍ଦା)ରେ ଶହେ ମାଠିଆ ଶୁଦ୍ଧ ଜଳ ତା' ଉପରେ ଏକକୁମ୍ଭ ଦୁଗ୍ଧ, ମଧୁ ଓ ଘୃତ ମିଶାଇ ସିଞ୍ଚିଦେବ ଓ ଯୋଡ଼ିଏ ଲୁଗା ଅଶ୍ୱତ୍ଥ ଓ ତୁଳସୀ ବୃକ୍ଷର ଶାଖାରେ ବେଢ଼ାଇ ଦେବ । ତତ୍ପରେ ତୁଳସୀବୃକ୍ଷରେ କାଞ୍ଚୁକୀ (କାଞ୍ଚଲା) ପିନ୍ଧାଇ ଦେଇ ହାର, କର୍ଣ୍ଣ ଭୂଷଣ ଓ ପାଦଭୂଷଣ ଯଥାସ୍ଥାନରେ ପିନ୍ଧାଇ ଦେବ । ତଦୁତ୍ତାରୁ ସେହିପରି ବଟ ଓ ଦୁର୍ବା ଏ ଉଭୟଙ୍କର ଉପରେ ଦୁଗ୍ଧ, ମଧୁ ଘୃତ ଓ ଜଳ ସିଞ୍ଚିଦେଇ ବସ୍ତ୍ର ଯୁଗ୍ମ ବେଢ଼ାଇ ଦେଇ କଞ୍ଚୁକୀ ଓ ଆଭାରଣାଦି ପିନ୍ଧାଇ ଦେବ । ତଦୁତ୍ତାରୁ ଉପରୋକ୍ତ ସଂକଳ୍ପବାକ୍ୟ ପଢ଼ି ସଂକଳ୍ପ କରିବ । ସ୍ଥଣ୍ଡିଳରେ ଯୋଜକନାମାଗ୍ନି ସ୍ଥାପନ କରି ଉପରୋକ୍ତ ମହାବ୍ୟାହୃତି ମନ୍ତ୍ର ପଢ଼ି ତିଳ ଓ ଘୃତରେ ଶହେ ଆଠ ଆହୁତି ଦେବ । ତଦନନ୍ତର ଉପରୋକ୍ତ "ଗୃଭ୍ଣାମି ତେ" ଏହି ମନ୍ତ୍ର ପଢ଼ି ଅଶ୍ୱତ୍ଥ ସହିତ ତୁଳସୀ ଓ ବଟର ସହିତ ଦୁର୍ବା ପଲ୍ଲବକୁ ଯୋଗ କରିଦେବ । ଅନନ୍ତର ଉପରୋକ୍ତ "ଓଁ ଅଶ୍ୱତ୍ଥ ତ୍ୱଂ" ଏହି ମନ୍ତ୍ର ପଢ଼ି ଅଶ୍ୱତ୍ଥ ସହିତ ତୁଳସୀ ଓ ବଟର ସହିତ ଦୁର୍ବା ପଲ୍ଲବକୁ ଯୋଗ କରିଦେବ । ଅନନ୍ତର ଉପରୋକ୍ତ "ଓଁ ଅଶ୍ୱତ୍ଥ ତ୍ୱଂ" ଏହି ମନ୍ତ୍ର ପଢ଼ି ଅଶ୍ୱତ୍ଥକୁ "ଓଁ କ୍ଷୀରୋବଧିସମୁଦ୍ଭୂତେ" ଏହି ମନ୍ତ୍ର ପଢ଼ି ତୁଳସୀଦେବୀଙ୍କୁ ଓ ଆଦିତୋ ବ୍ରହ୍ମରୂପାୟ" ଏହି ମନ୍ତ୍ର ପଢ଼ି ବଟବୃକ୍ଷକୁ ଏବଂ "ତ୍ୱଂଦୁର୍ବେଽମୃତନାମାସ" ଏହି ମନ୍ତ୍ର ପଢ଼ି ଦୁର୍ବାଙ୍କୁ ନମସ୍କାର କରିବ । ତତ୍ପରେ ଆଚାର୍ଯ୍ୟମାନେ କ୍ଷେତ୍ରପାଳବଳି ଓ ପୂର୍ଣ୍ଣାହୁତି

ଦେଇ କର୍ମ ସମାପ୍ତି କରିବେ । ତଦୁତ୍ତାରୁ ଯଜମାନ ପୀଠପୂଜା କରି ଆଚାର୍ଯ୍ୟ ପ୍ରଭୃତିଙ୍କୁ ଦକ୍ଷିଣା ଦେଇ ପୁଣ୍ୟାହବାଚନ କରି ଅଚ୍ଛିଦ୍ରାବଧାରଣ କରିବ । ଆଚାର୍ଯ୍ୟାଦି ପୂର୍ବସ୍ଥାପିତ ଆଠଗୋଟି କୁମ୍ଭର ଜଳ ଦୁବରେ ଦେଇ ସସ୍ତ୍ରୀକ ଯଜମାନଙ୍କୁ ସହସ୍ରାକ୍ଷ ମନ୍ତ୍ର ଓ ଆନୋଭଦ୍ରା ମନ୍ତ୍ର ପଢ଼ି ସ୍ନାନ କରାଇ ଦେବେ । ତତ୍ପରେ ଯଜମାନ ତିଳକ ଓ ଆଶୀର୍ବାଦକ୍ଷତ ଗ୍ରହଣ କରି ଉପରୋକ୍ତ "ଓଁ ଯାନ୍ତୁ ଦେବଗଣାଃ" ଏହି ମନ୍ତ୍ର ପଢ଼ି ପୂଜିତ ଦେବତାମାନଙ୍କୁ ବିସର୍ଜନ କରିବ ଓ ଉପକରଣ ସହିତ ପୀଠକୁ ଆଚାର୍ଯ୍ୟଙ୍କୁ ଦେଇ ସମ୍ପୂର୍ଣ୍ଣତା ସିଦ୍ଧି ନିମିତ୍ତ ଗୋଦାନ କରି ବୃତ ବ୍ରାହ୍ମଣମାନଙ୍କୁ ଦକ୍ଷିଣାଦ୍ୱାରା ସନ୍ତୁଷ୍ଟ କରି ଈଶ୍ୱରଙ୍କଠାରେ କର୍ମ ସମର୍ପଣ କରି ଶହେରୁ ଅଧିକ ବ୍ରାହ୍ମଣଭୋଜନ କରାଇ ସେମାନଙ୍କଠାରୁ ଆଶୀର୍ବାଦ ଗ୍ରହଣ କରି ନିଜେ ଜ୍ଞାତି ବନ୍ଧୁ ସହିତ ଭୋଜନ କରିବ । ଏହି ବିଧି ଅନୁସାରେ ଯେ ବଟ ଓ ଅଶ୍ୱତ୍ଥ ବିବାହ କରେ ଯେ କୋଟିଏ କୁଳ ଉଦ୍ଧାର କରି ବିଷ୍ଣୁଲୋକରେ ପୂଜା ପାଏ । ତାହାର ଆୟୁଷ ଓ ସମ୍ପତ୍ତି ବଢ଼େ । ଇତି ଶୌନକୋକ୍ତବଟାଶ୍ୱତ୍ଥପ୍ରତିଷ୍ଠାବିବାହବିଧିଃ ସମାପ୍ତଃ ।

-୦-

## ୮-ଶୂଦ୍ରର ସଂସ୍କାର

ଶୂଦ୍ରୋଽପ୍ୟେବଂବିଧଃ କାର୍ଯ୍ୟା ବିନା ମନ୍ତ୍ରେଣ ସଂସ୍କୃତଃ ।
ନ କେନଚିତ୍ ସମସୃଜତ୍ ଛନ୍ଦସା (ମନ୍ତ୍ରେଣ) ତଂ ପ୍ରଜାପତିଃ । (ଯମ)
ଗର୍ଭାଧାନଂ ପୁଂସବନଂ ସୀମନ୍ତୋ ଜାତକର୍ମ ଚ ।
ନାମକ୍ରିୟା ନିଷ୍କ୍ରମୋଽପ୍ରାଶନଂ ବପନକ୍ରିୟା ॥
କର୍ଣ୍ଣବେଧୋ ବ୍ରତାଦେଶୋ ବେଦାରମ୍ଭକ୍ରିୟାବିଧିଃ ।
କେଶାନ୍ତସ୍ନାନମୁଦ୍‌ବାହୋ ବିବାହାଗ୍ନି ପରିଗ୍ରହଃ ॥
ତ୍ରେତାଗ୍ନି ସଂଗ୍ରହଶ୍ଚୈବ ସଂସ୍କାରାଃ ଷୋଡ଼ଶ ସ୍ମୃତାଃ । (ବ୍ୟାସଃ)
ନବୈତାଃ କର୍ମବେଧାନ୍ତା ମନ୍ତ୍ରବର୍ଜଂ କ୍ରିୟାଃ ସ୍ତ୍ରିୟାଃ ॥
ବିବାହୋ ମନ୍ତ୍ରତସ୍ତସ୍ୟା ଶୂଦ୍ରସ୍ୟାମନ୍ତ୍ରତୋ ଦଶ । (ବ୍ରହ୍ମପୁରାଣେ)

 

ଶୂଦ୍ରସ୍ୟଗର୍ଭା ଧନାପୁଂସବନସୀମନ୍ତଜାତକର୍ମନାମଧେୟନିଷ୍କ୍ରମଣାନ୍ତପ୍ରାଶନ ଚୂଡ଼ାକରଣବିବାହାନ୍ତାନବଂସସ୍କରାବିନ୍ତିତାସ୍ତେ ଚ ତୁଷ୍ଣୀମିତି ହରିହରଃ ।

ଦ୍ୱିଜାନଂ ଷୋଡ଼ଶେବ ସ୍ୟୁଃ ଶୂଦ୍ରାଣାଂ ଦ୍ୱାଦଶୈବ ହି ।

ପଞ୍ଚୈବ ମିଶ୍ରଜାତୀତାଂ ସଂସ୍କାରାଂ କୁଳଧର୍ମତଃ ॥ (ଶାରଙ୍ଗଧରଃ)

ବିବାହମାତ୍ରଂ ସଂସ୍କାରଂ ଶୂଦ୍ରୋଽପିଲଭତାଂ ସଦା (ବ୍ରହ୍ମପୁରାଣେ)

ଶୂଦ୍ରୌ ବର୍ଣ୍ଣତୁର୍ଥୋଽପି ବର୍ଣ୍ଣତତ୍ୱାଦ୍ଧର୍ମମର୍ହତି ॥

ବେଦମନ୍ତ୍ର ସ୍ୱଧା ସ୍ୱାହା ବଷଟ୍‌ରାଦିଭିର୍ବିନା । (ବ୍ୟାସଃ)

ବ୍ୟାଖ୍ୟା–ଯମ କହିଅଛନ୍ତି ସଂସ୍କାରସମୟ ଉପସ୍ଥିତ ହେଲେ ଶୂଦ୍ରମାନେ ବିନାମନ୍ତ୍ରରେ ସଂସ୍କାର କରିବେ । କାରଣ ବ୍ରହ୍ମା ତାଙ୍କପାଇଁ କୌଣସି ବେଦରେ ମନ୍ତ୍ର ରଚନା କରିନାହାନ୍ତି । ବ୍ୟାସ କହିଅଛନ୍ତି ଗର୍ଭାଧାନ, ପୁଂସବନ, ସୀମନ୍ତ, ଜାତକର୍ମ, ନାମକରଣ, ନିଷ୍କ୍ରମଣ, ଅନ୍ନପ୍ରାଶନ, ମୁଣ୍ଡନ, କର୍ଣ୍ଣବେଧ, ଯଜ୍ଞୋପବୀତଗ୍ରହଣ, ବେଦାରମ୍ଭ, ସମାବର୍ତ୍ତନ ସ୍ନାନ, ବିବାହ, ବିବାହାଗ୍ନି ଓ ତ୍ରେତାଗ୍ନିର ସଂଗ୍ରହ ଏହି ଷୋଳଗୋଟି ସଂସ୍କାର ଦ୍ୱିଜାତିମାନଙ୍କର ମନ୍ତ୍ର ସହିତ କରାଯାଏ; କିନ୍ତୁ ଗର୍ଭାଧାନଠାରୁ କର୍ଣ୍ଣବେଧ ପର୍ଯ୍ୟନ୍ତ ଏ ନଅଗୋଟି ସଂସ୍କାର ସ୍ତ୍ରୀମାନଙ୍କର ବିନାମନ୍ତ୍ରରେ କରାଯାଏ; କେବଳ ବିବାହ ମନ୍ତ୍ରସହିତ କରାଯାଏ । ଆଉ ଶୂଦ୍ରମାନଙ୍କର ଉପରୋକ୍ତ ନଅକର୍ମ ଓ ବିବାହ ଏ ରୂପ ଦଶକର୍ମ ବିନାମନ୍ତ୍ରରେ କରାଯାଏ । ହରିହରଙ୍କ ମତରେ ଶୂଦ୍ରମାନଙ୍କର ଗର୍ଭାଧାନ, ପୁଂସବନ, ସୀମନ୍ତ, ଜାତକର୍ମ, ନାମକରଣ, ନିଷ୍କ୍ରାମଣ, ଅନ୍ନପ୍ରାଶନ, ଚୂଡ଼ାକରଣ ଓ ବିବାହ ଏହି ନଅଗୋଟି ସଂସ୍କାର ବିନାମନ୍ତ୍ରରେ କରାଯାଏ । ଶାର୍ଙ୍ଗଧରଙ୍କ ମତରେ–କୁଳଧର୍ମ ଅନୁସାରେ ଦ୍ୱିଜାତିମାନଙ୍କର ପାଞ୍ଚଗୋଟି ସଂସ୍କାର କରାଯାଏ; କିନ୍ତୁ ବ୍ରହ୍ମପୁରାଣ ମତରେ ଶୂଦ୍ରର ବିବାହମାତ୍ର ସଂସ୍କାର । ବ୍ୟାସ କହନ୍ତି ଶୂଦ୍ର ଚତୁର୍ଥ ବର୍ଣ୍ଣ ଥିବାରୁ ବେଦମନ୍ତ୍ର, ସ୍ୱଧା ସ୍ୱାହା, ବଷଟ୍‌କାର ପ୍ରଭୃତି ଛଡ଼ା ଅନ୍ୟ କର୍ମର ଅଧିକାରୀ ହେବ ।

ଆର୍ଷକ୍ରମେଣସର୍ବତ୍ର ଶୂଦ୍ରା ବାଜସବେୟିନଃ ।

ତସ୍ମାଚ୍ଛୂଦ୍ରଃ ସ୍ୱୟଂ ଯଜୁର୍ବେଦୀବ କାରୟେତ୍ ॥

ଆର୍ଷକ୍ରମେଣ ମୁନ୍ୟୁକ୍ତ ଯଜୁର୍ବେଦିସମ୍ବନ୍ଧିଗୃହ୍ୟାଦିନା ।

ତଥାଚ ମରୀଚିଃ-ଅମନ୍ତ୍ରସ୍ୟ ତୁ ଶୂଦ୍ରସ୍ୟବିପ୍ରୋମନ୍ତ୍ରେଣ ଗୃହ୍ୟତେ ।

ବ୍ୟାଖ୍ୟା-ଶୂଦ୍ରମାନେ ଯଜୁର୍ବେଦୀଙ୍କ ପରି ବିବାହାଦି ସଂସ୍କାର କର୍ମ କରିବେ । ସେ ନିଜେ ମନ୍ତ୍ର ପଢ଼ିବେ ନାହିଁ, ତାଙ୍କ ପାଇଁ ବିପ୍ର ମନ୍ତ୍ର ପଢ଼ିବେ । କିନ୍ତୁ ଯଜୁର୍ବେଦ ମନ୍ତ୍ର ଛଡ଼ା ଅନ୍ୟ କୌଣସି ବେଦୋକ୍ତ ମନ୍ତ୍ର ପଢ଼ିବେ ନାହିଁ । ଶୂଦ୍ରଙ୍କ ବିବାହରେ ଷଡ଼ର୍ଘ୍ୟାରମ୍ଭ, କନିଷ୍ଠବେଦୀକର୍ମ, କନ୍ୟାବାସପରିଧାନ, ବର୍ଷ ବୃଦ୍ଧି, ସପ୍ତମଙ୍ଗଳା କର୍ମ ଛଡ଼ା ବିବାହର ସମସ୍ତ କର୍ମ ପରସ୍କର ଗୃହ୍ୟବିଧି ଅନୁସାରେ କରାଯାଏ ।

ଇତି ଶୂଦ୍ରାଦିସଂସ୍କାରବିଧିଃ ।

ବିହାରୀ କର୍ମକାଣ୍ଡଃ ସମାପ୍ତଃ ।

୪୧୩ ପୃଷ୍ଠା ଦତ୍ତକ ପୁତ୍ର ଗ୍ରହଣ ମନ୍ତ୍ର ୧ମଠାରୁ ୫ମ ପର୍ଯ୍ୟନ୍ତ ଶ୍ଳୋକ ସ୍ୱର୍ଣ୍ଣଖେମଣ୍ଡି ଦୁର୍ଗ ନିବାସୀ ଶ୍ରୀ ଗୋଦାବରୀଶ ଦାସ୍ ବେଦଭଟ୍ଟଙ୍କଦ୍ୱାରା ସଂଗୃହୀତ)

